# ଜୀବନ-ନଦୀରେ ଭଉଁରୀ

ଲେଖକ :
**ଚିନ୍ତାମଣି ମିଶ୍ର**
'ନବଜୀବନ'
ଚାନ୍ଦନୀଚୌକ, କଟକ-୨

ପ୍ରକାଶକ :
**ନବଜୀବନ ପୁସ୍ତକାଳୟ**
ଚାନ୍ଦନୀଚୌକ, କଟକ-୨

ପ୍ରଚ୍ଛଦପଟ :
**ଉଦୟନାରାୟଣ ଜେନା**

ମୂଲ୍ୟ :
**ଏଗାର ଟଙ୍କା**

**JIVANA-NADIRE BHAUNRI**

(THE WHIRLPOOLS IN THE RIVER OF LIFE)

*by*

**CHINTAMANI MISRA**

*Published by*
**NABAJIVAN PUSTAKALAYA**
CHANDNICHAUK,
CUTTACK-2

*Cover design*
**Udaynarayan Jena**

*Price* :
**Rs. 11/-**

*Printed at* :
**Nabajivan Press**
Cuttack-2

# ପାଠକମାନଙ୍କୁ ସମର୍ପଣ

ଜୀବନକୁ ନଦୀ ସଙ୍ଗେ ଉପମା କରାଯାଏ । ଏ ଉପମାର କାଳର ଗତିରେ ପରିବର୍ତ୍ତନ ନାହିଁ । ଏହା ଯେତିକି ପୁରାତନ ସେତିକି ଆଧୁନିକ, ଚିରନୂତନ । ଉଭୟଙ୍କର ସମ୍ବଳ ଜଳ, ଜଳକୁ ବି 'ଜୀବନ' ବୋଲି କହନ୍ତି । ଉଭୟଙ୍କର ପ୍ରଧାନ ଗୁଣ ଗତି । ନଦୀ ସବୁବେଳେ ଚଞ୍ଚଳ । ଜୀବନ ବି ସେହିପରି । ଜଳ ଗଡ଼େ । ଗଡ଼ି ଗଡ଼ି ଯାଏ ସମୁଦ୍ରକୁ । ସେଠାରେ ବି ତା'ର ଯାତ୍ରା ସରେ ନାହିଁ । ପୁଣି ବାଷ୍ପ ରୂପରେ ଉପରକୁ ଉଠି ପୁନର୍ଜନ୍ମରେ ପୁଣି ଗଡ଼ିଚାଲେ ସମୁଦ୍ର ଯାଏଁ ।

ଜୀବନର ଠିକ୍ ସେହିପରି ଗତି—ମୃତ୍ୟୁ ପର୍ଯ୍ୟନ୍ତ । ମୃତ୍ୟୁ ପରେ ଯାଇ ପଞ୍ଚମହାଭୂତରେ ମିଶିଯାଏ, ଅବା ସୂକ୍ଷ୍ମ ଶରୀରରେ ଭଗବତ୍ ପଦାରବିନ୍ଦକୁ ଆଶ୍ରା କରେ, ଅବା ମହାକାଶରେ ବିଚରଣ କରୁଥାଏ । କ୍ରମେ ହିମବିନ୍ଦୁ ବା ବର୍ଷାଟୋପା ରୂପରେ ଭୂମିକୁ ଆସି ବୃକ୍ଷଲତାର ପତ୍ର ଫଳରେ ଆଶ୍ରୟ ନେଇ ସେଇବାଟେ ବୀର୍ଯ୍ୟ ରୂପରେ ଯାଏ ମାତୃଗର୍ଭକୁ ପୁଣି ଜନ୍ମ ନେବାକୁ । ପୁରୁଣା ପ୍ରାଣୀ ପୁଣି ନବଜୀବନ ପାଏ । ଏହି ବିବର୍ତ୍ତନ ଚାଲିଥାଏ । କେତେକାଳ ତାହା କହିବା କଷ୍ଟ । ଆମ ସମାଜରେ ବିଶ୍ୱାସ କରାଯାଏ, ପ୍ରାଣୀର ମୁକ୍ତିରେ ପୁନର୍ଜୀବନର ଇତି ହୁଏ । ବୈଜ୍ଞାନିକ ବିଶ୍ୱାସ କରେ, ବିବର୍ତ୍ତନ ଅନନ୍ତ ।

ଏ ପୁସ୍ତକରେ ଗୋଟିଏ ବାଳିକାର ଜୀବନର ଗତି ଚିତ୍ରିତ ହୋଇଛି । ତାର ଜୀବନ-ନଦୀର ଉତ୍ସ ହିମାଳୟର ପାଦଦେଶରେ ବନ୍ଧୁର ଉଚ୍ଚାବଚ ଭୂମିରେ କେତେ ଭଉଁରୀରେ ପଡ଼ି ଦୈବାତ୍ ବା ଭଗବତ୍ ଅନୁଗ୍ରହରେ ରକ୍ଷାପାଇ ଗତି କରିଛି ସମୁଦ୍ର କୂଳର ଜଗନ୍ନାଥ ପୀଠକୁ ଓ ସେଇଠାରେ ଜୀବନର ଶାନ୍ତି ପାଇଛି । ଏକ ନାୟିକା ହୋଇ ଶେଷରେ ଜଣେ ନାୟକ ଆସି ସ୍ତ୍ରୀକୁ ଆଶ୍ରା କରିଛି । ଭଗବାନ, ନାୟକର ଭୂମିକାରେ ରହି ରହି ଶେଷରେ ନିଜର ବିଭୂତିର ଅଂଶ ଜଣକୁ ଦେଇ, ଅଂଶ-ଅବତାର ରୂପେ ତା'ର ଜମା ନାୟିକାକୁ ଛାଡ଼ି ନିଜେ ଆଡ଼େଇ ହୋଇଯାଇଛନ୍ତି ଦର୍ଶକାଳୟକୁ ।

ସୂର୍ଯ୍ୟତାପରେ ତୁଷାର ତରଳିଲେ ବା ଋତୁ ପରିବର୍ତ୍ତନରେ ବର୍ଷା ହେଲେ, ନଦୀ ପ୍ରମତ୍ତ ହୁଏ । ଗିରିସ୍ରୋତ ବହୁ ଭଉଁରୀ ସୃଷ୍ଟି କରି ତଳକୁ ଯାଏ । ଯାଉ ଯାଉ କେତେ ସମଧର୍ମୀ ଜୁଟନ୍ତି । ଏକଜୁଟ ହୋଇ ଶକ୍ତି ବେଗରେ ଏବଂ କୂଳ ଲଂଘି ପୃଥିବୀକୁ ଜଳମଗ୍ନ କରି ଦେବ ବୋଲି ଆଶଙ୍କା ଜନ୍ମାଏ । ଅଳ୍ପ ସମୟ ପାଇଁ । ସ୍ରୋତ ଫେରି ଦୁଇ ତୀର ମଧ୍ୟରେ ବାନ୍ଧି ହୋଇଯାଏ । ଅନନ୍ତ ଯାହାଙ୍କୁ ରଖନ୍ତି ସେ ରହନ୍ତି, ବଳବନ୍ତର ତାପ, ବିପଦ ଆପଦରୁ ସେ ତରିଯାଏ ଏବଂ ପୁଣି ନଦୀ ସୋତରେ ଭାସିଯାଏ ତାର ଅନ୍ତକୁ । ଏ ସ୍ରୋତରେ ଅନ୍ତ, ଏ ଜୀବନର ଅନ୍ତ; ପଛକୁ ପୁଣି ଜନମ, ପୁଣି ମରଣ । ଆଗରୁ କହୁଛି ସ୍ୱାଧୀନତା ମିଳିବା ଦିନୁ ଘଟେ ଯେପରି ବିପଦ ଆପଦ ଜନଜୀବନ ଉପରେ ଅନବରତ ବର୍ଷୁଛି । ଏ ଉତ୍ପାତର ଘୋରତମ ସମୟରେ ଆମର କଥା ଆରମ୍ଭ । ଅସହାୟା ଅବଳା ଆରମ୍ଭରେ ଯେଉଁ ବିପଦ ମୁହଁରୁ ଉଦ୍ଧାର ପାଇଲି ସେଥିରୁ ଶହକେ ହଜାରକେ ଜଣେ ବି ବର୍ତ୍ତିବା କଷ୍ଟ । ବସ୍ତ୍ରହରଣବେଳେ ଯେ ଅସହାୟା ଦ୍ରୌପଦୀଙ୍କୁ ସାହା ହୋଇଥିଲେ ସେ ଏହାଙ୍କୁ ସାହା ହୋଇଛନ୍ତି ଏବଂ ଥରକୁ ଥର ନିଜର ଦେବଦୂତମାନଙ୍କୁ ପଠାଇ ବିପଦରୁ ଉଦ୍ଧାର କରିଛନ୍ତି । ଶେଷରେ ସେ ପହଞ୍ଚିଛି ସମତଳ ଭୂମିରେ, ଯେଉଁଠାରେ ସ୍ରୋତ ସାବଳୀଳ, ଭଉଁରୀ ଉପଭୋଗ୍ୟ । ଉଭୟର ଅଭିଜ୍ଞତା ଥିବା ଲୋକ ଓପରମୁଣ୍ଡ ଭଉଁରୀ ଆଉ କେବେ ନ ହେଉ ବୋଲି ଭଗବାନଙ୍କୁ ଡାକିବ, ତଳମୁଣ୍ଡ ଭଉଁରୀରେ ପଡ଼ିଲେ ପୁନରାବୃତ୍ତି ହେଉ ବୋଲି ଭଗବାନଙ୍କୁ ମାଗିବ ।

ଆରୋହଣ-ଅବରୋହଣ କ୍ରମରେ ତାହାର ବିପଦସଙ୍କୁଳ ଯାତ୍ରାର ଅଙ୍କନ କରିବା ପ୍ରସଙ୍ଗରେ ଭାରତର ସମସାମୟିକ ରାଜନୀତିକ ଓ ସାମାଜିକ ଚିତ୍ରର ଝଲକ ରହିଯିବାର କଥା । ସେକାଳ ମୋଟାମୋଟି ଏଇ କାଳ । ଗଳ୍ପଟି କିଛିଦିନ ପୂର୍ବରୁ 'ନବଜୀବନ'ରେ ଧାରାବାହିକ ରୂପେ ପ୍ରକାଶ ପାଇଥିଲା । ଆଉ ଟିକିଏ ମାର୍ଜିତ ହୋଇଥିଲେ ତାହା ଆଜି ନୂଆ ହୋଇଯାଇଥାନ୍ତା । ବହୁଦିଗରୁ ବିଚାରି ତାହା କରିନାହିଁ ।

ଏଥିରେ ମୋଟାମୋଟି ଦେଖାଇଦିଆହୋଇଛି ସ୍ୱାଧୀନତା ଆସିବା ମାତ୍ରେ ଦେଶ କିପରି ରକ୍ତସ୍ନାନ ହୋଇଗଲା ଓ ସେଇ ରକ୍ତରେ ସମାଜର ଉପର ସ୍ତରରୁ ଭାରତର ପାରମ୍ପରିକ ସଂସ୍କୃତି ଏକାଥରକେ ଧୋଇ ହୋଇଗଲା । ଯାହା ବା ରହିଥିଲା ତାହା କ୍ରମେ ଏକାବେଳକେ ପୋଛି ହୋଇଯାଉଛି । ଗଣତନ୍ତ୍ର ନାମରେ ବ୍ୟକ୍ତିବିଶେଷ, ଗୋଟିଏ ସଂକୀର୍ଣ୍ଣ ଗୋଷ୍ଠୀ, ହଠାତ୍ ହାତୀ ଆସି ତାଙ୍କ ମୁଣ୍ଡରେ ସୁନାକଳସ ଢାଳିଦେଲାପରି ଅଚାନକଭାବେ ରାଜା ହୋଇଗଲେ ଏବଂ ମନମୁଖୀ ଶାସନ ଲୋକଙ୍କ ଉପରେ ସେଇ ଗୋଷ୍ଠୀ ନାମରେ ଜାରି କରିଦେଲେ । ଯେଉଁମାନେ ବହୁକାଳ ଧରି ଭାଇ ଭାଇ ପରି ରହିଥିଲେ ସେମାନେ ହୋଇଗଲେ ଶତ୍ରୁ । ଭାରତକୁ ଖଣ୍ଡ ଖଣ୍ଡ କରିଦେଲେ ପଛେ, ନିଜର କ୍ଷୁଦ୍ର ସ୍ୱାର୍ଥରେ

ଆକାନ୍ତ ହୋଇ ବଡ଼ବଡ଼ଆ ଜାତିର ମହତ୍ତ୍ୱ ବୁଡ଼ାଇ ଦେଲେ । ବନାଞ୍ଚଳ ସଂସ୍କୃତିର ଉପରେ ନର-ରାକ୍ଷସ ହୋଇଗଲେ ।

ସେମାନଙ୍କ ପ୍ରତିରୋଧ ନ ହୋଇଥିଲେ ଭାରତ ଏତେବେଳକୁ ଭିଏତନାମ ହୋଇ-ସାରନ୍ତାଣି । ସେକାଳେ ଭାରତୀୟମାନଙ୍କଦ୍ୱାରା ନିଜ ପାରମ୍ପରିକ ଅହିଂସା ରୀତିରେ । ହିଂସା ଦୁରାଚାର, ଦୁର୍ନୀତି ଏସବୁ ହୋଇଗଲା ସେଇମାନଙ୍କ ଅସ୍ତ୍ର, ଯେଉଁମାନେ ମହାତ୍ମା ଗାନ୍ଧୀଙ୍କ ପ୍ରବର୍ତ୍ତିତ ଅହିଂସା, ଅସ୍ତେୟ, ଅପରିଗ୍ରହ ପ୍ରଭୃତି ତ୍ୟାଗ ବ୍ରତରେ ଦୀକ୍ଷିତ ହୋଇଥିଲେ । ଏଇ-ମାନଙ୍କ ଆଦର୍ଶରେ ଏବେ ଦେଶର ଉତ୍ତର ପୁରୁଷ ଅମଡ଼ା ମାଡ଼ି ଚାଲୁଛନ୍ତି । ଦେଶକୁ ନିଜ ପାରମ୍ପରିକ ରୀତିକୁ ଫେରାଇବାକୁ ଯେଉଁମାନେ ଚାହୁଁଛନ୍ତି, ସେମାନେ ତାହା କରୁଛନ୍ତି ଅସଙ୍ଗ-ଶସ୍ତ୍ରରେ । ସେମାନଙ୍କର ଫଳାକାଂକ୍ଷା ନାହିଁ । ସେମାନେ କାଳର ଗତିଗତିକୁ ଦୃଷ୍ଟି ଦେଉନାହାନ୍ତି । ସେମାନଙ୍କର ବିଶ୍ୱାସ, ସେମାନେ ଯେଉଁପରି ମୌଳିକ କର୍ତ୍ତବ୍ୟରେ ରହିଛନ୍ତି ସେଇଥିରେ ହିଁ ଦେଶର ସବୁ ସଜାଡ଼ି ହୋଇଯିବ ।

ସେମାନଙ୍କ ବିଶ୍ୱାସରେ ଆସ୍ଥା ନ ହେଲେ ବି ଏ ପୁସ୍ତକରେ ଏତିକି ମାତ୍ର ସୂଚିତ ହୋଇଛି ଯେ, ସେମାନଙ୍କ ସଙ୍ଗେ ଆଧୁନିକ ଯୁଗ ଲୋକ ଯେଉଁ ମାତ୍ରାରେ ମିଶି ପୂର୍ବ ସଂସ୍କୃତିକୁ ପୁଷ୍ଟ କରିବେ ସେହି ମାତ୍ରାରେ ଦେଶର ମହତ୍ତ୍ୱ ଫେରିବ ଏବଂ ଭବିଷ୍ୟତ ଦାୟାଦ-ଙ୍କର ସେତିକି ଶୀଘ୍ର ଓ ସହଜରେ ଅନ୍ଧାନୁକରଣରୁ ଦୃଷ୍ଟି ଫେରିବ । ଏ ଦିଗରେ ଆମ ଯୁଗର କେତେକଙ୍କର ଚିନ୍ତା ଚାଲିଲଣି ବୋଲି ଗଳ୍ପରେ ଦର୍ଶିବାକୁ ଭବିଷ୍ୟତର ଆଶା ଦର୍ଶିଛି ।

ଆଉ ଗୋଟିଏ କଥା ପ୍ରତି ଗଳ୍ପର ପ୍ରସଙ୍ଗକ୍ରମେ ଦୃଷ୍ଟି ଆକୃଷ୍ଟ ହୋଇଛି । ତାହା ଗାଁଗହଳର ଅବସ୍ଥା । ସରକାର ଉପର ଆଡ଼ୁ ଗାଁମାନଙ୍କରେ ଯେଉଁ ଉନ୍ନତି ଲଦୁଛନ୍ତି, ତାହା ମଫସଲକୁ ଏକାବେଳକେ ପୋଡ଼ି ପକାଉଛି । ସରକାରୀ ସୁବିଧାଙ୍କ ପ୍ରଭାବରେ ଯୁବକ ଯୁବତୀମାନେ ନିଜେ ନିଜ ମୁଣ୍ଡରେ ବୋଝ ହେଉଛନ୍ତି । ଏହାର ପ୍ରତିକାର ହୋଇପାରିବ ଅବସରପ୍ରାପ୍ତ ଶିକ୍ଷିତ ଲୋକେ ସହରର ମୋହ ଛାଡ଼ି ଗାଁକୁ ଫେରି ଲୋକଙ୍କ ସଙ୍ଗେ ମିଶି ନିଜର ଶେଷ ଜୀବନ ତାଙ୍କର ଭିତରେ କଟାଇବାଦ୍ୱାରା । ଅବସର ପ୍ରାପ୍ତ ଲୋକେ ନିଜେ ନିଜକୁ ସଂଘବଦ୍ଧ କରି ଏହା କରିବା ଦରକାର, ସରକାରଙ୍କଠାରୁ ଅଲଗା ବା ସମାନ୍ତର ଭାବେ ।

ସର୍ବୋପରି ଏ ପୁସ୍ତକଟି ଆମ ପରବର୍ତ୍ତୀ ପୁରୁଷର ଯୁବକ ଯୁବତୀମାନଙ୍କ ହାତରେ ସମର୍ପଣ କରୁଛି; ଏହି ଉଦ୍ଦେଶ୍ୟରେ ଯେ, ସେମାନେ ଉପନ୍ୟାସ ପଢ଼ାର ଆମୋଦ ସଙ୍ଗେ

ଏହାର ଅନ୍ତର୍ନିହିତ ଭାବକୁ ଭିତରକୁ ନେବେ ଏବଂ ସେ ବିଷୟରେ ନିଜର ଚିନ୍ତା ଚଳାଇବେ, ଜାଣି କରି ନ ହେଲେ ବି ଅଜାଣତରେ ।

ଏ ଖଣ୍ଡିକ ପୁସ୍ତକାକାରରେ ପ୍ରକାଶ କରିବାର ସାମର୍ଥ୍ୟ ମୋର ବର୍ତ୍ତମାନ ନ ଥିଲା । କେତେକ ବନ୍ଧୁଙ୍କ ପ୍ରେରଣା ଓ ପ୍ରବର୍ତ୍ତନାରେ ଏହା ସମ୍ଭବ ହୋଇଛି । ଯଦି ଏ ପୁସ୍ତକଟି ଆଜିକାଲିର ରାଜମାର୍ଗରେ ପାଠକମାନଙ୍କୁ ଆନନ୍ଦ ଦିଏ ତାହାହେଲେ କୃତଜ୍ଞତା ବନ୍ଧୁମାନଙ୍କର ପ୍ରାପ୍ୟ । ତାଙ୍କ ଭିତରେ ଅଗ୍ରଗଣ୍ୟ ମୋର ବାଲ୍ୟବନ୍ଧୁ ବରଗଡ଼(ସମ୍ବଲପୁର)ର ଶ୍ରୀ କୃତାର୍ଥ ଆଚାର୍ଯ୍ୟ ।

ଚିନ୍ତାମଣି ମିଶ୍ର

# ପାଠକର ପଦେ

ଶ୍ରୀ ଚନ୍ଦ୍ରମଣି ମିଶ୍ର ଓଡ଼ିଶାର ଜଣେ ପୁରୁଖା, ଅନୁଭୂତିସମ୍ପନ୍ନ ଲେଖକ । ଫକୀରମୋହନୀୟ ହାସ୍ୟରସ ଓ ବ୍ୟଙ୍ଗ ପରମ୍ପରାକୁ ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ଓ ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ପରେ ସେ କେବଳ ଅକ୍ଷୁଣ୍ଣ ରଖିନାହାନ୍ତି, ଅଧିକ ଉଜ୍ଜୀବିତ କରିଛନ୍ତି । ତାଙ୍କ ହାସ୍ୟରସ ଉଜ୍ଜ୍ୱଳ, ନିର୍ମଳ, ଶୁଭ୍ରପୂତ ଗଙ୍ଗାଧାରା । ପ୍ରାଣକୁ ଉତ୍ଫୁଲ୍ଲ, ଉଦ୍‌ବେଳିତ କରିବା ସଙ୍ଗେ ସଙ୍ଗେ ଏହା ଉନ୍ନୀତ କରେ । ଉପନ୍ୟାସର ଘଟଣାସବୁ ସତରେ ଘଟିଲା ପରି ଲାଗେ ।

ଆମ ସାମାଜିକ ଦୁର୍ବଳତା ସେ ଗୋଟି ଗୋଟି କରି ପଦାରେ ପକାଇ ଦେଇଛନ୍ତି । ହସ ମଧ୍ୟରେ ଫୁଟି ଦିଶେ ଭିତରରୁ ଭିତର – ଗଭୀରତମ ଅନ୍ତରାତ୍ମ ଅଭ୍ୟନ୍ତର, ଫିକା କରିଦିଏ ସବୁ ମାୟାବୀ ରଙ୍ଗ, ଯାହା ଆଖି ଝଲସାଏ, ବାହାରକୁ ଖାଲି ଭଲ, ନିଖୁଣ ନିର୍ଭୁଲ ଦିଶେ । ତା'ରି ଭିତରେ ଶ୍ରୀ ମିଶ୍ରେ ଓଡ଼ିଶାର ବଡ଼ ଆପଣାର ହୋଇଯାଇଛନ୍ତି, ଓଡ଼ିଶାର—ଗାଁରୁ ସହର ସବୁ ଜାଗାର, ସବୁ ଲୋକଙ୍କର ।

'ଜୀବନ ନଦୀରେ ଭଉଁରୀ' ଖଣ୍ଡିଏ ଉପନ୍ୟାସ । 'ଦେବ ଦେବଙ୍କ ଦୁର୍ଗତି' ଓ 'ଦେବୀ ଓ ଦୁର୍ଭିଗା' ପରି ଏହା ହାସ୍ୟରସଭରା ନୁହେଁ । ଭାରତୀୟ ସ୍ୱାଧୀନତାକାଳୀନ ଘଟଣାବଳୀକୁ କେନ୍ଦ୍ର କରି ଏହା ରଚିତ । ଘଟଣା ଗୁରୁଗମ୍ଭୀର, ଔଚିତ୍ୟର ବିଚାର ପଦେ ପଦେ । ଭାରତୀୟ ସଂସ୍କୃତିର, ଧର୍ମଧାରଣାର, ଆଚାର ଆଚରଣର ମନୋହର ଆଲେଖ୍ୟ ସେ ଅଙ୍କନ କରିଛନ୍ତି । ଅସ୍ୱାଭାବିକ ମତିଗତି ପ୍ରତି ଏକ ଚେତାବନୀ ମଧ୍ୟ ସେ ଶୁଣାଇଛନ୍ତି । ପାଶ୍ଚାତ୍ୟ ସଂସ୍କୃତି ପ୍ରତି ଧାବିତ ଦୃଷ୍ଟିକୁ ସେ ଫେରାଇ ଆଣିବାକୁ ଚେଷ୍ଟିତ ହୋଇଛନ୍ତି । ଉଚ୍ଚ ମାନବିକତା, ଯୋଗଧର୍ମ ଓ ଦର୍ଶନର ମହତ୍ତ୍ୱ ସେ ଦର୍ଶାଇଛନ୍ତି । ଏକ ମହାନ୍ ଆଦର୍ଶ ସମାଜ ପ୍ରତିଷ୍ଠା କରିବା ତାଙ୍କର ଲକ୍ଷ୍ୟ ।

ଉପନ୍ୟାସଟି ଆମୂଳଚୂଳ ସୁଖପାଠ୍ୟ । ସ୍ଥାନେ ସ୍ଥାନେ ପୃଷ୍ଠାଗୁଡ଼ିକ ଆପେ ଆପେ ଗଡ଼ିଗଲା ପରି ଲାଗେ । ଏହା କାହାର ଅନୁସରଣ ବା ଅନୁକରଣ ନୁହେଁ—ଏକ ଅନୁଭୂତ ଘଟଣାର ସ୍ୱତଃସ୍ଫୂର୍ତ୍ତି ପ୍ରକାଶ । ଏହାର ନରନାରୀ ରକ୍ତ ମାଂସର ଦେହ ଯେନ ଥିଲାପରି ଲାଗେ ।

ଶ୍ରୀ ମିଶ୍ରେ କଥା କହୁଁ କହୁଁ ହସେଇ ହସେଇ ଗଡ଼େଇଦିଅନ୍ତି । ତାଙ୍କର ଏଇ ଚିତ୍ତାକର୍ଷକ ବ୍ୟକ୍ତିତ୍ୱ ଓ ହାସ୍ୟରସଭରା ରଚନା ଯୋଗୁଁ ଓଡ଼ିଶାରେ ଓଡ଼ିଆ ଉପନ୍ୟାସ ସାହିତ୍ୟ କ୍ଷେତ୍ରରେ ସେ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ ହେବେ, ନିଶ୍ଚିତ । 'ଜୀବନ ନଦୀରେ ଭଉଁରୀ' ଏକ ସାର୍ଥକ ସୃଷ୍ଟି ।

ଭାରତୀୟ ଜୀବନ ନଦୀର ଭଉଁରୀଟି ଏବେ ବି ଭୁଆଁ ବୁଲିଲା ପରି ଲାଗେ । କେବେ ପୁଣି ତାର ଧାରା ସ୍ୱଚ୍ଛନ୍ଦ, ସ୍ୱାଭାବିକ ହେବ !

(ଲେକଚରର ଡକ୍ଟର)
**କୁଞ୍ଜବିହାରୀ ଦାଶ**
ପରିଦର୍ଶୀ ଅଧ୍ୟାପକ, ବିଶ୍ୱଭାରତୀ,
ଶାନ୍ତିନିକେତନ

ତା ୨୫ । ୫ । ୭୮



ଦାସେ ମୋ କଥା ଶୁଣି କହିଲେ, "ଆପଣ ଯାହା କହୁଛନ୍ତି ମୁଁ ତାକୁ ମିଛ ବୋଲି କହୁନାହିଁ । ତେବେ..."

ମୁଁ ମୋ ମତକୁ ବଳୁଆ କରିବାକୁ ମୋ ମୁଣିରୁ ଖଣ୍ଡିଏ ଦୈନିକ ପତ୍ରିକା ବାହାର କରି କହିଲି, "ହେଇଟି ଦେଖନ୍ତୁ, ଏ କାଗଜଟି ନାମ ତ ଶୁଣିଥିବେ ; ମାସକୁ ଦେଢ଼ଲକ୍ଷରୁ ବେଶି ପ୍ରଚାରିତ ହେଉଛି । ସେ କ'ଣ କହୁଛି ଶୁଣନ୍ତୁ ; ମୁଁ ଠିକେ ଠିକେ ଓଡ଼ିଆ ତର୍ଜମା କରି କହୁଛି : ବର୍ତ୍ତମାନ ପ୍ରାୟ ସମସ୍ତ ବିଶ୍ୱ ଆସୁରି-ଭାବାପନ୍ନ ହୋଇଯାଇଛି । ଲୋକେ କାମ-ଭୋଗ-ପରାୟଣ ହୋଇପଡ଼ିଛନ୍ତି । ସତ୍ୟ ସଦାଚାରର କୌଣସିଠି ଆଦର ନାହିଁ । ସର୍ବତ୍ର ପ୍ରାୟ ଅସଦାଚାର ଓ ମିଥ୍ୟାଚାର ପୂରିଗଲାଣି । ଏହାର ପରିଣାମ ଅତି ଭୟାନକ ହେବ ଇ ହେବ... ।

ଦାସେ ବାଧା ଦେଇ କହିଲେ, "ଆପଣ ଯାହା କହୁଥିଲେ ତାହାହିଁ ଭିନ୍ନ ଦୃଷ୍ଟି-କୋଣରୁ ଏଥିରେ କୁହାହୋଇଛି । ଆପଣ ଯାହା କହୁଛନ୍ତି ଓ ଏଥିରେ ଯାହା ଲେଖାଯାଇଛି, ତାହା ନୂଆ ନୁହେଁ, ବହୁତ ପୁରୁଣା । ଅଧ୍ୟାତ୍ମ ରାମାୟଣର ଉପକ୍ରମଣିକାରେ କ'ଣ ଲେଖା ହୋଇଛି, ଶୁଣନ୍ତୁ —

'ପ୍ରାପ୍ତେ କଳିଯୁଗେ ଘୋରେ ନରାଃ ପୁଣ୍ୟବିବର୍ଜିତାଃ
ଦୁରାଚାରରତାଃ ସର୍ବେ ସତ୍ୟବାର୍ତ୍ତା-ପରାଙ୍ମୁଖାଃ ।
ପରାପବାଦନିରତାଃ ପରଦ୍ରବ୍ୟାଭିଲାଷିଣଃ
ପରସ୍ତ୍ରୀସକ୍ତମନସଃ ପରହିଂସାପରାୟଣାଃ
ମାତୃପିତୃକୃତଦ୍ୱେଷାଃ ସ୍ତ୍ରୀଦେବାଃ କାମକିଙ୍କରାଃ
ଦେହାତ୍ମଦୃଷ୍ଟୟୋ ମୂଢ଼ାଃ ନାସ୍ତିକାଃ ପଶୁବୁଦ୍ଧୟଃ
ସ୍ତ୍ରିୟଶ୍ଚ ପ୍ରାୟଶୋ ଭ୍ରଷ୍ଟା ଭର୍ତ୍ତୃବଞ୍ଚନନିର୍ଭୟାଃ,
ଶ୍ୱଶୁର ଦ୍ରୋହକାରିଣ୍ୟଃ .. ।'

ବୁଝିଲେ ? ଅତି ସରଳ ସଂସ୍କୃତ । ଅନୁସ୍ୱାର ବିସର୍ଗ ଛାଡ଼ି ପଢ଼ିଲେ, ସମାନ ଆମ ଓଡ଼ିଆ । ମୁଁ ଆଉ ଥରେ ବୋଲି ଦେଉଛି, ଶୁଣନ୍ତୁ ।"

ମୋର ବୁଝିବାରେ ଅଡ଼ୁଆ ରହିଲା ନାହିଁ । ସେ ପୁଣି କହିଲେ, "ଆଧୁନିକ ପଣ୍ଡିତ-ମାନେ କହୁଛନ୍ତି ଏହା ଛ' ଶହ ବର୍ଷର ଲେଖା । ହେଉ । ଜାଣିଲେ ତ ଆମକୁ ବର୍ତ୍ତମାନ ଯେଉଁ ସମସ୍ୟା ଘୋଟିଛି ତାହା ଛ' ଶହ ବର୍ଷ ହେଲା ଘାରିଲାଣି ।"

ମୁଁ କହିଲି, "ଯଦି ବୋଲି କ'ଣ ଏହା ସମସ୍ୟା ନୁହେଁ ?"

ସେ କହିଲେ, "ସମସ୍ୟା ତ ନିଶ୍ଚୟ, କିନ୍ତୁ ପୁରୁଣା ହୋଇଥିବାରୁ ଘା'ର ରକ୍ତସ୍ରାବ ବନ୍ଦ ହୋଇଯିବା ଉଚିତ । ଆମେ ପ୍ରଥମେ ଯେପରି ଆଲୋଚନା କରୁଥିଲେ, ମନେ ହେଉ-ଥିଲା, ଦେଶ ସ୍ୱାଧୀନ ହେବା ଦିନୁଁ ଆମର ଅଧଃପାତ ହୋଇଛି ଓ କଂଗ୍ରେସ ହଟିଯିବାରୁ ନିର୍ମଳ ଶାସନ ପ୍ରତିଷ୍ଠିତ ହେବା ପାଇଁ ସମୟ ଆସିଲାଣି ।"

ମୁଁ ତୁନି ରହିଲି । ଅଧ୍ୟାତ୍ମ-ରାମାୟଣରେ ଯେଉଁ ସମାଜଚିତ୍ର ଦିଆହୋଇଛି ତାହା ଜଣେ ତ୍ରିକାଳଦର୍ଶୀ ଲେଖକର ଭବିଷ୍ୟତ ଦୃଷ୍ଟି ନା ଅନୁଭବ - ଏ ବିଷୟରେ ବିସ୍ମିତ ହୋଇଥାଏ ।

ଦାସେ କହିଲେ, "ଆପଣଙ୍କ ହିନ୍ଦୀ ପତ୍ରିକାର ଓ ଆଧ୍ୟାତ୍ମରାମାୟଣର ଲେଖାରେ ଯେଉଁ ଚିତ୍ର ଦିଆଯାଇଛି ତାହା ସମଗ୍ର ସମାଜର ନା ସମାଜର କ୍ଷୁଦ୍ର ବା ବୃହତ୍ ଗୋଟିଏ ଅଙ୍ଗର, ତାହା ବିଚାର କରନ୍ତୁ । ହିନ୍ଦୀ ପତ୍ରିକାର ସମ୍ପାଦକ 'ପ୍ରାୟ' ଶବ୍ଦ ଦୁଇଥର ବ୍ୟବହାର କରିବାର ତ ଆପଣ ପଢ଼ିଲେ । ଆଧ୍ୟାତ୍ମ ରାମାୟଣର ଏ ସମ୍ପର୍କୀୟ ଶ୍ଳୋକରେ ବି 'ପ୍ରାୟଶଃ' ଠାଏ ଲେଖା ହୋଇଛି । ଏଇଥିରୁ ତ ସ୍ପଷ୍ଟ ଜଣାଯାଉଛି ଯେ, ସମସ୍ତେ ନଷ୍ଟଭ୍ରଷ୍ଟ ହୋଇ-ଗଲେଣି ବୋଲି ସେ କହିନାହାନ୍ତି ବା ସେ କହିନାହାନ୍ତି । ଆପଣ କ'ଣ ମନେ କରୁଛନ୍ତି, ଆମ ସମାଜର ନୈତିକ ମୂଲ୍ୟମାନ ଏକାବେଳକେ ନଷ୍ଟ ହୋଇଗଲାଣି ?"

ଏଥର ମୁଁ ଟିକିଏ ଉଷ୍ମାର ସହିତ କହିଲି, "ମୁଁ ବା ଆପଣ ମନେ କରିବାରେ ତ କଥା ନାହିଁ । ଆପଣ ଗୋଟିଏ ଜାଗାରେ ବସିଛନ୍ତି ବୋଲି ଜାଣି ପାରୁନାହାନ୍ତି ସିନା, ମୁଁ ବାରଆଡ଼େ ବୁଲି ଦେଖୁଛି, ସତ୍ୟ, ନ୍ୟାୟ, ସଦାଚାର ଆମ ଦେଶରେ ଆଉ ଟିକେ ମାତ୍ର ନାହିଁ ।"

ଦାସେ ଟିକିଏ ଚକିତ ହୋଇ କହିଲେ, "ମୁଁ ଗୋଟିଏ ଠା'ରେ ବସିଛି ଏକଥା ସତ, କିନ୍ତୁ ଏ ଯୁଗର ଖବରକାଗଜ ମଣିଷକୁ କ'ଣ ଗୋଟାଏ ଠା'ରେ ବସେଇଦେଉଛି ? ଆଜି ସକାଳୁ ତ ଆମେ ଆମେରିକାଠାରୁ ଆରବ ଦେଶବାଟେ ଭିଏତ୍ନାମ ବୁଲି ଆସିଲେଣି !"

ଏ ଲୋକଟିଙ୍କ ସାଙ୍ଗରେ ମୋର ମାତ୍ର ଦୁଇଦିନର ପରିଚୟ । ପରିଚୟର ଆୟୁ ଯେତିକି ବଢ଼ୁଛି ଯାଙ୍କ ପ୍ରତି ମୋର ସମ୍ମାନ ସେତିକି ବଢ଼ୁଛି । ନିପଟ ମଫସଲିଆ ଲୋକ; କିନ୍ତୁ ସବୁ ଖବର ରଖନ୍ତି ଓ ଆଧୁନିକ ଉଚ୍ଚଶିକ୍ଷିତଙ୍କ ଢଙ୍ଗରେ ତା'ର ପରିବେଷଣ ବି କରି-ପାରୁଛନ୍ତି । ମଫସଲ ଗାଁମାନଙ୍କରୁ କର୍ପୂର ସହରକୁ ଉଡ଼ିଯାଇ ଖାଲି କନା ମାତ୍ର ପଡ଼ିଛି ବୋଲି ମୁଁ ଶୁଣିଥିଲି । ଯାଙ୍କୁ ଦେଖି ସେ ମତରେ ଟିକିଏ ଆଞ୍ଚ ଆସିଲା ।

ମୁଁ କହିଲି, "ଆପଣ ତ ନିତ୍ୟମିତ ଖବରକାଗଜ ପଢ଼ୁଛନ୍ତି । କ'ଣ ଦେଖୁଛନ୍ତି ?"

ସେ କହିଲେ, "ଦେଖୁଛି, କୌଣସି ନା କୌଣସି କାରଣରେ, ଖବରକାଗଜବାଲା ଚୋରି, ଡକେଇତି, ନାରୀହରଣ ପ୍ରଭୃତି ଖବର ଛାପିବାରେ ଖୁବ୍ ରସିଛନ୍ତି । ପତ୍ରପତ୍ରିକା ଦେଖେ, ସେଥିରେ ବି ସେଇ କଥା । ଗଳ୍ପ, ଉପନ୍ୟାସରେ ମଣିଷର ମନ୍ଦ ଦିଗଟା ଉପରେ ଖୁବ୍ ଆଖି ପଡ଼ୁଛି । କିନ୍ତୁ ··· ?"

ମୁଁ କହିଲି, "ଆଉ କିନ୍ତୁ କଣ ? ମୋର ତ ମନେ ହେଉଛି, ଆପଣଙ୍କ ଭଳି ଯେଉଁ-ମାନେ ବର୍ଷୀୟାନ୍ ସେମାନେ ନିଜ ଜାତିର ବିପର୍ଯ୍ୟୟ ସହି ନ ପାରି, ଅତୀତରେ ମୁଣ୍ଡ ଗୁଞ୍ଜି ସବୁ ଠିକ୍ ଅଛି ବୋଲି ମନକୁ ବୁଝାଉଛନ୍ତି ।"

ଦାସେ ମୁରୁକି ମୁରୁକି ହସି ଦଣ୍ଡେ ତୁନି ହୋଇ ରହିଲେ । ତା'ପରେ କହିଲେ, "ଏ ବିଷୟରେ ଆପଣଙ୍କର ଆମର ମତଭେଦ ରହିସିବ ଦେଖୁଛି । ମୋର ମନେ ହେଉଛି, ଆପଣ ଖାଲି ଖବରକାଗଜ ଓ ଗଳ୍ପ ଉପନ୍ୟାସରେ ଦୃଷ୍ଟି ଆବଦ୍ଧ ରଖିଛନ୍ତି; ମୁଁ ତାହା ପଢ଼ି-ସାରି ଆଖି ଫେରାଇ ନିଜ ଘରକୁ, ସାଇକୁ, ଗାଁକୁ ଓ ପାଖଆଖ ଗାଁମାନଙ୍କୁ ଦେଖୁଛି । ତେଣୁ ବିଶେଷ ନିରାଶ ହେବାର କାରଣ ଦେଖୁନାହିଁ ।"

ମୁଁ ପ୍ରତିବାଦ କଲି, "ମୁଁ ବି ଗାଁମାନଙ୍କରେ ବୁଲୁଛି ।" କିନ୍ତୁ ଗାଁମାନଙ୍କ ବିଷୟରେ ମୁଁ ପଲ୍ଲବ-ଗ୍ରାହୀ ବୋଲି ମନେ ମନେ ସ୍ୱୀକାର କରିଯାଇ କଥା ମୋଡ଼ିଦେଲି—

"ସହରମାନଙ୍କ ବିଷୟରେ ଆପଣ ବୋଧହୁଏ ଧାରଣା କରିପାରୁନଥିବେ । ମୁଁ କଟକର ଲୋକ—ମୋର ଉମର ସେଠାରେ କଟିଗଲାଣି । ମୁଁ ନିର୍ଭରରେ କହିପାରେ ଯେ, ଖବରକାଗଜବାଲା ଆଦୌ ଅତିରଞ୍ଜିତ ନ କରି, ବରଂ ଜଗି ଜଗି :ଅବସ୍ଥା ବର୍ଣ୍ଣନା କରୁଛନ୍ତି ।"

ସେ ଦବିଗଲା ପରି ଜାଣିଲି ; କହିଲେ, "ନିଶ୍ଚୟ, ନିଶ୍ଚୟ ; ପ୍ରତ୍ୟକ୍ଷ ଜ୍ଞାନ, ପରୋକ୍ଷ ଅନୁମାନ ଓ ଶାସ୍ତ୍ରବଚନଠାରୁ ନିଶ୍ଚୟ ଅଧିକ ନିର୍ଭରଯୋଗ୍ୟ ହେବାର କଥା । କିନ୍ତୁ ମୋର ଗୋଟାଏ ସନ୍ଦେହ ହେଉଛି । ସେଠାରେ କ'ଣ ଆଉ ମରଦମାନେ କାମଦାମ, ପାଇଟିପନ୍ଥ କରିବାକୁ ଘରେ ପିଲମାଇପଙ୍କୁ ଛାଡ଼ି, ଦାଣ୍ଡକୁ ଯାଉନାହାନ୍ତି ? ବିଦେଶ ଗଲେ କଣ ଲୋକେ ସବୁବେଳେ ଆଶଙ୍କା କାଟୁଛନ୍ତି, ତାଙ୍କ ଅନୁପସ୍ଥିତିରେ ତାଙ୍କ ଘରେ ଅଘଟଣ ଘଟଣ ହେଉଥିବ ?"

ସରଳ, ନିଷ୍କପଟ ବୃଦ୍ଧଟି ନ ଜାଣିପାରି ମୋତେ ମାଡ଼େ ମାଇଲା ପରି ଅନୁଭବ କଲି । ମୁଁ କଟକରେ ଛାଡ଼ି ଆସିଛି ମୋ ସ୍ତ୍ରୀଙ୍କୁ ଓ ସାନ ସାନ ପିଲା ତିନୋଟିଙ୍କୁ । ଜଗିକରିବାକୁ କେହି ନାହାନ୍ତି । ବଡ଼ ଝିଅ, ବୟସ ଚଉଦ ହୋଇଗଲାଣି ; ସେଇ ଯାଏ ପାଖ ଦୋକାନକୁ ସଉଦା ପାଇଁ । ମୁଁ ୧୫ ଦିନ ହେଲା ଘର ଛାଡ଼ିଲାଣି, କିନ୍ତୁ ମୁହୂର୍ତ୍ତିକ ପାଇଁ ଘର ବିଷୟରେ ଦୁଶ୍ଚିନ୍ତା କରିନାହିଁ । ମୁଁ ଦବିଗଲି ।

ସେ ମୋ ଭାବକୁ ଲକ୍ଷ୍ୟ ନ କରି କହିଗଲେ, "ମୁଁ ଜାଣେ, କଟକରେ ପ୍ରାୟ ସମସ୍ତେ ଦୋକାନୀଠାରୁ ମାସିକିଆ ସଉଦା ଖାଆନ୍ତି, କାଳରେ । କେତେ ଦୋକାନୀଙ୍କର କେତେ ଟଙ୍କା ବୁଡ଼ିଯାଉଛି ତାହାର ନିରୀକ୍ଷା କରନ୍ତୁ ; ଜାଣିବେ, ସତ୍ୟ ଓ ସଦାଚାର ଅନ୍ତତଃ ଏ ବିଷୟରେ ଅଛି । ସମାଜରୁ ବିଶ୍ୱାସ ଏକାବେଳକେ ଲୋପ ହୋଇଗଲେ, ଦଣ୍ଡେ ବି ଚଳି ହେବନାହିଁ ବୋଲି ମୁଁ ମନେ କରୁଛି । ହଜାରେ ବର୍ଷ ବ୍ୟାପୀ ମୁସଲମାନଙ୍କ ଉଗ୍ରଶାସନରେ ଓ ଦୁଇଶହ ବର୍ଷର ଇଂରେଜଙ୍କ ନିର୍ମମ ଶାସନରେ ଯେଉଁ ସମାଜ ଭୁଷୁଡ଼ି ପଡ଼ିନାହିଁ, ତାହା କ'ଣ ଆମ ନିଜ ଲୋକଙ୍କ କୋଡ଼ିଏ ବର୍ଷର ମୂର୍ଖତା ଯୋଗୁଁ ଏକାବେଳକେ ଭାଙ୍ଗି ପଡ଼ିବ ? ତେବେ ବର୍ତ୍ତମାନ, ଗୋଟାଏ କୃତ୍ରିମ ପରିସ୍ଥିତି ସୃଷ୍ଟି ହୋଇଛି, ଯାହା ଯୋଗୁଁ ··· ।"

ଏତେବେଳକୁ ସାଇର ପାଞ୍ଚ ସାତଜଣ ପୁରୁଖା ଲୋକ ଆସି ଦାସଙ୍କ ଚଉପାଢ଼ିରେ ବସି ଆମ କଥା ଆଗ୍ରହରେ ଶୁଣୁଥାନ୍ତି । ଦାସଙ୍କ କଥା ବନ୍ଦ ହୋଇଯିବାରେ ସେମାନେ ବିରକ୍ତ ହୋଇ ଚାହିଁଲେ, ତିନିଜଣ ଯୁବକ ଦାଣ୍ଡରେ ସାଇକଲ୍ ଥୋଇଦେଇ ଦୁମଦୁମ୍ ହୋଇ ପାହାଚ ଚଢ଼ି ଆସିଲେ । ସମସ୍ତେ ବେପରବାୟ ; ବୟସ୍କ ଲୋକଙ୍କୁ ଦେଖି, ବା ଅପରିଚିତ ମୋତେ ଦେଖି ଟିକିଏ ବି ଶଙ୍କିଲେ ନାହିଁ । ଦାସେ କିନ୍ତୁ ଟିକିଏ ବ୍ୟସ୍ତ ବା ବିବ୍ରତ ନ ହୋଇ ସ୍ନେହପୂର୍ଣ୍ଣ ଦୃଷ୍ଟିରେ ସେମାନଙ୍କ ଆଡ଼କୁ ଚାହିଁ ପଚାରିଲେ, "କିରେ ! ତମେ ଶଳେ ଏତେବେଳେ କୁଆଡ଼ୁ ଆସିଲ ? ଏତେ ଉଡ଼ୁପିଛ ଯେ, ନମସ୍କାର କରିବାକୁ ମନେ ପଡ଼ୁନାହିଁ । (ମୋ' ଆଡ଼କୁ ଚାହିଁ) ଆଗଟି ମୋ ଝିଅର ପୁଅ, ଆଉ ଦି'ଜଣ ତା' ସାଙ୍ଗ, ସେଇ ଗାଁର । ତେଣୁ ତିନିହେଁ ନାତି ।"

ଯୁବକମାନେ କିଞ୍ଚିତ୍ ଲଜ୍ଜିତ ହୋଇ ସମସ୍ତଙ୍କୁ ନମସ୍କାର କରି ଠିଆ ହେବାରେ ଦାସେ କହିଲେ, "ଯାଅ, ଘର ଭିତରକୁ ଯାଅ, ଗୋଡ଼ ହାତ ଧୋଇ କ'ଣ ଯା' ଖାଇବ; ଘରପୋଡ଼-ନିଆଁ ଲିଭେଇ ଆସିଲା ପରି ତ ଦିଶୁଛ ।"

ଦାସଙ୍କ ପାରିବାରିକ ବିଷୟରେ ଆମେ କଥାବାର୍ତ୍ତା ଆରମ୍ଭ କରିଛୁଁ, ତାଙ୍କ ନାତି ଘର ଭିତରୁ ମୁହଁ ପୋଛୁ ପୋଛୁ ଆସି ଆମ ଭିତରେ ବସିପଡ଼ି ଆରମ୍ଭ କଲେ, "ଅଜା ! ଆଜି କଣ୍ଟ୍ରୋଲ ଅଫିସରେ ଭାରି କାଣ୍ଡ ହେଲା । ଆମ ପଡ଼ିଶା ଘର ଏଇ ରଘୁ ଭାଇନାକୁ ଆଜି ସିଭିଲ୍ ସପ୍ଲାଇ ଅଫିସର ହାଜତକୁ ପଠାଉଥିଲା ।"

ରଘୁ ଆସି ବସୁବସୁ କହିଲେ, "ମୋତେ ହାଜତକୁ ପଠାଇଥିଲେ ତା ଇଜ୍ଜତ୍ ସାରିଥାନ୍ତି । ତା' ଚାକିରି ରହିଥାନ୍ତା କି ନାହିଁ ସନ୍ଦେହ ।"

ଦାସେ ପଚାରିଲେ, "ଆରେ ଖବର କ'ଣ ? ଠିକେ ଠିକେ ଦି'ପଦରେ କହିଦିଅ । ଆମର ଗୋଟାଏ କଥା ପଡ଼ିଛି ।"

ଶୁଣିଲୁ, ଯୁବକ ରଘୁବାବୁ କଣ୍ଟ୍ରୋଲ ବାବୁଙ୍କଠାରୁ କିଛି ଚିନି ଓ ଗହମ ପାଇଁ ସ୍ପେସାଲ ପରମିଟ୍ ପାଇବାକୁ ଖଣ୍ଡେ ଦରଖାସ୍ତ ଦେଇଥିଲେ । ସେଥିରେ ତାଙ୍କ ବାପାଙ୍କ ଶୁଦ୍ଧି-ଘର କାଲି ବୋଲି ଲେଖାହୋଇଥିଲା । ଯାହାର ବାପାଙ୍କ ଶୁଦ୍ଧିଘର କାଲି, ତାଙ୍କ ମୁହଁରେ

ଅନ୍ତତଃ ନଅ ଦିନର ଦାଡ଼ି ରହିବା କଥା । କିନ୍ତୁ ଅଫିସକୁ ଯିବା ସକାଶେ ପ୍ରସ୍ତୁତ ହେବା ପ୍ରଣାଳୀରେ ସେ ମୁହଁ ଖିଅର ହୋଇ ଆସିଥିଲେ । ତାଙ୍କ ମୁହଁ ଦେଖି କଣ୍ଟ୍ରୋଲ ହାକିମ ତାଙ୍କ ଦରଖାସ୍ତ-ଲିଖିତ କାରଣକୁ ଅବିଶ୍ୱାସ କରି ତାଙ୍କୁ ଗ୍ରିରଣ-ବିଶରେ ପକାଇବାକୁ ବସିଥିଲେ ।

ଦାସେ ଟିକିଏ ଚିନ୍ତିତ ହୋଇ ରଘୁଙ୍କୁ କହିଲେ, "ନନା ଟାଟାରେ ଅଛନ୍ତି ଟିକି ? ଚିଠି କେବେ ପାଇଥିଲୁ ?"

ରଘୁ ଲଜ୍ଜାରେ ମୁହଁ ପୋତି ପୋତି ଆତ୍ମପକ୍ଷ ସମର୍ଥନ କରି ଦାସେ ଆପଣଙ୍କ ନାତି ଉପେନ୍ଦ୍ରଙ୍କଠାରେ ଅଭିଯୋଗ କଲେ, "ଆଉ, ଅନାମର ଦରଖାସ୍ତ କଥା କହୁନାହଁ ?"

ଅନାମ, ଉପେନ୍ଦ୍ରଙ୍କ ପିଠିରେ ଟିପ ମାରିବା ସତ୍ତ୍ୱେ ଉପେନ୍ଦ୍ର କହିଲେ—ଅନାମ ତିନିମାସ ତଳେ ନିଜ ପୁଅର ସ୍ୱନକ୍ଷତ୍ର ପାଇଁ ଚିନି, ସୁଜି ଓ ଗହମ ନେଇଥିଲା । ଆଜି ଦରଖାସ୍ତରେ ଲେଖିଥିଲା ନିଜ ବିବାହ ପାଇଁ ଗହମ, ସୁଜି ଓ ଚିନି ଦରକାର ।

ଦାସେ ହସିଲେ, ଆମେ ସମସ୍ତେ ବି ହସିଲୁଁ । ଦାସଙ୍କ ଟିପ୍ପଣୀ ଶୁଣି ହସ ଆହୁରି ବଢ଼ିଲା—'ହାକିମଟା କ'ଣ କୁଣ୍ଡା ଦେଇ ପାଠ ପଢ଼ିଥିଲା ! ପ୍ରଥମ ଭାର୍ଯ୍ୟାର ପୁଅର ସ୍ୱନକ୍ଷତ୍ରର ତିନିମାସ ପରେ ମଣିଷର ପୁନର୍ବିବାହ ହେବାରେ ଅସମ୍ଭବ ଲାଗିଲା କାହିଁକି ?'

ଅନାମ ବାବୁଙ୍କ ଆଡ଼କୁ ଗ୍ଚହିଁ ସେ କହିଲେ,"କିରେ ମୂଳରୁ ମାଇପ-ନ ଥିବା-ବାଲା ! ପୁଅ ନାଁ ଦେଇଛୁ କ'ଣ ? ଗ୍ଚ ଖାଇବାକୁ ଚିନି ଖୋଜୁ ଖୋଜୁ ତ ମାଇପ ମାରି ସାରିଲୁଣି, ଗ୍ଚ କରିବ କିଏ ?"

ତିନିଜଣଯାକଙ୍କୁ କହିଲେ, "ଏଷ ପୁତ୍ରଃ କୁଲେ ଜାତଃ ଉପରିବଂଶ ଲୁପ୍ୟତେ । କୀର୍ତ୍ତିଚନ୍ଦ୍ର ଗୁଡ଼ିଏ ତ ! ହଉ, ହଉ, ଆସିବା ହେଉ । ଯାଅ, ଗାଁରେ ବୁଲାବୁଲି କରିବ । ଆମର ଏସ୍ତେ ଭଦ୍ରଲୋକଙ୍କ ସଙ୍ଗେ ଗୋଟାଏ ବିଷୟରେ ଆଲୋଚନା ହେଉଥିଲା ।"

ସେତେବେଳକୁ ମୋ ମୁହଁ ଖୁବ ବିଷଣ୍ଣ ହୋଇଆଏ । ସେ ମୋତେ ଗ୍ଚହିଁ କହିଲେ, "ଆପଣ ଏ ଟୋକାଙ୍କ ଗପ ଶୁଣି ବ୍ୟଥିତ ହେଲେ ପରି ?"

ମୁଁ ତାଙ୍କୁ କଷ୍ଟ ହେବାର ଆଶଙ୍କା ନ କରି ବିଜୟ ଉଲ୍ଲାସରେ କହିଲି, "ନିଜେ ତ ଶୁଣିଲେ ! ଆପଣଙ୍କ ନିଜ ପିଲାଙ୍କ ରବାଦ୍ ତ ସ୍ତ୍ରୀ, ଅନ୍ୟମାନଙ୍କୁ ପଗ୍ଚରୁଛି କିଏ ? ଆପଣ ସେମାନଙ୍କୁ ଭର୍ତ୍ସନା ନ କରିବାରେ ମୁଁ ବିସ୍ମିତ ହେଉଛି ।"

ଦାସେ ଦୋଷ ସ୍ୱୀକାର କଲାପରି କହିଲେ, "ଅଜା ନାତିକୁ ଯେତିକି ଭର୍ତ୍ସନା କରିବାର ଚଳେ, ସେତିକି ଭର୍ତ୍ସନା ତ କରିଛି । ଜାଣିଲେ ବାବୁ, ବୁଢ଼ାମାନେ ଅନେକ ସମୟରେ ନିଜର ଅତୀତକୁ ମନେ ନ ପକାଇ, ପିଲାଙ୍କ କଥାରେ ନାକ ଟେକିବାରୁ ସେମାନେ ଆଡ଼େଇ ହୋଇଯାଉଛନ୍ତି ।"

ମହାପାତ୍ରେ କହିଲେ, "ଆମେ ଆମ ପିଲାଦିନେ କୋଉ ମହାପାପ କରି ପକାଇଥିଲେ ଯେ, ମନେ ପକାଉନଥାଇଁ !"

ସେ ଦାସଙ୍କର ବାଲ୍ୟ-ସଙ୍ଗୀ । ଦାସେ ଉତ୍ତର ଦେଲେ, "ମନେପଡ଼ୁନଥିବ ହୁଏତ । କଟକରୁ ସେଥର ଗାର୍ଡ ସାହେବର ତବାରେ ବସି ଆସିବା କଥା ମନେ ପଡ଼ୁଛି ?"

ଇତିମଧ୍ୟରେ ଆସି ବସିଥିବା, ଦାସଙ୍କ ସଙ୍ଗୀ ମହାପାତ୍ରେ ଠୋ ଠୋ ହସି କହିଲେ, "ପଚିଶ ବର୍ଷ ପୂର୍ବର 'ଭଇଁରକୋଳି' ଖିଆଟା ମନେ ପକେଇଲେ ହେଲେ ? ତମ ନନା ତ ସେ ଦିନକୁ ଦଶବର୍ଷ ହେଲ ମରିଥିଲେ, ବୋଉ ତା' ଆଗରୁ ।"

ଦାସେ କହିଲେ, "ଏକା କଥା, ସେଇ 'ଅଶ୍ୱତ୍ଥାମା ହତଃ' । ଆମ ନନା ଆଗରୁ ମରିଥିଲେ ବୋଲି କ'ଣ ଦୋଷ ଲଗିବ ନାହିଁ ? 'ନରେ ବା କୁଞ୍ଜରେ ବା' ଯୋଡ଼ିଥିଲେ ବୋଲି କ'ଣ ଯୁଧିଷ୍ଠିରଙ୍କୁ ନ ଲଗିଲା ?"

ଶ୍ରୋତାମାନଙ୍କ ଜିଜ୍ଞାସା ଚରିତାର୍ଥ କରି ମହାପାତ୍ରେ ଘଟଣାଟି ବର୍ଣ୍ଣନା କଲେ ।

ଦାସେ ଓ ମହାପାତ୍ରେ ସେତେବେଳେ ରେଭେନ୍ସା କଲେଜର ଗ୍ରୁପ, ହଷ୍ଟେଲରେ ରହୁଥାନ୍ତି (ଏ ଦୁହିଙ୍କୁ ବର୍ତ୍ତମାନ ଦେଖି ଏମାନେ କଲେଜର ଗ୍ରୁପ ଥିଲେ ବୋଲି ମନରେ ଛୁକୁ ନଥାଏ । ) ଗାଁକୁ ଆସିବେ ବୋଲି ଦୁହେଁ ରାତି ଡିନଟା ବେଳେ ଷ୍ଟେସନକୁ ଆସି ଦେଖନ୍ତି ତ ଗାଡ଼ି ଛାଡ଼ିଦେଲଣି । ସାମନାରେ ଗାର୍ଡ ସାହେବର ବଖରା ଦେଖି ଦୁହେଁ ତାରି ଭିତରେ ପଶିଗଲେ । ମୁଣ୍ଡରେ ଟୁପି ହୋଇଥିବାରୁ ଦାସେ ମୁଣ୍ଡ ଖିଅର ହୋଇଥାନ୍ତି । ଗାର୍ଡ ସାହେବ ଏମାନଙ୍କ ଧୃଷ୍ଟତାରେ ବିରକ୍ତ ହେଲବେଳକୁ ଦାସେ କୈଫିୟତ ଦେଲେ, 'ବାପା ମରିବାର ପନ୍ଦରଦିନ ବି ହୋଇନାହିଁ । ଆଜି ଟେଲିଗ୍ରାମ୍ ମିଳିଛି ଯେ, ବୋଉର ଅବସ୍ଥା ସାଙ୍ଘାତିକ' । ଗାର୍ଡଟି ପ୍ରୌଢ଼; ଆଙ୍ଗ୍ଲୋ-ଇଣ୍ଡିଆନ । ଏ ଦୁଃସମ୍ବାଦ ଶୁଣି ଦାସଙ୍କୁ ନିଜ ଆସନରେ ବସାଇ ମଣିଷର ନଶ୍ୱରତା ଓ ଦୟାମୟ ଯିଶୁଙ୍କ କରୁଣା ବିଷୟରେ ଦୀର୍ଘ ଧର୍ମ-ଉପଦେଶ ଦେଇ ନିଜ ପଇସାରେ ଖୋର୍ଦ୍ଧା ରୋଡ଼ଠାରେ ଦୁଇଖଣ୍ଡ ଟିକଟ୍ ଅଣାଇ ଦେଇ ବିଦା କଲେ ।

ଦାସେ କହିଲେ, "ନିଜ ବେଳକୁ ଏ କଥା ଥିଲା ବାହାଦୁରି । ପିଲାଙ୍କ ବେଳକୁ ଏହା ଦୁର୍ବୁଦ୍ଧି ହେବ କାହିଁକି ?"

ମୁଁ ପ୍ରତିବାଦ କଲି, "ଘଟଣା ଦୁଇଟା, ପ୍ରକାରରେ ଏକା ହେଲେ ବି, ପ୍ରକୃତିରେ ଏକା ନୁହେଁ ।"

ଦାସେ କହିଲେ, "ଆପଣ ଯେପରି ବିଶ୍ଳେଷଣ କରିବାକୁ ବସିଛନ୍ତି, ସେଥିରେ ଘଟଣା ଦୁଇଟା ଭିନ୍ନିଣବିଶ୍ ହୋଇପାରେ । କିନ୍ତୁ ମୁଁ ଯେ ଦୋଷ କରିଥିଲି ତାହା ନିଃସନ୍ଦେହ । ମୋର ଅଭିଭାବକ ସେ ସମୟରେ ମୋତେ ମୋ ଦୋଷ ଦେଖାଇ-ଦେଇଥିଲେ ।"

ମୁଁ କହିଲି, "କିନ୍ତୁ ଆପଣ ତ ଆଜି ଏ ପିଲାଙ୍କ ଦୋଷ ଦେଖାଇଲେ ନାହିଁ !"

ଦାସେ କହିଲେ, "ସେ ଯେଉଁ ରୀତିରେ ଦୋଷ ଦେଖାଇଥିଲେ, ମୁଁ ମୋ ପିଲାଙ୍କୁ ସେଇ ରୀତିରେ ତାଙ୍କ ଦୋଷ ଦେଖାଇବାକୁ ଚେଷ୍ଟା କରିଆସିଛି । ଏହି ପିଲାଙ୍କ କଥା ସ୍ୱତନ୍ତ୍ର । ଏମାନଙ୍କର ଅଭିଭାବକ ଅଲଗା ଅଛନ୍ତି । ମୁଁ ଏହାଙ୍କର ଅଜା—ଆମ ଚଳଣିରେ ମୁଁ ଏହାଙ୍କର ସାଙ୍ଗ ; ସାଙ୍ଗପରି ତିଆରିବି ସିନା ! ମୁରବିପଣ ଜାହିର କରିବାକୁ ବସିଲେ ସେମାନେ ପାଖ ପଶିବେ କାହିଁ ? ପାଖକୁ ଆସିଲେ ବି, ସରଳଭାବରେ ସବୁକଥା ପ୍ରକାଶ କରିବେ କାହିଁ ? ଆଜିକାଲିର ଅଭିଭାବକମାନେ କଠୋର ହେବାକୁ ଯାଇ ଆପଣା ପିଲାଙ୍କ ଆଗରେ ମେଘନାଦ ପାଚେରି ଗଢ଼ି ଦେଉଛନ୍ତି ।"

କଥାର ଖିଅ ମୁଁ ଭଲ କରି ଧରି ପାରିଲି ନାହିଁ । ସେ ମୋ ଆଡ଼କୁ ଚାହିଁ କହିଲେ, "ମୋ' ଅଭିଭାବକ ମୋତେ କିପରି ତିଆରିଥିଲେ ଶୁଣିଲେ ଆପଣ କଥାଟାକୁ ବୁଝି-ପାରିବେ ।

"ଆଗରୁ ତ କହିଛି, ମୋର ପିଲାଦିନେ ମୋର ବାପା ମା ମରିଥାନ୍ତି । ମୋର ଅଭିଭାବକ ଥାଆନ୍ତି ମୋର ଦଦେଇ—ମୋ ପିତାଙ୍କଠାରୁ ସେ ବୟସରେ ଗୁଡ଼ିଏ ବଡ଼ ଥିବାରୁ ମୁଁ ତାଙ୍କୁ ଗୋସାଇଁ ବାପ ବୋଲି ମନେ କରୁଥାଏ । ସେ ଦିନ ରେଲରୁ ଓହ୍ଲାଇ ଘରେ ଆସି ପହଞ୍ଚିବା ମାତ୍ରେ ମୋ ବାହାଦୁରି କଥା ବଖାନ କଲି । ପ୍ରତ୍ୟକ୍ଷ ଭାବେ ଦଦେଇଙ୍କୁ ନ କହିଥିଲେ ବି ସେ ଶୁଣିଲେ । ଶୁଣି, ଅନ୍ୟମାନଙ୍କ ପରି ଆମୋଦିତ ହେଲେ । ସେଦିନ ସଂଧ୍ୟାବେଳେ ମୋତେ ପାଖରେ ବସାଇ ଏଣୁତେଣୁ ନାନା କଥା ଭିତରେ କହିଲେ, 'ଆଜି ସେ ଗାର୍ଡ଼ ସାହେବକୁ ଯାହା କହିଲୁ, ନ କହିଥିଲେ କ'ଣ କ୍ଷତି ହୋଇଥାନ୍ତା ? ଗାର୍ଡ ଡବାରେ ତ ଚଢ଼ି ସାରିଥିଲୁ । ସେ ଖୋର୍ଦ୍ଧାରୋଡ଼ ପର୍ଯ୍ୟନ୍ତ ତା' ଡବାରେ ଆସିବାକୁ ନ ଦେଇଥିଲେ ବି ବାରଙ୍ଗ ଯାଏଁ ତ ନିଶ୍ଚୟ ଦେଇଥାନ୍ତା । ତା' ପରେ ତୁମେ ଅନ୍ୟ ଡବାରେ ଆସି ବସିଥାନ୍ତ । ମିଛରେ ସିନା ବାପ ମାଙ୍କ ନାମ ବିକିଲୁ ?' ସେଇ ଦିନଠାରୁ ମିଛ କହିବାରେ ମୋ'ର ଅସଲ ସ୍ୱାର୍ଥ କେତେ ବିଚାରିବା ଅଭ୍ୟାସ ହୋଇଗଲା । ମିଛ ଆଦୌ କହିନାହିଁ ବୋଲି କହିଲେ ମିଛ ହେବ, କିନ୍ତୁ ମାତ୍ରା ଖୁବ କମିଗଲା ।"

ମୁଁ ମାନିଲି, ଯୁବକମାନଙ୍କୁ ସେଇପରି ଶାସନ କରିବା ବାସ୍ତବିକ ଠିକ୍ ।

ଦାସେ କହିଲେ, "ବର୍ତ୍ତମାନ ପରିସ୍ଥିତିରେ ସେତିକି କରିବାକୁ ବି ଦୋଦୋ ପାଞ୍ଚ ହେବାକୁ ପଡ଼ୁଛି । ଏହି ପିଲେ ଆସିବା ପୂର୍ବରୁ ମୁଁ କହୁଥିଲି, ଆଜିକାଲି ଯେଉଁ କୃତ୍ରିମ ପରିସ୍ଥିତି ସୃଷ୍ଟି ହୋଇଛି ତାହା ଯୋଗୁଁ ଅବସ୍ଥା ସଂଭାଳିବା ଅସମ୍ଭବ ହୋଇପଡ଼ିଲାଣି ।"

ଦାସେ ପରିସ୍ଥିତିର କେଉଁ ଦିଗଟାକୁ ଲକ୍ଷ୍ୟ କରୁଛନ୍ତି ଜାଣିବାକୁ ଅପେକ୍ଷା କଲି ।

ସେ କହି ଚାଲିଲେ, "ଚା' ଟିକିଏ ଖାଇବାକୁ ବାଧ ଶୁଦ୍ଧ ଘର କରୁଥିବା ଏ ପିଲାଙ୍କୁ ଦେଖନ୍ତୁ । ଏକ ଦିଗରେ ସରକାର ତରଫରୁ ଚା ଖାଅ ବୋଲି ପ୍ରଚାର ଚାଲିଛି—ବା ଏ ପର୍ଯ୍ୟନ୍ତ ଚାଲିଥିଲା । ଏହି ପ୍ରଚାରର ଫଳରେ ବାପ ମା ୨।୩ ବର୍ଷର ପିଲାଙ୍କୁ ଦି' ଓଳି ଚା' ପିଆଉଛନ୍ତି । ପିଲାଙ୍କୁ ୧୪।୧୫ ବର୍ଷ ହେଲାବେଳକୁ ଅଫିମ ପରି, ଚା' ଅଭ୍ୟାସ ହୋଇ-

ଯାଉଛୁ । ଚନ୍ଦ ଟିକିଏ ନ ହେଲେ ନ ଚଳେ । ପୁଲିସଙ୍କ ସଙ୍ଗେ ସଳ ହୋଇ ଦୋକାନୀମାନେ ଚନ୍ଦ ସେରକୁ ଚାରି ଟଙ୍କା କରିଦେଲେଣି । ପୁଣି ଭାତ ନ ଖାଇ ଅଟା ଖାଅ ବୋଲି ସରକାର ପ୍ରଚାର କରିବା ଫଳରେ ଦେଶର ଅଧେ ଲୋକ ଅନ୍ତତଃ ଓଳିଏ ରୁଟି, ପରଟା ଖୋଜୁଛନ୍ତି—ସ୍ତାକୁ ସବୁ କଳାବଜାରରୁ କିଣିବାକୁ ପଇସା ନାହିଁ । ଏପରି ସ୍ଥଳେ ଯେ-କୌଣସିମତେ ସ୍ତାକୁ ସଂଗ୍ରହ କରିବାରେ, କେହି ଦୋଷ ଦେଖୁନାହାନ୍ତି ।"

ମୋତେ ସ୍ୱୀକାର କରିବାକୁ ପଡ଼ିଲା ଯେ, କଳାବଜାରରୁ ଏ ଜିନିଷ ସବୁ ସଂଗ୍ରହ କରିବା ଯେତିକି ଅନ୍ୟାୟ, ମିଛ ଦରଖାସ୍ତ ଲେଖିବା ତା' ଠାରୁ ବଡ଼ ଅନ୍ୟାୟ ନୁହେଁ ।

ଦାସେ କହିଲେ, "ଚାରି ଆଡ଼କୁ ଚାହିଁଲେ ଦେଖିବେ, ସରକାରଙ୍କ ଯୋଗୁଁ ହିଁ ଲୋକେ ନ୍ୟାୟ ଅନ୍ୟାୟର ଯେଉଁ ବାଛବିଚାର ପାରଂପରିକ ଭାବରେ କରିଆସୁଥିଲେ ତାହା ଛାଡ଼ିବାକୁ ବାଧ ହୋଇଛନ୍ତି । ଭାଗଚାଷ ଆଇନଟି କଥା ବିଚାର କରନ୍ତୁ । ଏହାଦ୍ୱାରା ଜମିମାଲିକ ଓ ଭାଗଚାଷୀ ଉଭୟଙ୍କୁ ମିଛ ମକଦ୍ଦମା କରିବାକୁ ପ୍ରଶ୍ରୟ ଦିଆହେଉଛି । ବର୍ଷେ ଖଣ୍ଡେ ହେଲି ଜମି ଚଷୁଥିବା ଭାଗଚାଷୀ କହୁଛି, ସେ ୧୯୫୫ରୁ ଜମି ଧରିଲାଣି । ୧୯୫୫ରୁ ଭାଗ ଲଗାଇଥିବା ଜମିକୁ, ମାଲିକ ଦାବି କରୁଛି ଆରବର୍ଷ ହାତ ଚାଷରେ ରଖିଥିଲି ବୋଲି । ଉଭୟ ପକ୍ଷର ମିଛକୁ ତାଉ ଦେବା ପାଇଁ ଓକିଲ ଅଛନ୍ତି ।

"ପୁଣି, ଲୋକେ ଆଖିରେ, ଓ ଖବରକାଗଜ ଜରିଆରେ ବଡ଼ ବଡ଼ ଲୋକଙ୍କର ଭାବ ଦେଖୁଛନ୍ତି । ବିଧବା, ବୟସ୍କା ମହିଳା କ୍ଷମତାରେ ରହି ପରପୁରୁଷଠାରୁ ବହୁମୂଲ୍ୟ ପରିଚ୍ଛଦ ଉପହାର ନେଇ କଥା ପଡ଼ିଲି ବେଳକୁ ଫାଙ୍କୁଛନ୍ତି ; କେନ୍ଦ୍ରମନ୍ତ୍ରୀ ବିରଳା କମ୍ପାନୀରୁ ଘେରିରେ ଦରମା ନେଇ ତାଙ୍କୁ ପରମିଟ୍, ଲାଇସେନ୍ସ କରାଇ ଦେଉଛନ୍ତି ବୋଲି ପ୍ରମାଣ କାଗଜପତ୍ରରୁ ବାହାରିଲା ବେଳକୁ, ନକେ ନାନାବିଧ ଦୁର୍ନୀତିରେ ଜର୍ଜରିତା ପ୍ରଧାନମନ୍ତ୍ରୀ ସହକର୍ମୀଙ୍କୁ ଘଣ୍ଟ ଘୋଡ଼ାଇବାକୁ ବସୁଛନ୍ତି । ଯେ ଦୁଇମାସ ହେଲି ଆମ ରାଜ୍ୟରେ ମନ୍ତ୍ରୀ ହୋଇଛନ୍ତି ସେମାନେ ଦୁଇ ହାତରେ ପଇସା ସାଉଁଟିବାରେ ଲାଗିଗଲେଣି । ଏ ପରିସ୍ଥିତିରେ ନ୍ୟାୟ ଅନ୍ୟାୟର ମାପକାଠି ଧରି ପିଲେ ଚଳିବେ ବୋଲି ଆଶା କରିବା ବୃଥା ।"

ମୁଁ କହିଲି, "ତେବେ ତ ଆମ ନାତିଙ୍କ ଅମଳରେ ବି ଦୁର୍ନୀତି ଦୂର ହେବ ନାହିଁ । ଏ ଦେଶର ଅବସ୍ଥା ତେବେ କ'ଣ ବଦଳିବାର ଆଶା ନାହିଁ ?"

ଦାସେ କହିଲେ. "ନାତିଙ୍କ ଅମଳରେ କାହିଁକି, ଅଣନାତି ପଣନାତିଙ୍କ ଅମଳରେ ବି ଦୁର୍ନୀତି ଦେଶରୁ ମୂଲୋତ୍ପାଟିତ ହେବ ବୋଲି ମୁଁ ମନେ କରୁନାହିଁ ; ଆମ ଅଣ-ଗୋସିଁ ବାପ, ପଣ-ଗୋସିଁ ବାପଙ୍କ ଅମଳରେ ବି ଦୁର୍ନୀତି ଥିଲି । ବର୍ତ୍ତମାନ ଏହାର ମାତ୍ରା ବଢ଼ିଯାଇଛି— ଏତିକିମାତ୍ର ପ୍ରଭେଦ ।"

ମୁଁ କହିଲି, "ସେଇ ଯୋଗୁଁ ତ ଦେଶ ରସାତଳକୁ ଯାଉଛି ବୋଲି ମୁଁ କହୁଛି ।"

ସେ କହିଲେ, "ଦେଶ ରସାତଳକୁ ଯିବା କାହା ହାତରେ ନାହିଁ, ଏହା ବିଧାତାଙ୍କ ହାତରେ—ଏତିକି ବିଶ୍ୱାସ ହେଲେ, ଅବସ୍ଥା ଯେତେ ଅନ୍ଧାର ଦିଶୁଛି, ସେତେ ଦିଶିବ

ନାହିଁ । ଦୁର୍ନୀତି କଲେ ପୋଷାଉ ନାହିଁ ବୋଲି ଯେଉଁ ଦିନ ଦୁର୍ନୀତିଗ୍ରସ୍ତ ଲୋକେ ବୁଝିବେ ସେଇଦିନ ପୁଣି ଦେଶର ଦୁର୍ଗତି ଦୂର ହେବାର ବାଟ ଫିଟିବ । ଯେ ନ ବୁଝିବେ, ସେଇ କେତେଜଣ ମାତ୍ର ରସାତଳକୁ ଯିବେ, ଯେପରି ଆମ ଆଖି ଆଗରେ କଂଗ୍ରେସବାଲା ଯାଇଛନ୍ତି ।”

ମୁଁ କହିଲି, “ଯେ ରହିଛନ୍ତି, ସେ ତ ବରମାଡ଼ ଦେଖି କୋଳଥ ପରି ଚେପା ହେଉନାହାନ୍ତି !”

ଦାସେ କହିଲେ, “କଂଗ୍ରେସବାଲାଙ୍କ ଦୁର୍ନୀତି ବିରୁଦ୍ଧରେ ଯେଉଁମାନେ ସଂଗ୍ରାମ କରି ଏବେ ହାତକୁ କ୍ଷମତା ନେଇଛନ୍ତି ସେମାନଙ୍କୁ ବି ତ କଂଗ୍ରେସବାଲାଙ୍କ ରୋଗ ସଂକ୍ରମିବାର ଦେଖାଗଲାଣି । ନିଜେ ରୋଗଗ୍ରସ୍ତ ହୋଇ ଅନ୍ୟମାନଙ୍କ ରୋଗ ଛଡ଼ାଇବାକୁ ବଇଦ ମୂଣି ଧରି ବୁଲିଲେ କିଛି ଫଳ ହେବ ନାହିଁ । ଉପରେ ଥିବା ଲୋକଙ୍କ ଆଚରଣଶୁଦ୍ଧି ହେଲେ, ଦୁର୍ନୀତି ଆପେ ଆପେ ଚପିଯିବ, ଏବଂ ତଳସ୍ତରରେ ଯେଉଁଠାରେ ରହିବା କଥା ସେଇଠାରେ ଯାଇ ରହିବ । ତାହା ନ ହେବା ପର୍ଯ୍ୟନ୍ତ ଜୀବନ-ସ୍ରୋତର ଭଉଁରୀରେ ଦେଶ ପଡ଼ି ଘିର୍ଣ୍ଣି ଗୁଡ଼ା ଖାଉଥିବ ।”

ମୁଁ କହିଲି, “ସେଇଠି ତ ଶେଷ ।”

ସେ ପ୍ରତିବାଦ କଲେ, “ଭଉଁରୀରେ ପଡ଼ିବା ମଣିଷଙ୍କ ଭିତରୁ ଶହେକେ ପଚିଶ ବର୍ତ୍ତିଯାନ୍ତି । ସମଗ୍ର ଦେଶଟା ଶେଷ ହେବ କାହିଁକି ? ଖଣ୍ଡିଆ ଖାବରା ହୋଇ ଏହା ପୁଣି ବାହାରିବ ଓ ଆଗରେ ଭଉଁରୀରେ ପଡ଼ିବା ପର୍ଯ୍ୟନ୍ତ ପୁଣି ସ୍ରୋତରେ ଭାସି ଆଗେଇବ । ଏଇ ତ ସଂସାରର ଗତି । ପୂର୍ବେ ଏ ଦେଶ ବହୁତ ଭଉଁରୀରୁ ବର୍ତ୍ତିଛି ; ଏ ଭଉଁରୀରୁ ବି ବର୍ତ୍ତିବ ବୋଲି ବିଶ୍ୱାସ କରିବା ହିଁ ଆମର ଧର୍ମ ।”

ମୁଁ ଏହା ଭଲ କରି ବୁଝି ନ ପାରିଲେ ବି ତୁନି ହେଲି ; ସେତେବେଳକୁ ସଂଧ୍ୟା ଲାଗି ଆସୁଥାଏ ।

( ୨ )

ଦାସଙ୍କ ଗାଁରେ ପହଞ୍ଚି ସ୍ଥାନୀୟ ଦେବମନ୍ଦିରରେ ଆହାରର ବ୍ୟବସ୍ଥା କରିବି ବୋଲି ଯୋଜନା କରୁଥିଲି । ମୁଁ ଅନ୍ୟତ୍ର ଖାଇବାକୁ ଇଚ୍ଛାକରେ ନାହିଁ ବୋଲି ବୁଝି ମହାପାତ୍ରେ ମହାଦେବ ମନ୍ଦିରର ପୂଜାରୀଙ୍କ ସଙ୍ଗେ କଥାବାର୍ତ୍ତା କରିବେ ବୋଲି କହିଥିଲେ । ଦାସେ ଏକଥା ଶୁଣି କହିଲେ, ‘ଦେବମନ୍ଦିର ବ୍ୟତୀତ ଅନ୍ୟ କୌଣସିଠାରେ ଆହାର କରିବେ ନାହିଁ ବୋଲି ଯଦି ବ୍ରତ ଥାଏ, ଅଲଗା କଥା । ଆମ ଏଇଠାରେ କୌଣସିମତେ ଗଣ୍ଡେ ଫୁଟେଇବାର ବ୍ୟବସ୍ଥା କଲେ ଆପଣଙ୍କୁ ସୁବିଧା ହେଉ କି ନ ହେଉ, ଆମକୁ ସୁବିଧା ।’

ମହାପାତ୍ରେ ଜବାବ ଦେଲେ, 'ହଁ, ତୁମ ଘର ରେଷେଇଠାରୁ ଠାକୁର ମନ୍ଦିରରେ ଭଲ ହେବ, ଏଥିରେ ଆଉ ସନ୍ଦେହ କ'ଣ ? ବାରବୁଲା ବାବୁ ଯଦି ତୁମ ଘରେ ଖାଇବାକୁ କଷ୍ଟ ସ୍ୱୀକାର କରିବେ, ତେବେ ମୁଁ ମଧ୍ୟ ସଙ୍ଗମେଳରେ ସେ କଷ୍ଟ ସ୍ୱୀକାର କରିବାକୁ ରାଜି । ଆମ ଘରେ ଗୃହିଣୀ ଯେଉଁ ତିନି ତିଅଣ ଚାରିଭଜା କରିବେ, ତାହାର ଲୋଭ ସମ୍ବରଣ କରିବାକୁ ପଡ଼ିବ ।'

ଦାସେ ଖୁବ ହସିଲେ, କହିଲେ, 'ଆରେ ହଁ ତ, ତୁମର ତ ସୁଖୀ ପରିବାର ! ଏ ଓଳିଟା ଆମ ଏଠାରେ ଚଳିଯାଉ, କାଲି ତୁମ ଗୃହିଣୀଙ୍କ ଆତିଥ୍ୟ ଗ୍ରହଣ କରିବା । ମୁଁ ବି ରନ୍ଧାବଢ଼ାରେ ତାଙ୍କୁ ଟିକିଏ ସାହାଯ୍ୟ କରିବି ।'

ପରେ ଜାଣିଲି, ମହାପାତ୍ରେ ବିପତ୍ନିକ । ସାତବର୍ଷ ହେଲା ତାଙ୍କ ସହଧର୍ମିଣୀ ତାଙ୍କର ଅଗ୍ରଗାମିନୀ ହୋଇ ଆର ପୁରରେ ତାଙ୍କ ପାଇଁ ବସା ଛଞ୍ଚା ବ୍ୟବସ୍ଥା କରିବାକୁ ଯାଇଛନ୍ତି ବୋଲି ମହାପାତ୍ରଙ୍କଠାରୁ ଶୁଣିଲି । ବିବାହର ଫଳପୁଷ୍ପ ଦୁଇଟି ପୁଅ ଓ ଗୋଟିଏ ଝିଅ । ଝିଅଟି ତା' ସ୍ୱାମୀ ସଙ୍ଗରେ ଗୋଟିଏ ଚାକିରି ଜାଗାରୁ ଆଉ ଗୋଟିକୁ ବଦଳି ହେବାରେ ଲାଗିଛି । ଗତ ଦେଢ଼ବର୍ଷରେ ତାଙ୍କର ହେଲାଣି ତିନି ଜାଗା । ଏବେ ଯାଇ ପହଞ୍ଚିଛନ୍ତି କୋରାପୁଟର ମାଲକାନଗିରିରେ । ମହାପାତ୍ରେ କହନ୍ତି, 'ଏଇଥର ତାଙ୍କ ହାଣ୍ଡିରେ କଳା ପଡ଼ିବ । ଏ ସ୍ଥାନକୁ ଲେଉଟିଲେ କୌଣସି ପ୍ରତିଦ୍ୱନ୍ଦୀ ଭୁବନେଶ୍ୱରରେ କଳ ମୋଡ଼ିବାର ସମ୍ଭାବନା କମ ।' ବୁଝିଲି, ମହାପାତ୍ରଙ୍କ ଜ୍ୱାଇଁବାବୁଟି ଟିକିଏ ନିରୀହ ହୋଇଥିବାରୁ ମନ୍ତ୍ରୀଙ୍କ ପାରିଷଦଙ୍କୁ ହାତ କରି ପାରନ୍ତି ନାହିଁ ।

ଆଉ ପୁଅ ଦୁଇଟି—ଦୁହେଁ ବିବାହିତ, ସନ୍ତାନସନ୍ତତି ଯୋଡ଼ିଏ ତିନୋଟି ଲେଖାଏ ହେଲେଣି । ବଡ଼ ବୋହୂ ଚାରି ମାସ ଶ୍ୱଶୁରଙ୍କ ସେବା କରିବାକୁ, ଅର୍ଥାତ୍ ଶ୍ୱଶୁରଙ୍କ ସେବା ଗ୍ରହଣ କରିବାକୁ ବଡ଼ କଷ୍ଟରେ ରାଜି ହୋଇଥିଲେ, କିନ୍ତୁ ଚାରିମାସଯାକ ତାଙ୍କ ନିଜ ଦେହ ଭଲ ରହିଲା ନାହିଁ । ନାତିନାତୁଣୀ ଜେଜେଙ୍କ ପାଖ ନ ଛାଡ଼ିବାକୁ ଯେତେ କାନ୍ଦିଲେ ବି ବାଧହୋଇ ତାଙ୍କୁ ଖଡ଼ଗପୁରରେ ସ୍ୱାମୀଙ୍କ ସଙ୍ଗେ ରେଳବାଇ କଲୋନୀରେ ରହିବାକୁ ହେଲା । ବିରକ୍ତିରେ ଦାସେ କହନ୍ତି, "କୋଇଲା ଧୂଆଁ ଦ୍ୱାରା ବିଶୋଧିତ ବାୟୁ ସେବନ କଲେ ବଡ଼ ବୋହୂଙ୍କର ସ୍ୱାସ୍ଥ୍ୟ ଭଲ ରହେ ।" ଆଉ ଦ୍ୱିତୀୟ ବୋହୂ, ସେ ତ ଦିନେହେଲେ ମହାପାତ୍ରେ ବା ମହାପାତ୍ରାଣୀଙ୍କ ପାଖରେ ଚଳିନାହାନ୍ତି । ମଫସଲ ଗାଁରେ ପାଣିମୁନ୍ଦେ, ପବନ ଟିକେ ମିଳିବ ନାହିଁ, ରହିବେ କିମିତି ।

ମହାପାତ୍ରଙ୍କୁ ନିଜେ ରୋଷେଇ କରିବାକୁ ପଡ଼େ । ମହାପାତ୍ରେ ଆପଣେ ରୋଷେଇ ପ୍ରକ୍ରିୟାକୁ ବଡ଼ ସରଳ କରିଦେଇଛନ୍ତି । ଦିନେ ଗୋଟାଏ ବଡ଼ ହାଣ୍ଡିରେ ଚାରି ଡହଲା ପର୍ଯ୍ୟନ୍ତ ଚାଉଳ ଫୁଟାଇ ଦିଅନ୍ତି । ସେଇ ଓଳିକ ତବତବିଆ ଖିଆ ହୁଏ, ଟିକିଏ ପାଣିଆ ତିଅଣ ସହିତ । ତା'ପରେ ହାଣ୍ଡିରୁ ଭାତ ସରିବା ପର୍ଯ୍ୟନ୍ତ ଚାଲେ ପଖାଳ, ସାଙ୍ଗକୁ ଶାଗ-ଖରଡ଼ା କିମ୍ବା ଆଳୁ ପୋଡ଼ା ।

ମହାପାତ୍ରଙ୍କର ପୈତୃକ ଓ ସ୍ୱୋପାର୍ଜିତ ହୋଇ ପ୍ରାୟ ପଚିଶ ଏକର ଜମି—ସବୁ ହାତ ଚାଷ । ପ୍ରତିବର୍ଷ ଅନ୍ତତଃ ଶହେ ଭରଣ ଧାନ ବିକନ୍ତି ।

ଏସବୁ ପ୍ରଥମେ ଶୁଣିଲାବେଳେ ସ୍ୱାଙ୍କୁ 'ଯକ୍ଷ' ବୋଲି ମନେ ମନେ ବିଚାରିଥିଲି । ପ୍ରଥମେ ମନକୁ ଦଖଲ କରିଥିବା ଧାରଣା ସମୂଳେ ଉପାଡ଼ିବାକୁ ବେଳ ଲାଗୁଛି । କିନ୍ତୁ ଦାସଙ୍କଠାରୁ ଶୁଣିଛି, ଧାନ ବିକ୍ରୀ ହେବା ବେଳ ହେଲେ ଦୁଇ ପୁଅଯାକ କ୍ୟାଜୁଏଲ ଛୁଟି ନେଇ ଚାଲି ଆସନ୍ତି ଓ ଧାନ ବିକା ଟଙ୍କାତକ ବାଣ୍ଟିକୁଣ୍ଟି ନେଇଯାନ୍ତି । ଯାହା ବଳକା ରହେ ସେଥିରେ ମହାପାତ୍ରଙ୍କ ଖୁଚୁରା ଚଳେ ଓ ଚାଷଖର୍ଚ୍ଚ ହୁଏ ।

ଏ ଗାଁ ଛାଡ଼ିବାର ଦିନେ ଦୁଇଦିନ ପୂର୍ବରୁ ମହାପାତ୍ରଙ୍କ କୃପଣତାର ଚାକ୍ଷୁଷ ପ୍ରମାଣ ପାଇଲି । ଦାଣ୍ଡକୁ ଭିକାରୀଟିଏ ଆସିଲେ, ସେ ପାଟି କରିବାର ଶୁଣିଥାଏ, 'ଏଗୁଡ଼ାକ ମଣିଷକୁ ବସେଇ ଉଠେଇ ଦେବେ ନାହିଁ । ଟିକିଏ ବନ୍ଧୁମେଳରେ କଥାବାର୍ତ୍ତା ହୋଇ ବସିବ ତ ଦାଣ୍ଡଦୁଆରେ ଆସି ହାଜର ।' ବିଚରା ଭିକାରୀମାନେ ପଦେ ଉତ୍ତର ନ ଦେଇ ଚାଲିଯାନ୍ତି । ମହାପାତ୍ରଙ୍କୁ ଲୁଚାଇ ଜଣେ ଦୁଇଜଣଙ୍କୁ ଦୋ-ପଇସି ଗୋଟାଏ ପକେଇ ଦେବାକୁ ମୁଁ ଥରେ ଅଧେ ଚେଷ୍ଟା ବି କରିଥାଏ । ମନେ ମନେ ବିଚାରେ, 'ଲୋକଟାର କଥାଗୁଡ଼ାକ ଏଡ଼େ ସରସ, କିନ୍ତୁ ମନଟା କେଡ଼େ ସଙ୍କୀର୍ଣ୍ଣ !' ଅତିଥି ଭଗ୍ନାଶ ହୋଇ ଫେରିଯିବା ଯେ ମହାପାପ ! ତାଙ୍କ ମହାପାପ କଥା ଚିନ୍ତା କଲାବେଳେ, ମୋର ଖିଆଲ ନ ଥିଲା ଯେ ଲୋକଙ୍କୁ ଭଲକରି ନ ଦେଖି ନ ଚିହ୍ନି, ତାଙ୍କ ବିଷୟରେ ଗୋଟାଏ ଧାରଣା କରିବାର ମହାପାପ ମୁଁ କରି ବସିଛି । ଏ ଯୁଗରେ ସ୍ୱାକୁ ପାପ ବୋଲି କେହି ବିଚାରୁ ନାହାନ୍ତି । ଇଂରେଜଙ୍କ ଅମଳରେ, ନିଜ କୋଠରୀର ଝରକାବାଟେ ଆମ ଦେଶକୁ ଚାହିଁ ଦେଇ, ମୌଲବୀଙ୍କ ମୁହଁରୁ ଆମ ଶାସ୍ତ୍ରର ତର୍ଜମା ଶୁଣି, ସାହେବ ସିଭିଲିଆନ୍‌ମାନେ ଆମ ଧର୍ମ ଓ ସଂସ୍କୃତି ବିଷୟରେ ପ୍ରକାଣ୍ଡ ପୁସ୍ତକମାନ ଲେଖିଯାଇଥିଲେ, ଯାହାକି ଏବେ ସୁଦ୍ଧା ଆମ ପିଲାଙ୍କର ପାଠ୍ୟପୁସ୍ତକ ହୋଇଛି । ଏବେ ତ ଆମେରିକାସ୍ଥ ପର୍ଯ୍ୟଟକମାନେ ଉଡ଼ାଜାହାଜ ଉପରୁ ଓ ଉଡ଼ାଜାହାଜ ଷ୍ଟେସନର ବିଶ୍ରାମାଗାରରେ ଭାରତକୁ ଦେଖି, ପ୍ରାମାଣିକ ସନ୍ଦର୍ଭମାନ ଆମ ହିତାର୍ଥେ ପ୍ରକାଶ କରୁଛନ୍ତି । ଏକଥା ଓ ମୁଁ ଏ ଗାଁ ଛାଡ଼ିଲା ପୂର୍ବରୁ ମହାପାତ୍ରଙ୍କୁ 'ଆବିଷ୍କାର' କରିବା କଥା ପଛକୁ ରହୁ ।

ସେଦିନ ରାତିଓଳି ଆମେ ଖାଇ ବସିଲୁ ତିନିଜଣ — ଦାସେ, ମହାପାତ୍ରେ ଓ ମୁଁ । ଆମ ଦୁହିଁଙ୍କ ପାଇଁ ବଢ଼ା ହୋଇଥାଏ ରୁଟି, ତରକାରୀ ଓ ଦୁଧ ; କିନ୍ତୁ ଦାସଙ୍କ ପାଇଁ ବଢ଼ା ହୋଇଥାଏ କଂସାଏ ପଖାଳ ଓ ଗୋଟାଏ ବଡ଼ ଗିନାରେ ଗଅଁଠିଗିନେ ସନ୍ତୋଳା । ଖାଦ୍ୟର ପରିମାଣ ଅସ୍ୱାସ୍ଥ୍ୟର ସୂଚନା ଦେଉନଥାଏ । ସନ୍ତର୍ପଣରେ ଏ ପାତ୍ର ଅନ୍ତରର କାରଣ ପଚାରିବାରେ ମହାପାତ୍ରେ କହିଲେ, 'ପ୍ରାୟ ବର୍ଷେ ହେଲା ଦାସେ ଆପଣେ ଖାଦ୍ୟ ବଦଳାଇଛନ୍ତି । ଆଗେ ରାତିବେଳା ରୁଟି, ପରଟା ବା ଲୁଚି ଖାଉଥିଲେ । ଠା'କୁ ଦ'ଠା ତିଅଣ ହେଉଥିଲା. ଦୁଧ ପାଏ ମଧ୍ୟ ପିଉଥିଲେ । ବର୍ତ୍ତମାନ ରାତିଓଳି ପଖାଳ, ସନ୍ତୋଳା, ସକାଳଓଳି ଭାତ ସଙ୍ଗେ ଠାଏ ତିଅଣ ।'

ମୁଁ କହିଲି, "ଗଢ଼ଉଳ ବୃଦ୍ଧଶରୀରର ପକ୍ଷରେ ରୁଟି, ବିଶେଷ କରି ଖଲିରୁଟି ଭଲ ବୋଲି ଡାକ୍ତରମାନେ କହନ୍ତି ।"

ଏକଥାର ସମର୍ଥନ ମିଳିଲା। ଆମେ ଯେଉଁ ବାରଣ୍ଡାରେ ବସି ଖାଉଥିଲୁ ତାକୁଇ ଲାଗି ଥିବା ଘର ଭିତରୁ– "ଯେତେ ଶୁଣିଲେ କଣ ହେଉଛି । ଡାକ୍ତର ତ ସେ ନିଜେ । ମଣିଷ ବୟସକୁ ବୁଝି ସିନା ସବୁ କରେ ! ଏଙ୍କର ସବୁ ଓଲଟା । ଶୁଣ, ଶୁଣ, ସମସ୍ତେ କଣ କହୁଛନ୍ତି ।"

ମହାପାତ୍ରେ ଜବାବ ଦେଲେ, 'ଘାତକ ! ଅଦୃଶ୍ୟ ଥାଇ କାହିଁକି ଶର ନିକ୍ଷେପ କରୁଛ ? ସମ୍ମୁଖ ସମରକୁ ଆସ ।'

ଦାସେ କହିଲେ, 'ସେ ଯେଉଁ ବାବୁ ଆସିଛନ୍ତି, ସେ ତୁମ ଝିଅଠାରୁ ଟିକିଏ ବଡ଼ ହୋଇ ପାରନ୍ତି । କିନ୍ତୁ ବୋଉଙ୍କଠାରୁ ନିଶ୍ଚୟ ସାନ । ଦେଖାଦେଲେ କୌଣସି ବିପଦ ନାହିଁ । ପାଟି ତ ଆର ସାଇକୁ ଶୁଭୁଥିବ, ଦେଖା ଦେବାକୁ କୁଣ୍ଠା କାହିଁକି ?'

ଭିତରୁ ଜବାବ ଆସିଲା, ମୁଁ ସବୁଦିନେ ଆଉ ବୋହୂ ହୋଇ କୋକିଳ ପରି ଲୁଚି ପାରିବି ନାହିଁ ।'

ମହାପାତ୍ରେ କହିଲେ, 'ସାଧୁ, ସାଧୁ ! ତୁମେ ବୋହୂ ନ ହୋଇ ଆମ ଆଗକୁ ବାହାରିବା ତ ଆମେ ଚାହୁଁ । କାଲି ତିନିଜଣ ଏକାଠି ହେଲୁ, ଚାରିଜଣ ନ ହେବାରୁ ଖେଳ ବାଜିଏ ହୋଇ ପାରିଲା ନାହିଁ । ତୁମେ ପରଦା ପ୍ରଥା ଛାଡ଼ିଲେ ସେ ଅସୁବିଧା ରହନ୍ତା ନାହିଁ ।'

ଭିତରୁ ଯେଉଁ ଶବ୍ଦଟା ଆସିଲା ତାହା ଗାଳି ବୋଲି ମନେ ହେଲା । ଉକ୍ତି-ପ୍ରତ୍ୟୁକ୍ତି ଏତିକିରେ ଶେଷ ହେବାରେ ମୁଁ ପୁଣି 'ଗଢ଼ଉଳ ରୁଟି' କଥା ଧକାଇଲି ।

ଦାସେ କହିଲେ, ହଁ, ମୁଁ ଶୁଣିଛି, ଡାକ୍ତରମାନେ ଗଢ଼ ଉଳ ପାଇଁ ରୁଟି-ପଥ୍ୟ ବ୍ୟବସ୍ଥା କରନ୍ତି । ତଦନୁସାରେ ମୁଁ ବି ଅନେକ ଦିନ ରୁଟି ଖାଇଛି । କିନ୍ତୁ ଗତ ବର୍ଷର ଅଭିଜ୍ଞତାରୁ ଜାଣୁଛି, ବୃଥାରେ ରୁଟି ପାଇଁ ସମସ୍ତଙ୍କୁ ଦହଗଞ୍ଜ କରୁଥିଲି ।

ପୁଣି ଭିତରୁ ଜବାବ ଆସିଲା, "ତୁମେ ନ ଖାଉଛ ବୋଲି ତ ଆଉ କାହାର କିଛି ଦହଗଞ୍ଜ ନାହିଁ । ପିଲେ ତ ପୁଣି ରୁଟି ଖାଉଛନ୍ତି । ତାଙ୍କ ସଙ୍ଗେ ତୁମେ ଖଣ୍ଡେ ଖାଇ ନ ଦେଇ ବରଂ ଦହଗଞ୍ଜ କରୁଛ ।"

ଏ କଥାର ପ୍ରତ୍ୟକ୍ଷ ଉତ୍ତର ନ ଦେଇ ଦାସେ ପୁଣି କହିଲେ, 'ମୁଁ ଅନୁଭବ କରୁଛି, ଗତ ବର୍ଷକଯାକ ମୋର ସ୍ୱାସ୍ଥ୍ୟ ବେଶ ଭଲ ରହିଛି । ମୁଁ ତ ଅନୁଭବ କରୁଛି, ଆମ ଏ ଦେଶରେ ଗଢ଼ଉଳ ପଖାଳ ପୂଂକିଏ ଖାଇଲେ ଦେହ ଭଲ ରହୁଛି । ମୋର ବାପ, ଗୋସିଁ ବାପ ବି ପଖାଳ ଖାଉଥିଲେ ।'

ମୁଁ କହିଲି, 'ପୂର୍ବର ସେ ଖାଦ୍ୟ ଅଭ୍ୟାସ ଆଉ କ'ଣ ଅଛି ? ଆମ ଆଡ଼େ ଖୁବ୍ କମ୍ ଲୋକଙ୍କର ଗଢ଼ଉଳ ଭାତ ରନ୍ଧା ହେଉଥିଲା । ଆଜିକାଲି ଧଉଳ ଭାତ ରନ୍ଧା ହେଉନଥିବା ଘର ଗୋଟିଏ ବି ନାହିଁ ।'

ଦାସେ କହିଲେ, 'ଏ ପରିବର୍ତ୍ତନର ଫଳ କ'ଣ ହୋଇଛି ? ଲୋକେ ଅଧିକ ସୁସ୍ଥ ବା ସବଳ ହୋଇଥିବାପରି ତ ଆଖିକୁ ଦିଶୁନାହିଁ । ଦେଶରେ ଜାଳେଣି କାଠର ଘୋର ଅଭାବ ପଡ଼ିଲାଣି ।'

ମହାପାତ୍ରେ କହିଲେ, 'ଖାଲି କ'ଣ ପଖାଳ ଛାଡ଼ିବାରୁ ରୋଗ ବଢ଼ିଛି ? କାଠ ଯାହା ଖର୍ଚ୍ଚ କରୁଥାଉଁ ସେତକ ଭରଣା କରିବାକୁ ନୂଆ ଗଛ ତ ଲଗୁନାହିଁ, କାଠ ଆସିବ କୁଆଡ଼ୁ ।'

ଦାସେ କହିଲେ, 'ସେ କଥା ସତ । ମୁଁ କହୁନାହିଁ ଯେ, ଖାଦ୍ୟ ଅଭ୍ୟାସ ବଦଳିବା ରୋଗର ଏକମାତ୍ର କାରଣ । କିନ୍ତୁ ଏହା ଯେ ଗୋଟିଏ ପ୍ରଧାନ କାରଣ, ଠିକ ଭାବରେ ଗବେଷଣା କଲେ ଜଣାଯାଏ । ମୁଁ ଥରେ ମୋ ଦ୍ୱାରା ପରିଚାଳିତ ଗୋଟିଏ ସ୍କୁଲରେ ୧୦ ଜଣ ପିଲାଙ୍କୁ ରୁଟି, ଓ ଦଶଜଣ ପିଲାଙ୍କୁ ପଖାଳ ଏକାଦିକ୍ରମେ ଦୁଇମାସ ଖୁଆଇଥିଲି । ଦୁଇ ମାସ ପରେ ପରୀକ୍ଷା କରି ଡାକ୍ତର ସ୍ୱୀକାର କରିଥିଲେ ଯେ, ପଖାଳଖିଆ ପିଲାଗୁଡ଼ିକ ରୁଟି ଖିଆଙ୍କ ଅପେକ୍ଷା ଓଜନରେ ବଢ଼ିଥିଲେ ।'

ଗବେଷଣାର ରୀତିକୁ ମୁଁ ମନେ ମନେ ପସନ୍ଦ କଲି । ଆଜିକାଲି ଆମ ଦେଶରେ, କୌଣସି କାର୍ଯ୍ୟର ଫଳ ପରୀକ୍ଷା କରି ଦେଖିବାକୁ କାହାରି ଧୈର୍ଯ୍ୟ ନାହିଁ । ମୁଁ ଜାଣେ ମାଗଣା ମିଳୁଛି ବୋଲି ବିଦେଶରୁ ଆସୁଥିବା ଭିଟାମିନ୍ ବଟିକା ଆମ ପିଲାଙ୍କୁ ନିର୍ବିଚାରରେ ଦିଆଯାଉଛି । ସେଥିରୁ କେତେ ଅଂଶ ଶରୀର ଗ୍ରହଣ କରୁଛି ଓ କେତେ ଅଂଶ ମଳରେ ବହିର୍ଗତ ହୋଇଯାଉଛି ତାହା ଦେଖିବା କେହି ଦରକାର ମନେକରୁନାହାନ୍ତି । ଯେଉଁ ଅଂଶତକ ଶରୀରରେ ରହୁଛି ତାହା ଉପକାର କରୁଛି କି ଅପକାର କରୁଛି ସେ ସଂଶୟ ତ ମନରେ ନ ହେବାର କଥା । ଖବରକାଗଜରେ ପଢ଼ୁଥାଉଁ, କଳାବଜାରୀ ବେପାରୀମାନେ ବିଦେଶୀ ଔଷଧର ନାମ, ଜାଲ କରି ନିଜ ତିଆରି ଦୋଷଯୁକ୍ତ ଔଷଧ ଶିଶିରେ ମାରି ଦେଉଛନ୍ତି ; ପୁଣି ପଢ଼ୁଥାଉଁ, ଆମେରିକାରେ ଯେଉଁ ଔଷଧରେ ଦୋଷ ବାହାରୁଛି ତାହା ସେ ଦେଶରେ ବ୍ୟବହାର କରିବାକୁ ନିଷେଧ କରାଯାଉଛି, କିନ୍ତୁ ତାହା ବିଦେଶକୁ ରପ୍ତାନି କରିବାକୁ ମନା ନାହିଁ । ଭିଖ ଚାଉଳ ଗଣ୍ଠିଆ କି ଭଲ, ଭିକାରୀ ଯେପରି ପରୀକ୍ଷା ନ କରି ମୁଣିରେ ପକାଏ, ସେହିପରି ଦାନ ବା କରଜ ସୂତ୍ରରେ ବିଦେଶରୁ ଯାହା ଆସୁଛି ତାହା ଆମେ ଆଗ୍ରହରେ ଗ୍ରହଣ କରୁଥାଉଁ ; ସେଭଳି ଔଷଧ ବା ଶିଶୁଖାଦ୍ୟ ବ୍ୟବସ୍ଥା କଲାବେଳେ ଆମ ଡାକ୍ତରମାନେ ଟିକିଏ ବି ସନ୍ଦିଗ୍ଧ ହେଉନାହାନ୍ତି । ଏଇଭଳି ଡାକ୍ତରଙ୍କ ମତକୁ ଦାସେ ଆପଣେ ପରବା ନ କରି ନିଜେ ଖାଦ୍ୟର ଯେଉଁ ପରୀକ୍ଷା ଚଳାଇଛନ୍ତି ତା' ବିରୁଦ୍ଧରେ ଯୁକ୍ତି-ଯୁକ୍ତ ଭାବେ କିଛି କୁହାଯାଇପାରେ ବୋଲି ମୋତେ ଦିଶିଲା ନାହିଁ ।

ମୁଁ କେବଳ ଏତିକି କହିଲି, 'ଆମେ ଯାହା ଖାଉଥାଉଁ ତଦ୍ୱାରା ଶରୀର ରକ୍ଷାର ସମସ୍ତ ଉପାଦାନ ମିଳୁଛି କି ନାହିଁ ତାହା ତ ଦେଖିବା ଉଚିତ ।'

ଦାସେ କହିଲେ, 'ତା' ସଙ୍ଗେ ଆହୁରି ମଧ୍ୟ ଦେଖିବା ଉଚିତ, ଆମେ ଯାହା ଖାଉ-ଥାଉଁ ତାଦ୍ୱାରା ଆମ ଶରୀରର ଯନ୍ତ୍ର ଉପରେ ଗୁଡ଼ାଏ ଚାପ ଯେପରି ନ ପଡ଼େ । ସେ ଯନ୍ତ୍ର

ସ୍ୱଚ୍ଛନ୍ଦରେ ପୁଣି ଆମ ଖାଦ୍ୟର ଉପଯୋଗ କରିପାରୁଛୁ କି ନାହିଁ ସେଥିପ୍ରତି ଧ୍ୟାନ ବି ଥିବା ଦରକାର ।'

ସେ ଠିକ୍ କ'ଣ କହିଲେ ସମଜି ନପାରି ମୁଁ ତୁନି ରହିଲି । ମହାପାତ୍ରେ କହିଲେ, 'ଯଦି ବା ଗୃପ ପଡ଼ିଲା ତେବେ ଡାକ୍ତର ତ, ସଜନାଗଛର ଫବାଳୁଆ ପରି, ସାଲ୍ ସାଲ୍ ହେଲେଣି, ତାଙ୍କ ପରାମର୍ଶ ନେବାକୁ ହେବ । ତୁମେ ଜାଣିଛି, ଆମ ଗୁରୁଦେବ ୮୦ ବର୍ଷ ବୟସରେ ବି ଶରୀର ରକ୍ଷାପାଇଁ ପ୍ରତ୍ୟହ ଗୋଟିଏ ଲେଖାଏଁ କୁକୁଡ଼ା ପାଞ୍ଚଟଙ୍କାରେ ଖାଉ-ଛନ୍ତି ; ତଦ୍ୱାରା ଶରୀର ଉପରେ ଯେଉଁ ଗୃପ ପଡ଼ୁଛି ତାହା ଦୂର କରିବା ପାଇଁ ପ୍ରତ୍ୟହ ସାତ ଟଙ୍କାର ଔଷଧ ଦେଉଛନ୍ତି । ଅଙ୍ଗ ପ୍ରତ୍ୟଙ୍ଗ ଚଳୁନାହିଁ, ମସ୍ତିଷ୍କ ବିକୃତ ହୋଇଗଲଣି, କିନ୍ତୁ ଦେହ ବେଶ୍ ହୃଷ୍ଟପୁଷ୍ଟ ଅଛି ।'

ଦାସେ ମୁରୁକି ମୁରୁକି ହସିଲେ, କିନ୍ତୁ କଥାଟାକୁ ବାଆଁରେଇ ଦେଇ କହିଲେ, 'ମୁଁ ତୁମକୁ ସେଥର ରେଳରେ ଦେଖିଥିବା ଆମେରିକାନ୍ ସାହେବଙ୍କ କଥା କହିଛି ବୋଧହୁଏ ।'

ମହାପାତ୍ରେ ହଁ କଲେ । ମୁଁ ସେକଥାଟା ଶୁଣିବାକୁ ଆଗ୍ରହୀ ହେବାରେ ଦାସେ ଆପଣେ କହିଲେ, 'ଅନେକ ଦିନ ହୋଇଗଲଣି—ମୋର ଗୃକିରି ବେଳର କଥା । ମୁଁ ଦିଲ୍ଲୀରୁ ଆସୁଥାଏ । ଧାନବାଦ ଷ୍ଟେସନରେ ଜଣେ ଆମେରିକାନ ସାହେବ ମୋ କାମରାକୁ ଉଠିଲେ ; ସେତିକିବେଳେ ଟ୍ରେନ୍‌ର ଭୋଜନାଳୟରୁ ଲୋକ ଆସି ଗ୍' ଯାଚିଲା । ମୁଁ ବରାଦ କଲି, ଆମ ଦୁହିଁଙ୍କ ପାଇଁ ଗ୍ ଓ ଟୋଷ୍ଟ, ଆଗନ୍ତୁକ ଭଦ୍ରଲୋକଙ୍କର ମତ ନ ନେଇ । ଖାଦ୍ୟ ସରଞ୍ଜାମ ଆସିବାରେ ସେ ଖାଇସାରିଛନ୍ତି ବୋଲି ଆଗ ନାହିଁ କଲେ । କିନ୍ତୁ ଅବଶେଷରେ ଭଦ୍ରତା ଖାତିରରେ ଗ୍' କପେ ମାତ୍ର ଗ୍ରହଣ କରିବେ ବୋଲି କହିଲେ । ମୁଁ ତାଙ୍କ ପାଇଁ ଗ୍' ତିଆରି କରିବାକୁ ବସିବାରେ କହିଲେ, ମୁଁ ଖାଲି ନାଲି ଗ୍' ଟିକିଏ ଖାଇବି । ଖୁବ ଅଳ୍ପ ଚିନି ଦେବେ । ଦୁଧ ଖାଉ ନାହିଁ ।' ସ୍ୱାସ୍ଥ୍ୟ ଉପରେ ଆଲୋଚନା ପ୍ରସଙ୍ଗରେ ସେ କହିଲେ, ମୋତେ ହେଲଣି ବା'ସ୍ତରି ବର୍ଷ । ଶରୀରର ଯନ୍ତ୍ରଗୁଡ଼ିକର ଅବସର ନେବା ବେଳ ହୋଇଗଲଣି । ଆପଣମାନଙ୍କ ପ୍ରୟୋଜନ ବା ମୋର ପ୍ରୟୋଜନରେ, ମୁଁ ସିନ୍ଧ୍ରି ସାର କାରଖାନାର ବିଶେଷଜ୍ଞ ଇଂଜିନିଅର୍ ଭାବେ ପୁନର୍ନିଯୁକ୍ତ ହୋଇଛି ସିନା, ମୋ' ଶରୀରର ଯନ୍ତ୍ରପାତି ତ ଆଉ ତାଜା ହୋଇ ନାହାନ୍ତି । ସେମାନେ ଗୃହାନ୍ତି, ତାଙ୍କ ଉପରେ ଗୃପ, ଯେତେ ଦୂର ସମ୍ଭବ କମ୍ ହେଉ । ଦୁଧ ଖାଇଲେ ସେ ଗୃପ ବଢ଼ିବ । ପାକଯନ୍ତ୍ର ଯେତେ ଶ୍ରାନ୍ତ ହେବ ସେଥିରେ, ଶରୀର ପୁଷ୍ଟ ହେବା ପରିବର୍ତ୍ତେ ଅଧିକ ଅନିଷ୍ଟ ହେବ ସିନା ।'

'ଭଦ୍ରଲୋକଙ୍କର ସ୍ୱାସ୍ଥ୍ୟ ବେଶ ଭଲ ଥାଏ । ମୁଁ ସେ କଥା ସୂଚାଇବାରେ ସେ କହିଲେ, 'ଶରୀରର ଯନ୍ତ୍ରପାତିକୁ ମୁଁ ଖୁବ୍ ଅବସର ଦେଉଛି ବୋଲି ସୁସ୍ଥ ରହିଛି ।' ଟିକିଏ ତୁନି ରହି ପୁଣି କହିଲେ, 'ତା'ପରେ, ଦୁଧ ପିଲାଙ୍କର ଖାଦ୍ୟ, ତାଙ୍କର ହାଡ଼ ଟାଣ ହେବାକୁ ଦୁଧ ଦରକାର । ଆମର ଆଉ ଶରୀର ଗଠନର ବେଳ ନାହିଁ । ଆମେ ସୁଆଦ ଲାଗୁଛି ବୋଲି ଦୁଧ ଖାଉଁ । ତହିଁରୁ କେତେ ମଳ ସାଙ୍ଗେ ବାହାରିଯାଏ ଜାଣିବା ଦରକାର ।'

'ତାଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ମୋ ମନରେ କେତେ କଥା ଖେଳିଗଲା । ମୋ ଆଖିରେ ପଡ଼ିଲା, ଆମ ଦେଶରେ ମୋଟରେ ଯେତେ ଦୁଧ ଉତ୍ପନ୍ନ ହେଉଛି ତହିଁର ବେଶୀ ଭାଗ ଆମ ଦେଶର ବୁଢ଼ାମାନେ, ପିଲାଙ୍କ ପାଇଁ ନ ରଖି, ଚା'ରେ ପିଇଦେଉଛନ୍ତି । ଭଦ୍ର-ଲୋକ କହିଲେ, 'ଆମେରିକାରେ ମୋ' ବୟସର ଲୋକେ ଚା'ରେ ପ୍ରାୟ ଦୁଧ ଖାନ୍ତି ନାହିଁ ।'

ମହାପାତ୍ରେ କହିଲେ, 'ତୁମେ ତ ସେଇଦିନୁଁ ଏକାବେଳକେ ଚା' ଛାଡ଼ି-ଦେଇଛ ।'

ଦାସେ କହିଲେ, 'ମୁଁ ବି ଅନୁଭବ କଲି ଯେ, ଶୀତପ୍ରଧାନ ଦେଶ କଥା ଯାହା ହେଉ ଆମ ଦେଶରେ ଅକାଳେ ସକାଳେ ଗରମ ଚା' ଗୁଡ଼ାଏ ଗିଳି ପାକସ୍ଥଳୀ ଉପରେ ଉପଦ୍ରବ ହେଉଛି । ଏଣେ ଏଇ ଚା' ଟିକକ ପାଇଁ ସପ୍ଲାଇ ଅଫିସରେ ମିଛ ପର୍ଯ୍ୟନ୍ତ ଦରଖାସ୍ତ ଦେବାକୁ ପଡ଼ୁଛି । ମୁଁ ତ ଚା' ଛାଡ଼ିବାର ପ୍ରାୟ ଦେଢ଼ବର୍ଷ ହେଲାଣି । କିଛି କ୍ଷତି ହେବାର ଲକ୍ଷ୍ୟ କରୁଛ ?'

ମହାପାତ୍ରେ କହିଲେ, 'କ୍ଷତିର କଥା ଦୂରେ ଥାଉ, ଏଠାରେ ଯେତେ କପ୍ ବିତରଣ ହେଉଛି, ସେଇତକ ଯଦି ତୁମ ଚା' ଛାଡ଼ିବା ସାଙ୍ଗେ ବନ୍ଦ ହୋଇଥାନ୍ତା ତେବେ ମାଣେ କୁଣେ ଜମି କିଣି ସାରନ୍ତିଣି ।'

ଉତ୍ତର ଆସିଲା ଅଦୃଶ୍ୟରେ ଥିବା ଦେବୀଙ୍କଠାରୁ, 'ଆପଣାର ତ ଧନଟା ପାଳଗଦା ପରି ବର୍ଷ ମରିହେଉଛି, ମାଣେ କାହିଁକି, ବାଟିଏ ଲେଖେଁ କିଣିପକାଉନାହିଁ ? ଚାଲିଣି କହୁଛି ତୁମ୍ଭଙ୍କୁ !'

ଦାସେ କହିଲେ, 'ଏ କଥାକୁ ସମର୍ଥନ କରିବାକୁ ପଡୁଛି । ମହାପାତ୍ରେ ପଇସାଟିଏ ସଂଚକରି ରଖିବାକୁ ପାପ ବୋଲି ମନେ କରନ୍ତି । କବାଟ ଆଉ କଣରୁ ଏ ଗାଁଠକୁ ନିନ୍ଦା କଲାପରି ଯେଉଁ ଇଙ୍ଗିତ ମିଳିଲା ତାହା କିନ୍ତୁ ମୁଁ ସମର୍ଥନ କରୁନାହିଁ ।'

ମହାପାତ୍ରେ କହିଲେ, 'ସାଉଜଙ୍କର ମୁହଁରେ କଥେ, ମନରେ କଥେ । ସେ ନିଜେ ଯେତେ ସମ୍ପତ୍ତି ବଳି କରି ଦିଅନ୍ତି, ତା' ତୁଳନାରେ ଆମେ ପାସଙ୍ଗରେ ପଡ଼ିବୁ ନାହିଁ ।'

ଦାସେ କହିଲେ, 'ଏ ଦୁହିଁଙ୍କର ଯେପରି ବଚନକା ଚାଲିଲାଣି, ହାତରେ ସକ୍ଡ଼ି ଶୁଖିଯିବ । ଚାଲନ୍ତୁ ହାତ ଧୋଇବା ।'

ହାତ ଧୋଇସାରି ଦାଣ୍ଡ ଦୁଆର ପୁଷ୍କରିଣୀକୁ ଯିବା ବାଟରେ ଦାସେ କହିଲେ, 'ବୁଝିଲେ ବାବୁ, ଗାଁରେ ରହିଲେ ଗାଁ ଲୋକଙ୍କ ଚଳଣିରେ ଚଳିବାକୁ ହେବ । ନ ହେଲେ, ସେମାନେ ହିଁ ଛା କରିଦେବେ । ହିଁ ଛା କରିଦେଲେ ଲୋକେ ନିଜେ ମରନ୍ତି, ନୋଚେତ୍ ଯାହାକୁ ଦେଖନ୍ତି ତାକୁ ମାରି ମିଶନ୍ତି । ତାଙ୍କ ସଙ୍ଗେ ଚଳିବାକୁ ହେବ, ପୁଣି ତାଙ୍କ ଭିତରେ ଯେ ଅପାରିବାର ତାଙ୍କ ଭଲ-ମନ୍ଦ ଆଡ଼କୁ ଟିକିଏ ନଜର ଦେବାକୁ ହେବ ।'

ମୁଁ କିଛି ଉତ୍ତର ନ ଦେଇ ଏଇ କଥାକୁ ମନରେ ପାଞ୍ଚିଲି । ବର୍ତ୍ତମାନ ଦେଶରେ ଯେଉଁ ସମସ୍ୟା ଉପୁଜିଛି, ତା ଏଇ କଥାଟି ଅନ୍ୟଥା ହେବାରୁ ନୁହେଁ ତ ?

( ୩ )

ମୁଁ ଦାସଙ୍କ ଘରେ ରହିବାର ସେ ଦିନକୁ ସାତ ଦିନ ହୋଇଗଲଣି । ପାଞ୍ଚଦିନ ପରେ ଥରେ କଥା ଉଠାଇଥିଲି ଗାଁରୁ ଏକାବେଳକେ ବିଦାୟ ନେଇ ଅନ୍ୟତ୍ର ଯିବାକୁ । ଲୋକଙ୍କର ଚଳଣି ଦେଖିବାକୁ ମୋତେ ଏଠାରେ ଯେଉଁ ସୁଯୋଗ ମିଳୁଥାଏ, ସେଥିରେ ମନ ଥାଏ, ଏଇଠାରେ ବର୍ଷେ ଖଣ୍ଡେ କଟାଇ ଦିଅନ୍ତି । କିନ୍ତୁ ଦାସଙ୍କ ଆତିଥ୍ୟର ବୋଝ ମୁଣ୍ଡରୁ ଓହ୍ଲାଇବାର ଅନ୍ୟ ଉପାୟ ନ ଦେଖି, ଅନ୍ତତଃ କେତେ ଦିନ ପାଇଁ ଏଠାରୁ ଅନ୍ୟତ୍ର ଚାଲି-ଯିବାକୁ ପ୍ରସ୍ତାବ କରିଥିଲି । ତହିଁଆରଦିନ ସକାଳୁ ଏହାର ଯେଉଁ ପ୍ରତିକ୍ରିୟା ହେଲା ତା'ପରେ ମୋର ପ୍ରସ୍ତାବ ସାମୟିକ ହେଲେ ବି ମୁଲତବି ରଖିବାକୁ ହେଲା ।

ଆମେ ସମସ୍ତେ ସକାଳେ ଗାଧୋଇ ପାଧୋଇ—ଅଧିକାଂଶ ନିତ୍ୟକର୍ମ କରି ମଧ—ସକାଳ ନଅଟାରେ ଏକତ୍ରିତ ହେଲୁଁ; କେବଳ ମହାପାତ୍ରେ ଆସି ନ ଥାନ୍ତି । ସେଦିନ ତାଙ୍କର ରୋଷେଇ ପାଳି । ଅନ୍ଦର ମହଲରୁ ମହାପାତ୍ରଙ୍କ ପାଖକୁ ଓ୍ୟାରଣ୍ଟ ଗଲା ଓ ଚାକରମାନେ ଆସି ଚା'ର ସରଞ୍ଜାମ ରଖାହେଲା । ଭିତରୁ ହୁକୁମ ଆସିଥାଏ, ଆଜି ଦାସଙ୍କୁ ଚା' ଖାଇବାକୁ ହେବ । ସେ ନ ଖାଇବାରୁ 'ବାଗ' ବାବୁ ଚା' ଖାଉନାହାନ୍ତି, ଆଉ ଯିବାକୁ ଜିଦ୍ କରୁଛନ୍ତି ।

ମହାପାତ୍ରେ ଚୂଲିରୁ କାଲି କାଢ଼ିଦେଇ ଆସି ପହଞ୍ଚି ମନ୍ତବ୍ୟ ଦେଲେ, "ଦେଖୁଛୁ, ଆଜି ମନ କାମନା ପୂରଣ ହେବ । ଦାସେ ଚା' ଛାଡ଼ିଦେବାରୁ ମୁଁ ଛାଡ଼ିବି ଛାଡ଼ିବି ହେଉଥିଲି ଯିନା ଆମ୍ଭାକୁ କାଟୁଥାଏ । ବୁଝିଲେ ଆଜ୍ଞା, ଏଇ ଚା'ଟା ଯୋଗୁଁ ଦୁବିସହ ଜୀବନଟା କୌଣସିମତେ ଧରି ରଖିବାକୁ ହେଉଛି । ଏକମାତ୍ର ପାନୀୟ, ଯାହାକି ଖରା, ବର୍ଷା, ଶୀତ ସବୁ ଋତୁରେ ସମାନ ଭାବେ ଆଦୃତ । ଦେଖିନାହାନ୍ତି ଷ୍ଟେସନମାନଙ୍କରେ 'ଗରମ ଚା' ଶୀତ ଦିନେ ବିଶେଷ ଗରମ, ଖରାଦିନେ ବିଶେଷ ଥଣ୍ଡା ?"

ନାୟକେ ଯୋଗ କଲେ "ଏବଂ ବର୍ଷାଦିନେ ଦିହକୁ ଗରମ ଓ ପେଟକୁ ଥଣ୍ଡା ।"

ଦାସେ କହିଲେ, "ଯାହାହେଉ, ଦିହରୁ ପେଟଟା ଆଜି ଭିନେ ହେଲା ।"

ବାହିନୀପତି ମନ୍ତବ୍ୟ କଲେ, "କିଛି ବିଚିତ୍ର କଥା ନୁହେଁ । ବାପଠାରୁ ତ ପୁଣି ପୁଅ ଭିନ୍ନେ ହେଉଛନ୍ତି । ମହାପାତ୍ରେ ଆପଣେ ଯାହା କହିଲେ, ତାହା ଯଥାର୍ଥ, ଶାସ୍ତ୍ରସମ୍ମତ । ଭଗବାନ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି—

'ନ ଚା-ଭାବଯୁତଃ ଶାନ୍ତି ର୍ନ ଚା-ଯୁକ୍ତସ୍ୟ ଭାବନା ।'

ଚା' କାହିଁକି ଆସୁନାହିଁ ବୋଲି ଭାବୁଥିଲାଯାକ ମନରେ ଶାନ୍ତି ନ ଥାଏ; ଚା' ମିଳି-ଗଲା ତ ମନରେ କୌଣସି ଭାବନା ରହେ ନାହିଁ; କାରଣ, ଶାନ୍ତ ମନ ଭାବନା କରିବାରେ ଅସଙ୍ଗତିଦୋଷଦ୍ୱାରି ।"

ସମସ୍ତେ ହସିଲେ, ମୁଁ ବି । ଏତିକବେଳେ ଘରୁ ଲୋକ ଆସିଲା ଚା' କେଟଲ୍ ନେଇ ଚୁଲିରେ ବସାଇବାକୁ । ମହାପାତ୍ରେ ଚା' କେଟଲ୍‌ଟି ହସ୍ତଗତ କରି କହିଲେ, "ମୋ ଚୁଲିରେ ଭାତ ନକେଇ ହୋଇସିବ । ପିଇବ ଯେବେ ପିଅ, ନ ହେଲେ ଏତକଜାକ ଅଜାଡ଼ି ଦେଇ ମୁଁ ଭାତ ଗାଳିବାକୁ ଦିବ ।"

ଦାସେ ମୁରୁକି ମୁରୁକି ହସି କହିଲେ, "ଶେଷୋକ୍ତ ପ୍ରସ୍ତାବରେ ମୁଁ ସମ୍ମତ । କିନ୍ତୁ ବାରବୁଲା ଆଗ ଗୋଟିଏ କପ୍ ପିଅନ୍ତୁ । ସେ ନ ପିଇଲା ପର୍ଯ୍ୟନ୍ତ ମୋ ଉପରେ ଚା' ପିଇବାକୁ ହୁକୁମ୍‌ନାମା କାଏମ୍ ରହିଛି ।"

ମହାପାତ୍ରେ କହିଲେ, "ତମେ ଏବେ ଟିକିଏ ଆଜି ପିଇଦେଉନ । କଣ ଗୁଣ୍ଡି-ଏକାଦଶୀ ବ୍ରତ ହୋଇଛି ।"

ଦାସଙ୍କୁ ଚା' ପିଇବାକୁ ବାଧ ନ କରି ମୁଁ ଟିକିଏ ପିଇଦେବାକୁ ପ୍ରସ୍ତୁତ ଥିଲି । ମୁଁ ଏଠାକୁ ଆସିବା ଦିନୁଁ ଇ ଚା' ଛାଡ଼ିଛି—ନିୟମିତ ଖାଏ ନାହିଁ ବୋଲି ମିଛ କହି । କିନ୍ତୁ ମୁଁ ସେ କଥା କାର୍ଯ୍ୟରେ କରିବା ଦୂରେ ଥାଉ, ପ୍ରସ୍ତାବ କରିବା ପୂର୍ବରୁ ଦାସେ ସମସ୍ତଙ୍କ ପାଇଁ ଚା' ଢାଳିସାରି ଆପଣା ପାଇଁ ବି ଗୋଟିଏ କପ୍ ଢାଳିଲେ ।

ଚା' ପିଆ ଚାଲିବା ଭିତରେ ଦାସେ କହିଲେ, "ଖାଲି ଏ ଦୁରଭ୍ୟାସ ଚା' ବିଷୟରେ ନୁହେଁ, ବିଳାସ ସାମଗ୍ରୀ ବ୍ୟବହାରରେ ନୁହେଁ, ନିଜର ନିତ୍ୟପ୍ରୟୋଜନ ବିଷୟରେ ମଧ ସଂଯତ ହେବାର ବେଳ ଆସିଲାଣି । ଧର, ଭାତ ସାଙ୍ଗକୁ ଡାଲି—"

ମହାପାତ୍ରଙ୍କ ଆଡ଼କୁ ଚାହିଁ ଦାସେ କହିଲେ, "ଡାଲିର ଦାସତ୍ୱରୁ ତ ତୁମେ ମୁକ୍ତ, ଯାଅ ଭାତଟା ଗାଳି ଦେଇ ଆସିବ ।"

ମହାପାତ୍ରେ କହିଲେ, "ଆସିଛୁ ଯେତେବେଳେ, ମୋ' ଉପାସ୍ତ ମୁଁ କରି ଆସିନାହିଁ ? ଆମ ହାଣ୍ଡିରେ ଭାତ ଦୁ'ପହର ଯାଏଁ ଗଡ଼ିଲେ ମଧ ନକେଇ ହେବ ନାହିଁ କି ପେଜଗୁଡ଼ା ହେବ ନାହିଁ । ନିଆଁ ତାହାକରେ ସେମିତି ଉଷୁମ ହୋଇ ରହିଥିବ । ଡାଲି ବିଷୟରେ କଣ କହୁଛ କହ । ଶନ୍ଦୁ ବିଷୟରେ ଶୁଣିବାକୁ କିଏ ନ ଚାହେ ?"

ବାହ୍ମଣପତ୍ର ଆରମ୍ଭ କଲେ, "ଭାଗବତରେ କହିଛନ୍ତି···"

ନାୟକେ ରୋକିଲେ, "ହଉ ଥାଉ, ଗୀତାରେ ତ ଭଗବାନ୍ ଚା'ର ବ୍ୟବସ୍ଥା କଲେ, ଭାଗବତରେ କଣ ଅଫିମ ?"

ବାହ୍ମଣପତ୍ର କହିଲେ, "ଏମିତି ଡଙ୍କଭଙ୍ଗା କରିଦେଲେ ମୁଁ ନାଚାରି । ମୁଁ କ'ଣ ଭାଗବତରେ କୃଷ୍ଣ କହିଛନ୍ତି ବୋଲି କହିଲି ? ନାରଦ କହିଛନ୍ତି ।"

"ହଉ ଥାଉ, ଥାଉ, ସେ ବି ଘର-ଭଲ ଲୋକ'। ଡାଲି ବିଷୟରେ କଣ ଧଡ଼ିଛି ଶୁଣ । କୁଆ ବୋବାଇଲାଠାରୁ ତ ଏତେବେଳ ଯାଏଁ କୃଷ୍ଣ, ନାରଦଙ୍କ ସଙ୍ଗେ କଥାବାର୍ତ୍ତା ହେଲା, ଆଉ କାହିଁକି ?"

ବଡ଼ଲୋକମାନଙ୍କ ଘରର ସାଧାରଣ ଏମିତି ଗୁଳିର ବୋଲି ଆଶଙ୍କା କରି ମୁଁ କହିଲି, "ନିତ୍ୟ ପ୍ରୟୋଜନ ବିଷୟରେ ସଂଯତ ହେବାକୁ ଯାହା କହିଲେ—"

ଦାସେ ଆରମ୍ଭ କଲେ, "ଡାଲିର ଉଦାହରଣ ଦେଉଥିଲି । ଆପଣ କହିବେ, ଡାଲିର ଯେଉଁ ଖାଦ୍ୟସାର ତାହା ସ୍ୱାସ୍ଥ୍ୟପାଇଁ ଦରକାର । ତାକୁ କମେଇଲେ ଦେହରକ୍ଷାରେ ବ୍ୟାଘାତ ଅସିବ—ନା ?"

ମୁଁ ସେଇକଥା ବିଚାରୁଥିଲି ବୋଲି ମୁଣ୍ଡ ହଲାଇଲି ।

ଦାସେ କହିଲେ, "ଦେହରକ୍ଷା ପାଇଁ କେଉଁ ପଦାର୍ଥରୁ କେତେ ହେଲେ ସୁଷମ ହେବ ତାହାର ତାଲିକା ଆମ ଦେଶରେ ବହୁତ ପ୍ରଚାର ହୋଇଛି । କିନ୍ତୁ ଯେ ପ୍ରଚାର କରୁଥିଲେ ସେ ଏବେ କିଣିପିଣ୍ଡ ପାଏ ଚାଉଳ ବି ଦେଇପାରୁନାହାନ୍ତି । ଜଣେ ତ କହୁଥିଲେ ଚାଉଳ ନ ଖାଇ କଦଳୀ ଖାଅ । ସେଇ କଦଳୀ ବିଷୟରେ ଟାପରା କରି ଲୋକେ ତାଙ୍କୁ ନିର୍ବାଚନରେ ହରାଇଲେ । ଯେ କଦଳୀ ଖାଦ୍ୟ ବ୍ୟବସ୍ଥା କରୁଥିଲେ ତାଙ୍କ ମୁଣ୍ଡରୁ ସୁଷମ ଖାଦ୍ୟଚିନ୍ତା ବହୁ ଦୂରରେ ଥିଲା । ଗିରାନ ସମୟରେ ଯେ କୌଣସି ମତେ ପ୍ରାଣ ଧାରଣ କରିବାକୁ ସେ କହୁଥିଲେ ।"

ନାୟକେ କହିଲେ, "ତା' ନୁହେଁ କଣ ? ମହାପାତ୍ରେ ଉଠାଇଥିଲେ ଷ୍ଟେସନରେ ଚା' ବିଜ୍ଞାପନ କଥା । ଏବେ ତ ଠାଏ ଶୁଣୁଥିଲି, ସରକାର କହୁଛନ୍ତି, ଚା' ଖାଇବା ବନ୍ଦ କର, ବେଶି ଚା' ପତ୍ର ବିଦେଶକୁ ପଠାଇଲେ ବେଶି ବିଦେଶୀ ମୁଦ୍ରା ମିଳିବ, ବିଦେଶରୁ କଳକବଜା କିଣିବାକୁ ।"

ମହାପାତ୍ରେ—ସବୁ କଳକବଜା ଆଗରେ ଏବେ ଉଦର-ଯନ୍ତ୍ର ପାଇଁ ଖାଦ୍ୟଶସ୍ୟ ବିଦେଶରୁ ଆଣିବା ଜରୁର୍ ହେଲାଣି ।

ଦାସେ ଟିକିଏ ଗମ୍ଭୀର ସ୍ୱରରେ କହିଲେ, "ଆଜି ସମସ୍ତେ ବଡ଼ ଖୁସ୍ ମେଜାଜ୍‌ରେ ଅଛ ; ସବୁ କଥାକୁ ରହସ୍ୟରେ ଉଡ଼ାଇ ଦେଉଛ ।"

ମହାପାତ୍ରେ କହିଲେ, "ମେଜାଜ୍ ଖୁସ୍ ନ ହେବ କାହିଁକି ଯେ ? ଡାଲି କଲେ ମାତ୍ର ଦୁଇ ଟଙ୍କା କୋଡ଼ିଏ ପଇସା । ବାହିନୀପତିଙ୍କର ପ୍ରତ୍ୟହ ଏକ କଲେ, ମୋର ଦୁଇ କଲେ, ନାୟକଙ୍କର କେତେ କି ?—ପାସୋଣ ଦେଇଛି ।"

ନାୟକେ କହିଲେ, "ଆମର ଯେଉଁ ଗୋଟିଏ କଲେ ସେତିକ । ଜଣେ କଲେକୁ, ଜଣେ ହଇଏ । କାଲି ରାତିରେ ଏ ଘରୁ ଯାଇଥିଲି ଟିକିଏ ଡାଲି । ଆମ କଲେ କହିଲେ, ଆମର ରାନ୍ଧିଓଲି ଭାତ ରନ୍ଧା ହୁଏ ବୋଲି ନିଧିବୋଉ ଜାଣିଛନ୍ତି ପରା !"

ଦାସେ କହିଲେ, "ଅମର ସେ କଥା ପଡ଼ିଥିଲି, ଡାଲି ପଠାଇବା ବେଳେ । ରାଏ ହେଲି, ମେଞ୍ଚା ମେଞ୍ଚା ହୋଇଛି, ପଖାଳି ଯାଙ୍କୁ ଭଲ ହେବ ।"

ନାୟକେ ସମର୍ଥନ କଲେ, "ବେଶ୍ ହେଲା । କାଲି ଦ'ଘୁଣ୍ଟା ଅଧିକ ବି ଚଳିଗଲା । ମୁଁ ତ ଘରୁ ଶୁଣୁଥିଲି—ଦାସେ ଆଜିକାଲି ଡାଲି ପ୍ରାୟ ଖାଉନାହାନ୍ତି ।"

ମହାପାତ୍ରେ କହିଲେ, "କଲେରୁ ଶୁଣିଲ ବୋଲି କହୁନାହିଁ ? ଦାସେ ସ୍ୱଢଉଲ୍ ଧଖାଲ ବି ଖାଉଛନ୍ତି ତୁମର ଘର, ବାଡ଼ି ଘରବା ସାଙ୍ଗେ । କିନ୍ତୁ ତୁମ କଞ୍ଚା ପିଆଜ, କାକୁଡ଼ି ଓ କସି ଜନ୍ଦି ସଙ୍ଗେ ନୁହେଁ ।"

ବାହିନୀପତି କହିଲେ "ନାୟକଙ୍କ ପିତୃ ପିତାମହ ଶାଖାମୃଗ ବୋଲି ପଗ୍ ଗୋଟାଏ ଶାସ୍ତ୍ରରେ ଲେଖାହୋଇଛି ।"

ସମସ୍ତେ ହସିଲେ, ନାୟକେ ମଧ୍ୟ । ନାୟକଙ୍କ ପିତା ଲେଖାଜୋଖାରେ ବାହିନୀ-ପତିଙ୍କର ଅଜା । ହସ ଅମୁସିବାରେ ସମସ୍ତେ ଟିକିଏ ଅସ୍ଥ ହେଲେ । ଦାସେ କହିଲେ, "ମୋ ପିଲାଦିନେ ଆମ ଏ ଗାଁରେ ଗୋଟେ ଦ'ଟା ଘର ବ୍ୟତୀତ ଆଉ କେଉଁଠି ପ୍ରତ୍ୟହ ଡାଲି ହେଉ ନ ଥିଲା । ସେତେବେଳେ ଡାଲି ସେରକ ଥିଲା ଛ' ପଇସା । ଛ' ପଇସା ଖର୍ଚ୍ଚ କରିବା ନାହିଁ ବୋଲି ଯେ ଲୋକେ ଡାଲି ଖାଉ ନ ଥିଲେ ତାହା ତ ନୁହେଁ । ଆମ ଦଦେଇ କହିବାର ଶୁଣିଛି, ଯାହା ନିଜେ କରୁ ନ ଥାଇ ବା ନିଜ ଗାଁରେ ହେଉନାହିଁ ତାହା ଖାଇବା ପାପ । ମୁଁ ବୁଝିଛି, ଯାହା ଆମ ପାଖଆଖରେ ଲୋକେ ପାଉ ନାହାନ୍ତି ତାହା ଖାଇବା ପାପ ନ ହେଲେ ବି ଅସାମାଜିକ କାର୍ଯ୍ୟ । ଆମ ପାଖରେ ପଇସା ଅଛି ବୋଲି ଆମେ ଯଦି ଭଲ ଖାଇବା, ଭଲ ପିନ୍ଧିବା, ତେବେ ନ ପାଇବା ଲୋକର ମନରେ ଯେଉଁ ବିକ୍ଷୋଭ ଜାତ ହେବ ତଦ୍ଦ୍ୱାରା ସମାଜ ଶୃଙ୍ଖଳା ଭାଙ୍ଗିଯିବ । ଲୋକଙ୍କର ବିକ୍ଷୋଭ ଦୂର ହେବାକୁ ହେଲେ ଚଳଣିରେ ସମତା ଦରକାର ।"

ମୁଁ କହିଲି, ' କିନ୍ତୁ ମୋର ଯଦି ବେଶି ରୋଜଗାର, ତେବେ କ'ଣ ଆପଣ କହୁଛନ୍ତି, ପଇସା ଜମେଇ ରଖିବି, ଆଉ ଦରିଦ୍ରଙ୍କ ସଙ୍ଗେ ସମାନ ହୋଇ ଚଳିବି ?"

ଦାସେ ଉତ୍ତର ଦେଲେ, "ରୋଜଗାରର ଯେଉଁ ଅସମାନତା କଥା ଆପଣ କହୁଛନ୍ତି, ସେକଥା ଟିକିଏ ଭଲ କରି ଚିନ୍ତା କରନ୍ତୁ । ଆଗ ରୋଜଗାର କରିବା ପ୍ରବୃତ୍ତି, ନା ପଡ଼ୋଶୀ ଘରଠାରୁ ଭଲରେ ଚଳିବାର ଆକାଂକ୍ଷା ?—କେଉଁଟା ଆଗ ହୁଏ ବିଗ୍ୱରନ୍ତୁ ଦେଖି ।"

ମୁଁ କହିଲି, "ନିଜ ଅବସ୍ଥା ଭଲ କରିବା ଆକାଂକ୍ଷା ତ ମଣିଷର ସହଜାତ ।"

ଦାସେ—"ସେ ବିଷୟରେ ମୋ'ର ସନ୍ଦେହ । ତଥାପି ଆପଣଙ୍କ ମତ ସ୍ୱୀକାର କରାଯାଉ । ମଣିଷର ଏହି ସହଜାତ ସ୍ୱାର୍ଥପରତା ନ ରୋକିଲେ ସମାଜର ଅବସ୍ଥା କ'ଣ ହେବ ବିଗ୍ୱରନ୍ତୁ ।"

ନାୟକେ କହିଲେ, "ତେବେ କ'ଣ ତମେ କହୁଛ, ପଡ଼ୋଶୀ ଘରର ଯଦି ଗୋଦରଗୋଡ଼ ହୋଇଛି, ତେବେ ନିଜର ମଧ୍ୟ ଲାଗିପଡ଼ି ଗୋଦର ଗୋଡ଼ଟାଏ କରିବାକୁ ପଡ଼ିବ । ଆମର ଭଲ ଗୋଡ଼ଟା ଦେଖି ଗୋଦରୀର ତ ମନରେ କ୍ଷୋଭ ହେବା ସ୍ୱାଭାବିକ ।"

ସମସ୍ତେ ହସିଲେ । ଦାସେ ମୁରୁକି ମୁରୁକି ହସି କହିଲେ, "କଥାଟା ଏକାବେଳକେ ହସରେ ଉଡ଼ାଇ ଦେବାର ନୁହେଁ । ଆଚ୍ଛା, ନିଜ ସ୍ତ୍ରୀର ଯଦି ବାତଜ୍ୱର ହୁଏ, ତେବେ ?"

ନାୟକେ—ତେବେ କ'ଣ ନିଜର ବାତଜ୍ୱର ହେଉ ବୋଲି ଦାଏଁଙ୍କୁ ମୁଣ୍ଡିଆ ମାରିବ ?

ଦାସେ କହିଲେ, "ତା' ଅପେକ୍ଷା ଅନ୍ୟ କୌଣସି ପନ୍ଥା ଅଛି କି ନାହିଁ ଚିନ୍ତାକର ଭାବ। ନିଜର ଗୋଦର ଗୋଡ଼ ହେଉ ବୋଲି ମୁଣ୍ଡିଆ ନ ମାରି, ସ୍ତ୍ରୀର ଗୋଦର ଗୋଡ଼ଟା କମିଥି ସରୁ ହେବ ତା' ପାଇଁ ତ ଚେଷ୍ଟା କରିବ ? ନିଜର ଖର୍ଚ୍ଚରୁ କାଟି ତା' ପାଇଁ ବାତଜ୍ୱର ପ୍ରତି-ଷେଧକ ଔଷଧ କିଣିବ । ରାତିରେ ନ ଖାଇଲେ ଭଲ ବୋଲି ଯଦି ଚିକିତ୍ସକ କହନ୍ତି ତେବେ ଆପେ ବେଳ ଥାଉ ଥାଉ ଖିଆ ସାରିଦେବ। ଅନିୟମିତ ଆଚରଣ ଯେପରି ନ ହୁଏ, ସେଥିକୁ ନିଜେ ସଜାଗ ହେବ । ଏହାଦ୍ୱାରା ଉଭୟ ଆଡ଼ୁ ଲାଭ—ସ୍ତ୍ରୀର ରୋଗ ବଢ଼ିବାର ବାଟ ବନ୍ଦ ହେବ ଓ ନିଜର ରୋଗ ନ ହେବାର ବାଟ ଫିଟିବ।"

ନାୟକେ ତୁନି ହେଲେ। ମୁଁ ଏ କଥାର ମର୍ମ ବୁଝିବାକୁ ଚେଷ୍ଟା କରୁଥାଏ ।

ଦାସେ ପୁଣି କହିଲେ, "ନିଜ ସ୍ତ୍ରୀ ପିଲାଙ୍କ ବିଷୟରେ ଯେଉଁ ବିଚାର, ପଡ଼ିଶାଘର ପାଇଁ ସେଇ ବିଚାର କରିବାକୁ ହୁଏ । ଗାଁରେ ବାତଜ୍ୱର ବଢ଼ିଲା ତ, ସର୍ବପ୍ରଥମେ ଉଦ୍ୟମ କରିବାକୁ ହେବ, କୌଣସିମତେ ପ୍ରତିକାର ବ୍ୟବସ୍ଥା କରିବାକୁ । ସେତିକ ନ କଲେ ନିଜର ବାତଜ୍ୱର ହେବାର ସମ୍ଭାବନା ଅଛି । ଗାଁରେ ସମସ୍ତେ ଯଦି ବାତକରୁଆ, ତେବେ ସେ ଗାଁରେ ତୁମେ ରହିବା ବି ଚଳିବ ନାହିଁ। ବାତକରୁଆ ନ ତଡ଼ିଲେ ବି ନିଜକୁ ପଳାଇବାକୁ ପଡ଼ିବ। ଆଜିକାଲି ଗାଁର ଚାକିରିଆଙ୍କ ଭିତରୁ ଅନେକେ, ଏଇଥିପାଇଁ ଅବସର ନେବା ପରେ ବି ଗାଁ ଛାଡ଼ି ସହରକୁ ଚାଲିଯାଉଛନ୍ତି।"

ମୋ ମନରେ ସଂଶୟ ହେଲା। ମୁଁ କହିଲି, "ଯେଉଁମାନେ ପାଣି, ପବନ, ଚିକିତ୍ସାଦି ଭଲ ପାଇବେ ଓ ପିଲାଙ୍କର ପଢ଼ିବାର ସୁବିଧା ହେବ ବୋଲି ସହରରେ ଯାଇ ରହୁଛନ୍ତି, ସେମାନେ କ'ଣ ଭୁଲ କରୁଛନ୍ତି ବୋଲି ଆପଣ ଭାବୁଛନ୍ତି ।"

ଦାସେ କହିଲେ, "ସେମାନେ ଭୁଲ କରୁଛନ୍ତି କି ଠିକ୍ କରୁଛନ୍ତି ତାହାର ପରୀକ୍ଷା ବେଳ ତ ଆସି ପହଞ୍ଚିଗଲାଣି। ସହରରେ ଯେଉଁମାନେ ଯାଇ ରହୁଛନ୍ତି ସେମାନେ ସହରର ଆଦିମ ବାସିନ୍ଦାଙ୍କ ସଙ୍ଗେ ମିଶିପାରୁନାହାନ୍ତି, ଗାଁରୁ ସମ୍ପର୍କ ଛାଡ଼ି ଦେଇଛନ୍ତି । ଅସଲ ଆକଟ ବେଳେ ଉଭୟ ସ୍ଥାନ ତାଙ୍କ ପକ୍ଷରେ ପ୍ରତିକୂଳ ହୋଇଯିବ। ସହରର ଜନତା ସାଙ୍ଗେ ମିଶି ହଟ୍ଟଗୋଳ କରିପାରିବେ ନାହିଁ କି ଗାଁରେ ଆସି ଲୋକଙ୍କର ଶ୍ରଦ୍ଧାର ଆଢ଼ୁଆଳରେ ନିରାପଦ ହୋଇ ରହିପାରିବେ ନାହିଁ । ଅଭାବ ଅନାଟନ ବେଳେ ଯେଉଁ ଜନବିକ୍ଷୋଭ ଜାଗିଉଠିବ, ଏଇମାନେ ପ୍ରଥମେ ହେବେ ତା'ର ଶିକାର। ସେଇ ସମ୍ଭାବନାରେ, ଲୋକେ ନିଜ ଗୋଷ୍ଠୀ ଭିତରେ ସମସ୍ତଙ୍କ ସଙ୍ଗେ ସମାନ ହୋଇ ଚଳନ୍ତି । ସମସ୍ତେ ସମାନ ହୋଇ ରହିବା, ସମାନ ଖାଦ୍ୟ ଖାଇବା, ସମାନ କାର୍ଯ୍ୟରେ ସମସ୍ତେ ସହଯୋଗ କରିବା ବୋଲି ବେଦକାଳରୁ ଯେଉଁ ନିର୍ଦ୍ଦେଶ ଅଛି, ତା'ର ମୂଳରେ ଏଇ ତତ୍ତ୍ୱ ଥିବାର ମୁଁ ମନେ କରୁଛି।"

ଦାସେ ଯାହା କହିଲେ ତାହା ବୁଝିଲି ଓ ଯାହା ନ କହିଲେ ତାହା ମୋର ଅଭିଜ୍ଞତାରୁ ମିଶାଇଲି । ମୋର ମନେ ହେଲା, ନକ୍ସଲବାଡ଼ିରେ ଯେଉଁ ହାଣକାଟ ଚାଲିଲା, ଶିଳ୍ପପତିଙ୍କ ବିରୁଦ୍ଧରେ ଯେଉଁ ବିକ୍ଷୋଭ ଚାଲିଛି—ସେ ସବୁର ମୂଳରେ ଏହି ଏକକଥା—ନିଜ ବେଷ୍ଟନୀରେ ନିଜକୁ ଖାପ ଖୁଆଇ ନ ଚଳିବାରୁ ନିଜର ପଡ଼ୋଶୀଙ୍କଠାରୁ ଅଧିକ ସୁଖରେ ରହିବାକୁ ଆକାଂକ୍ଷୀ ହେବାରୁ, ସମାଜର ଉଚ୍ଚସ୍ତରରେ ଯେଉଁମାନେ ଅଛନ୍ତି ସେମାନେ ନିଜ ମୁଣ୍ଡ ଉପରକୁ ବିପଦ ଡାକି ଆଣୁଛନ୍ତି ଓ ତଳସ୍ତରରେ ଯେଉଁମାନେ ଅଛନ୍ତି ସେମାନଙ୍କ ହୃଦୟରେ ଏ ପର୍ଯ୍ୟନ୍ତ ସୁପ୍ତ ହୋଇ ରହିଥିବା ଦୁଷ୍ଟ ବୃତ୍ତିକୁ ଉସ୍କାଇ ଦେଉଛନ୍ତି ।

ମୁଁ ପଚାରିଲି—

"ଆପଣ କ'ଣ ବିଚାରୁଛନ୍ତି, ଏ ଅବସ୍ଥାର ସମାଧାନ ହେବ, ନା ଏହିପରି ମାନବ ସଭ୍ୟତା ଲୋପ ପାଇଯିବ ?"

ଦାସେ କହିଲେ, "ସେ ତ ଆଉ ଗୋଟିଏ ନୂଆ ପ୍ରଶ୍ନ । ଏହାର ବିଚାର ପଛକୁ ରହୁ । ମାନବ ସଭ୍ୟତା ବୋଲି ଆପଣ ଯାହାକୁ କହୁଛନ୍ତି ତା' କ'ଣ ସତେ 'ସଭ୍ୟତା' ? ସେ ଯେତେ ଶୀଘ୍ର ଲୋପ ହେବ, ସେତେ ଶୀଘ୍ର ସୁସ୍ଥ ସମାଜ ଗଢ଼ି ଉଠିବାର ଅବକାଶ ଆସିବ ବୋଲି ମୁଁ ବିଚାରୁଛି । କିନ୍ତୁ ଏ ବିଷୟରେ ଆଲୋଚନା ପଛକୁ ରହୁ । ବର୍ତ୍ତମାନ ଆଉ ଚପୁ କୁଟିଲେ, ସମସ୍ତଙ୍କ ହାଣ୍ଡିଶାଳରେ ବିପ୍ଳବର ଅଙ୍କୁରୋଦ୍‌ଗମ ହେବ ।"

ମହାପାତ୍ରେ କହିଲେ, "ଆମକୁ ସେ ଆଶଙ୍କାରୁ ରିହାତି ମିଳିଛି ।"

ବାହିନୀପତି ଉଠୁ ଉଠୁ କହିଲେ, "ତୁମ ହାଣ୍ଡିଶାଳରେ ନ ହେଲେ ବି ବାଡ଼ିଆଡ଼େ ବିପ୍ଳବ ଆରମ୍ଭ ହୋଇସିବଣି, ଯାଅ ଦେଖିବ । ମୁଁ ଆସିଲାବେଳେ ଲକ୍ଷ୍ୟ କରିଥିଲି, ତୁମ ଅତିଥି କେତେ ଜଣ ତୁମ ବାଡ଼ିରେ ପଶୁଥିଲେ ।"

ପରେ ଜାଣିବାକୁ ପାଇଥିଲି, ମହାପାତ୍ରେ ପ୍ରତ୍ୟହ ସକାଳ ଔଳା ବାଡ଼ି ଦୁଆରେ ଦୁଇଚାରିଜଣଙ୍କୁ ଅନ୍ନଦାନ କଲା ପରେ ଯାଇ ନିଜେ ଖାନ୍ତି ।

ସମସ୍ତେ ଗଲା ପରେ ମୁଁ ଦାସଙ୍କ ସଙ୍ଗେ ତାଙ୍କ ଘର ଭିତରକୁ ଯାଉ ଯାଉ କହିଲି, "ମୋତେ କିନ୍ତୁ ଗୋଟିଏ କଥା ଅଡ଼ୁଆ ଅଡୁଆ ଲାଗୁଛି । ଆପଣ ନିଜେ ଠାଏ ତିଅଣ ସାଙ୍ଗେ ଭାତ ଖାଉଛନ୍ତି, ମୋ'ପାଇଁ ହେଉଛି ଚାରି ତିଅଣ ପାଞ୍ଚ ଭଜା ।"

"ଓଃ, ସେ ପୁଣି ଗୋଟାଏ ଚର୍ଚ୍ଚାର ବିଷୟ ! ଆପଣ ଯେପରି ଖାଦ୍ୟରେ ଅଭ୍ୟସ୍ତ ବୋଲି ଆମ ଗୃହିଣୀ କଳ୍ପନା କରିଛନ୍ତି, ସେଇଆ ଦେଉଛନ୍ତି । ଯେଉଁ ଦିନ ଲକ୍ଷ୍ୟ କରିବେ ଯେ ଆପଣ ମୋ ପନ୍ଥୀ, ସେଦିନ ସମବ୍ୟବସ୍ଥା ହେବ ।"

ଗୃହାଭ୍ୟନ୍ତରରୁ ଉତ୍ତର ଆସିଲା, "ହଉ ସେତିକି ଥାଉ, ଦାଣ୍ଡରେ ହୋ ହୋ ହୋଇ ମନବୋଧ ହୋଇନାହିଁ ପରା, ଘର ଭିତରେ ସଭା କରିବାକୁ ଆରମ୍ଭ କରିଦେଲ । ପୂଜା ବଢ଼ାହେଲାଣି, ବେଗେ ଗୋଡ଼ ହାତ ଧୁଅ । ଆଜି ସେମିତି ଗୁଡ଼ାଏ ଚାଖି ବାହାର କଲେ ଦେଖିବ ।" ପରିଣାମ ଦେଖିବାକୁ ମୁଁ ବି ଗୋଡ଼ହାତ ଧୋଇବାକୁ ବାହାରିଲି ।

## ( ୪ )

ଦାସଙ୍କର ଅଭ୍ୟାସ, ଦିଅଁ ପୂଜା କରି ସାରି ଦାଣ୍ଡ ଦୁଆରକୁ ଯାଇ ମୁହୂର୍ତ୍ତେ ଠିଆ ହୁଅନ୍ତି ; କେହି ଭିକ୍ଷାରୀ ମିଳିଲେ ତାଙ୍କର ଖାଇବା ବ୍ୟବସ୍ଥା କରି ସାରିଲା ପରେ ନିଜେ ଖାଇ ବସନ୍ତି । ତାଙ୍କଠାରୁ ଶୁଣିଛି, ଏହା ତାଙ୍କ ଘରେ ପୁରୁଷାନୁକ୍ରମେ ଚାଲି ଆସୁଛି । ତିନି ପୁରୁଷ ପୂର୍ବେ ପ୍ରାୟ ସମସ୍ତଙ୍କର ଏଇ ନୀତି ଥିଲା । କାଳକ୍ରମେ, ଅଭାବ ଯୋଗୁଁ ବା ଅଭାବ-ବୋଧ ପ୍ରବଳ ହେବା ଯୋଗୁଁ, ଏହା ଲୁପ୍ତ ହେବା ଉପରେ ! ତଥାପି ମୁଁ ଏ ଗ୍ରାମରେ ଲକ୍ଷ୍ୟ କରୁଛି ପୂର୍ବର ସଂସ୍କାର ଫଳରେ ଆତିଥେୟତା କିଞ୍ଚିତ ମାତ୍ରାରେ ହେଲେ ବି ରହିଛି । ଦାସଙ୍କ ସାଇକୁ ଯେତେ ଭିଖାରୀ ଦିନ ଭିତରେ ଆସନ୍ତି ଆଉ କେଉଁଠି ସେତେ ଦେଖି ନାହିଁ । ଚକୁଳିଆ ପଣ୍ଡା, ନାଥ ଯୋଗୀ, ସବାଖିଆ କେଳା, ସାଧାରଣ ଦୁଃଖୀ ରଙ୍କୀ ସଭିଙ୍କୁ ଛୁଇଁ ଗଡ଼ିବା ପାଇଁ ଧାଡ଼ି ଲାଗିଥାନ୍ତି ; କିଏ ମୁଠିଏ ଖାଇବାକୁ ଦିଏ, କିଏ ବା ଦି'ଟା ଚାଉଳ ପକାଇଦିଏ । ଶୁଣିଲି ଆଜିକାଲି ବେଶି ଗୃହସ୍ଥ କାହାକୁ ପଙ୍କ୍ତିଏ ପେଟପୂରା ଖାଇ-ବାକୁ ଦେଉନାହାନ୍ତି । ଦାସଙ୍କ ପିଲାଦିନେ ଏତେ ଲୋକ ମାଗି ବୁଲି ନ ଥିଲେ ; କିନ୍ତୁ ଯେ ଖାଇବାକୁ ପଙ୍କ୍ତିଏ ମାଗୁଥିଲା ସେ କ୍ୱଚିତ୍ ନିରାଶ ହେଉଥିଲା ।

ଏଇ ପ୍ରସଙ୍ଗରେ ଦାସେ ତାଙ୍କ ଜେଜେବାପାଙ୍କ କଥା କହୁଥିଲେ । ସେ ପ୍ରତ୍ୟହ ପୂର୍ବାହ୍ଣରେ ପୂଜା କରିସାରି ଦାଣ୍ଡ ଦୁଆରକୁ ଆସି ଦଣ୍ଡେ ଠିଆ ହୁଅନ୍ତି—ଗୋଦୋହନ ମାତ୍ର ସମୟ ଭିକ୍ଷାରୀଙ୍କ ପ୍ରତୀକ୍ଷା କରିବ ବୋଲି ପରା ଶାସ୍ତ୍ରରେ ଅଛି । ତା' ପରେ ଖାଇବାକୁ ଘର ଭିତରକୁ ଆସନ୍ତି । ସେ ଖାଇବା ସମୟରେ ଦାଣ୍ଡ ଦୁଆରେ ଯଦି ଭିଖାରୀ ଡାକିଲା ତେବେ ସେ ଖାଇବାଠାରୁ ଉଠିଯାନ୍ତି । ସନ୍ଧ୍ୟା ପୂର୍ବରୁ ଆଉ ଥରେ ଖାଇ ବସିବେ ନାହିଁ — ତେଣୁ ଉପବାସରେ ରହିବାକୁ ହୁଏ । ଦାସଙ୍କ ବୋଉ, ଶଶୁରଙ୍କପାଇଁ ଠା' ପିଢ଼ା କଲା ବେଳେ ଦାସଙ୍କୁ ବରଗି ଦିଅନ୍ତି ଦାଣ୍ଡଦୁଆରେ ଯାଇ ବସିବାକୁ । ଯଦି କିଏ ଭିଖ ମାଗି ଆସିଲା, ତେବେ ତାଙ୍କୁ ଅନୁନୟ ବିନୟ କରି କହନ୍ତି, 'ବାପା ଖାଉଛନ୍ତି, ତୁ' ପାଟି କରନା ; ବୋଉ ଏଇଲେ ତୋ' ପାଇଁ ଖାଇବାକୁ ଦେବ' । ବହୁ ଦିନ ବୁଢ଼ା ଖାଇକରି ଉଠିଲା ବେଳକୁ ଦାସେ ଦାଣ୍ଡ ଦୁଆରେ ଏକାଧିକ ଭିକ୍ଷାରୀଙ୍କୁ ଅଗୁଳିକରି ବସାଇଥାନ୍ତି । ଦିନେ ସାଇମୁଣ୍ଡରେ ସାପଖେଳା ହେଉଥିଲା, ଦାସେ ସେ ଆକର୍ଷଣ ଏଡ଼ି ପାରିଲେ ନାହିଁ । ସାପଖେଳାରୁ ଫେରିଲା ବେଳକୁ ତୁମୂଳ କାଣ୍ଡ । ଭିଖାରୀଟିଏ ବାରମ୍ବାର 'ଭିଖ ଦିଅ' 'ଭିଖ ଦିଅ' ବୋଲି ପାଟି କରିବାରେ ଦାସଙ୍କ ଜେଜେ-ବାପା ଖାଇବାଠାରୁ ଉଠି ପଡ଼ି ରାଗରେ ଭାତ ତରକାରୀପୂର୍ଣ୍ଣ ଥାଳି ନେଇ ଆଣି ଭିଖାରୀଟି ଉପରେ କୁଢ଼େଇଦେଲେ । ଦାସେ ଘେରପରି ଘରେ ଆସି ପଶିଲା ବେଳକୁ, କ୍ଷଣକୋପୀ ବୁଢ଼ାଙ୍କର କ୍ରୋଧ ଶାନ୍ତ ହୋଇଥାଏ । ସେ ପାଣି ଗଡ଼େଇ ଦେଉଥାନ୍ତି, ଭିଖାରୀ ଦେହରୁ

ଅଇଁଣ୍ଠା ଧୋଇବାକୁ । ଦାସଙ୍କ ବୋଉ ତାଙ୍କୁ ଶାସ୍ତି ଦେବାକୁ ବସିଲା ବେଳକୁ ବୁଢ଼ା ବାରଣ କଲେ, "ପିଲାଲୋକ, ସାପଖେଳା ଦେଖିବାକୁ ଚାଲିଗଲା ତ କ'ଣ ହେଲା ? ଏତେ ରାଗ ହେଉଛୁ କାହିଁକି ? ମୁଁ ଅଧାରୁ ବେଶି ଖାଇଦେଇଛୁ ଯେ !" ପ୍ରକୃତରେ ସେ ମାତ୍ର ଦୁଇଗୁଣ୍ଡା ଖାଉଥାନ୍ତି ।

ଭିଖାରୀ ବୁଢ଼ାଟି ଆପତ୍ତି କରି କହିଲା, "ଗୋସେଇଁ, ବୋହୂଙ୍କୁ ରାଗ ହୋ' ନା' ବୋଲି ତ କହୁନ୍ତ, ତମେ ଉଠିଲେ କ'ଣ କଲ ? କେତେ ଅନ୍ନ ଫୋପାଡ଼ିଦେଲ କହିଲ ? ମୁଁ ତମ ଉଚ୍ଛିଷ୍ଟ ଚୁଂଟେ ବି ପାଇ ପାରିଲିନାହିଁ ।" ଭିଖାରୀ ବୁଢ଼ା ତଳେ ବୁଣି ଯାଇଥିବା ଭାତ ଗୋଟାଇ କାନରେ ବାନ୍ଧୁଥାଏ ।

ଜେଜେ ବାପା ହସି ହସି କହିଲେ, "ଆଉ ଟିକିଏ ଗଲାରୁ ତ ପୁଅ ବୋହୂ ମୋତେ ଆପତ୍ତି କରିବେ ଲାଗିଲ ବୋଲି । ମୂଳରୁ ତୁ' ଚଣ୍ଡାଳ ଆପତ୍ତି କଲୁଣି । ଖାଇଲା ବେଳଟାରେ ଏମିତି ରଡ଼ି ଛାଡ଼ୁଥିଲୁ କାହିଁକି ? ହଉ, ଥାଉ, ତଳୁ ଭାତ ଗୋଟା ନାଁ । ବୋହୂ ତୋ' ପାଇଁ ଭାତ ଆଣିଲାଣି ।"

ସେତେବେଳକୁ ଦାସଙ୍କ ବୋଉ କବାଟ କୁଣରେ ଆସି ଠିଆ ହୋଇଥାନ୍ତି ଭିଖାରୀ ପାଇଁ ଭାତ ତରକାରୀ ଧରି । ବୁଢ଼ା ଅଗଣା କଦଳୀ ଗଛରୁ ପତ୍ର ଖଣ୍ଡେ କାଟି ଦାଣ୍ଡ ପିଣ୍ଡାରେ ପକାଇ ଦେଲେ, ପାଣି ଟାଳେ ଆଣି ଥୋଇ, ଭିଖାରୀ ପାଇଁ ଭାତ ବାଢ଼ି-ଦେଲେ । ଭାତର ପରିମାଣ ବେଶି ହୋଇଯାଉଛୁ ବୋଲି ଭିଖାରୀ ଆପତ୍ତି କରିବାରୁ କହିଲେ, "ତୋ' ପାଖରୁ ଫେରେଇ ନେଇ ଯାକୁ କରିବୁ କ'ଣ ? ଦେ' ଦେ' ଖାଇଦେ, ଥାଳୀ ମଙ୍ଗଟା ଦିହେରେ ବାଜିଥିଲେ ଚଳିଥାନ୍ତା ହୋଇଯାଇଥାନ୍ତୁ । ତୁ ଡାକିଲୁ ବୋଲି ମୁଁ ରାଗିନାହିଁ ମ, ଯେତେ ଛୁଆର ଟୋକାଟା ଉପରେ ରାଗିଗଲି—ଦୁଆରୁ କୁଆଡ଼େ ପଳାଇଲା ବୋଲି ।"

ଭିଖାରୀଟି କହିଲା, "ନାଇଁ, ମହାପ୍ରଭୁ, ତମର ଦୋଷ ନୁହେଁ କି ଟୋକା ଗୋସେଁଇଙ୍କର ଦୋଷ ନୁହେଁ । ଭାରି ଭୋକ ହେବାରୁ ମୁଁ ବଡ଼ ପାଟି କରିଦେଲି । ଆଜି ଅକଲ ପାଇଲି ମାହାପୁରୁ, ଆଉ ଦିନେ କାହା ଦୁଆରେ ଏମିତି ବେଳରେ ପାଟି କରିବି ନାଇଁ ।"

ଦାସେ ଏ କଥାଟି କହି ମନ୍ତବ୍ୟ ଦେଇଥିଲେ, "ସେ କାଳ ଗଲାଣି । ଆଜି ଭିଖାରୀ ଡାକିଲା ବୋଲି କେହି ଖାଇବା ଥାଳୀରୁ ଉଠିପିବେ ନାହିଁ ; ଭିଖାରୀ ମଧ୍ୟ ରାଗ ସହିବେ ନାହିଁ । ଆଜିର ଭିଖାରୀ ମୋ ଜେଜେଙ୍କୁ କହିଥାନ୍ତା, 'ନ ଦେବ ତ ନାଇଁ, ଏଡ଼େ ରାଗ କାହିଁକି' ?"

ଦାସଙ୍କଠାରୁ ଏକଥା ଶୁଣିଲାବେଳେ ମୋର ମନେ ହେଉଥିଲା, ଆଜିକାଲି ଆମେ ବାହାର ଭଦ୍ରତା ଦେଖାଇଁ ଦେଖାଉଁ ମନର ସମସ୍ତ ଆନ୍ତରିକତା ହରାଇ ଦେଉଥାଇଁ । ବାସ୍ତବିକ 'ଭଦ୍ରତା' ଜନସଂଟାହିଁ ପରସ୍ପର ମଧ୍ୟରେ ମସ୍ତ ଏକ ବାଡ଼ ସୃଷ୍ଟି କରୁଛି । ଆମେ ଭଦ୍ରତା

ଦେଖାଏ ପରକୁ, କିନ୍ତୁ ଭଦ୍ରତା ଅଭଦ୍ରତାର ବିଗ୍ଚର ନ ରଖି ସ୍ୱଚ୍ଛନ୍ଦ ବ୍ୟବହାର କରେ ଆପଣାର ଲୋକ ସଙ୍ଗେ । ଆପଣାର ଲୋକକୁ ଯେମିତି ରାଗ ହୁଏ, ସେମିତି ଆହା ବୋଲି କହେ । ସେ ଯାହାହେଉ, ଦାସଙ୍କ ସଙ୍ଗେ ଯେଉଁ କେତେଦିନ ଚଳିଲଣି, ତା' ଭିତରେ ଦେଖିଛି ସେ ପର ଆପଣା ଭେଦ ନ ରଖି ଦାଣ୍ଡ ଲୋକଙ୍କ ସଙ୍ଗେ ବି ବ୍ୟବହାର କରନ୍ତି । ଏହା ପିତୃପୁରୁଷଙ୍କ ସୁକୃତରୁ ହୋଇଛି ବୋଲି ମୋର ବିଶ୍ୱାସ ।

ଯେଉଁ ଦିନ କଥା କହୁଛି ସେ ଦିନ ଦାସେ ପୂଜା ସାରି ଦାଣ୍ଡକୁ ବାହାରୁଛନ୍ତି, ଦାଣ୍ଡରୁ ନାୟକଙ୍କ ପାଟି ଶୁଭିଲା, "ଦାସେ, ପୂଜାକରି ସାରିଲଣି ? ତୁମ ପାଇଁ ଗୋଟାଏ ଅତିଥି ଦେବତା ଆସିଛି । ମହାପାତ୍ରଙ୍କ ଆତିଥ୍ୟ ଅବଜ୍ଞା କରି ସିଏ ଆସିଛି । ତୁମ ଦଶା କ'ଣ ହେଉଛି ଦେଖ ।" ମୁଁ ବି ଦାଣ୍ଡ ଦୁଆରକୁ ଆସିଲି ।

ନାୟକେ ହସି ହସି ଆଗନ୍ତୁକ ଅତିଥିଦେବତା ଜଣେ ସ୍ତ୍ରୀ ଲୋକକୁ ଦେଖାଇ କହିଲେ, "ସିଏ ବିଗ୍ଚରା ଯାଇ ପହଞ୍ଚିଥିଲା ଅନ୍ୟମାନଙ୍କ ସଙ୍ଗେ ମହାପାତ୍ରଙ୍କ ବାଡ଼ିଆଡ଼େ । ତାଙ୍କର ଆଜିର ସମ୍ବାର ତ ପେଜଗୁପର ଭାତ ସାଗକୁ ଖଟା ଓ ଲୁଣ ଲଙ୍କା । ସ୍ତ୍ରୀ ପାଇଁ ଗୋଟାଏ ପତ୍ର ପଡ଼ିଲା; ଦୁଇ ଦିନ ହେଲା ଖାଇନାହିଁ ବୋଲି କହିବାରୁ ବେଶି ପୁଳାଏ ବି ବଢ଼ାହେଲା । କିନ୍ତୁ ତିଅଣ ନ ଥିବାରୁ ସିଏ ସେଠାରୁ ଉଠିଆସିଛି । 'ତିଅଣ ଟିକିଏ କରି ଦେବି' ବୋଲି ମହାପାତ୍ରେ କହୁ କହୁ ସିଏ ଉଠି ଗ୍ଚଲି ଆସିଛି ; 'ମୁଁ କ'ଣ କୁକୁର ଯେ ସ୍ତ୍ରୀକୁ ଖାଇବି ?' ମହାପାତ୍ରେ କ'ଣ, ଆଜି ସରିକି ଜାଣିଲ; ତୁମେ କ'ଣ ଦେଖାଯାଉ ଦେଖି । ମୁଁ ଆସୁଥିଲି ଭୋଜକଙ୍କଠାରୁ ଟିକିଏ ତିଅଣ ନେଇ ଦେବାକୁ । ମହାପାତ୍ରେ କହିଲେ, 'ସନ୍ଦେହରେ ସ୍ତ୍ରୀକୁ ନେଇଯାଅ । ମାଗି ଆଣିଲା ତିଅଣରେ ସ୍ତ୍ରୀର ଚଳିଲାପରି ଲାଗୁନାହିଁ' । ସେ ଆସିଥାନ୍ତେ ଯେ ଅଭ୍ୟାଗତଙ୍କ ଲଟରୀ ଏ ପର୍ଯ୍ୟନ୍ତ ଲଗିଛି । ପୁଣି ବିଚରା କେବେ ବି ଖାଇନାହାନ୍ତି । ଆସିଲେ ତୁମେ ତାଙ୍କୁ ଜବରଦସ୍ତି ଖୋଇବ ବୋଲି ସେ ରହିଲେ, ଖାଇସାରି ଆସିବେ ।"

ଦାସେ ଆଗନ୍ତୁକାକୁ ବସିବାକୁ କହି ପଗ୍ଚରିଲେ, "ମହାପାତ୍ରେ ଆଜି ଆମ ଦୁଆରେ ସକାଳଯାକ ବସିଥିବାରୁ ତିଅଣ ଫିଅଣ କିଛି କରିପାରିଲେ ନାହିଁ ପରା ?"

ନାୟକେ କହିଲେ, "ସେ ଯେଉଁ ଫିଅଣ କରନ୍ତି, ତା' କଣ ସ୍ତ୍ରୀକୁ ରୁଚିଥାନ୍ତା ? ତାଙ୍କର ପ୍ରତ୍ୟହ ବାଇଗଣ ବା କଖାରୁ ପୋଡ଼ାଟାଏ । ଆଜି ତା' ବଦଳ ଚଳିବ କଞ୍ଚା ପିଆଜ ଓ ତୁମଘରୁ ଯାଇଥିବା ଆଗ୍ଚର । ଭାତରେ ପାଣି ପୂରେଇ ଖାଇଲେ ଆଉ ତିଅଣ କାହିଁକି ଦରକାର ?"

ମୁଁ କହିଲି, "ସିଏ ତ ଏ ସ୍ଥାନୀୟ ପରି ଜଣାଯାଉ ନାହିଁ । ଏ ବୋଧେ ପଞ୍ଜାବୀ କିମ୍ବା ଦିଲ୍ଲୀ ଆଗ୍ରା ତରଫର ସ୍ତ୍ରୀ ଲୋକ । ତିଅଣ ଖୋଜି ଖୋଜି ଏଣିକି ବାଟ ଆସିଗଲାଣି !"

ଦାସେ ଓ ନାୟକେ ଉଭୟେ ହସିଲେ । ଦାସେ କହିଲେ, "ଜାଣିଲେ, ଦେଶକେ ଫାଙ୍କ୍, ନଈକେ ବାଙ୍କ । ରାଜ୍ୟରୁ ରାଜ୍ୟ ଚଳଣିରେ ଯେପରି ଗ୍ଚଡ଼ୁଛି, ମଣିଷକୁ ମଣିଷ

ରୁଚରେ ସେହିପରି ପୃଥକ୍ । ହୁଏତ ବଡ଼ ଲୋକର ଝିଅ ବୋଲି ହୋଇଥିବ, ପିଲାଦିନୁ ଯେପରି ଖାଇଆସିଛି ସେ ଅଭ୍ୟାସ ଛାଡ଼ିପାରୁନାହିଁ ।"

ଏତିକିବେଳେ ଆମ ପଛଆଡ଼ୁ ଉପର ଘରର କବାଟ କୋଣରୁ ଆବାଜ ଆସିଲା, "ଯେମିତି ତୁମେ ଭଡ଼ର ଭଡ଼ର ହେବା ଛାଡ଼ି ପାରୁନାହଁ । ଧନ୍ୟ କହିବା ତୁମକୁ । ସକାଳୁ ଏତେବେଳଯାଏ ଗପିଲଣି, ମୁଣ୍ଡ କିଛି ହେଉନାହିଁ···ମୁଁ ତ ବିରକ୍ତ ହେଉଛି, ଗୁଡ଼ାଏ ଗପିବାରୁ ତୁମର ଅକଲ ଉଭେଇଗଲାଣି । ମାଇକିନିଆ ଝିଅଟିଏ ଶୋକରେ ପୁଞ୍ଜେ ଖାଇବାକୁ ମାଗୁଛି, ହେଲା ଏବେ ତିଅଣ ଟିକିଏ ଜହ୍ନ ନ ହେଲେ ଖାଇ ନ ପାରୁଛି; ଏଇଥି ପାଇଁ ତମେ ବୁଢ଼ା ମିଣିପିଗୁଡ଼ାଏ ତାକୁ ବେଢ଼ି ଯାଇ ଶାସ୍ତ୍ର ଚର୍ଚ୍ଚା କରୁଛ ! ବିଦେଶୀ ଲୋକ ତମ କଥା ବୁଝୁ ନ ଥିବ ; ଦୈବାତ୍ ଯେବେ ବୁଝୁଥିବ ?"

ଆଗନ୍ତୁକାର ସ୍ୱର ଫିଟିଲା, "ମୁଁ ତମ କଥା ବୁଝିପାରୁଛି ମା ! ତମ ଏଇ ଦେଶରେ ମୁଁ ଦଶବର୍ଷ ରହିଲଣି । ଏଠେଇ ତ ଦୁଆରେ ବସିବାକୁ ଦେଉଛନ୍ତି ; ଖାଇବାକୁ ଯାଚୁଛନ୍ତି । ପାଖଆଖ ଗାଁମାନଙ୍କରେ ପିଲେ ବସେଇ ଉଠେଇ ଦେଉନାହାନ୍ତି ।"

ମା' ଆଦେଶ ଦେଲେ, "ହଉ, ତୁ ଏଇବାଟେ ଆ ବାଡ଼ିଆଡ଼କୁ । ଏମାନେ ଖାଇ ସାରନ୍ତୁ କି ତୁ ଖାଇବୁ, ଆମେ ସବୁ ଖାଇବୁ ।"

ସ୍ତ୍ରୀ ଲୋକଟି ପୋଷା କୁକୁର ପରି ମା'ଙ୍କ ସ୍ୱର ଲକ୍ଷ୍ୟ କରି ଚାଲିଲା । ଆମେ ଯାଇ ଖାଇ ବସିଲୁ ପାଣିରେ ଭିଜା ଯାଇଥିବା ବରଡ଼ି ପରି । ନାୟକେ ଖାଇ ସାରିଥିଲେ; ଆମ ପାଖରେ ଆସି ବସିଲେ ।

ଆମେ ଦୁହେଁ ନୀରବରେ ଖାଇଲୁ । ଦାସେ କହନ୍ତି, ବାର ବର୍ଷ ନୀରବରେ ବସି ଖାଇଲେ ସ୍ୱର୍ଗଲୋକ ମିଳେ । ସ୍ୱର୍ଗର ଭୌଗୋଳିକ ସ୍ଥିତି ମୋତେ ତ ଜଣାନାହିଁ, ଆଉ କାହାକୁ ଜଣାଅଛି ବୋଲି ମନେ ହେଉନାହିଁ । କିନ୍ତୁ ନୀରବରେ ଖାଇବା ଅଭ୍ୟାସ କଲେ ଭାତ ତିଅଣକୁ ଖୁଣିବା ବନ୍ଦ ହେବାରୁ ଘର ସ୍ୱର୍ଗ ପାଲଟିଯାଉଥିବ ବୋଲି ମୋର ମନେ ହେଉଛି । ଦାସେ ତ ଭାତ ତିଅଣ ବିଷୟରେ ଆଲୋଚନା କରନ୍ତି ନାହିଁ; ମୁଁ ବା ନାୟକେ କିଛି କଥାବାର୍ତ୍ତା ହୋଇଥାନ୍ତୁ, ଅନ୍ଦର ମହଲର କଶାଘାତ ଭୟରେ ତୁନି ଥାଉଁ ।

କିନ୍ତୁ ସମସ୍ତଙ୍କ ମନରେ ଯେ ସେଇ ସ୍ତ୍ରୀ ଲୋକଟି ଥିଲା ସେ କଥା ଖାଇସାରି ଦାଣ୍ଡ ଦୁଆରେ ଯାଇ ବସିବା ମାତ୍ରେ ଜଣାପଡ଼ିଲା । ସେତେବେଳକୁ ମହାପାତ୍ରେ ଆସି ପହଞ୍ଚିଥାନ୍ତି । ସେ କଥା ଆରମ୍ଭ କଲେ—ଭାଉଜ ଅଭ୍ୟାଗତାର ଚର୍ଚ୍ଚା କରୁଛନ୍ତି ତ ? ତା'ର ଦୋହଦ ଲକ୍ଷଣ ଦେଖି ତମ ଆଡ଼କୁ ବାଗେଇ ଦେଲି ।

ନାୟକେ କହିଲେ, "ଆମ ଦୃଷ୍ଟିରେ ତ ଏ କଥା ପଡ଼ୁନାହିଁ । ଯାହା ନଜର ପିନା ଯହିଁରେ ! ଆଉଜି ଯାଇଥିଲେ ତ ଭଲ ହୋଇଥାନ୍ତା । ତମର ସେମିତି ଜଣେ ଦରକାର । ଥରେ ପିନା ଡାଲମା ଟିକିଏ କରିବାକୁ ପଡ଼ୁଥାନ୍ତା, ପ୍ରତ୍ୟହ ବସି ପଞ୍ଜାବୀ ତିଅଣ ହାପୁଚୁଥାନ୍ତ, ଚଲ ଫୁଙ୍କାରୁ ରକ୍ଷା ମିଳିଥାନ୍ତା ।"

ମହାପାତ୍ରେ କହିଲେ, "ତମର ବି ପିହିଲ ପଡ଼ିଥାନ୍ତା । ବାହ୍ମୀପତି ପ୍ରାୟଶ୍ଚିତ୍ତ ବ୍ୟବସ୍ଥା କରିଥାନ୍ତେ, ଖିରିପିଠା ଖାଇଥାନ୍ତ ।"

ନାୟକେ କହିଲେ, "ସୂକ୍ଷ୍ମ ବିଧିରେ ହାତଗଣ୍ଡି ଟା ପକେଇ ମଧ ବଳେ ଦି' ବଳ ମିଳିଥାନ୍ତା ।"

ବାହ୍ମୀପତିଏ ଦାଣ୍ଡ ଦୁଆରକୁ ବାହାରିଥିଲେ, ନିଜ ନାମ ପଡ଼ିବାରୁ ସେଇଠାରୁ ପାଛି କରି କରି ଆସିଲେ, "କିଏ ମହାପାତ୍ରେ ! ଆମ ନାମ କାହିଁକି ପଡ଼ିଲା ? କ'ଣ ଆମେ ପ୍ରାୟଶ୍ଚିତ୍ତ ବ୍ୟବସ୍ଥା ଦେଇ ତଣ୍ଡିଥାନ୍ତୁ ।" ଘଟଣାଟାର ଇସାରା ପାଇ କହିଲେ, "ହାତଗଣ୍ଡି ଯଦି ପଡ଼ିଯାନ୍ତା, ତେବେ ଆଉ ପ୍ରାୟଶ୍ଚିତ୍ତ କାହିଁକି ? ଅନୁଲୋମ ବିବାହ ତ ଶାସ୍ତ୍ରସମ୍ମତ । ସ୍ତ୍ରୀ ରତ୍ନଂ ଦୁଷ୍କୁଳାଦପି । କନ୍ୟା ଦେଖିବା ଆମ ଭାଗ୍ୟରେ ଜୁଟିଲା ନାହିଁ ଯାହା ।"

ମହାପାତ୍ରେ କହିଲେ, "ଭାଗ୍ୟ ଥିଲେ ଜୁଟିପାରେ । ପକ୍ଷୀଟି ଉଡ଼ିଯାଇ ନାହିଁ । ବର୍ତ୍ତମାନ ଦାସିଆଣୀ ଭଉଜଙ୍କର ଆତିଥ୍ୟ ଉପଭୋଗ କରୁଛି ବୋଧହୁଏ ।"

ନାୟକେ କହିଲେ, "ଯଦି ସ୍ଥାୟୀ ଆତିଥ୍ୟ ହୋଇଯାଏ ତେବେ ତ ଅନ୍ଦର ମହଲରେ ଅସୂର୍ଯ୍ୟଂପଶ୍ୟା ହୋଇଯିବ ; ନାହିଁ ଯଦି କ୍ଷଣସ୍ଥାୟୀ ତେବେ ତ ବାଡ଼ିବାଟେ ବିଦା । ଏତେଇ ବସି ଦେଖିବ କ'ଣ ? ବାଡ଼ିପଟ କନ୍ଧକୁ ଚାଲିଯାଅ ।"

ଦାସେ କଥାର ଗତିକୁ ଲେଉଟାଇ ଦେଲେ, "ଆଲୋଚନାଟା କ୍ରମେ ଲଘୁତର ହୋଇଯାଉଛି । ଖାଇବା ପୂର୍ବରୁ ଆମର ଘରଆଡ଼ୁ ଯେଉଁ ଟକ ମନ୍ତବ୍ୟ ମିଳିଥିଲା ତାହା ଏକାବେଳକେ ଅଯଥାର୍ଥ ନୁହେଁ ।"

ମହାପାତ୍ରେ କହିଲେ, "ଖାଇବା ପୂର୍ବରୁ ଟକ ମିଳିଥିଲା ? କହନ୍ତି ପରା 'ଅନ୍ତେ ଟକ' !"

ବାହ୍ମୀପତି କହିଲେ, 'ଅଘଟଣ କ'ଣ ହେଲା କି ? ଖାଇବା ପୂର୍ବରୁ ଟକ ଖାଇଲେ ଯିନା ସେ ଅନ୍ନକୁ ଆଗ ଯିବ, ତା' ଉପରେ ସ୍ୱାଦିଷ୍ଟ ଜିନିଷ ପଡ଼ିବ ; ଶେଷରେ ଦନ୍ତେ ଲୁଣ—ଅର୍ଥାତ୍, ତୋଟିରେ ଗଳିବାକୁ ଆଉ ସ୍ଥାନ ନ ଥିବା କାରଣ, ଲୁଣ ବିଚାରାକୁ ଦାନ୍ତରେ ହିଁ ଆଶ୍ରୟ ନେବାକୁ ହେବ । ତେବେ ଆମ ପକ୍ଷେ ଏହା ଅବାନ୍ତର, ବେଦାନ୍ତୀ ହୋଇଥିବାରୁ ।" ସମସ୍ତେ ହସିଲେ । ସରସା ଦାନ୍ତ ଯୋଗୁଁ ବାହ୍ମୀପତିଏ ଯୌବନରୁ ବେଦାନ୍ତୀ ।

ଦାସେ କହିଲେ, "ଲଘୁତରରୁ 'ତମ'କୁ ଚାଲିଲା । ମୁଁ କ'ଣ କହୁଥିଲି କି…"

ସମସ୍ତେ ତୁନି ହୋଇଗଲେ । ଦାସେ କହି ଚାଲିଲେ, "ଦେଖୁଥାଇଁ, ଏକକଣକଥା ହୋଇ ପଡ଼ିଥିବା ଆମ ଏ ଗାଁକୁ ମଧ ବଙ୍ଗାଳୀ, ହିନ୍ଦୁସ୍ଥାନୀ, ତେଲେଙ୍ଗା ମାଇକିନିଆ ଭିକ ମାଗିବାକୁ ଆସୁଛନ୍ତି । କିନ୍ତୁ ଆମ ରାଜ୍ୟର ମାଇକିନିଆ ପେଟପାଇଁ ଦେଶାନ୍ତର ଯିବା ତ ଦେଖାନାଇଁ ।"

ବାହ୍ମୀପତି କହିଲେ, "ତମେ ଯିନା ଭାରତବର୍ଷର ଚାରିଆଡ଼ ବୁଲିଛ, ଦେଖିଛ ; ଆମର ତ ଏଇଠାରେ ଆରମ୍ଭ, ଏଇଠାରେ ଶେଷ ।"

ଦାସେ କହିଲେ, "ତୁମେ କ'ଣ ଗୟାଶ୍ରାଦ୍ଧ, ଗଙ୍ଗାସ୍ନାନ କରିବାକୁ ଯାଇନାହଁ, ଗୋଦାବରୀ ସ୍ଥାନକୁ ଧରି ଏବେ ଚୂଡ଼ାମଣି ଯୋଗରେ ଯାଇଥିଲ ? ଦିଗ୍‌ଭ୍ରମଥିବା ଓଡ଼ିଆ ମାଇକିନିଆ ସେଠି କେଉଁଠି ଭିଖ ମାଗିବାର ଦେଖିଛ ?"

ମୁଁ ଚୁପ ହେଲି । ମୁଁ ତ ସୁରଆଡ଼ ବୁଲିଆସିଲିଣି ; ନିରାଶ୍ରିତା ଓଡ଼ିଆ ସ୍ତ୍ରୀଲୋକ ରାଜ୍ୟାନ୍ତରରେ ଏଭଳି ବୁଲିବାର କେଉଁଠି ହେଲେ ଦେଖିନାହିଁ । ଓଡ଼ିଆ ପୁରୁଷ ଲୋକେ ପେଟ ପାଇଁ ସିମଲାଠାରୁ ରେଙ୍ଗୁନ୍ ଯାଏ ଯିବାର ଦେଖିଛି, କିନ୍ତୁ ଓଡ଼ିଆ ମାଇକିନିଆଁ ତ ପ୍ରାୟ ଘରୁ ଗୋଡ଼ କାଢ଼ନ୍ତି ନାହିଁ ଏକୁଟିଆ । ବିଦେଶରେ ଓଡ଼ିଆ ଲୋକେ ସେଠାର ସ୍ତ୍ରୀ ଲୋକଙ୍କୁ ପ୍ରବାସପତ୍ନୀ କରି ରଖିବାର ଦେଖିଛି, କିନ୍ତୁ ଏ ରାଜ୍ୟରେ ଆସି ବାସ କରିଥିବା ପରଦେଶୀ ଲୋକେ ଓଡ଼ିଆ ମାଇକିନିଆଁ ରଖିବାର କ୍ୱଚିତ୍ ଆଖିରେ ପଡ଼ୁଛି । ଏହାର କାରଣ କ'ଣ ? ଅନ୍ଧାରରେ ବାଡ଼ି ବୁଲେଇଲି ପରି କହିଲି, "ହୁଏତ ଆମ ସ୍ତ୍ରୀ ଲୋକେ ଅଶିକ୍ଷିତା ହୋଇଥିବାରୁ ଘରକୋଣରେ ପଡ଼ି ରହିବାକୁ ପସନ୍ଦ କରନ୍ତି ।"

ଦାସେ ଚକିତ ହେଲି ପରି କହିଲେ, "ଆପଣ କ'ଣ ମନେ କରୁଛନ୍ତି, ଏ ଯେଉଁ ଟୋକୀଟି ଆସିଛି, ଏହା ତା'ର ଶିକ୍ଷାର ଆଧିକ୍ୟ ଯୋଗୁଁ ?"

ମୋର ନିଦାନ ଭୁଲ ବୋଲି ବୁଝିଯାଇ ମୁଁ ତୁନି ହେଲି ।

ଦାସେ ନିଜକୁ ନିଜେ ପଚାରିଲି ପରି କହିଲେ, "ଆଜି କ'ଣ ଦାରିଦ୍ର୍ୟ ଯୋଗୁଁ ? ଦରିଦ୍ର ବୋଲି ତ ଆମେ ଭାରତବର୍ଷରେ ସାର୍ଟିଫିକେଟ ହାସଲ କରିଥାଉଁ । ଅଥଚ ମଧ୍ୟ ଦିଶୁଛି ଆମର ଗୃହପଟେ ସ୍ତ୍ରୀଲୋକେ ଦିନକୁ ପେଟପୂରି ବରେ ବି ଖାଉନାହାନ୍ତି ।"

ମହାପାତ୍ରେ କହିଲେ, "ଦରିଦ୍ର ହେଲେ କ'ଣ ଲୋକେ ଘରର ଇଜ୍ଜତ ଦାଣ୍ଡରେ ପକାନ୍ତି ?"

ଦାସେ କହିଲେ, "ସେ କଥା ସତ । ଲୋକେ ବିଶେଷ କରି ସ୍ତ୍ରୀଲୋକେ, ଭୋକରେ ପଡ଼ି ରହନ୍ତି, ସହଜରେ ଦାଣ୍ଡକୁ ବାହାରନ୍ତି ନାହିଁ ।"

କିଛି ସମୟ ତୁନି ହୋଇ ବସି ସେ ପୁଣି କହିଲେ, "ଆଜିକାଲି ସାମାଜିକ ନିରାପତ୍ତା ବୋଲି ଗୋଟାଏ ଶବ୍ଦ ବାହାରିଛି । ଯେଉଁ ସମାଜରେ ସଂହତି ଅଛି, ଯେଉଁଠି ଲୋକେ ପଡ଼ିଶା ଘରର ସୁଖ ଦୁଃଖରେ ଅଳ୍ପ ବହୁତେ ଭାଗୀ ହୁଅନ୍ତି, ସେଠାରେ ସ୍ତ୍ରୀଲୋକେ ଗୋଷ୍ଠୀ ଛାଡ଼ି ବାହାରକୁ ଚାଲିଯିବା ବେଶି ନ ଦେଖାଯିବାର କଥା ।"

ମୁଁ ପଚାରିଲି, "ସାମାଜିକ ନିରାପତ୍ତା କ'ଣ ଖାଲି ଏଇ ସଙ୍ଗତରେ ଦେଖିବା ?"

ଦାସେ କହିଲେ, "ନା, ଯେଉଁଠି ସାଂପ୍ରଦାୟିକ ସଂଘର୍ଷ ଅଧିକ ସେଠାରେ ସାମାଜିକ ନିରାପତ୍ତା କମ ହେବ ହିଁ ହେବ । ଏ ଯେଉଁ ପଞ୍ଜାବ, ଶହ ଶହ ବର୍ଷ ହେଲା ସେଠାରେ ଭିନ୍ନ ଭିନ୍ନ ସଂସ୍କୃତିର ସଂଘର୍ଷ ଲାଗି ପରସ୍ପରର ସ୍ନେହ ସୌହାର୍ଦ୍ଦ୍ୟ ହୁଏତ କମି-ଯାଇଛି । ହିନ୍ଦୁ ବା ଶିଖର ମୁସଲମାନ ସଙ୍ଗେ ବୈର ଭାବ ଯୋଗୁଁ, କ୍ରମେ ତାହା ଆପସୁଟି ପଣରେ ରୂପାନ୍ତରିତ ହୋଇଥିବ ।"

ଏ କଥାଟା ମୋ ମନକୁ ପାଇଲା । ଘୃଣା ଓ ବିଦ୍ୱେଷ ଆଗ ଶତ୍ରୁ ପ୍ରତି ହୁଏ । ସେହି ତାମସିକ ବୃତ୍ତି ହୃଦୟର ସଦ୍‌ବୃତ୍ତି ସବୁକୁ ବହିଷ୍କାର କରିଦେବା ଫଳରେ ଶତ୍ରୁ ପ୍ରତି ହୋଇଥିବା ବିଦ୍ୱେଷ କ୍ରମେ ନିଜର ଭାଇ ଉପରକୁ ସଂକ୍ରମି ଯାଏ ବୋଲି ମୋର ବିଶ୍ୱାସ । ଯେଉଁଠି ସାଂପ୍ରଦାୟିକ ବିଦ୍ୱେଷ ବେଶି, ସେଠାରେ ଏକାନ୍ନବର୍ତ୍ତୀ ପରିବାରର ସଂଖ୍ୟା କମ ବୋଲି ତ ଦେଖାଯାଏ । ମୋର ଏ ଧାରଣା ମୁଁ ପ୍ରକାଶ କଲି ।

ମହାପାତ୍ରେ କହିଲେ, "ଉତ୍ତର ଭାରତରେ ସିନା ହିନ୍ଦୁ ମୁସଲମାନ ସଂଘର୍ଷରେ ପରିବାର ଓ ସମାଜ ଭାଂଗି ଯାଇଛି, ଦକ୍ଷିଣ ଭାରତରେ ତ ତାହା ନାହିଁ !"

ଦାସେ କହିଲେ, ସେଠାରେ ଆଉ ଗୋଟାଏ ସଂଘର୍ଷ—ଉଚ୍ଚ ନୀଚ ଜାତି ଭିତରେ ସମଜାସିର ଅଭାବ । ତେଲଙ୍ଗା ଦେଶରୁ ଯେ ଏତେ ଲୋକ ପଳାଇ ଆସୁଛନ୍ତି, ତାହାର କାରଣ କ'ଣ ? ଭିଖାରୀ କହ, ରିକ୍‌ସାବାଲା କହ—ଏମାନେ ସମସ୍ତେ ପ୍ରାୟ ନୀଚ ଜାତିର ଲୋକ । ସେଠାରେ ସେମାନଙ୍କ ପ୍ରତି ଭ୍ରାତୃଭାବ ଥିଲେ, ଘର ଛାଡ଼ି ପଳାଇ ଆସନ୍ତେ କାହିଁକି ?"

ମୁଁ କହିଲି, "ଆମ ଏଠାରୁ ତ ପୁଣି ମୂଲିଆ ଶ୍ରେଣୀର ଲୋକେ କଲିକତା, କାଳିମାଟି ଯାଉଛନ୍ତି, ରେଂଗୁନ୍ ଯାଉଥିଲେ !"

ଦାସେ କହିଲେ, "ଆଗରୁ ତ ଏ ବିଷୟ ପକାଇଥିଲେ । ପୁରୁଷ ଲୋକେ ଯାଉଛନ୍ତି କିନ୍ତୁ ତାଙ୍କର ସ୍ତ୍ରୀ ପିଲାଙ୍କୁ ଛାଡ଼ି । ସେମାନଙ୍କର ଗାଁରେ ସାମାଜିକ ନିରାପତ୍ତା ଓ ପ୍ରତିବେଶୀର ସହଯୋଗ ମିଳୁଥିବା ଭରସାରେ ତାଙ୍କର ସ୍ୱାମୀ ଓ ବାପ ଭାଇ ନିଶ୍ଚିନ୍ତରେ ଦାଣ୍ଡକୁ ଯାଉଛନ୍ତି । ସେଇତକ ଯେଉଁଦିନ ଅଭାବ ହେବ, ସେ ଦିନ ତେଲଙ୍ଗା ରିକ୍‌ସାବାଲାଙ୍କ ପରି ଏମାନେ ଘରଦ୍ୱାର ଛାଡ଼ି, ପିଲା ମାଇପ ଧରି ପଳାଇବେ ।"

ମହାପାତ୍ରେ କହିଲେ, "ପୁଣି ଗାଁରେ ଘର ଖଣ୍ଡିଏ ବି ଥିବାର ଗୃହ । ଆମ ରାଜ୍ୟରେ ଅଘରବାସୀଙ୍କର ସଂଖ୍ୟା ଖୁବ କମ୍ । କଟକ ପ୍ରଭୃତି ସହରମାନଙ୍କରେ ଢେଙ୍କାନାଳ, ବାଙ୍କୀ, ଦଶପଲ୍ଲା ପ୍ରଭୃତିରୁ ବି ଲୋକେ ଆସୁଛନ୍ତି, ରିକ୍‌ସା ଟାଣିବାକୁ—ସମସ୍ତେ ପ୍ରାୟ ଘରେ ପିଲାଙ୍କୁ ଛାଡ଼ି ଆସନ୍ତି ।"

ଦାସେ ଯୋଡ଼ି ଦେଲେ, "ଯେଉଁମାନେ ବିଦେଶ କରି ଯା'ନ୍ତି, ସେମାନଙ୍କର ମଧ୍ୟ ଭରସା ଥାଏ, ଦୁଇ ଚାରି ମାସ ଘରକୁ ଟଙ୍କା ନ ପଠାଇ ପାରିଲେ; ପିଲେ କାଳି ବାସି କରି, କାଢ଼ିଆ କରି, କ୍ୱଚିତ ମଗାଯାଚି କରି ମଧ୍ୟ ଚଳିଯିବେ । ଏଭଳି ଅନେକ ଘଟଣା ମୋ ଦୃଷ୍ଟିକୁ ଆସିଛି ।"

ନାୟକେ କହିଲେ, "ଖାଲି ଦୃଷ୍ଟିକୁ ଆସିଛି ବୋଲି କହୁଛ କାହିଁକି ! ଏଭଳି କେତେ ଲୋକଙ୍କ ଗରଜ ତୁମେ ନିଜେ ମେଣ୍ଟାଅ କହୁନାହିଁ ? ମହାପାତ୍ରଙ୍କର ତ ଏଇଆ ବୃତ୍ତି ।"

ମହାପାତ୍ରେ ଖେଙ୍କାରି ମିଶିଲେ, "ଖାଲି ଦାସେ, ମହାପାତ୍ରେ ତ ସବୁ କରି ଦେଉଛନ୍ତି ? ଖାଲି କ'ଣ ଅମର ଗାଁ କଥା ପଢ଼ୁଛ ? ଓଡ଼ିଶାର ଯହିଁ ଦେଖିବ, ସବୁଠି

ଅଳ୍ପ ବସ୍ତୁରେ ଏପରି ଚାଲିଛୁ । ମୁଁ ସିନା ଓଡ଼ିଶା ବାହାରକୁ ଯାଇନାହିଁ, ଓଡ଼ିଶାର ପ୍ରାୟ ସବୁ କିଛି ବିକିଛି ବିଷୟରେ ମୋର ତ ଧାରଣା ଅଛି ।"

ମୁଁ କହିଲି, "କିନ୍ତୁ ଏ ସଂସ୍କୃତିର ପରିବର୍ତ୍ତନ କ୍ଷିପ୍ରଗତିରେ ଚାଲିଛି । ଆଜି ଆଉ ପର ପ୍ରତି ଆପଣାର ହେବା ଲୋକ ବେଶି ଦିଶୁନାହାନ୍ତି । ମଝିରେ ମଝିରେ ଅନାହାର ମୃତ୍ୟୁ ସଂବାଦ ତ ପଢ଼ୁଥିବେ । ଅନାହାରରେ ମରୁଥିବା ଲୋକଙ୍କର ଫଟୋ କାଗଜରେ ବାହାରୁଥିବା ଦେଖୁଥିବେ ।"

ବାହାନୀପତି କହିଲେ, "ମୁଁ ସେ ସବୁ ଦେଖି କିଛି ବୁଝିପାରେ ନାହିଁ । ଯେ ଫଟୋ ଉଠାଇବାକୁ ଯା'ନ୍ତି, ସେମାନେ କ'ଣ ଲୋକଟି ଖାଇବାକୁ ନପାଇ ମରିବାଯାଏ ଅପେକ୍ଷା କରି ବସିଥାନ୍ତି ? ଫଟୋ ଯନ୍ତ୍ର, ଫଟୋ କାଗଜରେ ଯାହା ପଇସା ଖର୍ଚ୍ଚ ହେଉଛି, ସେତିକରେ ଖାଦ୍ୟ ଜିନିଷ, ଔଷଧ ପତ୍ର କିଣି ତ ବିଚରାକୁ ଦେଲେ ହୁଅନ୍ତା !"

ନାୟକେ କହିଲେ, "ସେମିତି ହେଲେ ଆଉ ଫଟୋ ଛପା ହୁଅନ୍ତା କେମିତି ? ବ୍ୟବସ୍ଥା ସଭାରେ ମୁଲତବି ପ୍ରସ୍ତାବ ହୁଅନ୍ତା କିମିତି ? ଘୋର ପାଗଳାମି ଚାଲିଛି ଚାରିଆଡ଼େ !"

ଦାସେ କହିଲେ, "ଏସବୁ ମୂଳରେ କ'ଣ ଅଛି ଜାଣ ? ଜୀବନର ମାନବୃଦ୍ଧି ବୋଲି ଯେଉଁ ଧୁଆ ଏଇଲାଗେ ଉଠିଛି, ତା'ରି ଯୋଗୁଁ ସମାଜର ତଳ ଶ୍ରେଣୀର ଲୋକଙ୍କର ନିର୍ଯ୍ୟାତନା ହେଉଛି । ଶିକ୍ଷିତ ଲୋକେ ନିଜର ଅଭାବ ପୂରଣ କରିବାରେ ଏତେ ବ୍ୟସ୍ତ ଯେ ପାଖରେ ଲୋକ ଖାଇବାକୁ ନପାଇ ମଲେ ମଧ୍ୟ, ତୁଣ୍ଡରେ ଟିକିଏ ଆହା ବୋଲି କହିବା ଠାରୁ ଆଉ ବିଶେଷ କରିପାରିବାକୁ ସମର୍ଥ ହେଉନାହାନ୍ତି । ମୋ ନିଜ ପିଲାଙ୍କର ଏଇ ସ୍ଥିତି ପାଇଁ ଥରେ ମୋତେ ଖୁଣିବାକୁ ପଡ଼ିଥିଲା । ମୋ ବଡ଼ ନାତିଟିର ଜନ୍ମନକ୍ଷତ୍ର ବେଳକୁ ପୁଅ ଆମର, ତା ପାଇଁ ଭଲ ମୋଜା, ଟୋପି ଓ କନାଯୋତା ହଳେ କିଣିକରି ଆଣିଥିଲା । ପ୍ୟାଣ୍ଟ କୁରୁତା ମୂଲିଆଙ୍କ ପିଲେ ପିନ୍ଧିଲେଣି, ମୋ ଆଖିକୁ ଦିଶିଲା ନାହିଁ । ମୋ' ବାପାଙ୍କ ଆଖିକୁ ଦିଶିଥାନ୍ତା ।"

ମୁଁ ପଚାରିଲି "କାହିଁକି ?"

ଦାସେ କହିଲେ, "ଆମ ପିଲାଦିନେ ଆମେ ସବୁ ପ୍ରାୟ ପାଞ୍ଚ ବର୍ଷ ଯାଏ ଉଲଙ୍ଗ ଲଙ୍ଗଳା ହୋଇ ବୁଲୁଥିଲୁଁ । ତା'ପରେ ୩/୪ ବର୍ଷ ଖଣ୍ଡେ ଖଣ୍ଡେ କୌପୀନ । ତା'ପରେ ଯାଇ ଲୁଗା ଓ ଗାମୁଛା । ନାତିର ଜନ୍ମନକ୍ଷତ୍ର ଦିନ ପୁଅକୁ ଏ କଥା କହି, ତା' ପୁଅର ଭଲ ମୋଜା, ଟୋପି ଓ ଯୋତାରେ ଅନ୍ତତଃ ଆଉ ଦିଓଟି ପିଲାଙ୍କର ଖଣ୍ଡେ ଖଣ୍ଡେ ପ୍ୟାଣ୍ଟ ହୋଇପାରିଥାନ୍ତା ବୋଲି ତାକୁ ହିସାବ ବତାଇଦେଲି ।"

ମହାପାତ୍ରେ କହିଲେ, "ସେ ଦିନ ମୁଁ ପରା ତୁମ ପାଖରେ ବସିଥିଲି । ସେତିକିରେ କିନ୍ତୁ ସମିର ଚଳଣି ଏକାବେଳକେ ବଦଳିଗଲା ।" ଏକଥା ଶୁଣି ମୋ ମନରେ ଗୁଡ଼ାଏ ପ୍ରଶ୍ନର ଉଦୟ ହେଲା ।

ସେଦିନ ଓଡ଼ିଶାଠାରୁ ଦାସେ ଗାଁର ଗୋଟାଏ କ'ଣ ସଭାକୁ ଯାଇଥାନ୍ତି ଯେ ରାତି ସାଢ଼େ ଆଠଟା ପର୍ଯ୍ୟନ୍ତ ଫେରି ନ ଥାନ୍ତି । ସେ ଚା' ତ ଖାଆନ୍ତି ନାହିଁ, କିନ୍ତୁ ନିୟମିତ ଭାବେ ସନ୍ଧ୍ୟାବେଳେ ଲେମ୍ବୁପାଣି ଟିକିଏ ପିଅନ୍ତି । ସନ୍ଧ୍ୟାବେଳେ ମୋତେ ଚା' ଟିକିଏ ମିଳିଲା ବେଳେ ମୁଁ ପଚାରିଥିଲି, ଲେମ୍ବୁ ପାଣି ଟିକିଏ ସଭାଠାକୁ ପଠାଇଦେବାକୁ । ଉତ୍ତର ପାଇଲି, ଆଜି ସେ ଲେମ୍ବୁପାଣି ପିଇବେ ନାହିଁ । ଏଥିରେ କୌଣସି ବିଶିଷ୍ଟ କାରଣ ଯେ ଥାଇପାରେ ଏହା ମୁଁ ଅନୁମାନ କରିବାର କଥା ନୁହେଁ । ମହାପାତ୍ରେ ସେତିକିବେଳେ ଆସି ପହଞ୍ଚି ନ ଥିଲେ ମୋର ଧାରଣା ରହିଯାଇଥାନ୍ତା ଯେ ଆଜି ଦେହରେ ଲେମ୍ବୁପାଣି ଚଳିବ ନାହିଁ ବୋଲି ମନେକରି ସେ ଆଗରୁ ମନା କରି ଦେଇଯାଇଛନ୍ତି ।

ମହାପାତ୍ରେ ସେତିକିବେଳେ ଆସି ମୋର ସେ ଆଶଙ୍କା ଦୂରକରି କହିଲେ, "ଦାସେ ପଚିଶ ଜଣଙ୍କ ସଭାରେ ବସିଥିଲାବେଳେ ପାନଖଣ୍ଡେ ବି ଲେଉଡ଼ନ୍ତି ନାହିଁ । ଲେମ୍ବୁପାଣି ପରି ବିଶିଷ୍ଟ ପାନୀୟ ଲେଉଡ଼ିବା ପ୍ରଶ୍ନ ତ ଉଠିବାର ନୁହେଁ ।"

ମୁଁ କହିଲି, "ମୁଁ ତ ମନେ କରେ, ସଭାରେ ବସି ପାନ ଖୋଳିବା, ଚା' ଖାଇବା-ଦ୍ୱାରା ସଭାର ଗୁରୁତ୍ୱ ନଷ୍ଟ ହୋଇଯାଏ । ଆଜିକାଲି ସଭାସମିତିମାନଙ୍କରେ ଆଲୋଚନାକୁ ସୁକର କରିବାକୁ ଚା' ବିସ୍କୁଟରେ ଯେପରି ଚର୍ଚ୍ଚା କରାଯାଉଛି ତାହା ମୋତେ ସୁଖ ଲାଗେ ନାହିଁ । ଚା', ବିସ୍କୁଟ, ଚିନାବାଦାମ, ଲଙ୍କାଆମ୍ବମଞ୍ଜିଭଜା ପରିବେଷଣବେଳେ ମୁଁ ମନେ-କରେ ଆଲୋଚ୍ୟ ବିଷୟଟା ମାମୁଲି ହୋଇଯାଉଛି ।"

ମହାପାତ୍ରେ କହିଲେ, "ସେ ତ ବୈଦେଶିକ ସଭ୍ୟତାରୁ ଗୋଟାଏ ଆହରଣ । ଶ୍ରାଦ୍ଧ, ଧର୍ମଶାସ୍ତ୍ର ପାରାୟଣ ଓ ଆଲୋଚନା ଇତ୍ୟାଦି କର୍ମରେ ଆମର ଓଲଟା ବ୍ୟବସ୍ଥା । ପେଟ ଖାଲି ରହିବା ଦରକାର ଓ ଇନ୍ଦ୍ରିୟମାନେ କର୍ମରେ ଏକାଗ୍ର ହେବା ଦରକାର । ଆଜିକାଲିର ସଭାସମିତି ଯେପରି ଓପରଠାଉରିଆ, ସେଥିରେ ଏତେ ଏକାଗ୍ରତାର କ'ଣ ବା ପ୍ରୟୋଜନ ?"

ମୋର ମନେପଡ଼ିଲା ପାର୍ଲାମେଣ୍ଟରେ, ବ୍ୟବସ୍ଥାସଭାରେ ପାନ ଖାଇବାକୁ ମନା ।

ମହାପାତ୍ରେ କହିଲେ, "ସବୁ କଥା ପରି, ସେ ବି ଓପରଠାଉରିଆ ଭାବରେ ମନା । ଧାନ କଲରେ ଜାଜି ସଭାସଦ୍‌ମାନେ ବାଚସ୍ପତିଙ୍କ ଆଗରେ ବି ନିଶ୍ଚିନ୍ତ ଶୋଇଥିବାର ଥରେ ମୁଁ ଦର୍ଶକ ଗ୍ୟାଲେରୀରୁ ଦେଖିଛି । ପୁଣି ପାନ, ବିଡ଼ି ଖାଇବାକୁ ଯେ କେହି ଯେତେବେଳେ ଇଚ୍ଛା ସେତେବେଳେ ସଭା ଗୃହର 'ଲବି' କୁ ଯାଉଥାନ୍ତି । ଏ ପରିସ୍ଥିତିରେ ବ୍ୟବସ୍ଥାସଭାର ଗୁରୁତ୍ୱ ନଷ୍ଟ ହେବାର ଇ ତ କଥା । କିନ୍ତୁ ଦାସେ ଏ ବିଷୟରେ ମୋତେ ଅନ୍ୟ ଗୋଟିଏ କାରଣ କହିଥିଲେ ।"

ମୋର ଶୁଣିବାକୁ ଆଗ୍ରହ ଦେଖି ସେ କହିଲେ, "ମୁଁ ଥରେ ତାଙ୍କ ଆଗରେ ଏଇ କଥା ପକାଇଥିଲି । ମୁଁ କହିଲି, 'ଆହାର, ବିହାର ଆଦି ବିଷୟରେ ନିୟମ ମାନି ଚଳିବା ମଣିଷର କର୍ତ୍ତବ୍ୟ । ଖାଇବାବେଳକୁ ଯଦି ସଭା ନ ସରିଲା ତେବେ ସେଇଠାରେ କିଛି ଖାଇଲେ ଦୋଷ କ'ଣ ? ମହାତ୍ମା ଗାନ୍ଧୀ ତ ସଭାରେ ବସିବାବେଳେ ଆହାର କରୁଥିଲେ ।

ବିନୋବା ବାଭେ ତାଙ୍କ ପଦଯାତ୍ରାବେଳେ ବାଟରେ ଘାଟରେ, ଯେଉଁଠି ଖାଇବା ଟାଇମ ହେଲା ସେଠାରେ ବସିପଡ଼ି ଖାଉଥିଲେ ।' ଦାସେ ମୋତେ ଉତ୍ତର ଦେଲେ, 'ନିଜ କଥାକୁ ଜୋର ଦେବା ପାଇଁ ବଡ଼ ଲୋକଙ୍କ ନାମ ଧରିବା ତୁମର ଗୋଟାଏ ରୋଗ । କଥାଟାର ତାତ୍ତ୍ୱିକ ବିଚାର କଲାବେଳେ ବଡ଼ ଲୋକଙ୍କ ଦେହରେ ଆଞ୍ଚ ଲାଗିବାର ଭୟ ହେବ ବୋଲି ତ ମଣିଷ ଶଙ୍କିଯିବ' ।"

ମୁଁ କହିଲି, "ଏଥିରେ କଣ ତତ୍ତ୍ୱ ଅଛି କହୁନାହଁ ? ବଡ଼ ଲୋକଙ୍କ ଦେହରେ ଆଞ୍ଚ ଲାଗିବା ଆଳରେ ତୁମେ କଥାଟାକୁ ଉଡ଼ାଇ ଦେବାକୁ ବସିଛ ବୋଲି ଯଦି ମୁଁ ଅଭିଯୋଗ କରେ ?"

ଦାସେ କହିଲେ, "ଧର, ସଭାରେ ଶହେ ଜଣ ବସିଥାଇଁ । ତା ମଝିରେ ଖାଲି ଆମର ଖାଇବା ସମୟ ହୋଇଗଲା ବୋଲି ବିଚାରଲାବେଳେ, ଭାବିବା ଉଚିତ, ଆଉ କାହାର ମଧ୍ୟ ଖାଇବାବେଳ ଗଡ଼ିଯାଉଥିବ । ଧର, ଠିକ୍ ସେତିକିବେଳେ ପଚାଶ ଜଣଙ୍କର ଖାଇବା ବେଳ । ଏପରି ସ୍ଥଳେ ଦୁଇଟାରୁ ଗୋଟାଏ ପନ୍ଥା ଧରିବାର କଥା । ସମସ୍ତଙ୍କ ପାଇଁ ଖାଇବାର ବ୍ୟବସ୍ଥା କରିବ କିମ୍ବା ଖାଇବା ଅପେକ୍ଷା ସଭାର ଆଲୋଚନାକୁ ଅଧିକ ଗୁରୁତ୍ୱ ଦେଇ ଖାଇବା ସମୟ ଗଡ଼ାଇ ଦେବ । ଯେଉଁମାନେ ଖାଇବା ସମୟ ଗଡ଼ାଇବାକୁ ନାରାଜ ସେମାନେ ଅଇଁଠା ହାତ ଓ ମୁହଁରେ ସଭା କରୁଛନ୍ତି । ଆମର ଦ୍ୱିତୀୟ ପନ୍ଥା । ତୁମେ ଯେଉଁ ତୃତୀୟ ପନ୍ଥାଟା କହୁଛ, ସମସ୍ତେ ଚାହିଁଥିବେ ଓ ଆମେ ଏକୁଟିଆ ଖାଉଥିବା, ତାହା ଆମ ଦେଶରେ ସଦାଚାର-ବିଗର୍ହିତ ।"

ମୁଁ ଆପତ୍ତି କଲି, "କିନ୍ତୁ ତୁମର ସ୍ୱାସ୍ଥ୍ୟ ପାଇଁ ଯେ ଯଥାସମୟରେ ଲେମ୍ବୁ ପାଣି ଟିକିଏ ଦରକାର !"

ସେ ଉତ୍ତର ଦେଲେ, "ସ୍ୱାସ୍ଥ୍ୟ ପାଇଁ ଯଦି ଏତେ ଲୋଭ, ତେବେ କାମଦାମ ସବୁ ଛାଡ଼ି ଘଣ୍ଟାକୁ ଚାହିଁ ରହିଥିବାକୁ ହେବ, ଲେମ୍ବୁ ପାଣି ବେଳ ହେଲା କି ନାହିଁ ! ସେପରି ହେଲେ ବାପ ଶ୍ରାଦ୍ଧ ବି ବନ୍ଦ ହୋଇଯିବ, ବିଧବାମାନେ ଏକାଦଶୀ ଉପବାସ ଛାଡ଼ିଦେବେ । ଏ ଦିଗଟା ବିଚାର କରୁନାହଁ ଯେ ?"

ମହାପାତ୍ରଙ୍କଠାରୁ ଏକଥା ଶୁଣି ମୁଁ ଚମତ୍କୃତ ହେଲି । ବାସ୍ତବିକ ଆମେ ଆମର ଭଲ ମନ୍ଦ କଥା ବିଚାର କଲାବେଳେ, ଅନ୍ୟ ଉପରେ ତାହାର କି ପ୍ରତିକ୍ରିୟା ହେଉଛି ତାହା ବିଚାରିବାକୁ ପାସୋରିଯାଉଁ ।

ମହାପାତ୍ରେ ପୁଣି କହିଲେ, "ଦୈବାତ୍ ଦାସେ ଓ ମୁଁ ଏକା ଗାଁରେ ଜନ୍ମ । ଖାଲି ସେତିକି ନୁହେଁ, ପିଲାଦିନୁ କଲେଜ ଛାଡ଼ିବା ଯାଏଁ ଏକ ସଙ୍ଗେ ରହିଥିଲୁଁ । ଚାକିରି ଜୀବନ ମଧ୍ୟ ଏକାଠି କଟାଇଛୁଁ । ସେ ମୋଠାରୁ ଭଲ ପଢ଼ୁଥିବାରୁ ହେଲେ ଅଫିସର ଓ ମୁଁ ତାଙ୍କ ଅଫିସର କିରାଣି । ମୂଳରୁ ଶେଷଯାଏଁ ଦେଖି ଆସିଛି ପ୍ରତ୍ୟେକ କାର୍ଯ୍ୟ କଲାବେଳେ, ପ୍ରତ୍ୟେକ ପଦ କଥା କହିଲାବେଳେ ଅନ୍ୟର ମନରେ କି ପ୍ରତିକ୍ରିୟା ହେଉଛି ତାକୁ ଲକ୍ଷ୍ୟ

କରି ସେ କାମ କରନ୍ତି, କଥା କହନ୍ତି । ଆମେ ଯେ ତାଙ୍କଠାରୁ କେତେ ତଳେ, ସେ କଥା ସେ କସ୍ମିନ୍‌କାଳେ ଭାବିବାକୁ ଅବସର ଦିଅନ୍ତି ନାହିଁ ।"

ମୁଁ ପଚାରିଲି, "ତେବେ ତ ତାଙ୍କର କର୍ତ୍ତବ୍ୟ କରିବାରେ ବାଧା ହେଉଥିବ । ତଳ ପାହ୍ୟାର ଲୋକେ ତାଙ୍କୁ ମାନୁନଥିବେ !"

ମହାପାତ୍ରେ କହିଲେ, "କିନ୍ତୁ ପ୍ରକୃତ ଫଳ ହୁଏ ଠିକ୍ ଓଲଟା । ସେ ଆମ ସଙ୍ଗେ ମେଳାପି ଆଚରଣ କଲାବେଳେ, ଦୈବାତ୍ ଯେଉଁ ଦିନ ଆମେ ଆମ କର୍ତ୍ତବ୍ୟରେ ଶିଥିଳ କରିଥାଉ ସେଦିନ ଆମେ ଆତ୍ମଗ୍ଲାନିରେ ସଡ଼ିଯାଉ । ମୋର ମନେ ଅଛି, ଥରେ ଚାକିରି ବେଳେ ମୁଁ ମୋ ବାକିଆ କାମ ରଖି ସନ୍ଧ୍ୟାବେଳେ ଯାଇ ତାଙ୍କ କୋଠିରେ ଆଡ଼୍‌ଡ଼ା ମାରୁଥିଲି । ହସ ଖୁସିରେ ସମସ୍ତ କଟୁଥାଏ । ହଠାତ୍ ମୋର ମନେହେଲା, ମୁଁ ସ୍ୱାଙ୍କ ସଙ୍ଗେ ମେଳାପ କରିବାର ପାତ୍ର ନୁହେଁ । ସମସ୍ତ ଉଣ୍ଠି ଘରକୁ ପଳାଇଗଲି ଓ ରାତି ରାତି ମୋର କାମ ସାରି ଅବହେଳାର ପ୍ରାୟଶ୍ଚିତ୍ତ କଲି ।"

ଟିକିଏ ବେଳ ତୂନୀ ରହି ସେ ପୁଣି କହିଲେ, "ଏବେ ତ ଆଉ ଚାକିରି ବେଳ ନାହିଁ । ମୁଁ ସିନା ସ୍ୱାଙ୍କ ପାଖେ ଚାକିରି କରୁଥିଲି, ନାୟକେ ଓ ଅନ୍ୟମାନେ ତ ସ୍ୱାଙ୍କ ଅଧୀନରେ ଚାକିରି କରି ନ ଥିଲେ । ସମ୍ପତ୍ତିରେ ବାହିନୀପତି ଆମ ସମସ୍ତଙ୍କୁ ଏକା ଚୋକରେ ଗିଳି-ଦେବେ । କିନ୍ତୁ ଦାସଙ୍କ ପ୍ରତି ସମସ୍ତଙ୍କର କି ସମ୍ଭ୍ରମ ଆପଣ ତ ଲକ୍ଷ୍ୟ କରୁଥିବେ । ଏହା ଧନ, କ୍ଷମତା ବା ପାଣ୍ଡିତ୍ୟ ଯୋଗୁ ନୁହେ । ଏହା ତାଙ୍କର ବ୍ୟକ୍ତିତ୍ୱ ଯୋଗୁ ।"

ମୁଁ ଆପତ୍ତି କଲି, "କିନ୍ତୁ ବ୍ୟକ୍ତିତ୍ୱ ଯେ ଧନ, କ୍ଷମତା ଓ ବିଦ୍ୱତ୍ତା ବଳରେ ଗଢ଼ି ଉଠେ ।"

ମହାପାତ୍ରେ କହିଲେ, "ସେ୍ତ ସେଇ ପାଶ୍ଚାତ୍ୟ ଦାର୍ଶନିକଙ୍କ ଉକ୍ତି । ବ୍ୟକ୍ତିତ୍ୱର ମୂଳରେ ଶୁଦ୍ଧ ହୃଦୟ । ଆମେ ସମସ୍ତେ ଯେ ଆଜୀବନ ତାଙ୍କୁ ଗ୍ରୁଡ଼ିପାରୁନାହୁଁ ତାହା ତାଙ୍କର ସେଇ ଅମାୟିକ ଭାବ ଯୋଗୁଁ । ପର ଆପଣା ଭେଦ ତାଙ୍କର ନାହିଁ । ପରର ଅଭାବ ଅସୁବିଧାକୁ ସେ ନିଜର ପରି ଯେ ଖାଲି ମନେ କରନ୍ତି ତାହା ନୁହେଁ । ନିଜର ଅସୁବିଧା ହେଲେ ବି ପରର ସୁବିଧା କରିବାକୁ ସେ ସବୁବେଳେ ତତ୍ପର । ଏଇ କାରଣରୁ ତାଙ୍କୁ ସମସ୍ତେ ମାନୁଁ । ଦୁଃଖ ଲଗେ, ଆଜିକାଲିର ପିଲେ ତାଙ୍କୁ ଚିହ୍ନିପାରୁନାହାନ୍ତି । ତାଙ୍କ କଥା ଅନେକ ସମୟରେ ମାନୁଁନାହାନ୍ତି ।"

ମୁଁ କହିଲି, "ଆଜିକାଲି ସବୁଠି ସେଇ ଏକ କଥା । ଜଣେ ସମାଜବିଜ୍ଞାନୀ ଏବେ ଗୋଟାଏ ନୂଆ ତତ୍ତ୍ୱ ବାହାର କରିବାର ଶୁଣିଲି । ସେ କହୁଛନ୍ତି, ଆଦିମ କାଳରେ ଥିଲା ରାଜା-ପ୍ରଜା ସଂଘର୍ଷ, ତା'ପରେ ହେଲା ମାଲିକ-ମୂଲିଆ ସଂଘର୍ଷ, ତା'ପରେ ଥିଲାବାଲା ଓ ନଥିଲାବାଲାଙ୍କ ସଂଘର୍ଷ । ଏବେ ଆରମ୍ଭ ହୋଇଛି ପିଲା ଓ ବୁଢ଼ାଙ୍କ ସଂଘର୍ଷର ବେଳ । ପିଲା-ମାନେ ବୁଢ଼ାଙ୍କ ହାତରୁ ସମାଜ-ନିୟନ୍ତ୍ରଣର ସମସ୍ତ କ୍ଷମତା ଛଡ଼ାଇ ନେବାକୁ ବର୍ତ୍ତମାନ ବଦ୍ଧପରିକର ।"

ମୁଁ ଏ ବିଷୟରେ ଆଲୋଚନା ଆରମ୍ଭ କରୁଛୁ, ଦାସେ ଆସି ପହଞ୍ଚିଲେ ; ଘର ଭିତରକୁ ଯାଇ ଗୋଡ଼ ଧୋଇ ଦାଣ୍ଡକୁ ଆସିବା ପୂର୍ବରୁ ଘର ଭିତରୁ ଗୃହିଣୀଙ୍କ ସ୍ୱର ଶୁଣାଗଲା, "ଦେଖ୍, ଦେଖ୍, ତୋ ବାପାଙ୍କର ଗୀତ । ଯେତେବେଳେ ଭଦ୍ରଲୋକଙ୍କାରେ ଗଲେ ସେତେବେଳେ କିଛି ନା କିଛି ତଣ୍ଡ ପଡ଼ିଲେ ।"

ଦାସେ ନମ୍ର ସ୍ୱରରେ ପ୍ରତିବାଦ ଶୁଣାଉଥାନ୍ତି, "ତୁ ବି ସ୍ୱାଙ୍କ ଢଙ୍ଗ ଦେଖୁଥା'ଲୋ ମା ! ମୋତେ ବାପା ଡାକିବାକୁ ତୋତେ ଶିଖାଇ ସାରିଲେଣି । କକା ଡାକିଲେ ହୁଅନ୍ତା, ମଉସା ଡାକିଲେ ହୁଅନ୍ତା । ମୁଁ ଯଦି ତୋ'ର ବାପା ହେଲି ତେବେ ତୋ' ମା'ର ମୁଁ କ'ଣ କହୁଛି ।"

ଯାହାଙ୍କୁ ଏକଥା କୁହାଗଲା ସେ କିଛି ଉତ୍ତର ନ ଦେଇ ଦାସଙ୍କ ପାଖେ ପାଣିଢାଳ ଓ ଗାମୁଛା ଥୋଇ ଦେଇ ଭିତରକୁ ଚାଲିଯିବାର ଦାଣ୍ଡରୁ ମୋତେ ଦିଶୁଥାଏ । ସତେ ଗୋଟିଏ କିଏ ନୂଆ ଲୋକ ଏ ଘରେ ଆସି ଢୁକିଲାଣି ବୋଲି ମନେ ମନେ ବିଚାରୁଥିଲି, ପରେ ଜାଣିଲି ସତେ ସେଇ ପଂଜାବୀ ସ୍ତ୍ରୀଲୋକଟି ଯେ ଚାରି ପାଞ୍ଚ ଦିନ ପୂର୍ବେ ଏ ଘରେ ଆଶ୍ରୟ ପାଇଛି ।

ଦାସେ ଘରୁ ବାହାରି ଆମ ଭିତରେ ବସୁ ବସୁ ମହାପାତ୍ରେ ପଚାରିଲେ, "କାହାର କୋଉ ନ୍ୟାୟ ପଡ଼ିଥିଲା କି ଆଜି ? ତମେ ତ ଦିପହରୁ ଗଲଣି ?"

ଦାସେ କହିଲେ, "ଗୁଡ଼ାଏ ଚପୁ କୁଟିବାକୁ ପଡ଼ିଲା । ସେଇ ଜେନା ଘର ପିଲା ଯୋଡ଼ାକ । ତିନିଦିନ ହେଲା କଳି ଲଗାଇଥିଲେ, ଭିନ୍ନେ ହେବାକୁ । ଦିହିଙ୍କ ଭିତରେ କଳି କରୁ କରୁ ଆପଣା ବୁଢୀମା'ଟାକୁ ଦୁହେଁ ମିଶି କସୁକ ଛେଚିଛନ୍ତି ବୋଲି କାଲି ଆମ ଗୃହିଣୀଙ୍କଠାରୁ ଶୁଣି ଯାଇଥିଲି । ଯୋଡ଼ାକ ଯାକ ଅତି ଅବୁଝା । ଚାରିଦିନ ହେଲା ପଡ଼ିଆ ହୋଇ ଯେତିକ ମଜୁରି ହର୍ଜିଲେଣି, ତାହା ତାଙ୍କ ସମ୍ପତ୍ତିଠାରୁ ଅଧିକ ।"

ମହାପାତ୍ରେ ପଚାରିଲେ, "ଏବେ ତୁଟିଗଲା କି ?"

ଦାସେ କିଛି କହିବା ପୂର୍ବରୁ ବାହିନୀପତି ଗାଁ ସେ ମୁଣ୍ଡରୁ ଅନର୍ଗଳ ପାଟି କରି ଆସୁ-ଥିବାର ଲକ୍ଷ୍ୟ କଲୁଁ । ସମସ୍ତେ ସେଇ ଆଡ଼କୁ ଚାହିଁ ରହିଲୁ । ବାହିନୀପତି କହୁଥାନ୍ତି, "ଏ ପିଲାଗୁଡ଼ାକ କେଡ଼େ ଅସଭ୍ୟ ହୋଇଛନ୍ତି ହେ ! ସ୍ୱାଙ୍କ ଆଖିକୁ ଆଉ ମଣିଷ ଦିଶୁନାହାନ୍ତି । ଧନ୍ୟ ବୋଲିବା ସ୍ୱାଙ୍କ ବାପ ମା'ଙ୍କୁ । ବାପେ ଆସିଲେ ଏଠାରେ ଆଜ୍ଞା ଆଜ୍ଞା ବୋଲି ଭୂଇଁରେ ଲେଟିଯାନ୍ତି, ପିଲାଙ୍କ ଢଙ୍ଗକୁ ଦେଖ । ବାପ ମା ଆକଟ କରୁଥିଲେ ସ୍ୱା ହୁଅନ୍ତା ?"

ଦାସେ ପଚାରିଲେ, "ସ୍ୱା ହୁଅନ୍ତା ବୋଲି ପଚାରିଲେ ଆମେ କ'ଣ ସମାଧାନ କରିବୁ କହିଲ ! ଘଟଣାଟା କ'ଣ ଆଗ କହ । ତା'ପରେ ଭଲ କି ମନ୍ଦ ଟିପ୍ପଣୀ କରିବ । ତମେ ତ କୋଉ ବିରୁଡ଼ି ଘରେ ହାତ ମାରିଦେଲା ପରି ଜଣା ପଡ଼ୁଛ ।"

ବାହିନୀପତି ଅଭିମାନରେ ପାଟି କରି ଉଠିଲେ, "ତମେ କୌଣସି ସମାଧାନ କରିବା ଆମର ଦରକାର ନାହିଁ । ହେଇଟି କହୁଛି ଶୁଣ—ଆଜିଠାରୁ ଯଦି କୌଣସିଠିକୁ ଭଲଲୋକି କରି ଦିବ ତେବେ ଦେଖିବ । କାୟକ୍ଳେଶ, ଅର୍ଥହାନି, ଶେଷକୁ ପୁଣି ମନଃପୀଡ଼ା । କାହିଁକି

ହେ, ତମ ଦାଣ୍ଡ ଦୁଆରେ ତମେ ବସ । ଆଜିକାଲି ଯେଉଁ ଛତରଖୁଆଡ଼ାକ ଉଠୁଛନ୍ତି, ସ୍ତାଙ୍କ ପାଖେ ମୂକ ନିଷ୍କ୍ରିୟ ହୋଇ ରହିବାଇ ଶ୍ରେୟ । ବନ୍ଦୁଗ ଯଥ ବକ୍ତାରଃ ..... ।"

ବାହ୍ମଣପଡ଼ି ଯେଉଁ ଆଡ଼ୁ ଆସିଥିଲେ ସେଇପଟୁ ଭୀଷଣ ପାଟି ଶୁଣାଗଲା । ଫୌଜଦାରି ଆରମ୍ଭ ହୋଇଗଲା ବୋଧହୁଏ । ମରିଗଲି ଲୋ ବାପା, ମାରି ପକାଇଲି ଲୋ ବୋଉ ବୋଲି ଗୋଟାଏ ଚିତ୍କାର ଶୁଭିଲା । ଆମେ ସମସ୍ତେ ଧାଇଁ ଗଲୁଁ—ମହାପାତ୍ରେ ଓ ମୁଁ ସମସ୍ତଙ୍କ ଆଗରେ, ଦାସେ ସବା ପଛରେ । ଗୋଟାଏ ଟୋକା ଠେଙ୍ଗା ଉଞ୍ଚାଇ ପାଟି କରୁଥାଏ, "ଆସ ତମ ଲଫଙ୍ଗା ଦଳର ସମସ୍ତଙ୍କୁ ଗୋଟି ଗୋଟି କରି ଆଜି ଶୁଆଇ ଦେବି । ଶଳା, ବୁଢାଙ୍କୁ ଗାଳି ଦେଇ ମୁହଁ ବଢ଼ି ଯାଇଛି, ନା ? ବୁଢ଼ା ସିନା ମୁହଁ ପୋତି ଚାଲିସିବେ, ନାଗ ସାପ ଲାଙ୍ଗୁଡ଼ରେ ହାତ ମାରିଲେ ସମ୍ଭାଳା ପଡ଼ିବ !" ସେତେବେଳକୁ ଆଉ ଗୋଟେ ଟୋକା ଠେଙ୍ଗାଧରି ବକ୍ତାଙ୍କର ପୃଷ୍ଠପୋଷକ ହୋଇ ରହି ଯାଇଥାଏ ।

ଦାସେ ଆଗକୁ ଆସି କହିଲେ, "କିରେ ବଳିଆ, ରଘୁଆ, ଘର କଳି ତୁଟିଗଲା ବୋଲି କ'ଣ ଦିହେଁ ବାହାରି ପଡ଼ିଛ, ଗାଁ ଯାକ ସମସ୍ତଙ୍କୁ ପିଟି ଦେବ ? କଥା କ'ଣ ? ଠେଙ୍ଗାବାଡ଼ି କାରବାର ଆରମ୍ଭ ହୋଇଛି କାହିଁକି ?"

ମହାପାତ୍ରଙ୍କଠାରୁ ଜାଣିଲି, ଏଇ ଦୁହେଁ ଜେନା ଦୁଇ ଭାଇ । ସ୍ତାଙ୍କର ଅଳିଆ ତୁଟାଇବାକୁ ଦାସେ ଆଜି ଦିନ ତମାମ ଲାଗିଥିଲେ । କୃଷ୍ଣାର୍ଜୁନ ପରି ଦୁହେଁ ଯେପରି ଠିଆ ହୋଇଥାନ୍ତି, ତାହା ଦେଖି କିଏ କହିବ, ଏ ଦୁହିଁଙ୍କର ଝଗଡ଼ା ଲାଗିଥିଲା ବୋଲି ।

ଏତିକିବେଳେ ଦାସଙ୍କର ଦୃଷ୍ଟି ପଡ଼ିଲା ତଳେ ପଡ଼ିଥିବା ଯୁବକ ଉପରେ । ତା'ର ସାଙ୍ଗଙ୍କ ଭିତରୁ ଅଧିକାଂଶ ଭୟରେ ପଳାଇଥାନ୍ତି । ଖଣ୍ଡେ ଦୂର ଗୁଡ଼ି ଠିଆ ହୋଇଥାନ୍ତି ଚାରି ପାଞ୍ଚଜଣ । ରାଗରେ ତମତମ ହେଉଥାନ୍ତି । ଜଣେ କହିଲା, "ଆପଣ ଅମକୁ ମାଡ଼ ମରାଇଛନ୍ତି । ସ୍ତାକୁ ଆମେ ନେଇ ଡାକ୍ତର ମାଇନା କରାଇବୁ । ଆପଣଙ୍କୁ ମୁଦାଲି କରି ମକଦ୍ଦମା ଚାଲିବ ।"

ଦାସେ କାବା ହୋଇ ବକ୍ତାଙ୍କ ଆଡ଼କୁ ଚାହିଁଛନ୍ତି, ପାଖ ଘରୁ ଜଣେ ବାହାରି ପଡ଼ିଲା—ଯୁବକ କାନ୍ହୁ ଖଣ୍ଡ ଓ ଚୁଗଣ । ସେ ପାଟି କଲା, "ତୁମେ ସବୁ ମାଡ଼ ମୁଲାଉଛ । ଆଜ୍ଞା ଠିଆ ହୋଇ ନ ଥାନ୍ତେ କି ବଳିଅକୁ କହନ୍ତୁ ସ୍ତାକୁ ବି ସାବାଡ଼ କରିବାକୁ ।"

ବଳିଆ ଠେଙ୍ଗା ଫୋପାଡ଼ି ଦେଇ ଦାସଙ୍କ ଆଗରେ ଟୁକିନ ମୁଣ୍ଡିଆଟିଏ ମାରି କହିଲା "ସାଆନ୍ତେ, ତମେ ଏଠିକୁ ଆସିଲ କାହିଁକି ? ମହାପାତ୍ର ସାଆନ୍ତ ଆସିଲେ କାହିଁକି ? ଆପଣମାନେ ଚଉପାଢ଼ୀକୁ ଚାଲିଯାନ୍ତୁ । ରଘୁଆର ମୋର ଏ ଗୋଷ୍ଠୀଙ୍କୁ ପାନେ ଦେଇ ଦେଉ । ମକଦ୍ଦମା ତ ହବ, ଭଲ କରି ହେଉ । ଶଳାଙ୍କର କେଡ଼େ ସାହସ !"

ଲକ୍ଷ୍ୟ କଲି ମହାପାତ୍ରେ ଓ ବାହ୍ମଣପଡ଼ି ଉଭୟେ ପାଚି ଗଲେଣି । ମୁଁ ବାହାର ଲୋକ, ତଥାପି ମୋ'ର ମଥା ଦହ ତାତି ଯାଉଥାଏ । ଦାସଙ୍କୁ ଅପମାନ ଦେଇଥିବା ପିଲାକୁ ମୁଁ ରକ୍ତ ଚକ୍ଷୁରେ ଚାହୁଁଥାଏ । ଦାସେ ତା' ଆଡ଼କୁ ଚାହିଁ କହିଲେ, "କିଓ ଧୀର ! ମକଦ୍ଦମା କରିବ ବୋଲି କ'ଣ ଆପଣା ସାଙ୍ଗକୁ ଏମିତି ଭୂଇଁରେ ଗଡ଼ାଇ ମାରିଦେବ । ଆଗ ତାକୁ ଧରି ମୋ

ଦୁଆରକୁ ଆଣ । ଯଦି ଗୁରୁତର ଆଘାତ ହୋଇଥିବ ମୁଁ ଶଗଡ଼ ଦେବି, ତାକୁ ଡାକ୍ତର ଖାନାକୁ ନେଇ ମାଇନା କରାଇ ଇଞ୍ଜଲ ଦେବ । ଆଗ ତା'ର ପ୍ରାଥମିକ ଚିକିତ୍ସା ହେଉ ।"

ପାଖ ଘରର ଖଞ୍ଜ ଯୁବକ ଏତିକବେଳେ ଦୁର୍ବିନୀତ ଯୁବକର କାନ ଧରି ପକାଇ କହିଲା, "ଆବେ, ଆଗ ଯାଇ ଆଜ୍ଞାଙ୍କ ଗୋଡ଼ ଧରି ମାଫି ମାଗ । ତମେ ସବୁ ଯେମିତି ହେଉଛ, ସେଇ ଜଣକ ନ ଥିଲେ ସମସ୍ତେ ମାମୁଁ ଘରେ ଘଣା ପେଳୁଥାନ୍ତ ।" ଯୁବକଟି ଝେଲି ପରି ନିର୍ଦ୍ଦେଶ ମାନିଲା । ମାଡ଼ ଖାଇ ତଳେ ପଡ଼ିଥିବା ଯୁବକଟିକୁ ନେଇ ସମସ୍ତେ ଦାସଙ୍କ ଚଉପାଢ଼ୀକୁ ଗଲେ । ମାଡ଼ ମାତ୍ର ଧାହାରେ ଦୁଇ ପାହାର ହୋଇଥାଏ । ଆଘାତ ବିଶେଷ କିଛି ନୁହେଁ । ଜେନା ଟୋକାର ଭୀମମୂର୍ତ୍ତି ଦେଖି ସେ ଭେଟଣା ହୋଇ ଯାଇଥାଏ ମାତ୍ର । ସେ କଲେଜ ପଢୁଆ ଟୋକା । ମୁହଁ ଫିଟା ସିନା ହୋଇଛି, ଦେହରେ କଡ଼ାଟାକର ବଳ ନାହିଁ । ଜେନା ଟୋକା ଦୁହେଁ ମାଟିର ମଣିଷ, ଖାଟି ଖାଟି ଦେହରେ ବଳ ଅର୍ଜିଛନ୍ତି । କୁନ୍ଦ ଦେଲା ପରି ଦେହ, ମାଂସପେଶୀ ସବୁ ସୁଗଠିତ, ମୁହଁରେ ମିତାଗୃହର ଗ୍ରୁପ ।।ମାଡ଼ ଖାଇଥିବା ଟୋକା-ଟାର ଆନ-ମୁଣ୍ଡା ପଡ଼ିଗଲାଣି ।

ସେ ଟିକିଏ ଆଶ୍ୱସ୍ତ ହୋଇ ବସିବା ପରେ ମକଦ୍ଦମା ବିଚାର ଆରମ୍ଭ ହେଲା । ସେତେବେଳକୁ ଗାଁର ବହୁ ଲୋକ ଆସି ଜମା ହୋଇଥାନ୍ତି ; ବେକାର ଟୋକା ଦଳକୁ ମଧ୍ୟ ଟଣାଟଣି କରି ଆଣିଥାନ୍ତି । ମହାପାତ୍ରେ ପଚାରିଲେ ବଳିଆ ଜେନାକୁ, "କିରେ ଟୋକା ! ମଣିଷ ମାରି ଫାଶୀ ଖୁଣ୍ଟରେ ଚଢ଼ିବାକୁ ମନ ହେଉଛି, ନା ? ଏ ମହିଆକୁ ମାଇଲୁ କାହିଁକି ?" ବଳିଆ ମୁହଁ ପୋତି ଠିଆ ହୋଇଥାଏ, ଉଁ ଚୁଁ କିଛି କହୁ ନ ଥାଏ ।

ଖଞ୍ଜ ଟୋକାଟି କହିଲା, "ଆଜ୍ଞା, ତାକୁ କାହିଁକି ପଚାରୁଛନ୍ତି । ସେଇ ମହିଆକୁ ପଚାରନ୍ତୁ ସେ ମାଡ଼ ମୂଲଉଥିଲା କାହିଁକି ?"

ଆଉ ଜଣେ ବାହାରି ପଡ଼ି କହିଲା, "ସେ କ'ଣ କହିବ ଯେ ? ମୁଁ ହୋଇଥିଲେ ତା' ମୁହଁକୁ ଊହେ ଦେଇ ଦାନ୍ତ ପୁଞ୍ଜେ ଝାଡି ଦେଇଥାନ୍ତି । ଯେଉଁ ତୁଣ୍ଡରେ ଆଜ୍ଞାଙ୍କ ନାଁ ଧରିଥିଲା ସେଇ ତୁଣ୍ଡରେ ଊହେ ପାଇଥିଲେ ଅସଲ ପ୍ରାୟଶ୍ଚିତ୍ତ ହୋଇଥାନ୍ତା ।" •

ଦାସେ କହିଲେ, "କିରେ ହରିଆ, ତୁ ତ କଳଗୋଳର ମୂଳ କଥା ଜାଣିଚୁ, ତୁ କହ । ବଳିଆ କି ମହିଆ କହିବା ଦରକାର ନାହିଁ । ଦୁହେଁ ନିଜ ଲାଜରେ ନିଜେ ଭୁମୀ ହୋଇଗଲେଣି ।"

ହରି କହିଲା, "ଆପଣ ଠିକ ଠଉରେଇଛନ୍ତି, ସାଆନ୍ତ ! ମତେ ବି ଏ କଥା କହିବାକୁ ଲାଜ ମାଡ଼ୁଛି । ଏ ଟୋକାସବୁ ଯିମିତି ହେଉଛନ୍ତି, ଆମ ଗାଁର ଲୋକ ମୁଣ୍ଡ ଟେକି ଦାଣ୍ଡରେ ଚାଲି ପାରିବେ ନାହିଁ ।"

ଖଞ୍ଜ ଟୋକାଟି କହିଲା, "ସମସ୍ତଙ୍କୁ ଇମିତି ଲାଜ ମାଡ଼ିବାଯୁ ତ କଥା ଏଠା ପର୍ଯ୍ୟନ୍ତ ଗଲାଣି । ଦହିଁକୁ ଖାଉ ଖାଉ ଏ ପିଲେ ଖଟୁଲିକି ଖାଇବାକୁ ବସିଲେଣି । ଆଜି ସବୁ କଥା ପଡ଼ିଯାଉ ।"

ହୁରିଆ କହିଲା, "କଥା ପଡ଼ିବ ଯେବେ କହୁଛ, ଆଜ୍ଞା ! ଆପଣ ଜେନା ଘରକୁ ଯାଇ ଢ଼' ଭାଇଙ୍କର କଳି ତୁଟାଇବାକୁ ତାଙ୍କୁ ଗୋଟାଏ ଛତା ଦାନ କରିଦେଇ ଆସିଲେ । ସେହି ଟୋକା ପଞ୍ଝାକ ସେ କଥା ଶୁଣି 'ଦାସେ ଯାଇଥିଲେ ଫାଣ୍ଡିକ' ବୋଲି ଗୋଟାଏ ଅସଭ୍ୟ ଢଗ ବଡ଼ ପାଟିରେ ବଡ଼ ବଜାର ଉପରେ ଗାଇ ବୁଲିଲେ । ଆମ ସମସ୍ତଙ୍କୁ ଘାରି କାଟୁଥାଏ । ସେମାନଙ୍କୁ ଡରି ତୁନି ହୋଇ ରହିଲୁଁ ।"

ବାହୁମୀପତି ପାଟି କରି କହିଲେ, "ଛତରା ଗୁଡ଼ାକ ଖୁବ୍ ଢଗ ବୁଝିଛନ୍ତି । ଦାସେ ଆପଣଙ୍କୁ କ'ଣ କଏ ତଣ୍ଡି କରି ଛତାଟା ନେଇଗଲା । ଜେନା ଘରେ ଗୋଟିଏ ଛତା । ସେହି କହିଲା ମୁଁ ନେବି, ସେ କହିଲା ମୁଁ ନେବି । ଆଉ କ'ଣ ଛତାଟା କଟା ହୋଇ ବଣ୍ଟା ହୋଇ-ଥାନ୍ତା । ଦାସେ ସେମିତି ଲୋକ ବୋଲି ନିଜର ସୁନ୍ଦର ଛଇଲା ଛତାଟି ବଡ଼ ଭାଇକି ଦେଇ ଦେଲେ । ତମେ ତ ମଳି ଟିକିଏ ଦେହରୁ କାଢ଼ି କାହାକୁ ଦେବ ନାହିଁ । ମହତ୍ତ୍ୱ ବୁଝିବା କୁଆଡ଼େ ଗଲା, ଢଗ ମେଲୁଛ !"

ଦାସେ କହିଲେ, "ଏଇଥି ପାଇଁ ଫୌଜଦାରୀ ହେଲା କାହିଁକି ? ମୁଁ ତ ଘରେ ପଶୁ ପଶୁ ଆମ ଗୃହିଣୀ କଥାଟା ଶୁଣି ଏଇଆ କହିଲେ । ଢଗଟା ଅବଶ୍ୟ ମେଳ ନାହାନ୍ତି । ମନରେ ବିଗୃରିଥିବେ ନିଶ୍ଚୟ । ପିଲାଗୁଡ଼ାକ ଅବା ତୁଣ୍ଡରେ କହିଦେଲେ । ଏଥିପାଇଁ ମାଡ଼ ହେଲା କାହିଁକି ?"

ଗ୍ରେଟା କହିଲା, "ଆଜ୍ଞା, ସେଥିପାଇଁ କ'ଣ ମାଡ଼ ହୋଇଛି ? ଆମେ ଯେ ଶୁଣିଲୁ ଦେହରେ ତାକତ ଥିଲେ ଆମେ ମାରିଥାନ୍ତୁ । ଭଲ ବି ହୋଇଥାନ୍ତା । ସେତିକିରେ ପୂଅ ବୋଧ ହୋଇ ଯାଇଥାନ୍ତେ । କେହି କିଛି ନ କହିବାରୁ ସେମାନଙ୍କ ମୁହଁ ବଢ଼ିଗଲା । ତୁଣ୍ଡ ବି ଆହୁରି ଅଶୁଦ୍ଧ ହୋଇଗଲା । ଯୋଉ ଟୋକା ମାଡ଼ ଖାଇ ପଡ଼ିଥିଲା, ସେ ବଳିଆକୁ ଦେଖି ତୁଣ୍ଡ ଖରାପ କରି କହିଲା, ଦାସଙ୍କୁ ପଟି ଚଢ଼େଇ ଛତାଟା ନେଇଗଲ ବୋଲି । ବଳିଆ ଯାଉଥିଲା କାଉଆ ଧରି ବାଲକୁ । 'ହଁ, କାହା ନାଁରେ ଶଳା କ'ଣ କହିଲୁ ବୋଲି ତ୍ କୁକୁର-ବାଡ଼ିଆ କରି ଦେଲା । ଆମେ ସବୁ ବାହାରି ପଡ଼ି ନ ଥିଲେ, ସେହି ଛତରା ସମସ୍ତଙ୍କୁ ସେ ଦୁହାଙ୍ଗି ଦେଇଥାନ୍ତା ।"

ଦାସେ ବଳିଆକୁ ଆକଟ କଲେ, "ତୁଣ୍ଡ କଥାରେ କ'ଣ ଦେହ ସରି ଯାଉଥିଲା ଯେ, ତୁ ଏମିତି ପିଟି ପକେଇଲୁ । ଭାଗ୍ୟକୁ ମର୍ମ ସ୍ଥାନରେ ବାଜି ନେଇଁ । ନ ହେଲେ ତ ଏଇଲେ ବନ୍ଧା ହୋଇ ଯାଇଥାନ୍ତୁ ।"

ସବୁ ଟୋକାଙ୍କ ଆଡ଼କୁ ଗୃହିଁ ସେ କହିଲେ, "ତମର ସବୁ ବୁଦ୍ଧି ନାଇଁ ବୋଲି ସିନା ଏମିତି ହେଉଛି । ଗହିରରେ ଧାନ ମରି ପଡ଼ିଛି । ବାପ କକା ଏତେବେଳେ ମରିପଡ଼ି ପାଣି ବୋହିବାରେ ଲାଗିଛନ୍ତି । ତମର ଲାଗିଛି ଏଇ କାମ ! ଛି । ଏତୁଟି ମାନ ହେଲଣି । କାଲି କାହା ସାହା ହେବ । ନିଜ ପିଲାଙ୍କୁ ଏଇ ସଂସ୍କୃତଗୁଡ଼ିଏ ଶିଖେଇବ, ନା ?"

ଗୋଟି ଗୋଟି ହୋଇ ସବୁତକ ଟୋକା ମଉଳି ଗଲେ । ଦାସେ ବଳିଆକୁ ଡାକି କହିଲେ, ଆରେ ଟୋକା, ତୋ ଛତାଟି ଯା, ସୁହାଲରୁ ନେଇ ଯା । ଏତେବେଳେ ପାଳ କୁଣ୍ଡା ଏଡ଼େ ମହରଗ, ତୋ ଛତାଟାକୁ ଆମେ ଆଉ ଓଳିଏ ବି ପୋଷିବୁ ନାହିଁ ।"

ନାୟକେ କେତେବେଳୁଁ ଆସି ବସିଥିଲେ. ଟିପ୍‌ପଣୀ କଲେ, "ମୋର ଗୋଟାଏ ଭାଇ ଥାନ୍ତା କି, ଗାଈ ପାଇଁ କଳ ଲଗାଇଥାନ୍ତା । ଆମର ଚାକିରି ଅଛନ୍ତି, ଭାଗ ଛାଡ଼ି ନ ଥାନ୍ତା । ଦାସଙ୍କ କୁଣ୍ଡା ନଡ଼ା ବିନା ମହରଗ, ଛଡ଼ା ଭାର ଶସ୍ତା ହୋଇଛନ୍ତି ।"

ସମସ୍ତେ ହସିଲେ । ଗହଳ ଭାଙ୍ଗିଲା ପରେ ମହାପାତ୍ରେ କହିଲେ, "କି ଦାଶ ବାବୁ ! ଆଖିରେ ତ ଦେଖିଲେ, ପିଲାଙ୍କ ଭିତରେ କମିଛି ଏକତା ?"

ଦାସେ ମୋ ଆଡ଼କୁ ଜିଜ୍ଞାସୁ ଦୃଷ୍ଟି ପକାଇଲେ ।

ମହାପାତ୍ରେ କହିଲେ, "ବାଗବାବୁ ଏଇଲେ ଗୋଟିଏ ତତ୍ତ୍ୱ ପ୍ରତିପାଦନ କରୁଥିଲେ ଯେ ବର୍ତ୍ତମାନ ପିଲା ଓ ବୁଢ଼ାଙ୍କ ସଂଘର୍ଷ ଆରମ୍ଭ ହୋଇଛି । ପିଲାମାନେ ବୁଢ଼ାଙ୍କର ନେତୃତ୍ୱ ଆଉ ମାନିବାକୁ ପ୍ରସ୍ତୁତ ନୁହନ୍ତି ।"

ଦାସେ କହିଲେ, "ଏ କିଛି ନୂଆ କଥା ନୁହେଁ । ଆମ ପିଲାଦିନେ ମଧ୍ୟ ଆମେ ଏଇପରି ଆମ ଅଭିଭାବକଙ୍କ ମତ ବିରୁଦ୍ଧରେ କାମ କରିବାକୁ ଇଚ୍ଛା କରୁଥିଲେ । କିନ୍ତୁ ତାହା ବାଲ-ଚାପଲ୍ୟ ବୋଲି ତ ଏବେ ବୁଝିଲେଣି । ଏ ପିଲେ ସେଇପରି ବୁଝିବେ । ଚପଳତାରେ ସଙ୍ଘବଦ୍ଧ ଆନ୍ଦୋଳନ କ'ଣ ସମ୍ଭବ ?"

## ( ୬ )

ବାଲଚାପଲ୍ୟରେ ସଂଘବଦ୍ଧ ଆନ୍ଦୋଳନ ସମ୍ଭବ ନୁହେଁ ବୋଲି ସେ ଦିନ ଦାସେ ଯାହା କହିଲେ ସେ ବିଷୟରେ ମୁଁ ବହୁତ ଭାବିଛି । ଦାସଙ୍କୁ ଯାହା ଅସମ୍ଭବ ମନେ ହେଉଛି, ମୁଁ ତ ଦେଖୁଛି ତାହା ଆଜିକାଲି ସହଜ ଘଟୁଛି । ଚାରିଆଡ଼େ ଯୁବକ ଓ ଛାତ୍ରମାନଙ୍କର ଯେଉଁ ଆନ୍ଦୋଳନ ଚାଲିଛି ତାହା କ'ଣ କେହି ବୁଝି ବିଚାରି, ବିଗତ ଭବିଷ୍ୟତ ଚିନ୍ତା କରି କରୁଛି ବା କରାଉଛି ? କେତେଜଣ ବାହାର ଲୋକ ନିଜର କୌଣସି ସ୍ୱାର୍ଥସିଦ୍ଧି ଉଦ୍ଦେଶ୍ୟରେ, ବା ନିଜର ଶତ୍ରୁକୁ ସାଧିବା ପାଇଁ ଛାତ୍ରମାନଙ୍କୁ ମତାଉଛନ୍ତି । କାହାର ମତାଣ ନ ଥାଇ ଛାତ୍ର-ମାନେ ଯେତେବେଳେ ମାତୁଛନ୍ତି, ସେତେବେଳେ ତ ଦେଖାଯାଉଛି ବାସ୍ତବ କାରଣ ବହୁ କ୍ଷେତ୍ରରେ ଆଦୌ ନାହିଁ । କିନ୍ତୁ ସେହି ଆନ୍ଦୋଳନର ସମାଜ ଉପରେ ପ୍ରତିକ୍ରିୟା ତ କମ ହେଉ ନାହିଁ ! ଥରେ ଆନ୍ଦୋଳନ କରି ହାରିଲେ ବି ଛାତ୍ର ବା ଯୁବକମାନଙ୍କର ସଂଘବଦ୍ଧ ଭାବ ତ ଭାଙ୍ଗିଯାଉନାହିଁ । ପୁଣି ବୃଥା ବା ସାମାନ୍ୟ କାରଣରେ ସମସ୍ତେ ଥରକୁଥର ମାତି-ଯାଇପାରୁଛନ୍ତି । ଏ ବିଷୟରେ ଅଧିକ ଆଲୋଚନା କରିବା ପାଇଁ ମୁଁ ଆଜି ସେକଥା ଟିକିଏ ଉଁକାଇଦେଲି !

ଦାସେ କହିଲେ, "ସଂଘବଦ୍ଧ ଆନ୍ଦୋଳନ ସମ୍ଭବ ନୁହେଁ ବୋଲି କହିଲା ବେଳେ ମୋର ଆଉ ଟିକିଏ ବ୍ୟାଖ୍ୟା କରିବା ଉଚିତ ଥିଲା । ମୁଁ କହିବାକୁ ଚାହୁଁଥିଲି ଯେ ଏପରି ଆନ୍ଦୋଳନ ସଫଳ ହେବ ନାହିଁ ; ଅନ୍ତତଃ ସ୍ଥାୟୀ ଫଳ ଫଳିବ ନାହିଁ ।"

ମୁଁ କହିଲି, "ସେ କଥା ମଧ୍ୟ ମୁଁ ଭାବିଛି । ଫଳଟା ବ୍ୟକ୍ତି ବା ଦେଶ ପକ୍ଷରେ ଭଲ ନ ହେଲେ ସ୍ଥାୟୀ ଭାବେ ମନ୍ଦ ହେଉଥିବାର ତ ଆଖିରେ ଦେଖୁଥାଉଁ ।"

ଦାସେ—ଆପଣ ତା' ହେଲେ ଦ'ଶହ ବର୍ଷ ବା ଦଶପଚାଶ ବର୍ଷକୁ ଗ୍ରହି ଫଳର ସ୍ଥାୟିତ୍ୱ ନିରୂପଣ କରୁଛନ୍ତି । ମୁଁ କୌଣସି କଥାକୁ ସ୍ଥାୟୀ ବୋଲି ମାନିବାକୁ ଟିକିଏ ବେଶୀ ସମୟ ନେଉଛି । ଟିକିଏ ଦୂରକୁ ଗ୍ରହି ମୁଁ ଦେଖୁଛି, ଆମେ ପିଲାଦିନେ ଯେଉଁ ଜିନିଷକୁ ଶ୍ରଦ୍ଧା କରୁଥିଲେ, ଭଲ ବୋଲି ବିଚାରୁଥିଲେ, ତାହା ଆଜି ଆଉ ଭଲ ଦିଶୁ ନାହିଁ । ପିଲାଦିନେ ଆମ ଅଭିଭାବକମାନେ ଯାହା ଠିକ ବୋଲି ଆମକୁ ଢଆଉଥିଲେ, ଆମ ଦୃଷ୍ଟିରେ ଆଜି ତାହାହିଁ ଠିକ୍ ବୋଲି ଜଣାପଡ଼ୁଛି । ତେଣୁ ମୋର ଆଶା, ଆଜି ପିଲାମାନେ ଯାହାକୁ ଭେଲ ବୋଲି ବିଦ୍ରୋହ କରୁଛନ୍ତି, ତାକୁ ତାଙ୍କ ବୁଢ଼ାବେଳକୁ ପୁଣି ଭଲ ବୋଲି ମାନି ନେବେ ।

ମୁଁ କହିଲି, "ତେବେ ତ ଆପଣ ମାନୁଛନ୍ତି, ବୁଢ଼ା ବେଳର ଚିନ୍ତା ସଙ୍ଗେ ଟୋକା-ବେଳର ଚିନ୍ତା ଖାପ ଖାଏ ନାହିଁ । କାଲର ପିଲା କୋଡ଼ିଏ ବର୍ଷରେ ବୁଢ଼ା ହୋଇ ଆମର ସ୍ଥାନ ଅଧିକାର କରିବ ; ସେହିପରି ଆଜି ମାତୃଗର୍ଭରେ ସ୍ଥାନ ପାଉଥିବା ସନ୍ତାନ କୋଡ଼ିଏ ବର୍ଷରେ ନବଯବାନ୍ ହୋଇ ଆଜିର ଯୁବକଙ୍କ ସ୍ଥାନ ଦଖଲ କରିବ । ସବୁବେଳେ ବୁଢ଼ା ଟୋକା ହୋଇ ଦୁଇଟା ସ୍ୱତନ୍ତ୍ର ଗୋଷ୍ଠୀ ସମାଜରେ ରହିବ ହିଁ ରହିବ । ଦୁଇ ଗୋଷ୍ଠୀର ଦୁଇଟା ମତର ସଂଘର୍ଷ ଚିରନ୍ତନ ହୋଇ ରହିଥିବ ।"

ଦାସେ ଟିକିଏ ଚିନ୍ତିତ ହେଲେ । କିଛି ସମୟ ପରେ କହିଲେ, "ଆପଣ କଥାଟାକୁ ଯେଉଁ ରୂପ ଦେଲେ, ସେଥିରେ ଆପଣଙ୍କ କଥାଟା ପ୍ରମାଣିତ ହୋଇଗଲା ବୋଲି ମନେ ହେଉଥିବ । ମୋତେ ତ ପ୍ରଥମେ ସେଇପରି ଲାଗିଲା । କିନ୍ତୁ ଏ ଦୁଇ ଗୋଷ୍ଠୀ ଯେ ସ୍ୱତନ୍ତ୍ର ନୁହନ୍ତି । ଗଛର ଗଣ୍ଡି ଭୂଇଁକୁ ଲାଗି ରହିଛି, ଡାଳ ପତ୍ର ଉପରେ ରହି ପବନ ଖାଉଛନ୍ତି । ଗଛଟା ଦୁଇଭାଗ ହୋଇଯାଉଛି ! —ଗୋଟାଏ ଭୂଇଁରେ ଲେଟିବା ଭାଗ, ଆଉ ଗୋଟେ ପବନ ଖାଇବା ଭାଗ ? ଗୋଟିଏ ଭାଗ ଭୂଇଁ କାମୁଡ଼ି ନ ରହିଲେ ଅନ୍ୟ ଭାଗଟି ପବନରେ ଦୋଳି ନ ଖେଳି ଭୂଇଁରେ କଚଡ଼ି ହୋଇ ପଡ଼ିବ । ଆମ ସମାଜରେ ପିଲା ବୁଢ଼ା ଯେଉଁ ଦୁଇ ଦଳ ତାଙ୍କର ବି ସେଇପରି ପରସ୍ପର ସଂଯୋଗ । ମୁରବିମାନେ ପିଲାଙ୍କ ଢଙ୍ଗ ରଙ୍ଗରେ ସୁଖୀ ନ ହେଲେ ବି ବାତ୍ସଲ୍ୟମମତା ଛାଡ଼ୁ ନାହାନ୍ତି । ସେଇମାନଙ୍କ ଉପରେ ଭରଣପୋଷଣ ପାଇଁ ପୂର୍ଣ୍ଣ ନିର୍ଭର ଥିବାରୁ, ପିଲାମାନେ ନିଷ୍ଟନ୍ତ ହୋଇ କୁହୁଡ଼ି ପହଁରୁଛନ୍ତି । ଆଉ କୋଡ଼ିଏ ବର୍ଷ ପରେ ଏଇ ପିଲାମାନଙ୍କ ପିଲେ ଯେତେବେଳେ ତାଙ୍କ ପଦାଙ୍କ ଅନୁସରଣ କରିବେ, ସେତିକିବେଳେ ମନ ଘର ଧରିବ । ଯେତେବେଳେ ଆଜିକାଲିର ପିଲା ( ସେତେବେଳର ମୁରବି )ଙ୍କର ମନରେ ଆସିବ ଦ୍ୱନ୍ଦ୍ୱ—ବାତ୍ସଲ୍ୟମମତାରେ ପିଲାଙ୍କ ଅଦୌଦ୍ଧ ସହିପିବେ ନା ପିଲାଙ୍କ ବିରୁଦ୍ଧରେ ଉଠିବେ । ବାତ୍ସଲ୍ୟ ଯଦି ସେତେବେଳେ ଦୂର ହୋଇଯିବ ତେବେ ଯାଇ ଅଭିଭାବକ ଓ ତାଙ୍କ ପିଲେ ଦୁଇଟି ସ୍ୱତନ୍ତ୍ର ଦଳ ହୋଇଯିବେ । ବାତ୍ସଲ୍ୟର ଅବଶେଷ ଥିବାଯାଏଁ ଅଭିଭାବକମାନେ ଆଶା କରି ରହିଥିବେ ଯେ ସମୟକ୍ରମେ ପିଲେ ପୁଣି ବାଟକୁ ଆସିବେ । ସେ ଆଶାରେ ପିଲାଙ୍କ ଅଦୌଦ୍ଧ ବାଲଗ୍ରପଲ୍ଲୀ ନାମରେ କ୍ଷମା ପାଉଥିବ ।"

ମୋ ମନ ତଥାପି ବୁଝିଲା ନାହିଁ । ଅଭିଭାବକମାନେ ଯେ ତାଙ୍କ ଯୁବକ ପିଲାଙ୍କର ଦୋଷକୁ ଆଖି ବୁଜିଦେଉଛନ୍ତି ତାହା ବାତ୍ସଲ୍ୟ ଯୋଗୁଁ ନା ନିଜର ଅସହାୟତା ଯୋଗୁଁ ? ମୁଁ ଏ ପ୍ରଶ୍ନର ଉପଯୁକ୍ତ ଉତ୍ତର ଏ ଯାଏଁ ପାଇନାହିଁ । ଅନେକ ସ୍ଥଳରେ ଦେଖିଛି, ବୁଢ଼ାବୁଢ଼ୀ ବାପ ମା ନିଜର ଭେଣ୍ଡା ପୁଅର ଅବିବେଚନାରେ ଅସହ୍ୟ ଯନ୍ତ୍ରଣା ପା'ନ୍ତି । ଏଠାକୁ ଆସିବାର ମାତ୍ର ଦୁଇତିନି ଦିନ ପୂର୍ବେ ଦେଖିଥିବା ଗୋଟିଏ ଦୃଶ୍ୟ ମୋ ଆଖିଆଗରେ ନାଚିଗଲା । ସେ ଦିନ ମୁଁ ରାଣୀହାଟ ହାଇସ୍କୁଲ ସାମନାରେ ଠିଆ ହୋଇଛି ସ୍କୁଲର ଛୁଟି ଘଣ୍ଟା ବାଜିଗଲା । ଛାତ୍ରଛାତ୍ରୀମାନେ ଫାଟକ ବାଟେ ବାହାରି ଆସିଲା ବେଳେ ଦେଖିଲି, ଗୋଟିଏ ବୁଢ଼ା ବଡ଼ କାତର ସ୍ୱରରେ ଗୋଟିଏ ପିଲାକୁ ଡାକୁଛି । ପିଲାଟି ଗରଗରମରମ ହୋଇ ପାଖକୁ ଆସି ପଚାରିଲା, "କଣ ?" ବୁଢ଼ା କହିବାକୁ ଚେଷ୍ଟା କରୁଥାଏ, ସେ ସକାଳୁ କିଛି ଖାଇନାହିଁ । ଅମୁକ ବାବୁ ଟଙ୍କାଟିଏ ଦେବେ ବୋଲି କହିଛନ୍ତି । ତାଙ୍କ ପାଖରୁ ପଇସା ଆଣି ରୋଷେଇ କଲେ ଦୁହେଁ ଖା'ନ୍ତେ । ବୁଢ଼ାର ଚାଲିବାକୁ କ୍ଷମତା ନ ଥିବାରୁ ସେ ଅନୁରୋଧ କରୁଥାଏ, ନବଯୁବକକୁ ଟଙ୍କା ପାଇଁ ଯିବା ସକାଶେ । ଟୋକାଟି ମାଗିଲା, ଆଗ ମୋତେ ଆଠଣା ଦେ, ମୁଁ ଜଳଖିଆ କରିବି । ତା' ପରେ ଉଭୟଙ୍କ ଭିତରେ ଯେଉଁ ବାକ୍ୟାଳାପ ହେଲା ତା' ଏ ପର୍ଯ୍ୟନ୍ତ ମୋର ମନରୁ ଯାଉନାହିଁ । ପିଲାଟି ତା'ର ଜଣେ ସାଙ୍ଗ ସଙ୍ଗେ ଚାଲିଗଲା ; ବୁଢ଼ାଟି ରାସ୍ତା ମଝିରେ ହାହତୋସ୍ମି ହୋଇ ବସି ପଡ଼ିଲା । ପରେ ବୁଝିଲି, ବୁଢ଼ାଟି ଟୋକାଟିର ଏକମାତ୍ର ଅଭିଭାବକ—ଜେଜେବାପା । ଦୋକାନ ଖଣ୍ଡିଏ ତେଣିକି ଚଳୁଥିଲା, ଅସାମର୍ଥ୍ୟ ଯୋଗୁଁ ଦୋକାନଟି ଯାଇଛି । ସ୍କୁଲରୁ ଫେରି ଘଣ୍ଟେ ଲେଖାଏଁ ନାତି ଦୋକାନରେ ବସିଥିଲେ, ଦୁହେଁ ଚଳିଥାନ୍ତେ । ଭିକ୍ଷା କରିଯିବାକୁ ମଧ୍ୟ ବୁଢ଼ା ଗୋଡ଼ରେ ବଳ ନାହିଁ । ବୁଢ଼ାକୁ ଦୁଇ ଚାରିଦିନର ଆହାର ଯୋଗାଇ ତା'ଠାରୁ ବିଦାୟ ନେଇଥିଲି ।

ଦାସଙ୍କୁ ଏ ଘଟଣାଟି କହିଲି ! ସେ କହିଲେ, "ଏଭଳି ଦୃଷ୍ଟାନ୍ତ ଆଖି ବୁଲାଇଲେ ଏଇଠାରେ ବି ଦେଖିବ । ଯେଉଁ ବୁଢ଼ା କଥା କହିଲ, ତା' ସଙ୍ଗେ ହୁଏତ ଆଉ ଥରେ ଦେଖା ହେଲେ ଶୁଣିବ, ଚାରିଦିନକୁ ତାକୁ ଯାହା ଦେଇ ଆସିଥିଲ ତାହା ସେଇ ରାତିରେ ସେ ନାତିକୁ ଦେଇଛି ଓ ସେତିକ ଯାକ ତହିଁ ଆରଦିନ ସକାଳ ସୁଦ୍ଧା ସବୁ ଶେଷ ହୋଇଛି । ବୁଢ଼ାର ଅଭାବରେ ଅଭିଭୂତ ହୋଇ ହୁଏତ ଅନୁସନ୍ଧାନ କରିନାହିଁ, ବୁଢ଼ା କେତେ ଆଶାରେ ସେଇ ପିଲାର ଭବିଷ୍ୟତକୁ ଚାହିଁ ରହିଛି । ସେଇ ଆଶାରେ ସେ ଗାଳି ଦେଉଛି ; ପର ମୁହୂର୍ତ୍ତିରେ ସେଇ ଆଶାରେ ତାକୁ ଜାବୋଡ଼ି ଧରୁଛି । ଏ କ୍ଷେତ୍ରରେ ସଂଘର୍ଷ ଆସିବ କୁଆଡ଼ୁ ? ବାତ୍ସଲ୍ୟ ଓ ଶାସନ ବାରିହେବ କିମିତି ? ଶାରୀରିକ ଅସାମର୍ଥ ଅଭିଭାବକକୁ ବେଶି ଅସହାୟ କରୁଛି ନା ଅନ୍ତରର ମମତା ? ଜାଣିବା କେମିତି ?"

ଦାସେ ଯାହା କହିବାକୁ ଚାହୁଥିଲେ ତାହା କେତେକ ପରିମାଣରେ ବୁଝିଲି ବୋଲି ମନେ ହେଲା । ଏତିକି ବେଳେ ଆମର ସବୁଦିନିଆ ସଙ୍ଗୀମାନେ ଆସି ପହଞ୍ଚିଯିବାରୁ ଏ ବିଷୟରେ ଆଉ ଆଲୋଚନା ହୋଇ ପାରିଲା ନାହିଁ ।

ସମସ୍ତେ ସୁଖାସନରେ ବସି ଆସର ଜମାଇବା ପୂର୍ବରୁ ଦାସଙ୍କ ଦୁଆରକୁ ଜଣେ ଅଭ୍ୟାଗତ ଉଠିଲେ । ହାତରେ ଦୁଇଚାରି ଖଣ୍ଡ ବହି, କାନରେ ଦ'ପଟ କୁଣ୍ଡଳ । ମୁହଁକୁ ଚାହିଁ ମନେ କଲି, ବୁଢ଼ାଏ ଅଫିମ ଖାଆନ୍ତି । ଅଫିମ ଉପରେ ଉପଯୁକ୍ତ ଖାଦ୍ୟ ନ ମିଳିବାରୁ ଅଫିମ ଦେହର ରକ୍ତ ଶୋଷି ଦେଉଛି ବୋଲି ପରିଷ୍କାର ଦିଶୁଥାଏ । ତାଙ୍କ ନମସ୍କାର ଗ୍ରହଣ କରିବା ମାତ୍ରେ ଦାସେ କହିଲେ, "ଜାଣିଲି ନାୟକେ, ତୁମର ବହୁତ ଆୟୁଷ । ମୁଁ ଏଇଲେ ତମରି କଥା ଭାବୁଥିଲି । ଆଗ ଗୋଟାଏ ପ୍ରଶ୍ନ କରିବଟି ।"

ପ୍ରଶ୍ନ କରିବାକୁ ବରାଦ ହେବା ସଙ୍ଗେ ସଙ୍ଗେ ଜ୍ୟୋତିଷ ନାହାକେ ଲଥ୍ କିନା ତଳେ ବସି ପଡ଼ିଲେ ଓ ଅଣ୍ଟାରୁ ଖଡ଼ି ଗୋଟାଲି କାଢ଼ି ଗୋଟାଏ ଗ୍ରହ ଚକ୍ର ଭୂଇଁରେ ଟାଣି-ଦେଲେ । ଗୁଡ଼ୁ ଗୁଡ଼ୁ ହୋଇ କ'ଣଗୁଡ଼ାଏ ବୋଲି ଖଡ଼ି ଗୋଟାଲିଟିକୁ ଗ୍ରହଚକ୍ର ଭିତରେ ଥୋଇ ଆମ ଆଡ଼କୁ ମୁହଁ ଟେକି ଚାହିଁ ପଚାରିଲେ, ବର୍ତ୍ତମାନ ସମୟ କେତେ ହେବ ?

ମୁଁ କହିଲି ୮ଟା । ସେ କହିଲେ ଆମ ଏଠା ଟାଇମ୍ ପନ୍ଦର ମିନିଟ୍ କମ୍ ହେବ । ଷ୍ଟାଣ୍ଡାର୍ଡ଼ ଟାଇମ୍ ଓ ଲୋକାଲ୍ ଟାଇମ୍‌ର ପାର୍ଥକ୍ୟ ସ୍ୱାଙ୍କୁ ଜଣାଥିବାରେ ମୁଁ ବିସ୍ମିତ ହେଲି । ତା'ପରେ ସେ ପଚାରିଲେ, ଗୋଟିଏ ପକ୍ଷୀର ନାମ କହନ୍ତୁ । ମହାପାତ୍ରେ ସାଙ୍ଗେ ସାଙ୍ଗେ କହିଲେ, କୁଆ ।

ନାହାକେ ବିନୀତ ଭାବେ ହସି କହିଲେ, 'ଯେ ପ୍ରଶ୍ନ କରିଥାନ୍ତି, ସେଇ ପକ୍ଷୀ ନାମ କହିବା କଥା ।' ଦାସେ କୁଆ ସଙ୍ଗେ ଅକ୍ଷର ସମାନ ରଖି କହିଲେ, ଶୁଆ । ତା' ପରେ ପୁଣି ଗଣିତ ଚାଲିଲା, ଆଙ୍ଗୁଠି ପବରେ । କିଛି ସମୟ ପରେ ଆସି ପହଞ୍ଚିଥିବା ଗୋଟିଏ ପିଲାଦ୍ୱାରା ଚକ୍ରରୁ ଖଡ଼ିଟି ଉଠିଆଇ ନାହାକେ କହିଲେ, ଆଜ୍ଞା ! ସ୍ୱେ ତ ଗୋଟିଏ ଜୀବଚିନ୍ତା !

ଦାସେ କିଛି କହିଲେ ନାହିଁ । ମହାପାତ୍ରେ କହିଲେ, 'ବଳଦ ହଜିଥିବ ।'

ନାହାକେ କହିଲେ, "ଆଜ୍ଞା, ଖଡ଼ି ତ ଡାକୁଛି ମଣିଷ ବୋଲି । ବହୁତ ଦୂରକୁ ଯାଇଛି । ପୁଣି ଖୁବ୍ ପାଖରେ ଅଛି । ପ୍ରଶ୍ନ ଶୁଭଫଳ ସୂଚାଉଛି । ଗୋଟିଏ ପୁତ୍ର ସନ୍ତାନ ଲାଭ ହେବ, ହଜି ଯାଇଥିବା ମଣିଷଟିଏ ଆସି ପହଞ୍ଚିବ । କିନ୍ତୁ ଏ ଫଳ ଟିକିଏ ବିଳମ୍ବରେ ଫଳିବ । ସନ୍ତାନ ପ୍ରାପ୍ତି ନଗଦରେ ହେବ ।"

ମହାପାତ୍ରେ କହିଲେ, "କ'ଣ ଦାସେ ଆପଣଙ୍କର ସ୍ୱପତ୍ନୀ ଉଦରରେ ?" ଜ୍ୟୋତିଷ ନାହାକେ କିଛି ନ କହି ନିରୀହ ଭାବରେ ଟିକିଏ ହସିଲେ । ଆମ ନାୟକେ କହିଲେ, "କହୋ କହୁନାହଁ ? ତମର ପରା ପଞ୍ଚପକ୍ଷୀ ସାଧନା । ପକ୍ଷୀ ତ ସବୁ କହି ଦେଇଥିବଣି !"

ନାହାକେ କହିଲେ, "ଅଜ୍ଞା, ଏ ସବୁ ବିଷୟରେ ଆମେ ଟିକିଏ ଯୋଡ଼ିଦେଉ । ଘରେ ପିଲାଟିଏ ହେବ ବୋଲି ପକ୍ଷୀ ଡାକୁଛି । ନିଜର ହବ କି ବୋହୂ ଝିଅଙ୍କର ହବ ତା' ଆମ ବିଚାରକୁ ଯେମିତି ଦିଶେ ସେମିତି କହିଦେଉଁ ।"

ଦାସେ କହିଲେ, "ଏ ବତୁଲିଆଙ୍କ କଥା ଶୁଣୁଛ କାହିଁକି ? ଠିକ୍ ପ୍ରଶ୍ନ କଲି । ମୁଁ ଯାହା ବିଚାରୁଥିଲି ତମେ ଠିକ୍ ବାରିକରି କହିଲ । ହଉ, ତୁମକୁ ଉଚ୍ଛୁର ହେବ, ଏଥର

ଯାଅ ।" ନାହାକେ ଝଙ୍କାଟିଏ, ସେରେ ଚାଉଳ ଓ ଏଣୁ ତେଣୁ ପରିବାପତ୍ର ଗୁଡ଼ାଏ ପାଇ ବିଦା ହେଉ ହେଉ ମହାପାତ୍ରେ ପଚାରିଲେ, "ହଇରେ ପଦିଆ, ପୁଅ ଖବର କ'ଣ ପାଇଲୁ ?"

ନାହାକେ କହିଲେ, "ଆଉ ତା' କଥା ମନକୁ ଆଣୁନାହିଁ । ମହାପାତ୍ରେ ସାଆନ୍ତ ! ପିଲାଦିନୁଁ ଆଜି ଯାଏଁ ମୋତେ ସାଧିଲା । ମନରେ ଟିକିଏ ବି ଅସନ୍ତୁଷ୍ଟ ହୋଇନାହିଁ । ଗୋଟିଏ ବୋଲି ତ ପୁଅ; ମା ଛେଉଣ୍ଡ ! ତା' ଅଳି ଅର୍ଦ୍ଦଳି ଯେମିତି ସହୁଥିଲି, ତା' ଅଦୌତି ବି ସେମିତି ସହିଲି । ବାହାଘର ତ କରିଥିଲି ଶୁଣିଥିବେ । ଗାଁରେ ସମସ୍ତେ ଆଜି ଯାଏଁ ସେ ବୋହୂକୁ ସୁମରୁଛନ୍ତି । ଚଣ୍ଡାଳ ସେପରି ବୋହୂକୁ ଛାଡ଼ି ପଳେଇଲା, ଆଜିକୁ ହେଲା ପାଞ୍ଚବର୍ଷ ।"

ଦାସେ ପଚାରିଲେ, "ସେ ବୋହୂ ପରା ଆଉ କୁଆଡ଼େ ଗଲା ଘର ?" ନାହାକେ—ଆଜ୍ଞା, ତିନି ବରଷ ତକେଇଲା । ତା'ର ମନ ଆଉ ତକେଇଥା'ନ୍ତା । ତା' ବାପ ଦିନେ ଆସି ପଚାରିଲା, ଝିଅ କ'ଣ ଏଇମିତି ପଡ଼ିଥିବ ? ତାଙ୍କଠାରୁ ଶୁଣିଲି, ତାଙ୍କ ଗାଁ ପାଖରେ ଗୋଟିଏ ଟୋକା ସ୍ତ୍ରୀକୁ ନେବାକୁ ରାଜି । ତା' ସ୍ତ୍ରୀ ମରିଯାଇଥାଏ । ମୁଁ ନାହିଁ କଲି ନାହିଁ । ମୋ ଦୁଃଖ ଦେଖି ବୋହୂ ବର୍ଷେ କାଳ ବାପ କଥା ଠେଲିଦେଲା । ଶେଷକୁ ମୁଁ ଜଗରୁ ଲଗେଇଲି, ସେ ଯାଉ ବୋଲି । ମୁଁ ତ ଆଜ୍ଞା ହେଲିଣି ପାଚିଲା ପତର । ଅଜି କି କାଲି ମୁଁ ଆଖି ବୁଜିଲେ, ମାଇକିନିଆ ପିଲାଟି ଅଥାଆ ହୁଅନ୍ତା । ଏବେ ବର୍ଷେ ହେଲା ସେ ଚାଲିଗଲାଣି । ତା' କୋଳରେ ଏବେ ପୁଅଟିଏ । ମୁଁ ଯାଇଥିଲି, ପଇସା ଆଠଣା ତା' ହାତରେ ଦେଇ ଆସିଲି ।"

ମହାପାତ୍ରେ କହିଲେ, "ତୋ' ହାତରେ ପଇସା ରହିଲାଣି ତେବେ ? ଅଫିମ ଖର୍ଚ୍ଚ ତୁଲେଇ ନାତି ହାତରେ ପଇସା ଦେଇପାରୁଛୁ କି ? ଏବେ କେତେ ହଉଚି ?"

ନାହାକେ—ଆଜ୍ଞା, ଯେତେବେଳେ ଯାହା ମିଳିଲା । ଆଜି ହବ ଟଙ୍କେ, କାଲିକି କିଛି ନ ମିଳିଲେ ଚାରି ପଇସା । ଦିନେ ବାଘର ଆହାର ତ, ଦିନେ ମିରିଗର ଅାହାର ।"

ଦାସେ ପଚାରିଲେ, ଜମି ଖଣ୍ଡେ ପରା ଅଛି ?"

ନାହାକେ—ଆଜ୍ଞା, ହଁ, ଅଢ଼େଇ ଏକର ହେବ । ସେତକ ପୁଅ ନାଁରେ କରି-ଦେଇଛି । ସେ ତ ସାବାଳକ, ମୁଁ ବିକି ଭାଙ୍ଗି ପାରିବି କୁଆଡ଼ୁ ? ବାର ବର୍ଷ ଯଦି ତା'ର ଖବର ନ ମିଳିବ ତେବେ ଆପଣଙ୍କ ସଙ୍ଗେ ପୁଣି ମସୁଧା କରିବି ।

ଦାସେ କହିଲେ, "ବାଃ, ଭଲ ଲମ୍ବା ପ୍ରୋଗ୍ରାମ୍ ତ ! ପୁଅ ପାଞ୍ଚ ବର୍ଷ ହେଲା ଯାଇଛି, ଆଉ ସାତବର୍ଷ ପରେ ଯାଇ ଆମ ସଙ୍ଗେ ମସୁଧା କରିବ ? ଆମେ ପୁଣି ସାତବର୍ଷ ରହିବା ଦରକାର ।"

ବାହିନୀପତିଏ କହିଲେ, "ହେଁ, ମସୁଧା କରିବା ବାଲା ବି ଥିବା ଦରକାର । ଅହିଫେନ ପ୍ରସାଦରେ ମୁହଁ ଯେମିତି ହେଲାଣି, ସେ ଆପେ ତ କହୁଛି, ଆଜି କି କାଲି !"

ମହାପାତ୍ରେ କହିଲେ, "କାଲି କଥା କାହିଁକି ଉଠାଉଛ ? ଯେମିତି ଅନ୍ଧାର ହେଲଣି, ତାଙ୍କ ଗାଁ ମୁଣ୍ଡ କଇଁଆ ଗଛଟା ଆଜି ପାରି ହେଉ ଆଗ ! କିରେ ପଦିଆ, ସେ ଗଛରେ ଯେ ଥିଲା ସେ ଅଛି କି ?"

ନାହାକେ କହିଲେ, "କେତେଦିନ କଥା ମନେ ରଖିଛ ସାଆନ୍ତ ! ସେ କୁଆଡ଼େ ଯିବ ? ମୁଁ କ'ଣ ମୁହଁ ଅନ୍ଧାର ହେଲେ ତା' ତଳେ କେବେଁ ଯିବି ? ନୂଆସାଇ ପାଖେ ଯାଇ ବସିବି, ସାଙ୍ଗ ମିଳିଲେ ଯିବି ।"

ଦାସେ କହିଲେ, "ଏତେ ଦହଦତ କାହିଁକି ? ଆଜି ଆମ ଏଠି ରହିଗଲେ ?"

ନାହାକେ—ଆଜ୍ଞା, ରହିବାର ହୋଇଥିଲେ ମୁଁ ତ ମୋ ଆଡ଼ୁ କହନ୍ତି । ଗୁରୁଗୋଡ଼ିଆ ଯୋଡ଼ିଏ ପଡ଼ି ଅଛନ୍ତି । ମୋତେ ଗୁହାଁ ଦାଣ୍ଡ ଦୁଆରେ ପଡ଼ିଥିବେ ।" ନାହାକେ ତରତର ହୋଇ ବାହାରି ଗଲେ ।

ମହାପାତ୍ରେ କହିଲେ, "ପ୍ରଶ୍ନ କଥାଟା ତ ପଡ଼ିଲା ନାହିଁ ! ଦାସେ ଆପଣଙ୍କର ଘର ଆଡେ କ'ଣ ଅସୁବିଧା କଥା ନାହାକ କହିଲା ? ଦାସେ ତ କହନ୍ତି, ଏ ନାହାକ କଥା ଲିଖ ବାଜେ । ମୁଁ ବୁଢାଏ ଦିନ ହେଲା ଭାଉଜଙ୍କୁ ଦେଖି ନାହିଁ ।"

ଦାଣ୍ଡଦୁଆର ପଛ ଆଡ଼ୁ ଶବ୍ଦ ଶୁଭିଲା, "ଏ ମୁହଁ ରେ ମାହୁଆପାତକ ଯାହା ନ ହେଉଛି !"

ନାୟକେ କହିଲେ, "ଶୁଚମନ୍ତ ଲୋକଙ୍କ ଆଶୀର୍ବାଦ କ'ଣ ନ ଫଳିବ ? ନାହାକ କହିଲି ପରି, ଆଜି ନ ହେଲେ କାଲି ।"

ଦାସେ କହିଲେ, "ବାଜେ କଥା ବନ୍ଦ କର । ଆଜି ସକାଳୁ ମୁଁ ଏଇ ତାରି କଥା ବିଚାରୁଛି ( ଯେଉଁ ଶିଖ୍ ରମଣୀଟି ପ୍ରାୟ ତିନିମାସ ହେଲା ଆସି ଦାସଙ୍କ ଘରେ ଆଶ୍ରା ନେଇଛି, ତା'ର ନାଁ ତାରି) । ବିଚାରି ଖଡ଼ଗପୁରରେ ଆସି ଆମର ଓଡ଼ିଆ ଲୋକଟିଏକୁ ବିଭା ହୋଇ-ଥିଲା । ଦୁଇ ତିନି ବରଷ ବେଶ ସୁଖରେ ରହିଲା । ଆଜିକୁ ଛଅମାସ ହେଲା ତା' ଗେରସ୍ତ କୁଆଡ଼େ ଗଲା ଯେ ଖୋଜଖବର ନାହିଁ । ଆଜି ସକାଳୁ ବିଚାରୁଛି ସେଇ କଥା । ଲୋକଟା କୁଆଡ଼େ ଗଲା, ଆସି ପହଞ୍ଚିନ୍ତା କି ? ଏଇଟା ଭଲ୍ଭୁଲଟେ ; ତିନିବରଷ ଯାହା ସଙ୍ଗେ ଘର କଲା ତା' ନାଁଟା ବି ଭଲକରି ଜାଣିନାହିଁ । ପୁଣି ପନ୍ଦର ଦିନରେ ସ୍ୱାମୀ ବି କ'ଣଟିଏ ହେବ । ସେଇ କଥା ବିଚାରୁଥିଲି । ନାହାକ ତ ଠିକ୍ ଲିଖ ବଜେଇଲା !"

ମୁଁ କହିଲି, "ଆପଣ କ'ଣ ଫଳିତ ଜ୍ୟୋତିଷରେ ବିଶ୍ୱାସ କରନ୍ତି ? ଗଣିତ ଜ୍ୟୋତିଷ ହିଁନା ବିଜ୍ଞାନ । ଗ୍ରହ ନକ୍ଷତ୍ରମାନଙ୍କର ଗତି ଓ ସ୍ଥିତି ନିରୂପଣ କରିବା ଗଣିତ-ସାପେକ୍ଷ ; କିନ୍ତୁ ଅମୁକ ଗ୍ରହ ଅମୁକ ସ୍ଥାନରେ ରହିଲେ ଅମୁକ ଫଳ ହେବ ସ୍ୱାର ପ୍ରମାଣ କଣ ?"

ଦାସେ କହିଲେ, "ପଦିଆ ନାହାକ ଯେଉଁ ପ୍ରଶ୍ନ କଲା ସେଥିରେ କ'ଣ ଗ୍ରହ ନକ୍ଷତ୍ରର ସ୍ଥିତି ବା ଫଳାଫଳର ବିଶେଷ ପ୍ରୟୋଜନ ହେଲା ? ଯେଉଁ ସମୟରେ ମୁଁ ପ୍ରଶ୍ନ ପଚାରିଲି

ତାକୁଇ ଧରି ସେ ଯାହା କହିଲା ତା'ତ ଦେଖିଲ, ଠିକ ବାଜିଲା। ଫଳିତ ଜ୍ୟୋତିଷ ତ ସ୍ତା'ଠାରୁ ଆଉ ଟିକିଏ ପାଠ ଓ ବିଚାର ଲୋଡ଼େ।"

ମୁଁ କହିଲି, "ମୋର କହିବାର କଥା, ସେ ବିଚାର ମୂଳରେ ନିର୍ଭର-ଯୋଗ୍ୟ ପ୍ରମାଣ ତ କିଛି ନାହିଁ। ଶନି ଅନିଷ୍ଟ କରିବେ, ବୃହସ୍ପତି ଇଷ୍ଟ କରିବେ ସ୍ତା ମୂଳରେ ସତ୍ୟତା କେତେ?"

ବାହିନୀପତି କହିଲେ, "ଯେଉଁ ଗ୍ରହ ମଙ୍ଗଳ କରୁଛି ତା' ନାଁ ବୃହସ୍ପତି ଓ ଯେ ଅନିଷ୍ଟ କରୁଛି ତା ନାଁ ଦେଇଛନ୍ତି ଶନି। ମଙ୍ଗଳ ଅମଙ୍ଗଳର ସମ୍ଭାବ୍ୟତା ବହୁ ଦିନର ଅଭିଜ୍ଞତାରେ ନିରୂପିତ ହୋଇଛି।"

ମୁଁ କହିଲି, "ତା' ତ ବୁଝୁଛି। କିନ୍ତୁ ଏ ଅଭିଜ୍ଞତା କ'ଣ ସବୁବେଳେ ନିର୍ଭର-ଯୋଗ୍ୟ। ସ୍ୱାତୀ ନକ୍ଷତ୍ରରେ ବା ବୃହସ୍ପତି ଚଳନରେ ବର୍ଷା ହୁଏ ବୋଲି ତ କହନ୍ତି। କିନ୍ତୁ ତା' କଣ ସବୁବେଳେ ଫଳେ? ମାସଫଳରେ ବାହାରିଥିଲା ମୋ ସିଂହରାଶିରେ ଏ ମାସରେ ଫଳ, ଭ୍ରମଣ। କିନ୍ତୁ ଏ ମାସକ ଯାକ ମୁଁ ଏଇଠାରେ ବସିଛି। ଏଥିରେ ଲଭ କଣ?"

ଦାସେ କହିଲେ, "ଫଳିତ ଜ୍ୟୋତିଷରେ ଫଳ ଫଳିବା 'ଭୋଦେବା' କଥା। କିନ୍ତୁ ଏଥିରେ ଯେ ଲଭ ଅଛି, ତାହା ଆଖିରେ ଦେଖୁଥାଇଁ। ଧର, ଜଣେ ଲୋକ ପ୍ରତିକୂଳ ପରିସ୍ଥିତିରେ ପଡ଼ି ଘାଣ୍ଟି ହେଉଛି। ଏତିକିବେଳେ ଯଦି ଜ୍ୟୋତିଷ ନାହାକ କହେ ଯେ ତା'ର ମାସେ ଦୁଇମାସ ପରେ ଗ୍ରହ ନକ୍ଷତ୍ର ଭଲ ପଡ଼ିବ, ଅବସ୍ଥାର ଉନ୍ନତି ହେବ, ତେବେ ଉପସ୍ଥିତ ବିପଦକୁ ସହିସିବା ପାଇଁ ତା' ମନରେ ବଳ ନିଶ୍ଚୟ ଆସିବ। ସେହିପରି ଜଣେ ଲୋକ ନିଜର ଧନ ମାନରେ ଭାରି ଉଦ୍ଧତ ହୋଇ ପଡ଼ୁଛି। ଏତିକିବେଳେ ଯଦି ସେ ଶୁଣେ ଯେ କିଛି ଦିନ ପରେ ତା'ର ମନ୍ଦଗ୍ରହ ଆସିବ ତେବେ ସେ ଔଦ୍ଧତ୍ୟ ଛାଡ଼ି ନିଜର ଭାବୀ ବିପଦ ଏଡ଼ିବା ପାଇଁ ଦିଅ ଦେବତାଙ୍କର ଆଶ୍ରା ନେବ। ଆଜି ତ ଦେଖିଲେଇଁ ତାରାର ଭବିଷ୍ୟତ ବିଷୟରେ ମୋ ମନ ଭାରି ଉଶ୍ୱାସ ହୋଇଗଲା। ତା'ର ପିଲାଟିଏ ହେବ, ଓ କିଛି ଦିନ ବିଳମ୍ବରେ ତା'ର ସ୍ୱାମୀ ଆସିବ ବୋଲି ମନରେ ତ ଧାରଣା ହେଉଛି।"

ମୁଁ କହିଲି, "ଆପଣ କଣ ଏଥିରେ ବିଶ୍ୱାସ କଲେ?"

ଦାସେ କହିଲେ, "ପ୍ରଥମେ ତ ମୋର ମନର କଥା ନାହାକ ଠିଆରେଇ ଦେବାରୁ ତା ବିଦ୍ୟାରେ କିଛି ମୂଲ୍ୟ ଅଛି ବୋଲି ଧାରଣା ହେବାର କଥା। ଟିମା କଥା ଛାଡ଼। ଯାହାଙ୍କ ପାଇଁ ମୁଁ ଏ ପ୍ରଶ୍ନ କରିଥିଲି ତାଙ୍କ କଥା ଭାବ। ତାରାର ମଉଳି ଯାଉଥିବା ଆଶା ନିଶ୍ଚୟ ସତେଜ ହେବ। ମୋ ଗୃହିଣୀଙ୍କର ତ ଦୃଢ଼ବିଶ୍ୱାସ ଯେ ପଦିଆ ନାହାକ ଯାହା କହେ ତାହା ଧ୍ରୁବ ସତ୍ୟ। ତାଙ୍କର ପ୍ରଥମ ପୁଅ ହେବାର ଦୁଇମାସ ଆଗରୁ ସେ କହିଥିଲା, ନିଶ୍ଚୟ ପୁଅ ହେବ। ପୁଅ ଜନ୍ମ ହେବା ପରେ ତା'ର ଜାତକ ସାଧି ଯାହା ଭବିଷ୍ୟତ ଗଣନା କରିଛି ତାହା ବି ଅଲ୍ପବହୁତେ ସତ ହେଉଛି।"

ନାୟକେ କହିଲେ, "ପଦିଆକୁ ଯେ ପ୍ରତ୍ୟହ ଅଫିମ ମିଳୁଛି, ଏହା ତ' ତା ବିଦ୍ୟାର ସାର୍ଥକ ପ୍ରମାଣ।"

ମହାପାତ୍ରେ କହିଲେ, "ସ୍ତ୍ରୀ ତାର ବିଷୟରେ ଗୋଟାଏ ବିଜ୍ଞାପନ ଖବରକାଗଜରେ ଦେଲେ କେମିତି ହୁଅନ୍ତା ?"

ଦାସେ କହିଲେ, "ସେଇଥିପାଇଁ ତ ତା' ସ୍ୱାମୀର ନାମ ଧାମ ଖୋଜୁଥିଲି । ଠାସକୁ ମାରି ଗୋଟାଏ କ'ଣ ସଂବାଦ ବା ବିଜ୍ଞାପନ ଦେବ ଯଦି ଦିଅ । ଯେଉଁ ଚଣ୍ଡାଳ ସ୍ତ୍ରୀକୁ ଛାଡ଼ି ଦେଇ ପଳାଇଛି ସେ କ'ଣ ବିଜ୍ଞାପନ ଦେଖିଲେ ଆସିବ ?"

( ୭ )

ବୟସ ଥିବା ମାଇକିନିଆ ଏକୁଟିଆ ହୋଇ ଆମ ସହରମାନଙ୍କରେ ଯେଉଁଭଳି ଭିଖ ମାଗି ବୁଲୁଛନ୍ତି, ଦେଖିଲେ ମୋତେ ବଡ଼ ବିରକ୍ତ ଲାଗେ । ପଞ୍ଜାବଠାରୁ ଆରମ୍ଭ କରି ରାମେଶ୍ୱର ପର୍ଯ୍ୟନ୍ତ ସବୁ ଆଡ଼ର ମାଇକିନିଆଁଙ୍କୁ ମୁଁ କଟକରେ ଭିଖ ମାଗିବାର ଦେଖିଛି । ଆମ ଓଡ଼ିଶାର ମାଇକିନିଆଁ ଓଡ଼ିଶା ବାହାରେ ଯାଇ ବୁଲିବା ତ ଦୂରର କଥା, ନିଜ ଗାଁ ବାହାରକୁ ମଧ୍ୟ କ୍ୱଚିତ ଯା'ନ୍ତି । ନିଜ ଦୁଃଖ ମୁଣ୍ଡରେ ମୁଣ୍ଡାଇ ଘରକୋଣରେ ପଡ଼ି ରହିବା ନିଜ ପ୍ରତି ଓ ସମାଜ ପ୍ରତି, ସ୍ତ୍ରୀ ଲୋକମାନଙ୍କର କର୍ତ୍ତବ୍ୟ—ଏହା ମୋର ଦୃଢ଼ ଧାରଣା ହୋଇଥିବାରୁ, ଯେଉଁମାନେ ବାହାରେ ଏକୁଟିଆ ବୁଲୁଛନ୍ତି ସେମାନେ ଆମ ଜାତିର ଗୋଟାଏ କଳଙ୍କ ବୋଲି ମୁଁ ବିଚାରେ—ଦାସଙ୍କ ଘରେ ଆସି ଆଶ୍ରୟ ପାଇଥିବା ଏ ଝିଅଟି ବିଷୟ ଭଲ ଭାବେ ଜାଣିବା ପୂର୍ବରୁ ମୁଁ ଏଇପରି ବିଚାରୁଥିଲି ବୋଲି କହିଲେ ଠିକ୍ ହେବ ।

ପ୍ରଥମେ ସେ ଯେଉଁ ଦିନ ଆସି ପହଞ୍ଚିଲା ସେ ଦିନ ତା' ପ୍ରତି ମୋର ଅସୂୟା ହୋଇ-ଯାଇଥିଲା, ଭଲ ଚିଅଣ ନ ଥିବାରୁ ଭାତ ଖାଇବାକୁ ଅସୁକେଇ ସେ ମହାପାତ୍ରଙ୍କ ଘରୁ ପଳାଇ ଆସିଲା ବୋଲି । ପରେ ଶୁଣିଲି, ମହାପାତ୍ରେ ଆପଣେ ସଦାବ୍ରତ ଦେବାର ସେ କାହାଠାରୁ ଶୁଣିଥିଲା, କିନ୍ତୁ ସେଠାରେ ଜମା ହୋଇଥିବା ଭିଖାରୀଙ୍କ ଭିତରେ ଜଣେ ବି ସ୍ତ୍ରୀ ଲୋକ ନ ଦେଖି, ସେ ପୁରୁଷଙ୍କ ସଙ୍ଗେ ଖାଇବ ନାହିଁ ବୋଲି ସେଠାରୁ ବାହାରି ଆସିଥିଲା । ପରେ ଜାଣିଲି, ଯେଉଁ ଘରେ ସ୍ତ୍ରୀଲୋକ ନ ଥାନ୍ତି ସେ ଘରେ ସେ ପଶେ ନାହିଁ । ମହାପାତ୍ରଙ୍କ ଘରେ ନ ଖାଇ ଚାଲି ଆସିବାର ପ୍ରଧାନ କାରଣ ସେଇଆ । ଏ କଥା ଦାସଙ୍କଠାରୁ ଶୁଣି ମୋ ମନରେ ପୂର୍ବପ୍ରତିଷ୍ଠିତ ଭାବ ଟିକିଏ ଦୋହଲି ଯାଇଥିଲା । ପରେ ତା'ର ବ୍ୟବହାର ଲକ୍ଷ୍ୟ କରି ବାରବୁଲା ମାଇକିନିଆଁଙ୍କ ବିଷୟରେ ମୋର ମନ ବଦଳିବାକୁ ଆରମ୍ଭ କରିଥାଏ ।

ଦିନେ ସେ କଥା ଦାସଙ୍କ ଆଗେ ପକାଇବାରେ ସେ କହିଲେ, "ଆମେ ଅନ୍ୟ-ମାନଙ୍କ ବିଷୟରେ ରାଏ ଦେଲା ବେଳେ, ପ୍ରାୟଶଃ ଆମ ମନର ବଦ୍ଧମୂଳ ଧାରଣାଦ୍ୱାରା ସେମାନଙ୍କ କାର୍ଯ୍ୟାକାର୍ଯ୍ୟକୁ ତଉଲିଥାଉଁ । ଭ୍ରାନ୍ତ ଧାରଣାର ମୂଳ ଏଇ । ଯେଉଁଭଳି ଅବସ୍ଥାରେ ଅମେ ପଡ଼ିନଥାଉଁ, ଏପରି କି ଯାହା ଆମେ କସ୍ମିନ୍‌କାଳେ କଳ୍ପନା ବି କରି

ନ ଥାଇ, ସେ ଭଳି ଅବସ୍ଥାରେ ପଡ଼ି ମଣିଷ କ'ଣ କରିବା ଉଚିତ ଅନୁଚିତ, ତାହା ବିଚାର କରିବାକୁ ନିରପେକ୍ଷତା ଦରକାର । ତାହା ମୋଠାରେ ବି ନ ଥିଲା । ଆପଣଙ୍କର ଧାରଣା ଯାହା ମୋର ବି ସେଇ ଧାରଣା ଥିଲା । ସ୍ତ୍ରୀମାନେ ଦାଣ୍ଡକୁ ବାହାରିପଡ଼ିଲେ ସମାଜର ସ୍ଥିତି ଦୋହଲିଯାଏ—ଏକଥା ସତ । କିନ୍ତୁ ସ୍ତ୍ରୀ ଲୋକ ତ ସହଜରେ ଦାଣ୍ଡକୁ ବାହାରନ୍ତି ନାହିଁ । ଯେଉଁ ବିଦେଶୀ ସ୍ତ୍ରୀଲୋକମାନେ ଆମ ଏଠାରେ ଭିଖ ମାଗୁଛନ୍ତି, ସେମାନଙ୍କର ଇତିହାସ ଗୋଟି ଗୋଟି ଅନୁସନ୍ଧାନ କଲେ ବହୁତ କଥା ଜଣାପଡ଼ନ୍ତା । ଏଇ ଗୋଟିଏ ଝୋକୀର ଇତିହାସ ଶୁଣି ମୁଁ ତାଜୁବ ହୋଇଯାଇଛି । ସମସ୍ତେ ଜାଣନ୍ତୁ ବୋଲି ତାହା ଲେଖାଇ ଦେଇଛି । ଆପଣ ପଢ଼ିବେ ?"

ତାହାର ଇତିହାସ କେତେବେଳେ ଲେଖା ହୋଇ ସାରିଲାଣି ଶୁଣି ମୁଁ ତାଜୁବ୍ ହେଲି । ଆହୁରି ତାଜୁବ ହେଲି ଯେ, ଏହା ଲେଖିଛି ନିଜେ ତାହା, ପୁଣି ଓଡ଼ିଆ ଭାଷାରେ । ଦାସେ ଆପଣେ କହିଲେ, " ଏ ଖଣ୍ଡ ଆପଣ ଟିକିଏ ସଂଶୋଧନ କରିଦେବେ । ଭାଷା ବେଶ ସୁନ୍ଦର—ପ୍ରାଣର ଭାଷା, କିନ୍ତୁ ବହୁତ ବର୍ଣ୍ଣାଶୁଦ୍ଧି ରହିଛି । ପିଲାଟି ନିଜ ଚେଷ୍ଟାରେ ଆମ ଭାଷା ବେଶ୍ ଆୟତ୍ତ କରିଛି, ଅକ୍ଷର ପୁଞ୍ଜିକ ବି ଖୁବ ସୁନ୍ଦର । ମୁଁ ବିଚାରିଛି ଯଥାସମୟରେ ଏଖଣ୍ଡି ଛପାଇ ଦେବା । ଆପଣ ସେ ଭାର ନେବେ ।"

ପାଣ୍ଡୁଲିପିଟି ମୁଁ ପାଇବା ମାତ୍ରେ ଏକଲୟରେ ପଢ଼ିଗଲି, ତା'ପରେ ସଂଶୋଧନ ଆରମ୍ଭ କଲି । ମହାପାତ୍ରେ ଓ ବାହିନୀପତି କେତେକ ସ୍ଥାନରେ ପରିବର୍ଦ୍ଧନ ଓ ପରିବର୍ତ୍ତନ କରାଇଥାନ୍ତି, ସେଇ ତାହା ହାତରେ । ପ୍ରେସ୍ ପାଇଁ ପ୍ରସ୍ତୁତ ହୋଇଥିବା ପ୍ରତିଲିପିଟି ଦାସଙ୍କ ଆଗରେ ପହଞ୍ଚାଇବାରେ ସେ ତାଙ୍କର ସାଙ୍ଗସାଥିଙ୍କୁ ଡାକି, ମୋତେ ପଢ଼ିବାକୁ କହିଲେ । ମୁଁ ପଢ଼ିଲି—

ଆମ ଗାଁ ମୁଲତାନିଆ ଗୋଟିଏ ଅତି ଛୋଟ ପଲ୍ଲୀ ଗାଁ, ଲାହୋରଠାରୁ ପଶ୍ଚିମକୁ ପ୍ରାୟ କୋଡ଼ିଏ ମାଇଲ ହେବ । କିନ୍ତୁ ମୁଁ ଚିରକାଳ ପାଇଁ ଗାଁ ଛାଡ଼ିବା ଦିନ ଯାଏଁ, ଲାହୋର ଦେଖି ନ ଥିଲି ; ଆମ ଗାଁର, ଜଣେ ଦି' ଜଣଙ୍କୁ ଛାଡ଼ି ଆଉ କେହି ବି ଦେଖି ନ ଥିଲେ । ମୋ ପିଲାଦିନେ, ବାପା ଲାହୋରରୁ ଫେରି ସେ ସହର ବିଷୟରେ ଘରେ ଓ ଚଉପାଢ଼ିରେ ଅଦ୍‌ଭୁତ ବର୍ଣ୍ଣନାମାନ କରନ୍ତି । ସମସ୍ତେ ଶୁଣନ୍ତି, ତାଜୁବ୍ ହୁଅନ୍ତି, କିନ୍ତୁ ଶୁଣିଲାବାଲା କେହି ଲାହୋର ଯିବାକୁ ଆଗ୍ରହୀ ହୁଅନ୍ତି ନାହିଁ । ମୋର ଜେଜେବାପା କହନ୍ତି, ଲାହୋରରେ ମଣିଷ ମଣିଷକୁ ସୁଖ ପାଏ ନାହିଁ । ସେଠାରେ ମଣିଷ ମଣିଷକୁ ଠକେ, ମଣିଷ ମଣିଷ ନାଁରେ ମକଦ୍ଦମା କରେ, ମଣିଷ ମଣିଷକୁ ମଟର ଗାଡ଼ି ଚପାଇ ମାରି-ଦିଏ । ଯାହାଙ୍କ ପାଖରେ ବେଶି ଧନ, ସେମାନେ ଦରିଦ୍ର ଲୋକଙ୍କର କଂସା ବାସନ, ଗାଈ ଗୋରୁ ନେଇଯା'ନ୍ତି । ଆମେ ଏକଥା ଶୁଣି ସମସ୍ତେ ଭୟରେ ବାପ ମା'ଙ୍କ କୋଡ଼ରେ ଲୁଚିଯାଉ । କେବେ ହେଲେ ଲାହୋର ଯିବାକୁ ନ ପଡ଼ୁ ବୋଲି ସମସ୍ତେ ଭଗବାନଙ୍କୁ ପ୍ରାର୍ଥନା କରୁଁ ।

ସହରର ବାବୁମାନେ ଆସି ଆମ ଗାଁର ଘର ଦ୍ୱାର, ବିଲବାଡ଼ି ସବୁଥିରେ ଦୋଷ ଦେଖାନ୍ତି । ନ ପଢ଼ି ଆମେ ମୂର୍ଖ ହୋଇ ଯାଉଛୁ ବୋଲି କହନ୍ତି । ଆମ ଗାଁକୁ ଭଲ ରାସ୍ତା ନ ଥିବାରୁ ଆମର ଅବସ୍ଥା ଖରାପ ହୋଇଛି ବୋଲି କହନ୍ତି । କେମିତି, ଆମେ ଜାଣି ପାରୁ ନ ଥାଉଁ । ଜେଜେବାପା କହନ୍ତି, ସହର ଜାଲିମ ଗୁଡ଼ାକ ଏମିତି କହି ଆମକୁ ସହରକୁ ନେଇଯିବାକୁ ଫିକର କରିଛନ୍ତି । ଆମେ ଗଲେ, ଆମକୁ ଚାକର ବାକର କରି ରଖିବେ । ଆମ ମଇଁଷିଗୁଡ଼ାକ, ଲୁଗାପଟା ଅତର ସାବୁନ ଦେଇ, ଠକି ନେଇଯିବେ । ସହର ଲୋକ ଆସିଲେ ତାଙ୍କୁ ଆମେ ଦହି ଦୁଧ, ଫଳମୂଳ ଖାଇବାକୁ ଦେଇ ବିଦା କରିଦେଉଁ, ତାଙ୍କ କଥାରେ କେବେ ପଡ଼ୁନାହିଁ ।

ଆମ ଗାଁର ହିନ୍ଦୁ ଶିଖ୍ ହୋଇ ମାତ୍ର ଦଶୋଟି ଘର । ବାକୀ ସମସ୍ତେ ମୁସଲମାନ—ପ୍ରାୟ ତିରିଶ ଘର ହେବେ । ହିନ୍ଦୁ ଶିଖ ଓ ମୁସଲମାନ ଭିତରେ ପ୍ରଭେଦ କ'ଣ-ମୁଁ ଜାଣି ନ ଥିଲି । ଆମର ଅଲଗା ଅଲଗା ନାମ ପରି, ସେ ଏକ ଜାତିର ଅଲଗା ଅଲଗା ନାମ ବୋଲି ମୁଁ ଜାଣିଥିଲି । ଗାଁ ଯାକ ସମସ୍ତଙ୍କର ଏକ ବୃତ୍ତି, ଏକ ରକମ ଚଳଣି । ପ୍ରତ୍ୟେକେ ଗୋଟିଏ ଦୁଇଟି ଲେଖାଏଁ ମଇଁଷି ରଖିଥାନ୍ତି । ତାଙ୍କର ଦୁଧ, ଦହି ଓ ଘିଅ ବିକି ଚଳନ୍ତି । ଜଣେ ଦୁଇଜଣଙ୍କର ବେଶି ଜମି ଥାଏ ; ସେଇମାନେ ଗହମ ଓ ମକା କରନ୍ତି । ଅଧିକାଂଶଙ୍କର ଏକରେ, ଅଧଏକରେ ଲେଖାଏଁ ଜମି ; ବାଜରା କରନ୍ତି—ବାଜରା ରୁଟି ହୁଏ, ବାଜରା ଡାଙ୍ଗ ମଇଁଷି ଖାନ୍ତି । ଗହମ, ଲୁଣ, ତେଲ ବାହାରୁ ଆସେ, ମଝିରେ ମଝିରେ ଲୁଗା ପଟା ବି ଆସେ ।

ଗାଁ ଯାକ ସମସ୍ତେ ଗୋଟିଏ ଘର ପରି ଚଳୁଥାନ୍ତି, କେବଳ ପାଣି ଓ ରୋଟି ବ୍ୟତୀତ ଆଉ କୌଣସି ବିଷୟରେ ବାଛବିଚାର ନ ଥାଏ । ମୁସଲମାନମାନେ ଆମ ହାଣ୍ଡିଶାଳ ଛଡ଼ା ଆଉ ସବୁ ଘରକୁ ଅବାଧରେ ଆସନ୍ତି । ଆମେ ବି ତାଙ୍କ ଘରକୁ ଯାଉଁ । ଆମ ପଡ଼ିଶା ଘର ଅବ୍‌ଦୁଲ ଚାଚାଙ୍କର । ସେ ମୋ ବାପାଙ୍କୁ ବଡ଼ଭାଇ, ଓ ମୋ ମାଙ୍କୁ ଭାଉଜ ମାନ୍ୟ କରନ୍ତି । ତାଙ୍କ ପିଲାଙ୍କୁ ମୋ ବାପା ବୋଉ ନିଜ ପିଲା ପରି ଆଦର କରନ୍ତି । ଆମର ଦିନଟିମାନ ସୁଖୁଖୁସିରେ କଟିଯାଉଥାଏ । ଖରା ପରେ ବର୍ଷା ଦିନକୁ ଆମେ ଯେମିତି ଆଗ୍ରହରେ ଚାହିଁରହୁ, ବର୍ଷା ପରେ ଶୀତକୁ ଓ ଶୀତ ପରେ ପୁଣି ଖରାଦିନକୁ ସେଇମିତି ଆଗ୍ରହରେ ପ୍ରତୀକ୍ଷା କରି ରହୁଁ । ବର୍ଷକୁ ବର୍ଷ ଆମେ ପିଲାମାନେ ବଡ଼ ହେଉଥାଉଁ ଓ ବୁଢ଼ାମାନେ ବୁଢ଼ା ହୋଇ ଜଣ ଜଣ ହୋଇ ଆମକୁ ଛାଡ଼ିଯାଉଥାନ୍ତି । ଗୋଟି ଗୋଟି ହୋଇ ମଣିଷ ମରିବା, ମରିବା ପରି ଜଣା ପଡ଼ୁ ନ ଥାଏ । ଯେଉଁମାନେ ମରି ଯାଉଥାନ୍ତି ତାଙ୍କର ସ୍ମୃତି ଆମ ଭିତରେ ଜୀଇ ଉଠୁଥାଏ ; ସେମାନେ ଜୀଇଥିଲା ବେଳେ ଆମ ମନରେ ଯେତେ ଜୀଅନ୍ତା ଥିଲେ ତାହିଁରୁ ଅଧିକ ଜୀଅନ୍ତା ହେଉଥାନ୍ତି । ମୋ ଜେଜେ ବାପା ମରିବା ପରେ ଆମ ମନରେ ସେଇପରି ଜୀଇ ଉଠିଲେ । ସେ ବଞ୍ଚିଥିବା ଯାକ ବାପା ତାଙ୍କୁ କଥା କହନ୍ତି ନାହିଁ ; ତାଙ୍କ ବଞ୍ଚିରହିବାଟି ସତେ ଯେପରି ଆମ ସମସ୍ତଙ୍କ ଦୃଷ୍ଟିରେ ଅତି ମାମୁଲି କଥା ହୋଇ ଯାଇଥାଏ । ଦିନେ ଖଣ୍ଡେ ବେମାର ପଡ଼ି ସେ ମରିଗଲେ । ତା' ପରେ ଗାଁ ଯାକ ସମସ୍ତଙ୍କ ମୁହଁରେ ଶୁଣାଗଲା ତାଙ୍କର

କଥା । ବାପା ମୋତେ ବସାଇ ତାଙ୍କର କଥା କେତେ କହନ୍ତି, କହୁ କହୁ କାନ୍ଦି ପକାନ୍ତି ; ମା' ବି କାନ୍ଦନ୍ତି । କେବେ ମୋର ମରିଛନ୍ତି ବୋଲି ମୋର ମନରେ ହୁଏ ନାହିଁ । ଦାଣ୍ଡ ଦୁଆରେ, ଚଉପାଢ଼ିରେ, କୂଅ ମୂଳେ, ଗୁହାଳରେ ସେ ସବୁବେଳେ ମୋ ଆଖିରେ ପଡ଼ନ୍ତି । ପିତୃପୁରୁଷଙ୍କୁ ଏଇପରି ପୂଜା କରିବା ହିନ୍ଦୁ, ମୁସଲମାନ, ଶିଖ୍ ସମସ୍ତଙ୍କ ମଧ୍ୟରେ ସମାନ ଭାବରେ ଥାଏ ।

ଆଉ ଗୋଟିଏ ବିଷୟ ମଧ୍ୟ ସମସ୍ତେ ପାଳନ୍ତି । ଜଣେ ଯଦି ବେମାର ପଡ଼ିଯାଏ, କୌଣସି ପ୍ରୟୋଜନରେ ବିଦେଶ ଚାଲିଯାଏ, ତେବେ ତା' ମଇଁଷିକୁ ଖୋଇବା, ଗାଧୋଇ ଦେବା, ତା'ର ପିଲାମାଇପଙ୍କ କଥା ବୁଝିବା ଗାଁର ସମସ୍ତଙ୍କର କାମ ହୋଇଯାଏ । ପଢ଼ଣା ଘରର ମୁରବି ତ ଏହା ସାଧାରଣତଃ କରନ୍ତି, ତଥାପି ଗାଁର ଅନେକେ ଆସି ତାର ସବୁ କାମ ଠିକ ଚାଲିଛି କି ନାହିଁ ବୁଝିଯାନ୍ତି । ସେ ଗାଁରେ ଥିଲାବେଳେ ତା'ର ଜନ୍ତୁ ଓ ପିଲାପିଲି ଯେତିକି ଯତ୍ନ ଆଦର ପା'ନ୍ତି, ଅନୁପସ୍ଥିତ ଥିଲା ବେଳେ ତହିଁରୁ ଅଧିକ ଯତ୍ନ ମିଳେ ।

ଆମର ପଢ଼ଣାଘରର ଅବ୍‌ଦୁଲ ଚଚା ଓ ଆତ୍ମାରାମ ଜେଠା । ଚଚା ଆମକୁ ବେଶି ସାହାଯ୍ୟ କରନ୍ତି । ମୋ ପିଲାଦିନରେ ମୁଁ ତାଙ୍କର ମଇଁଷି ଉପରେ ବସି କେତେ ଆଡ଼େ ବୁଲିଛି । ମୁଁ ଥରେ କ'ଣ ଗୋଟାଏ ଦୁଷ୍ଟାମି କରିବାରୁ ଜେଠା ମୋତେ ଦି'ଟା ଚାପୁଡ଼ା ମାରିଥିଲେ ; ଅବ୍‌ଦୁଲ୍ ଚଚାଙ୍କର ତାଙ୍କର, ମୋରି ଯୋଗୁଁ ଖୁବ ଝଗଡ଼ା ହେଲା; ଶେଷରେ ବାପା ଆସି ଅବ୍‌ଦୁଲ ଚଚାଙ୍କୁ ଦାବିଲେ ଓ ଦୁହେଁ ଜେଠାଙ୍କୁ ଦୋଷ ମାଗି ବୋଧ କଲେ । ସବୁ ଗୋଲମାଳ ଏଇଭଳି ତୁଟେ । ଆମର ବିବାଦ ମିଟାଇବାକୁ ଆମେ ସହରକୁ ଯାଉ ନ ଥାଉଁ, କି ଆମର ଦୁଃଖଦୁର୍ଦ୍ଦଶା ଦୂର କରିବାକୁ ଆମେ ସହରର କାହାକୁ ସାହାଯ୍ୟ ମାଗୁ-ନ ଥାଉଁ ।

କ୍ରମେ ସହରବାଲା ଓପରେ ପଡ଼ି ଆମକୁ ସାହାଯ୍ୟ କରିବାକୁ ଆସିଲେ । ସେଇଠାରୁ ଆରମ୍ଭ ହେଲା ଆମର ବିପତ୍ତି । ଆଗ ସେମାନେ ଆସି ଆମ ଗାରେ ଗୋଟେ ସ୍କୁଲ ବସାଇଲେ—ଆମ ଆଖି ଖୋଲିବାକୁ ଏହା ସର୍ବପ୍ରଥମେ ଦରକାର ବୋଲି ସେମାନେ କହିଲେ । ସ୍କୁଲ ଯୋଗୁଁ ଆମର ପ୍ରଥମ ବିଭେଦ ଆରମ୍ଭ ହେଲା । ଆମେ ପଢ଼ିଲୁ ହିନ୍ଦୀ, ମୁସଲମାନ୍ ପିଲେ ଉର୍ଦ୍ଦୁ ଓ ଶିଖ ପିଲେ ଗୁରୁମୁଖୀ । ଏ ତିନିଭାଷା ପଢ଼ାଇଲେ ତିନିଜଣ ହିନ୍ଦୀ, ଉର୍ଦ୍ଦୁ ଓ ଗୁରୁମୁଖୀ ଶିକ୍ଷକ । ଆମେ ସବୁ ପିଲେ ଗୋଟିଏ ଭାଷାରେ ସ୍କୁଲ ବାହାରେ କଥାବାର୍ତ୍ତା ହେଉଥାଉଁ । ତାହା ହିନ୍ଦୀ ଉର୍ଦ୍ଦୁ ଓ ଗୁରୁମୁଖୀ ମିଶା ଖେଚେଡ଼ି । କିନ୍ତୁ ସ୍କୁଲ ଭିତରେ ତିନି ଜଣଙ୍କର ତିନି ଅଲଗା ଭାଷା । ଏଥିରୁ କେଉଁ ଭାଷାଟା ଭଲ ସେ ବିଷୟରେ ତିନି ଜଣଯାକ ମାଷ୍ଟର ଖୁବ ଝଗଡ଼ା କରନ୍ତି । ଏ ଝଗଡ଼ା ଆଗେ ଆମ ଗାଁର ବୁଢାମାନେ ଥାପଡ଼ା ଆପଡ଼ି କରି ତୁଟାଉଥିଲେ । ପରେ ଏହା ଏତେ ବଡ଼ ଆକାର ଧରିଲା ଯେ ଏହାକୁ ତୁଟାଇବାକୁ ଲାହୋରରୁ ମଣିଷ ଆସିଲେ । ତାଙ୍କ ନାଁ ନେତା । ସେମାନଙ୍କ ଯୋଗୁ କ୍ରମେ ଆମମାନଙ୍କ ଭିତରେ କଥାବାର୍ତ୍ତା ବି ବନ୍ଦ ହୋଇଗଲା । ଗାଁରେ ଦୁଇଦଳ ହୋଇଗଲା—ହିନ୍ଦୁ, ଶିଖ ଗୋଟାଏ ପଟ, ମୁସଲମାନ ଆଉ ଗୋଟାଏ ପଟ । ମୁସଲମାନଙ୍କ ସଂଖ୍ୟା ବେଶୀ

ହେଲେ ବି ହିନ୍ଦୁ ଶିଖଙ୍କ ପାଖେ ବେଶି ଜମି ଥିବାରୁ ସେମାନେ ଡର କରି ରହିଥାନ୍ତି । ମଝିରେ ମଝିରେ ତାଙ୍କର ନେତାମାନେ ଆସି ତାଙ୍କର ଭୟ ଭାଙ୍ଗୁଥାନ୍ତି ; ଆମ ଗାଁରେ ତାଙ୍କର ସଂଖ୍ୟା ବେଶି ହୋଇଥିବାରୁ ସେମାନେ ଇ ଗା ମାଲିକ ବୋଲି ହେମତ୍ ଦେଉଥାନ୍ତି ।

ମୁସଲମାନ ନେତାମାନେ ଆସି ପ୍ରଚାର କରିବା ପୂର୍ବରୁ ହିନ୍ଦୁ ନେତାମାନେ ଆସି ସ୍ୱରାଜ୍ୟ ଆନ୍ଦୋଳନ ଆରମ୍ଭ କରିଥାନ୍ତି । ଏଥିରେ ପ୍ରଥମେ ହିନ୍ଦୁ, ମୁସଲମାନ, ଶିଖ ସମସ୍ତେ ମିଶୁଥିଲେ । କିନ୍ତୁ କେତେ ବର୍ଷ ପରେ ମୁସଲମାନ ନେତାମାନେ ଆସି ବୁଝାଇଲେ ଯେ ସ୍ୱରାଜ୍ୟ ଅର୍ଥ ହିନ୍ଦୁମାନଙ୍କ ରାଜ୍ୟ—ହିନ୍ଦୁମାନେ ଚାହାନ୍ତି, ଇଂରେଜମାନେ ଆମ ଦେଶରୁ ଯିବା ପରେ ହିନ୍ଦୁ ରାଜା ହେବେ, ମୁସଲମାନଙ୍କୁ ହିନ୍ଦୁ କରିବେ । ଯେ ହିନ୍ଦୁ ନ ହେବେ ତାଙ୍କୁ ଆଫଗାନିସ୍ଥାନକୁ ଘଉଡ଼ିଦେବେ । ଏ କଥା ସତ ବୋଲି ମୁସଲମାନମାନେ ବିଶ୍ୱାସ କରିବାର କଥା । ଆମ ଗାଁ ପାଖର ସ୍ୱାମୀ ଦୟାନନ୍ଦ ସରସ୍ୱତୀ କେତେ ମୁସଲମାନଙ୍କୁ ହିନ୍ଦୁ କରିଥିଲେ । ମହାତ୍ମା ଗାନ୍ଧୀ ରାମଧୂନ ଗାଇ ସଭା କରନ୍ତି ବୋଲି ସମସ୍ତେ ଶୁଣିଥାନ୍ତି । ଏଇ କଥାକୁ ମୁସଲମାନ ନେତାମାନେ ନାନା ପ୍ରକାର ଫଳାଇ କରି ବୁଝାଇଲେହେଁ ଆମ ପଲ୍ଲୀର ମୁସଲମାନ ଭାଇମାନେ ବିଶେଷ ବିଚଳିତ ହେଉ ନ ଥାନ୍ତି । ଧର୍ମ ବିଷୟରେ ଆମ କାହାର ବିଶେଷ କିଛି ଧାରଣା ନ ଥାଏ । ଭଗବାନ ଯାହା ଦେଇଛନ୍ତି ସେତିକରେ ସନ୍ତୁଷ୍ଟ ହୋଇ ଶାନ୍ତିରେ ରହିବାଠାରୁ ଧର୍ମ ବିଷୟରେ ଆମ ଗାଁରେ କେହି ଅଧିକା କିଛି ବୁଝି ନ ଥିଲେ ।

କ୍ରମେ ସହରିଆ ନେତାଙ୍କର ପ୍ରଚାର ଯେତିକି ବଢିଲା, ଆମ ଗାଁରେ ହିନ୍ଦୁ ମୁସଲମାନ ଓ ଶିଖ୍‌ଙ୍କର ଏକଘରିଆ ଢଙ୍ଗ ସେତିକି ବଢିଲା । ମୁସଲମାନମାନେ ଆମକୁ ଅବିଶ୍ୱାସ କଲାପରି ଚଳିଲେ ; ଶିଖମାନେ ଆମ ବୁଢ଼ାଙ୍କଠାରୁ ଆଡ଼େଇ ହେଲା ପରି ରହୁଥାନ୍ତି । କିନ୍ତୁ ଅବଦୁଲ ଚାଚାଙ୍କ ସାଙ୍ଗେ ସମ୍ପର୍କରେ ବିଶେଷ କିଛି ବ୍ୟାଘାତ ହେଲା ନାହିଁ । ଅବ୍‌ଦୁଲ ଚାଚା ସମସ୍ତଙ୍କ ଆଗରେ ମୋ ବାପାଙ୍କ ସଙ୍ଗେ କଥାବାର୍ତ୍ତା ହେଉ ନ ଥାନ୍ତି ; ବାପା ମଧ୍ୟ ତାଙ୍କ ଦୁଆରକୁ ଯିବା ବନ୍ଦ କରିଦେଲେ । କିନ୍ତୁ ମୁଁ ଯାଏ, ଅବଦୁଲ ଚାଚାଙ୍କର ସାନ ପୁଅ ରହିମ୍, ମୋର ସମବୟସ, ଆମ ଘରକୁ ଆସେ । ବାଡ଼ି ପଟେ ମୋ ମା' ଓ ତା' ମା'ଙ୍କର କଥାବାର୍ତ୍ତା ଚାଲେ ।

ଶେଷକୁ ଯିବା ବି ବନ୍ଦ ହୋଇଗଲା । ଅବଦୁଲ ଚାଚାଙ୍କ ବଡ ପୁଅ ସଫି ଲିଗ୍‌ରେ ମେମ୍ବର ହେଲା । ସେ ସଭାରେ କହିଲା ଯେ, ମୁଲତାନିଆ ମୁସଲମାନ ରାଜ୍ୟରେ ମିଶିବ । କାଫେରମାନେ ଏଠାରୁ ତଡ଼ାହେବେ, ନ ହେଲେ କତଲ ହେବେ । ବାପା ଓ ଆତ୍ମାରାମ ଜେଠା ହେରିକା ଯିବା ଶୁଣି ହସିଲେ । ସାତପୁରୁଷର ଘରଡିହରୁ କିଏ କମିତି ତଡ଼ିବ, କିଏ ବା କାହିଁକି ଯିବ ବୋଲି କହି ଜେଠା କହିଲେ, "ଏ ସହରିଆ ଲୋକଗୁଡ଼ାକ ସଫିର ମୁଣ୍ଡ ବିଗାଡ଼ି ଦେଲେଣି ।" ହିନ୍ଦୁ ମୁସଲମାନଙ୍କର ଗୋଟାଏ ମିଳିତ ସଭା ସେ କରିବାକୁ ଲାଗି ପଡ଼ିଲେ । କିନ୍ତୁ ସଭା ହୋଇ ପାରିଲା ନାହିଁ ।

ଦିନେ ରାତିରେ—ଅଧରାତି ହେବ - ରୁଚୀ ବାଡ଼ ପଟେ ଆମ ଘରକୁ ଆସି ମୋ ମା'ଙ୍କୁ ଉଠାଇଲେ । ମୋତେ ସେତେବେଳକୁ ୧୨ ବର୍ଷ । ମା'ଙ୍କ ସାଙ୍ଗେ ମୁଁ ବି ଉଠି ପଡ଼ିଲି । ରୁଚୀ ମା'ଙ୍କୁ କହିଲେ, 'ସଫି ଆସି କହୁଛି, ମୁଲ୍‌ତାନଆ ମୁସଲମାନ ମୁଲକ ହେଇ-ଗଲା । ତମେ ସବୁ ଯଦି ସାଙ୍ଗେ ସାଙ୍ଗେ ନ ପଳେଇବ ତେବେ ହାଣକାଟ ଲାଗିଯିବ । ତା' ବାପା ଠାକୁରଙ୍କ ସଙ୍ଗେ କଣ କଥାବାର୍ତ୍ତା ହେବେ ବୋଲି ହେଇଟି ସେଠି ଠିଆ ହୋଇଛନ୍ତି । ଠାକୁରଙ୍କୁ ଶୀଘ୍ର ଉଠାଇଦିଅ ।''

ମୋ ବାପା ଘୋର ନିଘୋଡ଼ ନିଦ ଶୁଅନ୍ତି । ତାଙ୍କୁ ଉଠାଇବା ପାଇଁ ମା ଓ ମୁଁ ଖୁବ୍ ଚେଷ୍ଟା କଲୁଁ । ବହୁ କଷ୍ଟରେ ତାଙ୍କର ନିଦ ଭାଙ୍ଗିଲା । ସେ ଆଖି ମଳି ମଳି ସବୁ ଶୁଣିଲେ, କିନ୍ତୁ ପୁଣି ଶୋଇବାକୁ ଉଦ୍ୟମ କରି କହିଲେ, ''ମୁସଲମାନ ମୁଲକ ହେଲେ ହେଉ, ଆମର କ'ଣ ଅଛି ? ଆଗ ତ ମୁସଲମାନ ମୁଲକ ଥିଲା, ଏବେ ଶହେଖଣ୍ଡେ ବର୍ଷ ହେଲା ଫିରଙ୍ଗି ମୁଲକ ହୋଇଛି । ପୁଣି ଯଦି ମୁସଲମାନ ମୁଲକ ହେବ ହେଉ ।''

ଏତିକି ବେଳେ ଆମ ଗାଁ ମୁଣ୍ଡେ ଗୋଟେ ଘୋ ଶୁଭିଲା । ପ୍ରାୟ ହଜାରେ ହେବ ଲୋକ ବିକଳରେ ପାଟି କରି ଆମ ଗାଁ ଭିତରେ ପଶି ଆସିଲେ । ତାଙ୍କ ପଛରୁ ମୁସଲମାନ ତାଙ୍କୁ ଘଉଡ଼ୁଥାନ୍ତି । ସେମାନେ ଆସି ଗାଁ ମଝିରେ ପହଞ୍ଚିବାର ଅଧଘଣ୍ଟାକ ଭିତରେ ଆମେ ସମସ୍ତେ ଗାଁ ମଝି ଚଉପାଢ଼ିରେ ଯାଇ ଠୁଳ ହୋଇଗଲୁ । ବାହାର ଗାଁର ଗୋଟେ ମୁସଲମାନ ଚଉ-ପାଢ଼ି ଉପରକୁ ଯାଇ ପାଟି କଲା, ''ଏଠାରେ ହିନ୍ଦୁ ବା ଶିଖ୍ ରହିପାରିବେ ନାହିଁ । ସୂର୍ଯ୍ୟ ଉଦୟ ହେବା ପୂର୍ବରୁ ସମସ୍ତେ ଏଠାରୁ ଗ୍ରାଡ଼ି ଚାଲିଯିବାକୁ ହେବ । ପିନ୍ଧିବା ଲୁଗା ବ୍ୟତୀତ କେହି କିଛି ନେଇ ପାରିବେ ନାହିଁ । ଟିକିଏ ପାଟି ତୁଣ୍ଡ କଲେ ହେଇଟି ଦେଖ'' ବୋଲି କହି ସେ ତା'ର କାତି ଦେଖାଇଲା ।

ବାବା ରଘୁବୀର ସିଂହ ତାକୁ ଚେଡ଼ି କରି କ'ଣ କହିବାକୁ ବାହାରୁଥିଲେ । ବାପା ତାଙ୍କୁ ରୋକି କରି କହିଲେ, ''ବିନା କାରଣରେ ଭାଇ ଭାଇ ଲଢ଼ିବା ଦରକାର ନାହିଁ । ସେ ଯାହା କହୁଛନ୍ତି ସେଇଆ ହେଉ । ଆମେ ଚାଲିଯିବୁ କିନ୍ତୁ ଆମ ଗାଇ ମଇଁଷିକୁ ଆମ ସାଙ୍ଗରେ ନେବାକୁ ଦିଅ । ସ୍ତ୍ରୀ ପିଲା ଆମକୁ ଯେମିତି ପ୍ରିୟ, ସେମାନେ ସେମିତି ।''

ମୁସଲମାନଟା କହିଲା, ''ସ୍ତ୍ରୀ ପିଲାଙ୍କୁ ନେଇ ନିରାପଦରେ ଯାଇ ପାରୁଛ କି ନାହିଁ ଆଗ ଦେଖ ; ଗାଈ ମଇଁଷିଙ୍କୁ ପଛେ ସ୍ତ୍ରୀ ପିଲା କରିବ । ନିଜ ନିଜ ପ୍ରାଣ ନେଇ ପଳାଅ । ତୁମ ଭଲକୁ କହୁଛି । ବେଶି ବକର୍ ବକର ହେଲେ ସମସ୍ତଙ୍କୁ ଏଠି ମାଟିରେ ମିଶାଇ-ଦେବି ।''

'କ'ଣ କହିଲୁ ?' ବୋଲି ବାବା ରଘୁବୀର ସିଂହ କାତି କାଢ଼ି ବାହାରି ପଡ଼ିଲେ ; ଆମ ଗାଁରେ ସେ ସବୁଠାରୁ ବୁଢ଼ା ; ଅଶି ବର୍ଷ ବୋଲି ସମସ୍ତେ କହନ୍ତି । ଧଳା ବାଳ ଓ ଦାଢ଼ି ଭିତରେ ତାଙ୍କର ନାଲି ଆଖି ସବୁବେଳେ ଦାଉ ଦାଉ ହେଉଥାଏ । ଅନ୍ଧାରରେ ତାଙ୍କୁ ମୁଁ ଦେଖିପାରିନଥିଲି । ମୁଁ ଆମ ଦାଣ୍ଡ ଦୁଆରେ ମା'କୁ ଧରି ଠିଆ ହୋଇଥାଏ ।

ମା' ଚିତ୍କାର କରି ଉଠିଲେ, ଚଣ୍ଡାଳ କ'ଣ କଲୁ ? ମୁଁ ଗୁହାଁ ଦେଲା ବେଳକୁ ଦେଖିଲି ବାବା ରଘୁବୀର ତଳପାଟି ତଳକୁ ପଡି 'ଜୟ ଗୁରୁ ଗୋବିନ୍ଦ ସିଂହ' ବୋଲି କହୁଛନ୍ତି । ଶିଖମାନେ ପ୍ରାୟ ପାଞ୍ଚଜଣ ମୁସଲମାନଙ୍କୁ ମାରଦେଇଥିଲେ ବୋଲି, ପରେ ଶୁଣିଲି । ମୁସଲମାନଙ୍କ ସଂଖ୍ୟା ବହୁତ ବେଶି । ସେମାନେ ଆମ ଗାଁର ସବୁ ଶିଖଙ୍କୁ ପଦାକରି ଦେଲେ । ମୋର ସାଙ୍ଗ ପିଲା ବଚନ ଏକୁଟିଆ ବଞ୍ଚିଥିଲା । ତାକୁ ଜଣେ ମୁସଲମାନ ଗୁଣ୍ଡା ମାରିବାକୁ ଗୋଡ଼ାଇ ଆସିଲା ବେଳକୁ ଗୁଡ଼ୀ ତାକୁ ଘର ଭିତରକୁ ଟାଣି ନେଇଗଲା । ମୋ ବାପା ଉଭୟ ପକ୍ଷକୁ ନିବର୍ତ୍ତାଇବାକୁ ମେଳି ଭିତରେ ପଶି ଯାଇ ହାତ ଟେକି ହାଁ ହାଁ କହୁଥିଲା ବେଳକୁ ତାଙ୍କ ହାତକୁ ଗୋଟାଏ ମୁସଲମାନ ଦୁଗଡ଼ କରିଦେଲା । ମା' ଏହା ଦେଖି 'ଚଣ୍ଡାଳ କ'ଣ କଲା ?' ବୋଲି କହି ଗଛ କାଟିଲା ପରି ଭୂଇଁରେ ପଡ଼ିଗଲେ । ତା'ପରେ ଆଉ ସେ ଉଠିଲେ ନାହିଁ ! ମୁଁ ତାଙ୍କ କୁଣ୍ଢାଇ ପଡ଼ିଯାଇ କାନ୍ଦି କାନ୍ଦି ଶୋଇ ପଡ଼ିଲି । ଫର୍ଚ୍ଚୁଆ ଉଠିଲା ବେଳକୁ ଭୋକ ହେବାରୁ ନିଦ ଭାଙ୍ଗିଗଲା ।

ଦାଣ୍ଡଯାକ ମୁରଦାର ପଡ଼ିଥାନ୍ତି । ଆମ୍ବାଗ୍ରାମ ଜେଠା ମୋ ହାତ ଧରି ମୋତେ ବାପାଙ୍କ ପାଖକୁ ନେଇଗଲେ । ତାଙ୍କର ବାଁ ହାତଟା ଖୁଆଠାରୁ କଟି ଯାଇଥାଏ । ସେ ଯେଉଁଠାରେ ପଡ଼ିଥାନ୍ତି ତା' ଚାରିପାଖ ରକ୍ତରେ ଜୁଡ଼ୁବୁଡ଼ ହୋଇଥାଏ । ଆଲୁଅ ହେବାରେ ମାଛି ଆସି ବସୁଥାନ୍ତି । ବାପାଙ୍କ ପାଖରେ ମୁଁ ଯାଇ ପହଞ୍ଚିବାରୁ ସେ ଅତି ଧୀରେ ଧୀରେ ତାଙ୍କ ଡାହାଣ ହାତ ମୋ ଉପରେ ପକାଇ କହିଲେ, ''ତାରି ! ତୋ ଜୀବନରେ ଏଡ଼େ ପିଲାଦିନୁ ଦୁଃଖ ପଡ଼ିଥିବାରୁ ବଡ କାନ୍ଦୁଛି । ମୋ ହାତର କଷ୍ଟ ମୋତେ ଜଣା ପଡ଼ୁନାହିଁ । ତୋ ମା କଥା ଆମ୍ବାଗ୍ରାମ ଭାଇଙ୍କଠାରୁ ଶୁଣିଲି । ମୋତେ ଜଣାପଡୁଛି ଅଳ୍ପ ସମୟରେ ମୁଁ ତା' ପାଖକୁ ଚାଲିଯିବି । ଆମ୍ବାଗ୍ରାମ ଭାଇଙ୍କ ଗୋଡ଼ ଧରି କହୁଛି ସେ ବଞ୍ଚିଥିବା ଯାକ ତୋ'ର ହେପାଜତ ନେବେ । ଭଗବାନଙ୍କଠାରେ ଦୟା ରଖିଥିବୁ । ମା ! ଯାହା ହେଲା ସେ କାହିଁକି କରାଇଛନ୍ତି ତାଙ୍କୁ ଜଣା ।''

ଜେଠା କହିଲେ, ''ଡାକ୍ତରଖାନାକୁ ନେଲେ ତୋ ବାପା, ବଞ୍ଚିଯାଇ ଥାଆନ୍ତା । କିନ୍ତୁ ନେବ କେମିତି ?''

ବାପା କହିଲେ, ''ଭାଇ ! ସେ କଥା ଆଉ ମନକୁ ଆଣ ନାହିଁ । ନିଜେ ତୁମେ କେମିତି ବଞ୍ଚିବ ମୁଁ ଭାବୁଛି । ତୁମ ପୁଅ ତ ହେଇଟି ମୋ ପାଖରେ ମରି ପଡ଼ିଛି । ମୁଁ ତାକୁ ଜଗି ଏଠାରେ ରହିଲି । ତୁମେ ନିରାପଦ ଜାଗାକୁ ଚାଲିଯାଅ ।''

ଜେଠା କହିଲେ, ''ବଚ୍ଛା ! ଯମାଳୟ ବ୍ୟତୀତ ନିରାପଦ ସ୍ଥାନ ଆଉ ଆମ ପାଇଁ କାହିଁ ? ଦି' ଥର ମନେକଲିଣି, ଆତ୍ମହତ୍ୟା କରିବାକୁ । କିନ୍ତୁ ତାହା ପାପ ବୋଲି ନିବର୍ତ୍ତୁଛି । ତାରି ସାଙ୍ଗକୁ ମୋ ବୋହୂଟା ବି ରହିଛି ମୋର ନ୍ୟାସ ହୋଇ । ରାକ୍ଷସ ଅବଦୁଲ୍ଲାକୁ କହି ଯାଇଛି, ସଂଧ୍ୟା ପୂର୍ବରୁ ଯେପରି କୌଣସି ହିନ୍ଦୁ ବା ଶିଖ୍ ଏ ଗାଁରେ ନ ରହନ୍ତି ।''

ବାପାଙ୍କ ପ୍ରାଣବାୟୁ ଓପରଓଳି ଚାରିଟାରେ ଉଡ଼ିଗଲା । ଜେଠା ତାଙ୍କ ପୁଅ, ମୋ ମା', ବାପା ଓ ଆମ ଗାଁର ଆଉ ଚାରି ପାଞ୍ଚ ଜଣ ହିନ୍ଦୁଙ୍କୁ ଏକା ଜୁଇରେ ଲଦିଦେଇ, ଆମ

ଘରୁ ଓ ତାଙ୍କ ଘରୁ ଯେତେ ଯାହା କାଠ ଓ କାଠ ଜିନିଷ ପାଇଲେ ନିଆଁ ଉପରେ ଖଞ୍ଜି-ଦେଲେ । ନିଆଁ ଜଳୁଥାଏ ; ସନ୍ଧ୍ୟା ହେବାରୁ ମୋତେ ଓ ଭଉଣୀକୁ ଆଗରେ ଚଲାଇ ପଛେ ପଛେ ବଗଳାମୁଖୀ ସ୍ତୋତ୍ର ଗୁଣି ଗୁଣି ଚାଲିଲେ । ମଝିରେ ମଝିରେ କହୁଥାନ୍ତି, "ମା, ଲଡ଼କୀ, ତୁମେ ଦୁହେଁ ଟିକିଏ ଗୋଡ଼ ଫିଟେଇ ଚାଲ । ପୂର୍ବଦିଗକୁ ଯେତେ ଅଧିକ ଚାଲିଯିବା ସେତିକି ନିରାପଦ ।" ବୁଢ଼ା ଆମ ପଛରେ ଲାଗିପାରୁନଥିବାରୁ ଆମେ ଧୀର ଧୀର ଚାଲୁଥାଉ । ଭଉଣୀ ଆଖିରୁ ଅଜସ୍ର ଲୁହଧାର ବହୁଥାଏ, ମୋ' ଆଖିରେ ପାଣି ନ ଥାଏ ।

ରାତି ଘଡ଼ିଏ ହେବ । ଅନ୍ଧାର ପକ୍ଷ । ଆମେ ଗୋଟାଏ ଆମ୍ବ ତୋଟାରେ ଟିକିଏ ଜିରେଇଛୁ, ଅବଦୁଲ୍ ଚାଚା ଆସି ପହଞ୍ଚିଲେ । ଜେଠାଙ୍କୁ ମୁଣ୍ଡିଆ ମାରି ଭୋ ଭୋ କାନ୍ଦି କହିଲେ, "ଖ୍ୱାଜା ! ମୁଁ ବଡ଼ ଅପରାଧୀ । ମୋରି ଯୋଗୁଁ, ମୋର ପୁଅ ଓ ମୋର ଜାତି ଯୋଗୁ ଆଜି ତୁମର ଏ ଦଶା । ଜାହାନାମ୍‌କୁ ଗଲେ ମୁଁ ଶାନ୍ତି ପାଇବି ।"

ଜେଠା କହିଲେ, "ଅବ୍‌ଦୁଲ୍ଲା ! ତୋର ଏଥିରେ କିଛି ଦୋଷ ଅଛି ବୋଲି ମୁଁ ଆଦୌ ବିଚାର ପାରୁନାହିଁ । ଏ ସବୁ ଖୋଦାର କାମ । ମଣିଷକୁ ସେଇ ଭଲ ବୁଦ୍ଧି ଦିଏ ପୁଣି ମନ୍ଦ ବୁଦ୍ଧି ଦିଏ । ତୁ ଯା ! ଆମ ପାଇଁ ତୋ'ର କିଛି ବିପତ୍ତି ନ ହେଉ ।"

ଚାଚା ଉଠି ହାତ ଯୋଡ଼ି କରି କହିଲେ, "ଖ୍ୱାଜା, ମୋ ଉପରେ ଯଦି କିଛି ରାଗ ନାହିଁ ତେବେ ସାନଭାଇର ଏ ଭେଟି ଗ୍ରହଣ କର ।" ଏହା କହି ସେ କାଗଜର ଗୋଟିଏ ପୁଟୁଳା ତଳେ ଥୋଇଦେଲେ । ଜେଠା ତାକୁ ଚାହିଁଲେ, ଛୁଇଁବେ କି ନାହିଁ ବୋଲି ଥତା-ମତା ହୋଇ ପୁଟୁଳାଟି ଉଠାଇ ନିଜ ଚପକନ୍‌ର ଭିତର ପକେଟରେ ରଖି କହିଲେ, "ଉଠରେ ପିଲେ, ଚାଲ ଯିବା ।"

## ( ୮ )

ତାପର ଜୀବନକାହାଣୀ ଶୁଣିବାକୁ ନାୟକେ ଓ ବାହ୍ମଣପଡ଼ା ତହିଁ ଆରଦିନ ସନ୍ଧ୍ୟା-ବେଳେ ଆସି ଦାସଙ୍କ ଚଉପାଢିରେ ବସିଥାନ୍ତି । ମହାପାତ୍ରେ ତାଙ୍କ ଦୁଆର ମୁହଁରୁ ଡାକ ଦେଲେ, 'ମୁଁ ଗୋରୁ ବାନ୍ଧି ସଞ୍ଜ ବସାଇ ଯାଉଛି ଆରମ୍ଭ କରି ନ ଥାଅ ।' ଆମେ ତାଙ୍କୁ ଅପେକ୍ଷା କରିଥାଉଁ, ଏଇ ସମୟରେ ଗାଁର ସବୁଠାରୁ ବଡ଼ ବୁଢ଼ା ଦକ୍ଷିଣକବାଟ ତମ୍ମତମ୍ମ ହୋଇ ଆସି ପହଞ୍ଚିଲେ । ବୁଢ଼ାଙ୍କ ମୁହଁ ଉତ୍ତେଜନାରେ ଲାଲ ପଡ଼ିଯାଇଥାଏ । ସେ ସମସ୍ତଙ୍କୁ ଜେକେ ହୋଇ ଦାସଙ୍କୁ ଲକ୍ଷ୍ୟକରି କହିଲେ, "ଆପଣେ ! ଆପଣଙ୍କୁ ଏ ପାଞ୍ଚ କୋଶରେ କିଏ ନ ଚିହ୍ନେ ? ଆପଣ ଥାଉ ଥାଉ ଏ ଗାଁରେ ଯେଉଁ ଘଟଣା ସବୁ ଘଟୁଛି ତାକୁ ଶୁଣୁ ଛନ୍ତି କି ? ମୋର ଦେହ ନ ସହିବାରୁ ଆଜି ଆସିଛି ।"

ଦାସେ କହିଲେ, "ସେମିତି ଗୋଟାଏ ଗୁରୁତର ଘଟଣା ନ ଘଟିଥିଲେ ତୁମେ ଅଡ଼ଙ୍ଗରୁ ଗଡ଼ନ୍ତ ନାହିଁ ବୋଲି ଜାଣୁଛି । କାଲି ପୁଅଙ୍କୁ ପଚାରୁଥିଲି ; ସେ କହିଲେ, ବାପା ଆଉ ଚାଲିପାରୁନାହାନ୍ତି । ପଞ୍ଚାଅଶି ପୂରିଗଲାଣି ପରା ?"

ଦକ୍ଷିଣକବାଟେ କହିଲେ, "ହଁ ଛୟାଅଶି ଅଧିକରୁ ବେଶି ହୋଇଗଲାଣି । ଚାଲିବାକୁ କଷ୍ଟ ହେଉଛି ଯେ, ପୁଅ ଯୋଗ୍ୟ ହୋଇଥିଲେ ସିନା ଆରାମ କରି ବସନ୍ତି ! ଆଜିର ଘଟଣା ଶୁଣି ତାଙ୍କ ଦେହରେ ତ କାହିଁକି ଛଳି ପଶିଲା ନାହିଁ ! ବାଧ୍ୟ ହୋଇ ଆସିଲି ।"

ଆମେ ସମସ୍ତେ ଉତ୍ସୁକ ହୋଇ ଚାହିଁଲୁ । ଦାସେ କହିଲେ, "ଘର ଭିତରକୁ ଯିବା ? କ'ଣ ଗୁପ୍ତ କଥା କିଛିସବୁ ?"

ଦକ୍ଷିଣକବାଟ କହିଲେ, "ନାଇଁ, ଗୁପ୍ତ କ'ଣ ? କଥା ତ ବଜାରରେ ପଡ଼ି ସାରିଲାଣି, ଲୁଚାଇ ଲାଭ କ'ଣ ? (ମୋ ଆଡ଼କୁ ଚାହିଁ) ଏସ୍ତେ ଆପଣ କୁଳୁଆଁ ପରା ?"

ଦାସେ ମୋର ପରିଚୟ ଦେବାରେ ସେ କହିଲେ, "ତେବେ ତ ଏସ୍ତେ ଶୁଣିବାର କଥା । ଶୁଣନ୍ତୁ, ସଂସାରରେ ବର୍ତ୍ତମାନ ଯେଉଁ ରବାଦ ଦେଖାଯାଉଛି, ତା'ର ଫଇସଲା କିମିତି ହେବ କହନ୍ତୁ । ପଣ୍ଡିତମାନଙ୍କଠାରୁ, ପଚଶ ଜାଗା ଦେଖିଥିବା ଲୋକଙ୍କଠାରୁ ନ ଶୁଣିଲେ କାହାଠାରୁ ଶୁଣିବା ? ତାଙ୍କ ଆଗରେ ନିଜର ଦୁଃଖ ନ କହିବା ତ କାହା ଆଗେ କହିବା ?"

ଏତିକିବେଳେ ମହାପାତ୍ରେ ଆସି ପହଞ୍ଚିଲେ । ତାଙ୍କୁ ଦେଖି ଦକ୍ଷିଣକବାଟେ କହିଲେ, "ବେଶ, ମହାପାତ୍ରେ ତ ଆସି ପହଞ୍ଚିଗଲେଣି ! ମୁଁ ତମକୁ ନ ଦେଖି ବିଚାରୁଥିଲି, ବୋଧ ହୁଏ ପୁଅଙ୍କ ପାଖକୁ ଯାଇଛନ୍ତି ଅବା ।"

ମହାପାତ୍ରେ ନିଜର ଦୁଃଖସୁଖ କହି କୈଫିୟତ୍ ଦେବା ପରେ ଦାସେ କହିଲେ, "ସାଆନ୍ତେ ! କ'ଣ କହିବ ପରା, କହ ।"

ଦକ୍ଷିଣ କବାଟେ ସାଆନ୍ତ ଘର । ନାମ ବ୍ୟତୀତ ଆଉ ବିଶେଷ କିଛି ନାହିଁ, ବାପୁଆ କଣ ଦ'ପଟାକୁ ଛୁଡ଼ି । ସାଆନ୍ତ ବୋଲି ସମ୍ବୋଧନ କରିଦେଲେ, ତାଙ୍କର ହାତ ସ୍ୱତଃ କଣ ଉପରକୁ ଚାଲିଯାଏ । କଣକୁ ଆଉଁସି ଦେଇ ସେ କହିଲେ, "ଆପଣେ ! କହିବାକୁ ଲାଜ, ନ କହିଲେ କୁଳ ସରିଯାଉଛି । ମୋ ନାତୁଣୀଟା ଜାଣିଲେ, ଆପଣଙ୍କ ଏ ଇସ୍କୁଲରେ ପଢୁଥିଲା । କ'ଣ ଗୋଟାଏ ପରୀକ୍ଷା ଦେବାକୁ ସେ ଯାଇଥିଲା ଖୋରଧା । ସେଠେଇ ଯୋଉଁ ଅଘଟଣ ଘଟିଲା, କାହାକୁ କହିବ ? ମୋ ନାତୁଣୀ, ତା' ସାଙ୍ଗେ ଆଉ ଗୋଟେ ଟୋକୀ ଗୋଟେ ଘରେ ବସି କଥାବାର୍ତ୍ତା ହେଉଥିଲେ, ଯୋଡାଏ ଭେଣ୍ଡିଆ ସେ ଘରେ ପଶିଯାଇ ଭିତରୁ କୁଆର କଲଦେଲେ । ମୋ ନାତୁଣୀ ପାଟି କରିବାରୁ ଇସ୍କୁଲ ଯାକର ଗୋଟେ ମାଷ୍ଟ୍ର ଓ ପିଲା

ଆସି ସେଠି ଜମାହେଲେ ; ତେବେ ଯାଇ ସେ ଟୋକା ଦ'ଟା ଗଲେ । ମୁଁ କହୁଛୁ କଣ ଜାଣିଲେଟିକି ? ସ୍ୱେ ସୁ ଟୋକା ଯୋଡ଼ାକ, ତାଙ୍କୁ କେହି ପଦେ କହିଲେ ନାହିଁ, ପୁଲିସ୍ ହାକିମ ଏତେ ଏତେ ଅଛନ୍ତି, କେହି କିଛି କଲେ ନାହିଁ ! ଇମିତିରେ ଚଳିବା କେମିତି ଭଲା ?"

ଦାସେ କିଛି କହିବା ପୂର୍ବରୁ ବାହିନୀପତି କହିଲେ, "ଜାଣିଲ, ଦକ୍ଷିଣ କବାଟେ, ପାଠ ଲେଖିଛୁ. 'କଲୌ ଚ କେବଳଂ କର୍ତ୍ତା ଫଲଭୁକ୍ ପାପପୁଣ୍ୟୟୋଃ' । ପିଠିରେ ପଡ଼ିବାକୁ କେହି ନାହିଁ । ନିଜ ଇଜ୍ଜତ ନିଜେ ରଖିବାକୁ ହେବ । ଏତେ ମାଇକିନିଆ ପିଲା ଇସ୍କୁଲରେ ପଢ଼ୁଛନ୍ତି, ତମ ପିଲା ଉପରେ ଏମିତ ଅଦୌଡ଼ ହେଲା କାହିଁକି ? ଯଦି ହେଲା, ତେବେ ତମ ପିଲା ତା'ର ପ୍ରତିକାର ସେତେଇ ନ କଲା କାହିଁକି ? ଗାଁରୁ ସତରଜଣ ମାଇକିନିଆ ଝିଅ ପରୀକ୍ଷା ଦେବାକୁ ଯାଇଥିଲେ, ଏ ପିଲା ଯୋଡ଼ିକ ଅଲଗା ହୋଇ ଗୋଟିଏ ଘରେ ରହୁଥିଲେ କିଆଁ ? ମୁଁ ଆମ ପିଲାଙ୍କଠାରୁ ସବୁ କଥା ଶୁଣିଛୁ । ସେ ଟୋକା ଦ'ଟା ସମସ୍ତଙ୍କୁ କ୍ଷମା ମାଗିବାକୁ ଗୁଡ଼ ପାଇଲେ । ତମ ପିଲା ସାଙ୍ଗରେ ଆଉ ଯେଉଁ ଟୋକୀଟା ଥିଲା ସେ ତା' ଗୋଡ଼ରୁ ଚଟି କାଢି ଗୋଟାଏ ଟୋକାକୁ ନିସ୍ତୁକ ପିଟିଛି । ତା' ମୁହଁରେ ଯୋଡ଼ାଏ ଚିହ୍ନ ରହିଯାଇଛି, ବର୍ଷକରେ ଗଲେ ଗଲା ପର ।"

ଦକ୍ଷିଣ କବାଟେ କହିଲେ, "ଆମ ପିଲା ଗୋଡ଼ରେ ଚଟି ଥିଲେ ସେ କ'ଣ ଗୁଡ଼-ଆନ୍ତା ? ପୁଣି, ତାକୁ ଯେଉଁ ଟୋକାଟା ଧରିଥିଲା ସେଇଟା ଗୋଟେ ମାସ୍ତ୍ର, ମାସ୍ତ୍ରଟାକୁ ମାରନ୍ତା ବା କେମିତି ? ନ ହେଲେ ସେ ଯେଉଁ ଘରର ପିଲା, ଗୁଡ଼ିଥାନ୍ତା ପରି ?"

ଦାସେ ବ ଟିକିଏ ମୁଡ଼ୁକି ମୁଡ଼ୁକି ହସିଲେ । ପରେ ମହାପାତ୍ରଙ୍କଠାରୁ ଶୁଣିଲି, ତାଙ୍କ ନାତୁଣୀଟିର ଆଚରଣ ବିଷୟରେ ଗାଁରେ ବହୁତ କଥା ଶୁଣାଯାଏ । ନାୟକେ କହିଲେ, "ଟୋକା ଯୋଡ଼ାକ ହାତ ଗୋଡ଼ ଧରିବାକୁ ଯେ ଗୁଡ଼ ଦେଇଛନ୍ତି ସେ ଭଲ କରିଛନ୍ତି । ଏଭଳି କଥାଗୁଡ଼ାଏ ଘଣ୍ଟାଚକଟା କଲେ ଟୋକାଙ୍କର ଯେତେ ଅନିଷ୍ଟ ହୁଅନ୍ତା, ତାହିଁରୁ ଅଧିକ ହୁଅନ୍ତା ତୁମ ପିଲାଟିମାନଙ୍କର । ପିଲା ଦିନର ଏ ସବୁ ଭଲ ମନ୍ଦ ପରେ ତ ପୁଣି ଏମାନେ ଯାଇ ଘରଦ୍ୱାର କରିବେ । ଆଜିର ଏ ବିପରୀତ ଯୁଗରେ ଆମେ ସାହେବୀ ଢଙ୍ଗରେ ପିଲାଙ୍କୁ ପାଠ ପଢ଼ାଉଥାଇଁ ସିନା, ବିଭାଘର ବେଳକୁ ଆରମ୍ଭ ହେବ ମରହଟିଆ କଥା, କେତେ ଛୁଞ୍ଚି ମାଛି ପରୀକ୍ଷା ହେବ, ସେ କଥାକୁ ମନରେ ରଖି ଚଳିବା ଦରକାର ।"

ଦକ୍ଷିଣ କବାଟଙ୍କ ମୁହଁ କବାଟ ପରି ହେବାର ଲକ୍ଷ୍ୟ କରି ଦାସେ କହିଲେ, "ସେ କଥା ସତ ଯେ, ବାଉଁଶକୁ ଘୁଣ୍ଡି ପୋଲ । ପୁରୁଣା ଘରମାନଙ୍କର ପିଲାଙ୍କୁ କାଳ କ'ଣ କରିବ ? ଦେଖିଲ ନାହିଁ, ସାଆନ୍ତଙ୍କ ପିଲା ବୋଲି ସିନା ସେ ଦିନ ନିଜର ଇଜ୍ଜତ ବଞ୍ଚାଇ ଆସିପାରିଲେ । ଅନ୍ୟ ଘରର ପିଲା ହୋଇଥିଲେ ସମ୍ଭାଳି ପଡ଼ିଥାନ୍ତା ? ଯାହାହେଉ, ମୋତେ

ଏ କଥାଟା କହିଲ ଭଲ କଲ । ମୁଁ କାଲି ଯାଇ ଏ ବିଷୟରେ କଥାବାର୍ତ୍ତା ହୋଇ ଆସିବି ।''

ଦକ୍ଷିଣ କବାଟଙ୍କ ମୁହଁ ପ୍ରସନ୍ନ ହୋଇଗଲା । ସେ ବିଦାୟ ନେବାକୁ ଉଠିଲା ବେଳକୁ ଦାସେ, ଚା ଟିକିଏ ଖାଇକରି ଯାଅ ବୋଲି ଅନୁରୋଧ କଲେ । ମହାପାତ୍ରେ କହିଲେ, ଆମର କାଲି ଯେଉଁଠି ରହିଥିଲା, ସେଇଠୁ ପଢ଼ନ୍ତୁ, ବାରବାବୁ !''

ମୁଁ ଆରମ୍ଭ କଲି :—

—ଆମେ ଯେଉଁଠାରେ ବସିଥିଲୁ ତାହା ଜଙ୍ଗଲ ଭିତରେ ପଡ଼ିଥିବା ଡଙ୍ଗର ଠାରୁ ଅଳ୍ପ ଦୂର । କେଜାଣି ସେବାଟେ କିଏ ଆସିବ, ହୁଏତ ଆମ ଉପରେ ତା' ଦୃଷ୍ଟି ପଡ଼ିବ ; ଯଦି ଆମ ଉପରେ ଆକ୍ରମଣ ହୁଏ, ତେବେ ନିଜକୁ ରକ୍ଷା କରିବାକୁ ଆମର ବଳ ନାହିଁ । ଆତ୍ମାରାମ ଜେଠା ହାତରେ ଗୋଟାଏ ପଞ୍ଚହତା ବାଡ଼ି ଧରିଥାନ୍ତି ; କିନ୍ତୁ ସେ ଖଣ୍ଡ ଉଠାଇବାକୁ ତାଙ୍କର ବଳ ପାଇ ନ ପାରି ହେଉଥାଏ । ଆମେ ଦୁହେଁ ତ ମାଇକିନିଆଁ, କାଲି ରାତିର ଘଟଣା ଦେଖି ମୁଁ ତାଟକା ହୋଇଯାଇଥାଏ, ଭାବୀ ଏକାବେଳକେ ପାଗଳ ପରି ହୋଇଯାଇଥାନ୍ତି । 'ଉଠ, ଚାଲ, ଆଉ ଖଣ୍ଡେ ବାଟ ବାହାରି ଯିବା, କେଜାଣି ବା ମୁଣ୍ଡ ଗୁଞ୍ଜିବାକୁ ଆଗରେ ଥାନ ଟିକିଏ ମିଳିବ' ବୋଲି ଜେଠା ଯେତେ କହିଲେ ବି ଭାବୀ ଉଠୁ ନଥାନ୍ତି, କି ତାଙ୍କ ଆଡ଼କୁ ଚାହୁଁ ନଥାନ୍ତି ।

—ସେତିକିବେଳେ ପଶ୍ଚିମ ଦିଗରେ ଦୁଇ ଜାଗା ଘରପୋଡ଼ା ଆଲୁଅ ହଠାତ୍ ଦିଶିଗଲା । ଦୂରରୁ ଲୋକଙ୍କର ଚିତ୍କାର, ରଡ଼ି ଯୋଗୁଁ, ପରିଷ୍କାର ଆମ ପାଖକୁ ଭାସି ଆସୁଥାଏ । ଭାବୀ ପଳାଇବାକୁ ଅସମର୍ଥ ଜାଣି ଜେଠା କହିଲେ, "ଆରେ ପିଲେ, ଚାଲ, ଜଙ୍ଗଲ ଭିତରକୁ ଆଉ ଦଶ କୋଡ଼ିଏ ହାତ ପଶିଯିବା କି ଟିକିଏ ବିଶେଇବା । ସଡ଼କ ପାଖରେ ରହିଲେ ଚଣ୍ଡାଳଗୁଡ଼ାକ ଆସି ହାବୁଡ଼ିପାରନ୍ତି । ଜଙ୍ଗଲରେ ବାଘ ଭାଲୁ ଏମାନଙ୍କ ପରି ଏଡ଼େ ଭୟଙ୍କର ନୁହନ୍ତି । ଡର ନାହିଁ ।''

ଆମେ ଗହଳିଆ ଗଛ ଉହାଡ଼କୁ ଯାଇ ବସିଛୁ କି ନ ବସିଛୁ, ପଛ ଆଡ଼ୁ କୋଳାହଳ ମାଡ଼ି ଆସିଲା । ଆଗରେ ଦୁଇ ଚାରିଟି ଲୋକ ପ୍ରାଣ ବିକଳରେ ଧାଉଁଥାନ୍ତି, ତାଙ୍କ ପଛରେ ପଛରେ ଗୋଡ଼ାଇଥାନ୍ତି ପାଞ୍ଚ ସାତଜଣ ମୁସଲମାନ । ଆଗ ଦଳରୁ ଜଣେ, ବୟସ ହୋଇଯାଇଥିବା ସ୍ତ୍ରୀଲୋକର ପାଟି ପରି ବୋଧ ହେଉଥାଏ, ବିକଳ ହୋଇ କହୁଥାଏ, "ଭାଇ ! ଆମକୁ ଗୋଡ଼ାଇବା ଦରକାର ନାହିଁ । ଆମେ ତ ଘର ଦ୍ୱାର ଛାଡ଼ି ଚାଲିଆସିଲୁ । ଗେରସ୍ତକୁ ତ ମାରିଲ, ମୋ ପୁଅକୁ ତ ମାରିଲ, ମାଇପିଗୁଡ଼ାଙ୍କୁ ହନ୍ତସନ୍ତ କରି ଲାଭ କ'ଣ ? ଆମକୁ ଯିବାକୁ ଦିଅ । ତମ ରାଇଜ ତମର ଥାଉ, ଆମ ସମ୍ପତ୍ତି ବାଡ଼ି ବି ତୁମର ହେଉ । ମୋ ପିଲାଙ୍କୁ କଲବଲ କର ନାହିଁ ।''

—ଏହାର ଉତ୍ତରରେ ପଛରେ ଗୋଡ଼ାଇଥିବା ଲୋକଗୁଡ଼ାକ ଠୋ ଠୋ ହସି କହୁଥାନ୍ତି, "ତୋ ସାନ ପିଲାଟିକୁ ଦେ, ଆଉ ସମସ୍ତଙ୍କୁ ଆମେ ଛାଡ଼ି ଦେବୁ । ଇମାନସେ କହୁଛୁ, ଆମ କଥା ମାନେ ।"

ଆମେ ଯେଉଁଠାରେ ଲୁଚିଥିଲୁଁ ତାର ସିଧା ଉଭୟ ଦଳ ଭେଟାଭେଟି ହୋଇଗଲେ । ଗୋଟିଏ ଟୋକାର ପାଟି ଶୁଭିଲା, ସେ କହୁଥାଏ, "ମା ! ତୁ ଆଉ ଜିଦ୍ କର ନାଁ । ସେମାନେ ମୋତେ ତ ଚାହୁଁଛନ୍ତି, ମୋତେ ନିଅନ୍ତୁ, ତମେ ସବୁ ଯାଅ । ତୁମେ ଲାହୋରରେ ଯେମିତି ନିର୍ଭୟରେ ପହଞ୍ଚିବ, ସେଥିପାଇଁ ସେମାନେ ଜବାବ ଦିଅନ୍ତୁ । ମୁଁ ତ ବଡ଼ ହୋଇ ନାହିଁ, ମୋ ପାଇଁ ଚିନ୍ତା କର ନା । ମୋ ନାମର, ମୋ ଖାନ୍‌ଦାନର ଇଜ୍ଜତ ଆଗ ରକ୍ଷା ହେଉ ।"

—ତା'ପରେ କ'ଣ ହେଲା ଭଲ କରି ବୁଝି ପାରିଲି ନାହିଁ । ଜୁନଡାନ ହୋଇ ଆଗ ଦଳ ଆଗକୁ ଗଲେ, ପଛରେ ଥିବା ଗୁଣ୍ଡାମାନେ ଫେରିଗଲେ । ତାଙ୍କ ଭିତରେ ପାଟିତୁଣ୍ଡ ଶୁଭୁଥାଏ, ବୋଧହୁଏ ଟୋକାଟାକୁ କିଏ ନେବ ସେଇଥି ପାଇଁ ସେମାନେ କଳି ଲଗାଇଥାନ୍ତି । ମୋ ଦେହ ଶୀତେଇ ଗଲା, ଖାଲି ଚେହେରା ହୋଇ ବସିଲେ, ଜେଠା କହିଲେ, "ବାଃ, ସ୍ୱାଠାରୁ ବଳି ଆଉ ମଣିଷ କେଉଁଠି ତ୍ୟାଗ କରିପାରେ । ପ୍ରଭୁ, ବଡ଼ୁଆ ମାଇକିନିଆଁ ଟୋକାଟିଙ୍କୁ ନିଜ୍ପଦରେ ରଖନ୍ତୁ ହେଲେ !"

—ଟିକିଏ ବେଳ ଚୁପ୍ ହୋଇ ଜେଠା ମୋତେ କହିଲେ, 'ତାରା ! ଆମେ ଗାଁରୁ ଚାରିମାଇଲ ଆସିଲେଣି । ଆଉ ଷୋଳ ମାଇଲରେ ଲାହୋର । ବଡ଼ ସହର, ପୁଲିସ ବି ବହୁତ, ସେଠାରେ ବୋଧହୁଏ ହାଣକାଟ ହେଉନଥିବ । ପୁଲିସ ସାହାଯ୍ୟ କଲେ ଆମେ ରେଲରେ ଦିଲ୍ଲୀ ଯାଏଁ ଯାଇପାରିବା । ଭାବୀକୁ କହ, ସେ ଉଠ, ଏ ସ୍ଥାନରୁ ଯେତେ ଆଗକୁ ପଳାଇବା ସେତେ ଭଲ । ରାତି ବେଶି ହୋଇଗଲାଣି । ଏଥର ଗୁଣ୍ଡାଗୁଡ଼ାକ ପଛୁ ଦାହାରିବେ ନାହିଁ ।"

—ଭାଭୀ ସେତେବେଳକୁ ଉଠି ଠିଆ ହୋଇ ସାରିଥାନ୍ତି । ଆମେ ଗୋଟିଏ ଗୋଟିଏ ଆଗେଇ ଚାଲିଲୁ । ବାଟରେ ଜେଠା ଅତି ଧୀର ଧୀର୍ କହି ଚାଲିଥାନ୍ତି, "ପିଲେ ! ମୋ ଜୀବନରେ ଏମିତି ଦଶା ଘଟିବ ବୋଲି କେବେ ଆଶଙ୍କା କରିନଥିଲି । ପିଲାଦିନେ ମୋର ଗୋସି ବାପା ମୁସଲମାନଙ୍କ ଦୌରାତ୍ମ୍ୟ କଥା କେତେ କହନ୍ତି । ତାଙ୍କ ଭୟରେ ସେକାଳେ ବେଳ ନ ବୁଡ଼ୁଣୁ ଡାଟି କବାଟ ପଡ଼ିଯାଉଥିଲା । ସରକାର ପକ୍ଷରୁ କଡ଼ା ପୁଲିସ୍ ପହରା ରହୁଥାଏ । ଧରା ପଡ଼ିଲେ କଡ଼ର ଶାସ୍ତି ମିଳେ । ତଥାପି ଝିଅ ବୋହୂଙ୍କ ଇଜ୍ଜତ ରହେ ନାହିଁ । ଆମର ଗାଁର ଗୋଟିଏ ଝିଅ, ଗୋସି ବାପେ କହୁଥିଲେ, ସକାଳେ ଗାଧୋଇ ଯାଉଥିଲା, ବାଟରୁ ମୁସଲମାନ ସିପାହୀ ଦୁ'ଜଣ ତାକୁ ଟେକିନେଇ ଘୋଡ଼ାରେ ଚମ୍ପଟ ଦେଲେ । ସେ ଟୋକୀକୁ ନେଇ ତାଙ୍କ ନବାବଙ୍କୁ ଭେଟି ଦେଲେ । ନବାବ ତାକୁ ରଖିଲେ ଓ ତା'ର ବାପ ମାଙ୍କୁ ଗୁଡ଼ାଏ ଜମିବାଡ଼ି ଦେଲେ । ଗାଁ ଲୋକେ ତାଙ୍କୁ ଜାତି ବାସନ୍ଦ କରିଦେବାରୁ ବଂଶଯାକ ମୁସଲମାନ ହୋଇଗଲେ । ଆମର ପାଖ ଗାଁରେ ତାଙ୍କ ନାତିମାନେ ଏବେ ଅଛନ୍ତି । ସେତେବେଳର ରାଗ ଏମାନେ ଆଜି ଶୁଝାଇବାକୁ ମଉକା ପାଇଛନ୍ତି । ଇମିତି କେତେ ଗାଁରେ,

ଆମର ଭିତରୁ ମୁସଲମାନ ହୋଇଥିବା ଲୋକ ଅଛନ୍ତି । ସେମାନେ ଏତେବେଳେ ସମ୍ଭାଳି ହେବେ ନାହିଁ । ଇଂରେଜ ବାହାଦୂର ତାଙ୍କୁ ଚପେଇ କରି ରଖିଥିଲେ । ଆଜି ନଜର ଫିବା ବେଳ ପଡ଼ିବାରୁ ସେଇମାନଙ୍କୁ ଉସକାଇ ଦେଇଛନ୍ତି । ଏତେବେଳେ ଆଉ ରକ୍ଷା ପାଇଲି ପରି ଲାଗୁ ନାହିଁ । ଭଗବାନ ଭରସା !"

ରାମନାମ ଗୁଣିଗୁଣି ଜେଠା କେତେବାଟ ଚାଲିଲେ । ତା' ପରେ 'ହେ ରାମ' ବୋଲି କହି ଦୀର୍ଘ ନିଃଶ୍ୱାସ ଛାଡ଼ି ଠାଏ ବସିପଡ଼ି କହିଲେ, 'ପିଲେ ! ଏଇଠି ଟିକିଏ ବସିବା । ମୁଁ ଆଉ ଚାଲି ପାରୁନାହିଁ । ଏମିତି ପରିଶ୍ରମ ପଡ଼ିବ ବୋଲି କିଏ ଜାଣିଥିଲା ? ମୋର ଆଉ ବଳ ନାହିଁ ମ ପିଲେ ! ତାରି, ତୋ ବାପକୁ ମୁଁ ପିଲାଦିନେ କାଖେଇଥିଲି । ତା' ଠାରୁ ବାର ଚଉଦ ବର୍ଷ ବଡ଼ ହେବ । ବିଚରାକୁ ଷାଠିଏ ପୂରିଥିଲା କି ନ ଥିଲା । ଗଣ୍ଡଗୋଳ ଶାନ୍ତ କରି-ବାକୁ ସେ ମୋର ଆଗରେ ପ୍ରାଣ ଦେଇଦେଲା । ମହାପ୍ରଭୁ ! ତା'ର ରକ୍ତରେ ସବୁ ଅଣ୍ଡା ଧଡ଼ିଯାନ୍ତା କି ହେଲେ !"

—ଦଣ୍ଡେ ବିଶ୍ରାମ ନେଲା ପରେ ଆମେ ପୁଣି ଚାଲିଲୁ । ବାଟରେ ସେଇ ବୁଢ଼ୀଟି ସଙ୍ଗେ ଦେଖା ହେଲା, ଯେ ସାନ ଝିଅଟିକୁ ମୁସଲମାନ ଗୁଣ୍ଡାଙ୍କୁ ଦେଇ ବଡ଼ ଝିଅ ଓ ବୋହୂଙ୍କୁ ମୁକୁଳେଇଥିଲା । ଏ ଦୁହେଁ ବିଚାରୀକୁ ବହୁତ ଜଂଜାସି କରି କହୁଥାନ୍ତି । ବୁଢ଼ୀ କହୁଥାଏ, "ଆଲୋ ପୋଡ଼ାମୁହିଁ ଯୋଡ଼ାକ, ରକ୍ଷା ପାଇଲଣି ବୋଲି ବିଚାରି ଏତେ ଉତ୍ପାତ କାହିଁକି ହେଉଛ ? ଆଗ ଦିଲ୍ଲୀ ପହଞ୍ଚ, ମୋ ଭାଇ ଘରେ ନିର୍ବିଘ୍ନରେ ପହଞ୍ଚି ପାର, ମୋତେ ମାରିବ କି ଗାଳି ଦେବ । ସେଇ ଜଙ୍ଗଲରେ ସମସ୍ତଙ୍କୁ ହାଣ ମୁହଁରେ ଦେଇଥିଲେ ନିଶ୍ଚିନ୍ତ ହୋଇଥାନ୍ତି ।"

—ଜେଠାଙ୍କ ସହିତ ବୁଢ଼ୀର ବହୁତ ଦୁଃଖ ସୁଖ ପଡ଼ିଲା । ଆମେ ପିଲା ଚାରିଟା ଗତ ଦିନେ ଦୁଇଦିନର ଘଟଣା କଥାବାର୍ତ୍ତା ହୋଇ ଛଳ ଛଳ ଆଖିରେ ପଛରେ ଚାଲିଥାଉ । କୁଆଁ ତାରା ଉଇଁଲା, ଶୀତ ପବନରେ ଦେହ ଥରିଯାଉଥାଏ, ଜେଠା କହିଲେ, ଲାହୋର ଆଉ ଅଳ୍ପବାଟ । ସେତିକିବେଳେ ଆଗରେ ଶୁଭିଲା ହୋ ହା । ଆମର କଲିଜା ଆହୁରି ଥରି-ଉଠିଲା । ଦଶ କି ପନ୍ଦର ଗୋଟି ଗୁଳି ଫୁଟିବାର ଶବ୍ଦ ହେଲା । ଜେଠା କହିଲେ, "ପୁଲିସ୍ ଫଉଜ ମୁସଲମାନଙ୍କୁ ଜବତ୍ କରୁଛନ୍ତି, ଆଉ ଭୟ ନାହିଁ, ଚାଲ, ପାଦ ବଢ଼େଇ ବଢ଼େଇ ଚାଲ । ରେଳ ଷ୍ଟେସନ ଅଉ ମାଇଲିଏ ଦୂରରେ । ସେଇଠି ପହଞ୍ଚିଗଲେ ରକ୍ଷା ପାଇଯିବା ।"

—ଆମେ ଯୋଉ ବାଟରେ ଯାଉଥିଲୁ ସେଇ ବାଟରେ ଗୁଡ଼ାଏ ଲୋକ ଆମ ଆଡ଼କୁ ଧାଉଁଥାନ୍ତି । ଆମେ ବାଟରୁ ଅଢ଼େଇ ହୋଇଗଲୁଁ । ସବୁଗୁଡ଼ାକ ପଠାଣ । ସେମାନେ ଏତେ ଅସ୍ତବ୍ୟସ୍ତ ହୋଇ ଧାଇଁଥାନ୍ତି ଯେ ଆମ ଆଡ଼କୁ ଚାହିଁବାକୁ ତାଙ୍କର ବେଳ ନ ଥାଏ । ତାଙ୍କ ପଛରେ ପୁଲିସ ଫଉଜ ରହି ତାଙ୍କୁ ଘଉଡ଼ୁଥାନ୍ତି । ପୁଲିସଙ୍କ ପଛରେ ଧାଉଁଥାନ୍ତି ପଞ୍ଝେ ହିନ୍ଦୁ ଓ ଶିଖ୍ । କାହା ହାତରେ ବନ୍ଧୁକ, କାହା ହାତରେ କାଠ । ପୁଲିସଙ୍କ ଆସୁଲା ନ ମାନି ସେମାନେ ମାଡ଼ି ଆସୁଥାନ୍ତି ପଳାଉଥିବା ମୁସଲମାନଙ୍କୁ ବାଡ଼େଇବାକୁ ।

ଘୋଡ଼ାରେ ଚଢ଼ିଥିବା ଗୋରା ପୁଲିସ ସାହେବଙ୍କ ଆଗରେ ହାତ ଯୋଡ଼ି ଠିଆ ହେଲରୁ ସାହେବ ପାଞ୍ଚମିନଟ ଘୋଡ଼ା ଅଟକାଇ ଜେଠାଙ୍କଠାରୁ ସବୁ ଶୁଣିଲେ ଓ ୫-୭ଜଣ ବନ୍ଧୁକଧାରୀ ପୁଲିସଙ୍କୁ ହୁକୁମ କଲେ ଆମକୁ ନେଇ ରେଲରେ ଭର୍ତ୍ତି କରିଦେବାକୁ । ପୁଲିସ୍ ଘେରରେ ଆମେ ଗଲୁ । ଯେଉଁ କମ୍ପାର୍ଟମେଣ୍ଟରେ ଆମେ ପଶିଲୁ ସେଥିରେ ମଣିଷ ଚୁନ୍ଦାଚୁନ୍ଦି ହୋଇ-ଥାନ୍ତି । ତଥାପି ସେମାନେ ଆମକୁ ଆଗ୍ରହରେ ଭିତରେ ପଶିବାକୁ ଦେଲେ । ଦୁଇ ଚାରିଜଣ ଭେଣ୍ଡିଆ ଲୋକ ପ୍ଲାଟଫର୍ମରୁ ପାଣି ଆଣି ପିଇବାକୁ ଦେଉଥାନ୍ତି, ଉପରକୁ ପାଣି ଫୋପାଡୁ-ଥାନ୍ତି । ବାହାରେ ଏତେ ଶୀତ ହେଉଥିଲା, କିନ୍ତୁ ରେଲଡବା ଭିତରୁ ଗରମରେ ବାମ୍ଫ ଉଠୁଥାଏ ।

—ପ୍ଲାଟଫର୍ମରେ ଶହେ ପର୍ଯ୍ୟନ୍ତ ବନ୍ଧୁକଧାରୀ ପୁଲିସ ପହରାଦାରୀ କରୁଥାନ୍ତି । ପ୍ଲାଟ-ଫର୍ମ ବାହାରେ ବୁଢ଼ାଏ ମୁସଲମାନ ଗୁଣ୍ଡା ଜମା ହୋଇ ହୋହୋ ହେଉଥାନ୍ତି । ଗାଡ଼ି ଛାଡ଼ି-ବାକୁ ନେଲି ପତକା ଦେଖା ହେଲା । ଗାଡ଼ି ୧୦-୧୫ ଚକ ଯାଇଛି କି ନାହିଁ ଗୁଡ଼ୁମ୍ ଗୁଡ଼ୁମ୍ ବନ୍ଧୁକ ଫୁଟିଲା । ଗାଡ଼ି ଅଟକି ଗଲା । ପରେ ଶୁଣିଲି ବାହାରୁ ଗୁଣ୍ଡାମାନେ ଗୁଳିମାରି ଇଞ୍ଜିନ ଡ୍ରାଇଭର ଓ ତାଙ୍କର ସାହାଯ୍ୟକାରୀ ଦୁଇଜଣଙ୍କୁ ମାରିଦେଲେ । ଅଧଘଣ୍ଟା ପରେ ନୂଆ ଡ୍ରାଇଭର ଆସି ଗାଡ଼ି ଚଳାଇଲା । ପ୍ରତି କାମରାର ଦୁଆରେ ଆବୋରି ପୁଲିସ ରହିଥାନ୍ତି ।

—ଲୋକ ଗହଳି ଭିତରେ ମୋତେ ନିଦ ହୋଇଗଲା । କେତେବେଳେ ଶୋଇଲି କେଜାଣି ? ଉଠିଲା ବେଳକୁ ଜେଠା ମୋ ମୁଣ୍ଡରେ ହାତ ମାରୁଥାନ୍ତି । ମୁଁ ଆଖି ମେଲାଇବାରୁ କହିଲେ, 'ମା, ଦିଲ୍ଲୀ ଆସି ହୋଇଗଲା । ଆମେ ଦିଲ୍ଲୀର ସବା ବଡ଼ ଷ୍ଟେସନରେ ଓହ୍ଲାଇବା ବୋଲି ପୁଲିସ ବାବୁ କହୁଛନ୍ତି । ସେଠାରେ ସମସ୍ତଙ୍କର ରହିବାକୁ ଯୋଗାଡ଼ କରିବାକୁ ତାର ହୋଇଛି । ଏଥର ଉଠ, ଓହ୍ଲାଇବାକୁ ତିଆର ହୁଅ ।'

—ଦିଲ୍ଲୀ ଷ୍ଟେସନରେ ଗାଡ଼ି ଯାଇ ପହଞ୍ଚିଲା ବେଳକୁ ସେଠାରେ ହାଙ୍କୋଟ, ଗୁଳି ଗୁଳାର ଆବାଜରେ ପ୍ଲାଟ୍‌ଫର୍ମ ଦୁଲୁକି ଉଠୁଥାଏ । ପୁଲିସ ଗୋଟାଏ ପାଖେ ଶାନ୍ତି ରକ୍ଷା କରି ଆର ପାଖରୁ ଗଣ୍ଡଗୋଳ ଶୁଣି ସେଆଡ଼େ ଗଲାବେଳକୁ, ଏଆଡ଼େ ପୁଣି ଗୋଳମାଳ । ହିନ୍ଦୁ ଗୁଣ୍ଡା ପଞ୍ଝେ ପ୍ଲାଟଫର୍ମରେ ପହରାଦାରୀ ମାରି କାହାକୁ ଧମକ ଚମକ ଦେଉଥାନ୍ତି, କାହାକୁ ଆଶ୍ୱାସନା ଦେଉଥାନ୍ତି, କାହାର ଗଣ୍ଠିଲିପନ ହରଣଚୁରି କରୁଥାନ୍ତି । ତକାଯୁଦ୍ଧ କଲାବେଳେ ହିନ୍ଦୁ ମୁସଲମାନର ବିଚାର ନ ଥାଏ । ଜେଠାଙ୍କ ମୁଣ୍ଡ ଉପରେ ଗୋଟାଏ ହିନ୍ଦୁ ଟୋକାର ଲଠି ଢକନା ପଡ଼ିଲା । ସେ ବସିପଡ଼ିଲେ ଓ ସାଙ୍ଗେ ସାଙ୍ଗେ ବେହୋସ ହୋଇଗଲେ । ଗୋଟାଏ ଟୋକା ମୋତେ ଭିଡ଼ି ପକାଇଲା ବେଳକୁ ଆଉ ଗୋଟେ ଖୁଡ଼ୀଙ୍କୁ ଟାଣି ପକା-ଇଲା । ଖୁଡ଼ୀଙ୍କର ସେତେବେଳେ କି ରଣଚଣ୍ଡୀ ମୂର୍ତ୍ତି ! ମୁଣ୍ଡରୁ ଲୁଗା ଖସି ତଳେ ଘୁସୁରୁ-ଥାଏ । ସେ ଟୋକାକୁ ଧରି ଭଣିଭଣା କରି ପକାଇଲେ । ଟୋକାଟା ତାଙ୍କ ମୁହଁକୁ ଚାହିଁ ଏପରି ଅବଶ ହୋଇଯାଇଥାଏ ଯେ, ଖାଲି କାବାହୋଇ ବାଲୁବାଲୁ ଚାହିଁଥାଏ । ଖୁଡ଼ୀଙ୍କ ମୁହଁକୁ ଚାହିଁ ମୋର ବି ସାହସ ଆସିଲା, ମୁଁ ଜୋରକରି ମୁଠିଟେ ମୋତେ ଧରିଥିବା ଟୋକା

ମୁହଁରେ ମାରିଦେଲା ଯେ ତା'ର ଦାନ୍ତମୂଳରୁ ରକ୍ତ ବାହାରିପଡ଼ିଲା । ପାଖରେ ଠିଆ ହୋଇ-
ଥିବା ଲୋକେ ତାଟକା ହୋଇ ଚାହିଁ ରହିଥାନ୍ତି । ପଛକୁ କ'ଣ ହୋଇଥାନ୍ତା କେଜାଣି
ଏତିକବେଳେ ଜଣେ କଳା ସାହେବ ଓ ଚାରି ପାଞ୍ଚଜଣ ପୁଲିସ୍ ଆସି ପହଞ୍ଚିଗଲେ ; ଜେଠାଙ୍କ
ଚାରିପଟେ ଘେର କରିଦେଲେ ; ଘେର ଭିତରେ ଆମେ ଦୁହେଁ ବି ରହିଲୁଁ ।

ଦକ୍ଷିଣେକବାଟେ ଚା' ଟିକିଏ ପିଇ ଧାକୁଆ ପାଟିରେ ପାନ ଛେଚା ଟିକିଏ ପୂରାଇ ଦୁଇ ଆଣ୍ଠୁକୁ ଦୁଇ ହାତର ବନ୍ଧନ ଭିତରେ ପୂରାଇ ବସିଥାନ୍ତି । ଘୁମାଉଥାନ୍ତି ବୋଲି ଆମେ ଭାବୁଥାଉଁ । ଏଇଠାରେ ସେ ହଠାତ୍ ଚେଁଇଁ ଉଠିଲେ, "ବାଃ, ଅସଲ ଛତ୍ରୀ ମାଇକିନିଆଁ ଦ'ଟା । ମାଇପେ ଏଇମିତି ହେଲେ ଯିନା ଇଜ୍ଜତ୍ ରଖିବେ ! ପଢ଼ ବାବୁ, ସେଠୁ କ'ଣ ହେଲା ପଢ଼ ।"

ପଢ଼ା ଚାଲିଲା—

—ସାଙ୍ଗେ ସାଙ୍ଗେ ଡାକ୍ତରଖାନା ଗାଡ଼ି ଗୋଟେ ଆସିଲା । ଜେଠାଙ୍କୁ ତା' ଭିତରେ ଶୁଆଇ ଆମେ ଦୁହେଁ ଦୁଇପଟେ ତାଙ୍କ ଦେହକୁ ଲାଗି ବସିଥାଉଁ । ଡାକ୍ତରଖାନାରେ ଆମ ଗାଡ଼ି ପହଞ୍ଚିଲା ବେଳକୁ ସେଇ ସାହେବ ଆସି ପହଞ୍ଚିଥାନ୍ତି । ନ ହେଲେ ଅବା ଡାକ୍ତରେ ଡେର କରି-ଥାନ୍ତେ । ସାଙ୍ଗେ ସାଙ୍ଗେ ଡାକ୍ତରମାଇନା ହେଲା ; ଦୁଇଟା ଇଞ୍ଜେକ୍ସନ୍ ଦିଆହେଲା । ଜେଠା ଟିକିଏ ଆଖି ମେଲେଇ ମୋ ଆଡକୁ ଚାହିଁଲେ ; ଭାବୀ ଆରପଟେ ବସିଥିବାରୁ ତାଙ୍କ ଆଡ଼କୁ ମୁହଁ ବୁଲେଇ ଚାହିଁପାରୁନଥାନ୍ତି । ମୁଁ ଠାରିବାରେ ଭାବୀ ମୋ ପଟକୁ ଆସିଲେ । ଆମକୁ ଆଶୀର୍ବାଦ କଲାପରି ଜେଠା ଟିକିଏ ହାତ ଉଠାଇଲେ । ମୋତେ କହିଲେ ତାଙ୍କ ଚପକନରୁ କାଗଜ ପୁଟୁଳିକୁ ନେବାକୁ । ମୁଁ ତାକୁ କାଢ଼ି ଭାବୀଙ୍କ ହାତକୁ ବଢ଼ାଇଲା ବେଳକୁ ତାଙ୍କ ଆଖି ଠାରିବାରେ ସେ ଉହୁଁ, ଉହୁଁ, କହିଲେ । ବୋହୂ ଉଲୁ ବୁଲା, ତେଣୁ ତା' ହାତରେ କିଛି ଦାମିକା ବା ଦରକାରୀ ଜିନିଷ ଦେବା ଠିକ୍ ନୁହେଁ ବୋଲି ସେ ମୋତେ ଆଗରୁ ଥରେ କହିଥିଲେ । ମୁଁ ତାଙ୍କ ଆଦେଶ ମାନି ପୁଟୁଳିଟି ମୋର ଲୁଗା ଭିତରେ ଲୁଚାଇ ରଖିଲି । ତା' ଭିତରେ କ'ଣ ଅଛି ଜାଣିବାକୁ ମୋର ଭାରି ଇଚ୍ଛା ହେଉଥାଏ । ଜେଠା ଶୋଇବାରେ ମୁଁ ଗାଧୁଆଘରକୁ ଯାଇ ଭିତରୁ ଦୁଆର ଦେଇ ପୁଟୁଳିଟା ଫିଟାଇଲି । ଯାହା ଦେଖିଲି ସେଥିରେ ମୋ ଆଖି ଖୋସିହୋଇଗଲା । ଗଣିଲି, ଶହେ ଟଙ୍କିଆ ନୋଟ ପଞ୍ଚଅଳିଶ ଖଣ୍ଡ ଓ ଦଶଟଙ୍କିଆ ନୋଟ ପଚିଶଟା । ଅବଦୁଲ ଚାଚା ଏତେ ଟଙ୍କା ଆମକୁ ସିମିତି ଦେଇ ଦେଲେ ! କାହିଁକି ଦେଲେ ? ଆମକୁ ସେ ଯାହା ଦେଲେ ତା' ବଦଳରେ ସେ ପାଇବେ କ'ଣ ? ଏକଥା ମୁଁ ଓ ଭାବୀ ବହୁତ କଥାବାର୍ତ୍ତା ହେଲୁଁ । ତାଙ୍କୁ ଭଗବାନ୍ ଏହାର ମୂଲ୍ୟ ଦେବେ ବୋଲି ଭାବୀ କହିଲେ । ଆମକୁ ଆଜି ଯେଉଁ ଦୁଃଖ ଓ ନିର୍ଯ୍ୟାତନା ମିଳୁଛି ତାକୁ କ'ଣ ଭଗବାନ୍ ଦେଇଛନ୍ତି, ନା ମଣିଷ ? ଯେଉଁ ମଣିଷ ଆମକୁ ତା ଜୀବନର ସବୁ ସଞ୍ଚିତ ଧନ ବଢ଼େଇଦେଲା, ତା'ର ପରି ମଣିଷ ତ ପୁଣି ଆମକୁ ବାପମା ଛେଉଣ୍ଡ, ବିଧବା ଓ ନିଃସ୍ୱ କରି-ଦେଇଛି !

—ଜେଠା ମଝିରେ ଥରେ ମାତ୍ର ଚେତା ପାଇଥିଲେ । ତା'ର ଭିତରେ ମୋ ହାତକୁ ଟଙ୍କା ପୁଟୁଳାଟି ବଢ଼ାଇ ଦେଲେ, ଓ ଥଙ୍ଗେଇ ଥଙ୍ଗେଇ ଅସ୍ପଷ୍ଟ ସ୍ୱରରେ ଆମକୁ ସାନ୍ତ୍ୱନା ଦେଇ କହିଲେ, "ମା, ଲଡ଼କା ! ତମର ସମସ୍ତେ ଯାଇଛନ୍ତି, ବାକୀ ରହିଛି ମୁଁ । ମୋ' ଉପରେ ନିର୍ଭର ରଖ ନାହିଁ ; ଭଗବାନଙ୍କଠାରେ ଆତ୍ମସମର୍ପଣ କର । ସେ ଦେଇଛନ୍ତି ଦୁଃଖ, ବିଚାରିଲେ ସେଇ ପୁଣି ତୁମକୁ ଶାନ୍ତି ଦେବେ ।"

—ଏକଥା ଶୁଣି ଆମର ମନରେ ଘୋର ଆତଙ୍କ ଆସିଲା । ଭାଇଙ୍କ ସଙ୍ଗେ ପରାମର୍ଶ କରି ମୋର ଅଣ୍ଟାରେ ବାନ୍ଧି ଲୁଚାଇ ରଖିଥିବା ଟଙ୍କାରୁ ଗୋଟିଏ ଶହେ ଟଙ୍କିଆ ନୋଟ କାଢ଼ି ଜେଠାଙ୍କୁ ଚିକିତ୍ସା କରୁଥିବା ଡାକ୍ତରଙ୍କୁ ଏକାନ୍ତରେ ଦେଲୁଁ ଓ ଔଷଧ ପତ୍ର ଜେଠାଙ୍କୁ ଦେଇ କୌଣସି ମତେ ରୋଗମୁକ୍ତ କରିବାକୁ ନେହୁରା ହେଲୁ ।

—ସେ 'ଆଉ, ଆଉ, ଟଙ୍କାର ପ୍ରୟୋଜନ ନାହିଁ' ବୋଲି କହି ନୋଟ୍ ଖଣ୍ଡିକ ଚଉଡ଼ ପକେଟରେ ରଖି ରଖି କହିଲେ, "ସ୍ତ୍ରୀଙ୍କପାଇଁ ଯାହା ଔଷଧ ଦରକାର, ମୁଁ ତା'ର ବ୍ୟବସ୍ଥା କରୁଛି । ଆଉ ଯାହା ଦରକାର ତାହା ବଡ଼ ସାହେବ, ଆମ ଏଠାର ଡେପୁଟି କମିସନର୍ ଦେଉଛନ୍ତି । ପ୍ରତିଦିନ ସେ ଦୁଇ ତିନି ଥର ଟେଲିଫୋନ୍ କରୁଛନ୍ତି ଓ ଥରେ ତ ଆସି ନିଜେ ଦେଖିଯାଉଛନ୍ତି, ତୁମେ ଜାଣ । ତୁମମାନଙ୍କଠାରେ ତାଙ୍କର ଖୁବ୍ ଶ୍ରଦ୍ଧା । ତୁମଠାରୁ ମୁଁ ପଇସା ରଖିଲି ବୋଲି ଜାଣିଲେ ମୋର ଚାକିରି ଯିବ ।"

ଡାକ୍ତରବାବୁ ଯେଉଁ ସାହେବଙ୍କ କଥା କହିଲେ ସେ ରେଲର ପ୍ଲାଟଫର୍ମରେ ଆମକୁ ଦେଖିବାଦିନୁଁ ନିୟମିତ ଆମର ଖବର ରଖୁଥାନ୍ତି । ତାଙ୍କ ଘରକୁ ଯିବାକୁ ଆମକୁ ଦୁଇ ଚାରି ଥର ଡାକିଥାନ୍ତି ମଧ୍ୟ । ସେ ଆମକୁ ପ୍ରତିଶ୍ରୁତି ଦେଇଥାନ୍ତି ଯେ, ଜେଠା ଭଲ ହୋଇଗଲା ପରେ ସେ ଆମ ପାଇଁ ଗୋଟିଏ ଘର ବନ୍ଦୋବସ୍ତ କରିଦେବେ ଓ ସରକାରଙ୍କ ସାହାଯ୍ୟ କରାଇଦେବେ । ଜେଠା ଡାକ୍ତରଖାନାରୁ ନ ଉଠିବା ପର୍ଯ୍ୟନ୍ତ ଆମେ ତାଙ୍କ ଖଟପାଖରୁ ଆଉ କୁଆଡ଼େ ଯିବୁ ନାହିଁ ବୋଲି କହିବାରୁ ସେ ଆମ ପାଇଁ ଖାନା ଅଣାଇଦେବାର ବନ୍ଦୋବସ୍ତ କରିଦେଇଥାନ୍ତି । ତାଙ୍କୁ କୁଣ୍ଡ ଫିଟାଇ କିଛି କହିବାକୁ ମୋର ସାହସ ହେଉ ନ ଥାଏ । ଭାଇ ତ କାହା ଆଡ଼କୁ ମୁହଁ ଟେକି ଚାହିଁନଥାନ୍ତି, କିନ୍ତୁ ଆମ ଦୁହିଙ୍କ ହୃଦୟରେ ତାଙ୍କପ୍ରତି ଗଭୀର କୃତଜ୍ଞତା ଥାଏ । ଏଡ଼େ ବଡ଼ ଲୋକ, ଆମ ପ୍ରତି ତାଙ୍କର ଏତେ ଶ୍ରଦ୍ଧା ! ତାଙ୍କ ତୁଳନାରେ ଆମେ କେଡ଼େ କ୍ଷୁଦ୍ର !

—କ୍ରମେ ତାଙ୍କ ବ୍ୟବହାର ଆମକୁ କିମିତି ଲାଗିଲା । ପ୍ରତିଦିନ ସନ୍ଧ୍ୟାରେ ସେ ଜେଠାଙ୍କ ଖଟିଆ ପାଖକୁ ଆସନ୍ତି, ସେଠାରେ ଅଧଘଣ୍ଟେ ଘଣ୍ଟେ ବସି ଏଣୁ ତେଣୁ କେତେ କଥା କହନ୍ତି । କିନ୍ତୁ ସେଇ ଖଟିଆ ପାଖରେ ଜେଠାଙ୍କ ପରି କେତେ ରୋଗୀ ପଡ଼ିଥାନ୍ତି, ତାଙ୍କ ପାଖକୁ ଟିକିଏ ହେଲେ ଯାନ୍ତି ନାହିଁ, ଚାହାନ୍ତି ବି ନାହିଁ । ଏହା ଦେଖି ନର୍ସମାନେ ଆମକୁ ଥଟ୍ଟା କରିବାକୁ ଆରମ୍ଭ କଲେ । ଅସହଣୀ ଲୋକଙ୍କର ଏ ଥଟ୍ଟାରେ ଆମେ ବିବ୍ରତ ହୋଇନଥାଉ । ସାହେବ ସବୁବେଳେ ମୋ ଆଡ଼କୁ କଡ଼େଇ କଡ଼େଇ ଚାହିଁବାରୁ ମୋତେ

ଘର ଅଡ଼ୁଆ ଲାଗୁଥାଏ । ସ୍ୱାମୀ ତାଙ୍କର ଏ ଭାବ ଲକ୍ଷ୍ୟ କରି ଥରେ ମୋତେ କହିଲେ, "ତାରା ! ଏ ଲୋକଟା ଭଲ ବୋଲି ଆମେ ଭୁଲରେ ବିଚାରୁଥିଲେ, ଏଇଟା ଖରାପ ଲୋକ । ଏ ଆମର ମଙ୍ଗଳ କାମନା କରୁନାହିଁ ।" ସ୍ୱାମୀଙ୍କର ଏ କଥାକୁ ମୁଁ ସେତେବେଳେ ଗୁରୁତ୍ୱ ଧରିନଥିଲି । ସ୍ୱାମୀ ବେଳେବେଳେ ବାଘୁଣୀ ପରି କଥାବାର୍ତ୍ତା ହେଉଥାନ୍ତି ।

—ଏହାର ତିନି ଚାରିଦିନ ପରେ ଜେଠାଙ୍କ ଅବସ୍ଥା ବେଶି ଖରାପ ହୋଇଗଲା । ଡାକ୍ତରଙ୍କୁ ଆମେ ବହୁତ ନେହୁରା ହେଲୁ, ଆହୁରି ଟଙ୍କା ଯାଚିଲୁ । ସେ ଆମକୁ କିଛି ନ କହି ଚାଲିଗଲେ । ଜେଠାଙ୍କ ଘରରେ ଥିବା ନର୍ସ ମୋତେ ଡାକି ଚୁପି କରି କହିଲା, 'ଏ ଡାକ୍ତରକୁ ପଇସାଟିଏ ବି ଦିଅ ନାହିଁ । ସେ ଡାକ୍ତର ନୁହେଁ, କଂସେଇ । ବଡ଼ ସାହେବର କଥାରେ ପଡ଼ି ସେ ଯାହା କରୁଛି, ସେଥିପାଇଁ ଏଠେଇ ସିନା କେହି କିଛି କରି ପାରିବେ ନାହିଁ । ଆରପୁରରେ ଯାଙ୍କୁ ନାସ ମିଳିବ ନାହିଁ ।' ମୁଁ ଏ କଥାର ମର୍ମ ସେତେବେଳେ ବୁଝିପାରି-ନ ଥିଲି ।

( ୯ )

ତତ୍‌ପରଦିନ ତାରାର ବୃତ୍ତାନ୍ତ ପଢ଼ିବାକୁ ମୁଁ ପ୍ରସ୍ତୁତ ହେବାର ଅଧଘଣ୍ଟାଏ ଆଗରୁ ଦକ୍ଷିଣକବାଟେ ଆସି ଦୁଆରେ ବସିଥାନ୍ତି । ଦାସେ ଓ ମୁଁ ଘରୁ ବାହାରିବା ମାତ୍ରେ ସେ ସମ୍ଭାଷଣ ଆରମ୍ଭ କଲେ, "ନମସ୍କାର ଦାସେ ଆପଣେ, ନମସ୍କାର କୁଳୁଆଁ ବାବୁ ! କାଲିର ସେଇ ପୁରାଣ ଶୁଣିବା ପାଇଁ ମୁଁ ଶୋଇକରି ଉଠିଲା ସଙ୍ଗେ ସଙ୍ଗେ ଆସିଛି । ଜାଣିଲେ ! କାଲି ରାତିରେ, ଆଜି ଦି'ପହରେ, ମୁଁ ଖାଲି ସେଇ କଥା ସପନ ଦେଖୁଛି । ସତେ କ'ଣ ଏମିତି ହୋଇଥିଲା ? ଆମ ଗାଁରେ ତ ଆମେ ଶହ ଶହ ବର୍ଷ ହେଲା ପଠାଣଙ୍କ ସଙ୍ଗେ ରହିଥାଉଁ । ପାଇକ ମେଳି ବେଳେ ତ ମୁସଲମାନ ଆମ ପଣଗୋସିଁ ବାପଙ୍କୁ ଧରେଇଦେଇନଥିଲେ ! ଧରେଇଥିଲେ ଆମ ନିଜ ଲୋକେ । ଇମାନ୍‌କୁ ଜଗି, ନିମକ୍‌କୁ ମନେ ପକାଇ ସେମାନେ ଆମ ପଣଗୋସିଁ ବାପଙ୍କୁ ଥରେ ହାଣ ମୁହଁରୁ ରକ୍ଷା କରିଥିଲେ । ଶୁଣିଛନ୍ତି, ଦାସେ ! ତମ ପଣଗୋସିଁ ବାପେ, ଆମ ପଣଗୋସିଁ ବାପେ, ଏମିତି ବିଶାଶହେ ଜଣ ପାଇକମେଳି ବେଳେ ଏକାଦିନକେ ଫାଶିଦିଆବରରେ କେମିତି ଫାସିପାଇଥିଲେ । ସେଙ୍କ ଭିତରେ ଆମ ଇସାଦ୍ ଖାଁର ପଣଗୋସି ବାପ ବି ଥିଲା ! ସେଇକଥା ମୋର ଗଲା ଚାରିପହର ହେଲା ଖାଲି ମନେ ପଡ଼ୁଛି । ହଇଏ, ସେଗୁଡ଼ାକ ପରା ଆମର ନିଜ ଲୋକ ; କେତେବେଳେ କିମିତି ପଠାଣ ସୁବେଦାରର ନୌକରି କରି ଜାତିଜାମ୍ ହୋଇଥିଲେ । ସେ ଦେଶରେ ଟିକିଏ ରକ୍ତର ଟାଣ ରହିଲା ନାହିଁ, ଟିକିଏ ମୁହମତ

ମୂଲଇଜା ରହିଲା ନାହିଁ ! ହଉ, ହଉ, ସେଠଉ କ'ଣ ହେଲା କହିବ ଟି । ବୁଢ଼ାଟାକୁ କ'ଣ ଯୋଡ଼ପାଡ଼ ଡାକ୍ତର ମାରିଦେଲା ?"

ମହାପାତ୍ରେ ଓ ନାୟକେ ଆସିବାକୁ ଅପେକ୍ଷା କରି ରହିବା ଅବସରରେ ଦାସେ ମୋତେ ପାଇକ ବିଦ୍ରୋହ କଥା ଓ ଦକ୍ଷିଣେକବାଟଙ୍କୁ ଭାରତବିଭାଗ ବେଳାର ହିନ୍ଦୁମୁସଲମାନ ଦଙ୍ଗା କଥା କହୁଥାନ୍ତି ।

ମହାପାତ୍ରେ ଆସିଲେ ସବାଶେଷକୁ । ସେ ପାହାଚ୍ଚ ଉଠିଲା ମାତ୍ରେ ଆଗରୁ ଆସି ପହଞ୍ଚିଥିବା ବାହିନୀପତି ଓ ନାୟକେ ଏକ ସ୍ୱରରେ କହିଲେ, "ମହାପାତ୍ରେ ! ତୁମର ଗରହାଜର ପଡ଼ିଲାଣି । ଏ କଥା ସରିଲେ ତୁମ ଜୋରିମାନା ଦାଖଲ କରିବ ।" ମହାପାତ୍ରେ ଉତ୍ତର ଦେବା ଆଗରୁ ମୁଁ ଆରମ୍ଭ କଲି—

"ଜେଠା ବେହୋସ ହୋଇ ତିନିଦିନ କାଳ ଖଟିଆରେ ପଡ଼ି ରହିଲେ । ଆମେ ତାଙ୍କ ମୁହଁକୁ ଚାହିଁ ରହିଥାଉ । ଭାଭୀ ତାଙ୍କ ଗୋଡ଼ ପାଖେ ବସି ପାଦ ମକୁଥାନ୍ତି । ମୁଁ ମୁଣ୍ଡ ପାଖେ ବସି କେତେବେଳେ ତାଙ୍କ ନାକ ଆଗରେ ହାତ ରଖୁଥାଏ, କେତେବେଳେ ମୁହଁ ପଣତ କାନିରେ ପୋଛିଦେଉଥାଏ, କେତେବେଳେ ତାଙ୍କ ହାତର ନାଡ଼ିରେ ଟିପ ଦେଉଥାଏ । ତାଙ୍କ ଦେହରେ ଉଷୁମ ଥାଏ, ନାଡ଼ିର ଗତି ବି ବାରି ହେଉଥାଏ, ନାକର ନିଃଶ୍ୱାସ ହାତକୁ ଜଣାପଡୁଥାଏ ।

"ସାହେବ ପ୍ରତିଦିନ ସନ୍ଧ୍ୟାବେଳେ ଆସନ୍ତି ; ସେ ଆସିଲାବେଳେ ଡାକ୍ତର ବି ଆସନ୍ତି, ଦିହେଁ କ'ଣ କଥାବାର୍ତ୍ତା ହୁଅନ୍ତି, ଡାକ୍ତର ଗୋଟେ ଇଞ୍ଜେକ୍‌ସନ ଦିଏ । ଆଉ ଅନ୍ୟ ସମୟରେ ଡାକ୍ତର ଆଦୌ ଆସନ୍ତି ନାହିଁ । ନର୍ସଟି ମାତ୍ର କେତେବେଳେ ପାଖ ଛାଡ଼େ ନାହିଁ । ଆମଠାରେ ତା'ର କେମିତି ଗୋଟାଏ ମାୟା ଲାଗିଥାଏ । ଦିନେ ମୁଁ ତା'କୁ କହିଲି, 'ମା ! ଏ ଡାକ୍ତରକୁ ଆମର ସନ୍ଦେହ ହେଉଛି । ତମେ ଟଙ୍କା ନିଅ, ଆଉ ଭଲ ଔଷଧ କିଣିଦେବାର ବନ୍ଦୋବସ୍ତ କର ।'

"ସେ ଉତ୍ତର ଦେଲେ, 'ନାଇଁଲେ ମା ! ସେ କଥା କରିବାକୁ ମୋର ଜୁ ନାହିଁ । ହେଇଟି ପରା ଔଷଧ ତାଲିକା । ସ୍ୱାଙ୍କୁ ଯୁ ଔଷଧ ଦିଆହେଉଚି, ତା' ଠାରୁ ଭଲ ଔଷଧ ବଜାରରେ ମିଳିବ କୁଆଡ଼ୁ ? ମୁଁ ପଚିଶ ବର୍ଷ ହେଲା ଏ କାମ କଲିଣି । ଏ ଔଷଧ ବୋଲି କହୁନାଇଁ ଦେଖି ମୁଁ ତାଜୁବ୍ ହେଉଚି । ବାଡ଼ିପଡ଼ା ସାଇବ, ଆସିଲାବେଳେ ଯୋଉ ଇଞ୍ଜେକ୍‌ସନଟା ଦେଉଚି ତାକୁଇ ମୋର ଭୟ । ଇଞ୍ଜେକସନ ସିରିଞ୍ଜଟା ମୋ ହାତକୁ ଦିଅନ୍ତା କି ? ସିଆଡ଼ୁ ଔଷଧ ପୁରାଇ ଆଣୁଚି, ଇଞ୍ଜେକସନ ଦେଇ ସାରିଲେ ସିରିଞ୍ଜ୍‌ଟା ଆପେ ନେଇଯାଉଚି । କିଛି କହିବାକୁ ସାହସ ହେଉ ନାଇଁ ଲେ ମା ! ସାଇବଟା ପରା ଆମ ଏ ଦିଲ୍ଲୀର ସବା ବଡ ସାଇବ । ତା'ରି ହାତରେ ଆମ ଚାକିରି, ତା'ରି ହାତରେ ଆମ ପ୍ରାଣ ।'

"ତୃତୀୟ ଦିନ ସଂଧ୍ୟାରେ ଡାକ୍ତର ଜେଠାଙ୍କ ଦେହରେ ଇଞ୍ଜେକସନ୍ ଫୋଡ଼ିବା ବେଳେ ମୁଁ ଆପତ୍ତି କଲି, 'ଫଳ ତ କିଛି ନାହିଁ, ଇଞ୍ଜେକସନ ଦେବା ଦରକାର କ'ଣ ?'

ଭାବୀ କହୁଥାନ୍ତି, 'ଇଞ୍ଜେକସନ୍ ଦେବାର ପହରେ ପର୍ଯ୍ୟନ୍ତ ପାଦ ଭରି କାଳିଆ ହୋଇ-ଯାଉଚି । ପୁଣି ଆସ୍ତେ ଆସ୍ତେ ଉପ୍ପର ଆସୁଛି ।' ନର୍ସ କହୁଥାଏ, 'ଇଞ୍ଜେକସନ୍‌ଟା କ'ଣ, ରୋଗୀର କାର୍ଡ଼ରେ କାହିଁକି ଲେଖାହେଉନାହିଁ' ବୋଲି ପଚାରିବ । ମୁଁ କଥା ପଦକ କହିବା ମାତ୍ରେ ଡାକ୍ତର ମୋତେ ମିଶି ଆସିଲା । ସାହେବ ମୋ ପିଠି ଉପରେ ହାତ ପକାଇ କହିଲେ, 'ତୁମେ ଚିନ୍ତା କରିବାର କାରଣ ନାହିଁ, ମୁଁ ସବୁ କଥା ନିଜେ ବୁଝି କରୁଉଛି । ଡାକ୍ତର ଆମ ପାଇଁ ଯେପରି ଖଟୁଛନ୍ତି, ସେଥି ସକାଶ ତାଙ୍କଠାରେ ଆମେ କୃତଜ୍ଞ ହେବା କଥା ।'

''ସେ ଏ ପର୍ଯ୍ୟନ୍ତ ମୋ ଦେହରେ ହାତ ମାରିନଥିଲେ । ମୋ' ଦେହ ଶୀତେଇ ଗଲା । ମୁଁ ସନ୍ତର୍ପଣରେ ଦ'ହାତ ଧସ୍ଥିଗଲି । ଭାବୀ ରାଗରେ ତମ ତମ ହୋଇ ତାଙ୍କ ଆଡ଼କୁ ଦଣ୍ଡେ ଚାହିଁ ରହିଲେ । ଡାକ୍ତର ସବୁଦିନ ପରି ଇଞ୍ଜେକସନ୍ ଦେଲେ । ଗଲାବେଳେ ନର୍ସକୁ କହିଲେ, 'ଆଜି ରାତିକ ପରୀକ୍ଷାର ସମୟ । ସାବଧାନ ରହିବ । ଯଦି ଅବସ୍ଥା ଖରାପ ହେବାର ଦେଖିବ ମୋତେ ସାଥେସାଥ୍ ଟେଲିଫୋନ କରିବ । କାଲି ସକାଳ ଯାଏଁ ଯଦି ରୋଗୀ ଆକିଯାଏ, ତେବେ ଆଉ ଚିନ୍ତା ନାହିଁ ।'

''ସେ ଦିନର ରାତି ପାହିଲା ନାହିଁ । ପାହାନ୍ତିଆ ପହରକୁ ଜେଠାଙ୍କ ଦେହ କାଳିଆ ହୋଇଗଲା । ନିଃଶ୍ୱାସ ପ୍ରଶ୍ୱାସର ଗତି ବାରି ପାରିଲି ନାହିଁ । ମୁହଁ କମିତି ବିଭଙ୍ଗ ହୋଇଗଲା । ଭାବୀ କାବା ହୋଇ ଚାହିଁ ରହିଥାନ୍ତି । ମୁଁ ନର୍ସଙ୍କ ପାଖକୁ ଦଉଡ଼ି ଯାଇ ଡାକ୍ତରଙ୍କୁ ଡକାଇ-ବାକୁ କହିଲି । ସେ ପିବାକୁ ଉଠୁ ଉଠୁ କହିଲେ, ତାକୁ ଡାକି ଲଭ ନାହିଁ ଲୋ ମା ! ସେ ତ ଏ କାଣ୍ଡ କରିଚି । ତାକୁ ଡାକିବା ବ୍ୟତୀତ ମୋର ଚାରା ନାହିଁ । ସେ ଏ ହାସପାତାଲର ବଡ଼ ଡାକ୍ତର ନ ହୋଇଥାନ୍ତା କି, ବଡ଼ ସାହେବ ସ୍ତ୍ରୀ ଭିତରେ ନ ଥାନ୍ତେ କି, ଦେଖନ୍ତୁ, ନିଳିତା ନର୍ସର କରାମତି ! ସେ ଡାକ୍ତର ଫାସିକାଠରେ ଚଢ଼ିଥାନ୍ତା ।'

''ଡାକ୍ତର ଆସିଲେ, ଟିକିଏ ଗୁଡ଼ିଏ ପରୀକ୍ଷା କରି ରୋଗୀ କାର୍ଡ଼ରେ ଗୋଟାଏ ନାଲି ଛକ ପକାଇ ବାହାରି ଗଲା ବେଳକୁ ମୁଁ ତାଙ୍କ ପଛେ ପଛେ ଗୋଡ଼ାଇ କହିଲି 'ବାବୁ, ଜେଠାଙ୍କ ପାଇଁ ଅଉ କିଛି କରାଯାଇ ପାରିବ ନାହିଁ ? ଆମର ସେ ଏକମାତ୍ର ଆଶ୍ରୟ ।' ନିର୍ମମ ଭାବରେ ସେ କହିଲେ. 'ଯାହା କରାଯାଇପାରନ୍ତା, ସବୁ କରାହୋଇଛି । ଆଉ ମୋ ହାତରେ କ'ଣ ହେଇପାରେ ? ସାହେବଙ୍କୁ ଟେଲିଫୋନ୍ କରୁଛି, ବାକି କଥା ସେ ବୁଝିବେ । ତୁମର ଭାଗ୍ୟ, ତୁମର ଭାର ନେବାକୁ ଦିଲ୍ଲୀର ସର୍ବଶ୍ରେଷ୍ଠ ବ୍ୟକ୍ତି ଅଛନ୍ତି ।'

''ମୁଁ ତାଙ୍କ ପାଖରେ ଠିଆ ହୋଇଛି ସେ ଟେଲିଫୋନ୍ କଲେ । ସେ ଆଡ଼ୁ ଅଟ୍ଟହା-ସ୍ୟର ଶବ୍ଦ ଶୁଣାଗଲା । ମୋର ରୋମ ଟାଙ୍କୁରି ଗଲା । ନର୍ସ ଯାହା କହୁଥିଲା ତାହା ତେବେ ସତ ? ମୋ ଜେଠାଙ୍କୁ ଜାଣି ଜାଣି ମାରିଦିଆଯାଇଛି ତେବେ ? ଭାରି ରାଗ ଲଗିଲା । କିନ୍ତୁ ମାଇକିନିଆଁଙ୍କ ରାଗରେ ଫଳ କ'ଣ ? କାନ୍ଦି କାନ୍ଦି ଖଟିଆ ପାଖକୁ ଫେରିଲି । ଭାବୀଙ୍କ ଆଖିରୁ ଲୁହ ବାହାରୁ ନ ଥାଏ । ସେ କାବଡ଼ା ପରି ବାଲ୍ ବାଲ୍ କରି ଚାହୁଁ ଥାନ୍ତି ।

''ଦି' ପହରକୁ ସବୁ ଶେଷ । ମୋର ଆପତ୍ତି ସତ୍ତ୍ୱେ ମ୍ୟୁନିସିପାଲିଟି ମେହେନ୍ତର ଜେଠାଙ୍କୁ ନେଇଗଲେ । ସାହେବ କହିଲେ, 'ନିଜର ଜାତି ଲୋକ ପାଇବା ବର୍ତ୍ତମାନ ପରି-ସ୍ଥିତିରେ ମୁସ୍କିଲ୍ । ସବୁବେଳେ ପ୍ରାଣକାଟ ଲଗିଛି । କାଲି ତିନି ମରିଛନ୍ତି ଆମ୍ବ ଗ୍ରହଣୀରେ । ସମସ୍ତଙ୍କୁ ଦାହ କରାଇବା କାଠିକର ପାଠ ହେଲାଣି । ସ୍ୱଜାତି ମଡ଼ାପାଙ୍ଗିଆ ମିଳିବା ଅସଂଭବ ।'

''ଜେଠା ଚାଲିଗଲେ । ଭାବିଙ୍କୁ ଧରି କୁଆଡ଼େ ଯିବି କିଛି ଠିକଣା କରି ପାରୁ ନ ଥାଏ । ନର୍ସ୍‌କୁ କହିଲି । ସେ କହିଲେ, 'ମା ! ତୋ ଭାଉଜ କଥା ତ ଏଇଲେ ହେଲାଣି ବଡ଼ ଗହନ । ସେ ବାଇଆଣୀ ହୋଇଗଲା ପରି ଲାଗୁଛି । ତାକୁ ଡାକ୍ତରଖାନାରେ ରଖେଇ ଦେବା । ତୁ ଆ ମୋ ଘରେ ରହିବୁ । କିନ୍ତୁ ସେ ବାଡ଼ିପଡ଼ା ସାହେବ କ'ଣ ତୋତେ ମୋ ପାଖେ ରଖେଇଦେବ ? ତୋର ଏଇ ପୋଡ଼ା ରୂପ ଯୋଗୁଁ ସେ ବାଡ଼ିପଡ଼ା ଫି ଦିନ ଧାଇଁଛି ପରା !'

''ମୋ ମୁଣ୍ଡ ଘୂରିଗଲା । ମନ ହେଲା, ଜହର ଟିକିଏ ପାଇଲେ ଖାଇଦିଅନ୍ତି । ମୋ ମା' ଠାରୁ ଶୁଣିଥିଲି, ପୂର୍ବେ ମାଇକିନିଆମାନେ ହୀରାବସା ମୁଦି ପିନ୍ଧୁଥିଲେ । ଇଜ୍ଜତ୍ ଉପରେ ଆଞ୍ଚ ଆସିଲେ ତାକୁଇ ଚୂଚୁମି ସଂସାରରୁ ଉଦ୍ଧାର ପାଉଥିଲେ । ନର୍ସକୁ କହିଲି, 'ମୋ ପାଖେ ବହୁତ ଟଙ୍କା ଅଛି, ସବୁ ନେଇ ମୋତେ ଟିକିଏ କ'ଣ ଦିଅ, ମୁଁ ପାଖରେ ସାଇତି କରି ରଖିବି ।'

''ନର୍ସ୍ କହିଲେ, 'ଛି, ମା ! ଆତ୍ମହତ୍ୟା ମହାପାପ, ମଣିଷ ମାରିବାଠାରୁ ବି ଅଧିକ । ସଂସାରକୁ ଡରି ଯଦି ନିଜର ଜୀବନ ନେବୁ, ତେବେ ମଣିଷ ଜୀବନ ପାଇଥିଲୁ କାହିଁକି ? ମନରେ ସାହସ ରଖ, ଦମ୍ଭ ରଖ, କେହି କିଛି କରି ପାରିବେ ନାହିଁ । ମୋ ବୟସ ବେଳେ ମୋ ସାଙ୍ଗେ ବି ପଛେ ଲାଗିଥିଲେ । ମୋ ନାଲି ଆଖି ଦେଖି ସମସ୍ତେ କିଏ କୁଆଡ଼େ ଲସିଗଲେ । ଦିହକୁ ଟାଣ କର ମା, ଈଶ୍ୱର ଅନୁଗ୍ରହରେ ସବୁ ଠିକ୍ ହୋଇଯିବ । ହଁ, ଠିକ୍ ଯଦି ହେବାର ଥିବ ହେବ, ନ ଥିଲେ କିଏ କାହାକୁ ରଖିପାରିବ ।'

''ଭାବୀ ଡାକ୍ତରଖାନାରେ ରହିଲେ । ନର୍ସଙ୍କ ଘରେ ପୁଞ୍ଜିଏ ଖାଇ ଦିନ ତମାମ ଭାବୀଙ୍କ ଖଟିଆ ପାଖରେ ବସିଥାଏ । ତାଙ୍କର କୌଣସି ସାହାଯ୍ୟ କେତେବେଳେ ଦରକାର ହୁଏ ନାହିଁ । ସେ ଖାଲି କଡ଼ି ଉପରେ ଆଖି ରଖି ପଡ଼ିଥାଆନ୍ତି । ଖୁଆଇଲେ ଗୁଣ୍ଡେ ଖାଆନ୍ତି । ବେଶୀ ବଳେଇଲେ ଦାନ୍ତକୁ ଏପରି ଚିପିଦିଅନ୍ତି ଯେ ମେଲେଇବା ମୁସକିଲ୍ ହୋଇଯାଏ । ଡାକ୍ତରବାବୁ ମଝିରେ ମଝିରେ ଆସି ଟିକିଏ ଚାହିଁ ଦେଇ ମୁଣ୍ଡ ହଲାଇ ଚାଲିଯାଉଥାନ୍ତି । ସାତଦିନ ପରେ ଦିନେ ମୋତେ କହିଲେ, 'ଏ ରୋଗୀକୁ ଏଠାରେ ରଖିବା ଅକାରଣ । ମୁଁ ବିଚାରୁଛି ପାଗଳାଖାନାକୁ ଏହାଙ୍କୁ ପଠାଇଦେଲେ ଭଲ ହେବ । ତୁମେ ବି ଏଠାରେ ବୃଥାରେ ସମୟ ନଷ୍ଟ କରୁଛ । ତୁମ ବିଷୟ ସାହେବ କାଲି ପଚାରୁଥିଲେ । ତୁମର ବସବାସ ପାଇଁ ସେ ଭଲ ବନ୍ଦୋବସ୍ତ କରିଦେବାକୁ ଚାହାନ୍ତି । ପୁଣି ମୁଁ ଶୁଣୁଛି ତୁମେ ନର୍ସ କ୍ୱାର୍ଟରରେ ରହୁଛ ।

ବାହାର ଲୋକ ସେଠାରେ ରହିବା ବେଆଇନ । ସେଠାରୁ ନ ଗଲେ ବିଚାରୀ ନର୍ସର ଚାକିରି ଯାଇପାରେ ।'

"ସ୍ୱାମୀଙ୍କ ପାଇଁ ଚିନ୍ତା ଅପେକ୍ଷା ନର୍ସଙ୍କ ପାଇଁ ମୋର ଚିନ୍ତା ବଳିପଡ଼ିଲା । ବିଚାରୀ ମୋର ଭଲମନ୍ଦ ଖୁବ ବୁଝନ୍ତି । ପଇସା ଯାଚିଲେ କୁଦର୍ଥ ନେବାକୁ ରାଜି ହୁଅନ୍ତି ନାହିଁ । ଶେଷରେ ଟଙ୍କିଆ ନୋଟ୍ ଖଣ୍ଡେ ଦିନେ ରାଣ ନିୟମ ପକାଇ ତାଙ୍କୁ ଦେଇଥିଲି । ସେ କହିଲେ, "ଆଲୋ ଅଭାଗୀ ! ତୋର ତ ସବୁ ଯାଇଛି, ଏ ଟଙ୍କା ପୁଞ୍ଜିକ ରଖିଥା । ତୋ ସ୍ୱାମୀ ପାଇଁ କଣ ଦରକାର ହେବ କେଜାଣି ? ମୋର ତ ଗୋଡ଼ହାତ ଚାଲୁଛି, ପେଟ ବୋଇଲେ ଚାରିଖଣ୍ଡେ ! ମୋର ଅଭାବ ବୋଇଲେ କିଛି ନାହିଁ । ତୁ ପୁଞ୍ଜେ ଖାଉଛୁ ବୋଲି ମୁଁ ପଇସା ନେବ ?" ମୁଁ ବହୁତ ଲଗାଇବାରୁ ସେ ପଇସା ରଖିଥିଲେ ।

"ସେ ଦିନ ରାତିରେ ସେ ମୋତେ କହିଲେ, 'ଆଲୋ ମା ! ସେ ବାଡ଼ପଡ଼ା ସାହେବ ପୁଣି ତୋ ସଙ୍ଗେ ଲାଗିଲାଣି । ଆଜି ଡାକ୍ତର ମୋତେ ଧମକେଇଲା, ତୁ ଯଦି ମୋ ଘରେ ରହୁ ସେ ମୋ' ନାଁରେ ରିପୋର୍ଟ କରିବ । ମୁଁ କହିଦେଇଛି, ରିପୋର୍ଟ କର । ଚାରିଖଣ୍ଡେ ବୋଲି ପେଟକୁ ମୁଁ ଏତେ ଡରିବି କାହିଁକି ଯେ ?'

"ମୋତେ କିନ୍ତୁ ଭାରି ଡର ମାଡ଼ିଲା । ମୋ ଯୋଗୁ ସେ କାହିଁକି ହଇରାଣ ହେବେ ? ରାତି ପାହିବା ପୂର୍ବରୁ କୁଆଡ଼େ ପଳାଇବି ବୋଲି ମନେ ମନେ ସ୍ଥିର କଲି । ପୁଣି ବିଚାରିଲି, ସ୍ୱାମୀଙ୍କୁ ଛାଡ଼ି ଯିବି କିମିତି ?

"ତହିଁ ଆର ଦିନ ସକାଳେ ଡାକ୍ତର ବିଦା କରିଦେଲେ, ସ୍ୱାମୀ ପାଗଳା ଗାରଦକୁ ଯିବେ । ମୁଁ ଆପତ୍ତି କଲି । ସେ କହିଲେ, 'ତୁମେ ତାଙ୍କର କେହି ନୁହଁ । ତାଙ୍କର ନିଜ ଲୋକ, ଶ୍ୱଶୁର ବା ସ୍ୱାମୀ ଥିଲେ, ତାଙ୍କର ଆପତ୍ତି ହୁଏତ ଶୁଣାଯା'ନ୍ତା । ବର୍ତ୍ତମାନ ତୁମର ଓ ତାଙ୍କର ଅଭିଭାବକ ସରକାର, ଅର୍ଥାତ୍ ଡେପୁଟି କମିସନର ସାହେବ । ତାଙ୍କୁ ଜଣାଇ ମୁଁ ପାଗଳାଗାରଦରେ ସିଟ୍ କରାଇଛି । ତୁମେ ସ୍ୱାଙ୍କର ଆପଣାର ଲୋକ ହୋଇଥିଲେ, ଆପତ୍ତି କରିବା ପରିବର୍ତ୍ତେ ସ୍ୱାଙ୍କ ପାଇଁ ପାଗଳାଗାରଦରେ ସିଟ୍ କରାଇବାକୁ ଅନୁରୋଧ କରନ୍ତ । ତୁମେ ପିଲା ଲୋକ, ପାଗଳାମି ବିଷୟରେ କିଛି ଜାଣ ନାହିଁ ବୋଲି ଆପତ୍ତି କରୁଛ । ସାହେବ ଓପରଓଳି ଆସିବେ ବୋଲି କହିଛନ୍ତି । ତାଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ଯାହା କରିବା ।'

"ସାହେବ ଆସିଲେ ଓ ପୁଣି ମୋ ପିଠିରେ ହାତ ପକାଇ ମୋତେ ବୁଝାଇ ବସିଲେ । ମୁଁ ଲାଜ ଓ ବିତୃଷ୍ଣାରେ ଲସି ଯାଉଥାଏ । ସେ କହିଲେ, 'ତୁମର ମଙ୍ଗଳ ପାଇଁ ମୁଁ ବ୍ୟବସ୍ଥା କରୁଛି । ଡାକ୍ତରଙ୍କ ପରାମର୍ଶ, ରୋଗିଣୀକୁ ପାଗଳା ଗାରଦକୁ ନେବା ବ୍ୟତୀତ ଅନ୍ୟ ବାଟ ନାହିଁ । ସେଠାରେ ସୁଚିକିତ୍ସା ପାଇଁ ସବୁ ପ୍ରକାର ବନ୍ଦୋବସ୍ତ ମୁଁ ନିଜେ କରାଉଛି ।' ତା' ପରେ ଟିକିଏ ଚୁପ୍ ରହି ସେ କହିଲେ, "ହଁ, ପାସୋରି ଯାଉଥିଲି ! ତୁମେ ଏ ନର୍ସ କ୍ୱାର୍ଟର୍‌ରେ ରହିବା ଆଇନ୍ ବିରୁଦ୍ଧ ବୋଲି ଡାକ୍ତର ସାହେବ କହୁଛନ୍ତି । ପାଗଳା ଗାରଦରେ ତୁମର ସାହଚର୍ଯ୍ୟ ଦରକାର ହେବ ନାହିଁ । ତୁମକୁ ଗୋଟାଏ ବାଳିକା ବିଦ୍ୟାଳୟର ଗୃହା-

ବାସରେ ରଖାଇ ପାଠ ପଢ଼ିବାର ବ୍ୟବସ୍ଥା କରୁଛୁ । ବର୍ତ୍ତମାନ ହପ୍ତେ ଖଣ୍ଡେ ତୁମେ ମୋ କୋଠିରେ ରହିପାର । ମୋ ସ୍ତ୍ରୀଙ୍କୁ ପଚାରିଛୁ, ତାଙ୍କର କିଛି ଅସୁବିଧା ହେବ ନାହିଁ ।'

"ସାଙ୍ଗେ ସାଙ୍ଗେ ଆମ୍ବୁଲାନ୍ସ ଗାଡ଼ିରେ ପୂରାଇ ସ୍ୱାମୀଙ୍କୁ ପାଗଳା ଖାନାକୁ ନିଆହେଲା । ତାହା କେଉଁଠି ବୁଝିବାକୁ ବି ମୋତେ ସୁଯୋଗ ମିଳିଲା ନାହିଁ । ସ୍ୱାମୀଙ୍କୁ ଏଭଳି ନେଇଯିବେ ବୋଲି ଯଦି ମୁଁ ଆଗରୁ ଜାଣିଥାନ୍ତି, ତେବେ କାଲି ପାହାନ୍ତିଆରେ କୁଆଡ଼େ ପଳାଇ ଯାଇଥାନ୍ତି । ଆଜି ରାତିରେ ପଳାଇବି ବୋଲି ମନେ ମନେ ବିଚାରି, ସାହେବଙ୍କୁ କହିଲି, 'କାଲି ମୁଁ ଆପଣଙ୍କ କୋଠିକୁ ଯିବି ।' ସେ କହିଲେ, 'ବର୍ତ୍ତମାନ ଗଲେ ତ ମୋର ଆପତ୍ତି ନାହିଁ । ଏଠାରେ ରହି ବିଚାରୀ ନର୍ସଙ୍କୁ କାହିଁକି ଅଡୁଆରେ ପକାଇବ ? କାର୍ଯ୍ୟରେ ହେଳା କରେ ବୋଲି ଡାକ୍ତରଙ୍କର ତା' ବିରୁଦ୍ଧରେ ଅଭିଯୋଗ ଅଛି । ଏ ଅଭିଯୋଗ ମିଳିଲେ, ବିଚାରୀର ଚାକିରି ଯିବା ନିଶ୍ଚିତ ।'

'ଏହା ପରେ ମୋର ଆଉ ଉଁ ଚୁଁ ହେବାର ବାଟ ନ ଥିଲା । ନର୍ସ କ୍ୱାର୍ଟରରୁ ମୋର ଜିନିଷପତ୍ର ଆଣି ମୁଁ ସାହେବଙ୍କ ମଟରରେ ଆସି ବସିଲି । ଡ୍ରାଇଭର ଗାଡ଼ି ଚଳାଉଥାଏ; ପଛ ସିଟରେ ସାହେବ ମୋ ପାଖରେ ବସିଥାନ୍ତି । ବେଳେ ବେଳେ ମୋ ଆଡ଼କୁ ଘୁଞ୍ଚି ଆସୁଥାନ୍ତି, କେତେବେଳେ କମିତ ମୋର ପିଠିରେ, ଜଙ୍ଘରେ ହାତ ଲଗାଇ ଦେଉଥାନ୍ତି । ମୁଁ ଶିହରି ଉଠୁଥାଏ । କିନ୍ତୁ ପଳାଇବି କୁଆଡ଼େ ? କରିବି କ'ଣ ?

"ତାଙ୍କ କୋଠି କେତେ ଦୂରରେ କେଜାଣି ? ଘଣ୍ଟାକରୁ ବେଶି କଟିଲା ପରି ଲାଗିଲା । ଗାଡ଼ି ଅଟକୁ ନ ଥାଏ । ଯମୁନା କୂଳେ କୂଳେ ବହୁତ ବାଟ ଗଲୁଣି । ମୋର ମନେ ହେଉଥାଏ, ଆମେ ଦିଲ୍ଲୀ ଛାଡ଼ି ଆଉ କୁଆଡ଼େ ଯାଉଛୁ । ମଝିରେ ମଝିରେ କ୍ଷେତବାଡ଼ି ପଡ଼ୁଥାଏ । କେତେ ସମୟ ପରେ ଗାଡ଼ି ଅଟକିଲା, ଆଗ୍ରାର ତାଜମହଲ ଆଗରେ । ସାହେବ କହିଲେ, 'ତୁମେ ବୋର୍ଡ଼ିଙ୍ଗରେ ରହିଲେ, ଏଠାକୁ ଆସିବାକୁ ସମୟ ପାଇବ ନାହିଁ । ଆସ ଏଠାରେ ଟିକିଏ ବୁଲି କରି ଯିବା । ଗୃହଣୀ ରାତିରେ ଦିଲ୍ଲୀର ଜଞ୍ଜାଳରୁ ମୁକ୍ତ ପାଇ ଏଠାରେ ଘଣ୍ଟେ କଟାଇଲେ ମୋତେ ବଡ଼ ଆନନ୍ଦ ଲାଗେ ।'

"ତାଜମହଲ କଥା ଆମ ପଢ଼ାବହିରେ ଥିଲା । ଆଖିଆଗରେ ତାହା ଦେଖି ମନରେ ଲୋଭ ହେଲା ବୁଲି ଦେଖିବାକୁ । କିନ୍ତୁ ତକ୍ଷଣେ ଜେଠା ମନେ ପଡ଼ିଲେ, ସ୍ୱାମୀ ମନେ ପଡ଼ିଲେ, ମୋର ସବୁ ଦୁଃଖର ମୂଳରେ ଏଇ ସାହେବଟା ବୋଲି କେଜାଣି କାହିଁକି ମୋର ଦୃଢ଼ ଧାରଣା ହୋଇଥାଏ । ମୁଁ ଜବାବ ଦେଲି, 'ମୋର ମୁଣ୍ଡ ବଥାଉଛି, ମୁଁ ବର୍ତ୍ତମାନ ବୁଲି ପାରିବି ନାହିଁ ।'

"ସାହେବ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ, 'ଆଚ୍ଛା, ହେଉ, ହେଉ । ମୋ ନିଜ ମନର ଆନନ୍ଦ କଥା ଭାବି ମୁଁ ତୁମର ଦେହ ପା କଥା ଏକାବେଳକେ ପାସୋରି ଦେଇଛି । ମୋର ଗୋଟାଏ ଧାରଣା ଯେ ଯୌବନରେ ଦେହ ଖରାପ ହୁଏ ନାହିଁ । ଆଚ୍ଛା, ଚାଲ, ଚାଲ, ଯିବା କୋଠିକୁ ।'

କୋଠିକୁ ଫେରିବା ବାଟରେ ଗୋଟାଏ ବଡ଼ ପୋଷାକ ଦୋକାନ ଆଗରେ ଗାଡ଼ି ଅଟକାଇ ସେ କହିଲେ, 'ଟିକିଏ ଓହ୍ଲାଅ । ସ୍କୁଲକୁ ଯିବାକୁ ଉପଯୁକ୍ତ ପୋଷାକ ତୁମର ନାହିଁ । ଏଠାରେ ଟିକିଏ ମାପ ଦେଇଗଲେ ସେ ପୋଷାକ ପଠାଇଦେବ ।' ଦୋକାନ-ବାଲା ସାହେବଙ୍କୁ ଖୁବ୍ ସମ୍ମାନ ଦେଖାଇଲା । ଖୁବ୍ ଦାମିକା ସେରଓ୍ୱାନି ଓ ପଞ୍ଜାବୀ ଦେଖାଇଲା, ଦୋପଟା ଦେଖାଇଲା । ଆମ ଗାଁରେ ମାଇକିନିଆ ସେଗୁଡ଼ାକ ପଞ୍ଜାବୀ ପିନ୍ଧନ୍ତି ନାହିଁ । ଆମର ପିନ୍ଧନ୍ତି ଶାଢ଼ୀ ଓ ବ୍ଲାଉଜ । ମୋତେ ଏଡ଼େ ଖରାପ ଲାଗୁଥାଏ ଯେ, ମୁଁ କିଛି ନ କହି ମଲା ପରି ଠିଆ ହୋଇ ରହିଲି । ମାପ ନେବାବାଲା ମୋ ଦେହରେ ଅଭଦ୍ର ଭାବେ ହାତ ମାରିଲା, ଶୀତେଇଗଲି କିନ୍ତୁ ପାଟି ଫିଟାଇଲି ନାହିଁ ।

"କୋଠିରେ ଯାଇ ପହଞ୍ଚିଲା ବେଳକୁ ରାତି ପହରେ ହେବ । ମୋ ପାଇଁ ଗୋଟାଏ ବଖରା ଆଗରୁ ସଜଡ଼ା ହୋଇ ରହିଥାଏ ପରି ମନେହେଲା । ସାହେବ ଗୋଟିଏ ବୁଢ଼ୀକୁ ଅଗଡ଼ ମଗଡ଼ କରି କ'ଣ କହିଲେ । ପରେ ଜାଣିଲି, ସେ ଓଡ଼ିଆ ଭାଷା । ବୁଢ଼ୀ ମୋତେ ନେଇ ସେ ବଖରାରେ ରଖାଇଦେଲା । ସେଇ ଘରେ ମୋତେ ଖାଇବାକୁ ଦିଆହେଲା । ମୋତେ ଖାନା ରୁଚିଲା ନାହିଁ । ମୁଁ ଦୁଇଗ୍ଲାସ ଥଣ୍ଡା ପାଣି ପିଇ କଡ଼ଯୋଡ଼ କାନ୍ଦରେ ଶୋଇ-ପଡ଼ିଲି ।

"ଅଧରାତିରେ କାନ୍ଦ ଭାଙ୍ଗିଲା । ମୁଁ ଖୁଡ଼ିକାନ ଅଜାଣତରେ ଟିକିଏ ଶବ୍ଦ କରିଦେବାରେ ବୁଢ଼ୀ ଆସି ମୋ ପାଖେ ପହଞ୍ଚିଲା ଓ କଡ଼ମଡ଼ିଆ ହିନ୍ଦୀରେ ଏଣୁ ତେଣୁ କେତେ ଗପିଲା । ତା'ଠାରୁ ଶୁଣିଲି, ତା' ଘର ଓଡ଼ିଶାରେ । ଆଠ ବର୍ଷ ହେଲା ସ୍ୱାମୀଙ୍କ ପାଖରେ ଅଛି । ତାକୁ ଆଗ ପଦେ ହେଲେ ହିନ୍ଦୀ ଆସୁ ନ ଥିଲା । ଏବେ ବେଶ୍ ଗଡ଼ ଗଡ଼ କରି କହିଲାଣି । ବେଳେ ବେଳେ ଓଡ଼ିଆ ଭାଷା ମିଶିଯାଉଛି । ଏ ସାହେବଙ୍କର ପ୍ରଥମ ଭାର୍ଯ୍ୟା ସାଙ୍ଗେ ସେ ଆସିଥିଲା । ସେ ମରିଯିବାରେ ସାହେବ ଆଉ ଗୋଟେ ବାହା ହେଲେ । ତାକୁ ଚଳାଇବାକୁ ସାହେବ କହିବାରୁ ବୁଢ଼ୀ ରହିଗଲା । କିନ୍ତୁ ଦୁଇବର୍ଷ ପରେ ସେ ଭାର୍ଯ୍ୟାକୁ ସାହେବ ଛାଡ଼ି ଦେଇ, ନୂଆ ଭାର୍ଯ୍ୟା ଆଣିଛନ୍ତି । ସ୍ତ୍ରୀ କୁ ସିନେମାରେ ନାଚୁଥିଲା । ଦୁଇ ତିନି ବର୍ଷ ସ୍ତ୍ରୀ ସାଙ୍ଗେ ସାହେବ ଭଲରେ ଚଳିଲେ, ଏବେ ଆଦୌ ପଶୁରୁ ନାହାନ୍ତି । ବରଷ ଏଇ ଘରେ ଅଛି ସିନା ସାଇବ ତା' ପାଖ ପଶନ୍ତି ନାହିଁ । ସେ ବି ତା' କାମେରାରୁ ବାହାରେ ନାହିଁ । ସାହେବ ଛାଡ଼ପତ୍ର ଦେବେ ବୋଲି ତ ଶୁଣା ଯାଉଛି । ମୋର ବନା ପଚାରରେ ଏ ସବୁ ଗପି ବୁଢ଼ୀ କହିଲା, "ଅଲେ ମା ! ବଡ଼ ଲୋକଙ୍କ କଥା ମୋ ମଗଜରେ ପଶେ ନାହିଁ । ଆରେ ସ୍ତ୍ରୀ ଯାହାକୁ ଯେ ! ଦୈବ ଘଟସୂତ୍ରରେ ଯାହା କପାଳକୁ ଯିଏ ମିଳିଛି, ତାକୁ ଧରି ସନ୍ତୋଷରେ ଚଳିଲେ ସିନା ହେବ ? ସ୍ୱାମୀଙ୍କର ତ ପଡ଼ିକେ ଘୋଡ଼ା ଛୁଟୁଛି । ମୋ ଗେରସ୍ତ ଥିଲା ଯେ ଆମେ ଚାଳିଶ ବର୍ଷ ଘରକଲୁଁ । ଦିନେ ଆଉ କାହାକୁ ହିନେଇ ନେଲାଁ । ସ୍ୱାମୀଙ୍କର ତ ଦିନକେ ମାଇକିନିଆ ପୋଷହାଁ ହୋଇଯାଉଛନ୍ତି ।'

"ବୁଢ଼ୀ ଭଲ ଲୋକ ବୋଲି ମନେ ହେବାରୁ ମୁଁ ତା ସଙ୍ଗେ ସେ ଦିନ ରାତିରେ ଓ ତା' ପରେ କେତେ କଥାବାର୍ତ୍ତା ହେଲି । ତାଠାରୁ ଓଡ଼ିଆ ଶିଖିଲି । ହପ୍ତେ ଖଣ୍ଡେ ଭିତରେ

ମୁଁ ତା' ସାଙ୍ଗେ ଓଡ଼ିଆରେ କଥାବାର୍ତ୍ତା ହେବାର ଦେଖି ବୁଢ଼ୀ ଆନନ୍ଦରେ କହି ପକାଇଲା, 'ଝିଅ ! ତୁ ଆର ଜନ୍ମରେ ଆମରି ରାଇଜରେ ଜନ୍ମ ହୋଇଥିଲୁ ପରି ଲାଗୁଛୁ !'

''ବୁଢ଼ୀଠାରୁ ଶୁଣିଲି, ସାହେବ ବି ଓଡ଼ିଆ ଲୋକ । 'ଛତିଶ ପାଟକରେ ରଜା'' ବ୍ରାହ୍ମଣ କୁଳରେ ଜନ୍ମ ହୋଇଥିଲେ । ବିଲାତ ଯିବାକୁ ଟଙ୍କା ପାଇବା ଲୋଭରେ ବୁଢ଼ୀର ଜାତିର ଗୋଟେ ଟୋକୀକୁ ବିଭା ହେଲେ । ବିଲାତ ଯାଇ ବଡ଼ ଚାକିରି ପାଇଲେ ସିନା ଆଉ ନିଜ ଗାଁକୁ କି ନିଜ ରାଇଜକୁ ଗଲେ ନାହିଁ । ବଡ଼ ଚାକିରି କଲେ, ବହୁତ ଟଙ୍କା କମେଇଛନ୍ତି, ହେଲେ କଣ ହେବ, ବ୍ରାହ୍ମଣେ ତାଙ୍କୁ ଆପଣାର କଲେ ନାହିଁ, କି ଚଷାଙ୍କୁ ଆପଣାର କରିବାକୁ ସେ ଚାହିଁଲେ ନାହିଁ । ବିଚରା ଚାକିରି ଜାଗାରେ ଏକୁଟିଆ ରହି, ଖୁସାମଦିଆଙ୍କ ହଜୁର ଡାକ ଶୁଣି, ଯାହା ଯେତେବେଳେ ମନରେ ବିଚାରୁଛନ୍ତି ସେଇଆ ପାଠ ବୋଲି ଭ୍ରମି ହେଉଛନ୍ତି । ସାହେବଙ୍କର ଦୋଷ ସବୁ ବୁଢ଼ୀକୁ ଦିଶୁଥିଲେହେଁ କିମିତି ଗୋଟାଏ ମାୟା ଲାଗିଯାଇଛି ଯେ, ବୁଢ଼ୀ ତାଙ୍କୁ ଛାଡ଼ି ଯାଇ ପାରୁନାହିଁ । ମୋର ବି ବୁଢ଼ୀଠାରେ ମାୟା ଲାଗିଗଲା । ତା ଢଙ୍ଗ, ତା' ରୂପ, ତା କାନର ନୋଲି, ବେକର କୁରୁକାତିକ ମାଳି— ସବୁ ମୋତେ ସୁନ୍ଦର ଦିଶିଲା । ତା'ରି ସାଙ୍ଗେ ରହି ମୁଁ ମୋର ନିଜ ଦୁଃଖ ଦୁର୍ଦ୍ଦଶା ପାସୋରି ଦେଲି । କିନ୍ତୁ ଏ ଭାଗ୍ୟ ବେଶି ଦିନ ରହିଲା ନାହିଁ ।

''ଦୁଇଦିନ ପରେ ମୋର ନୂଆ ପୋଷାକ ଆସି ପହଞ୍ଚିଲା—ଭାରି ରଙ୍ଗଢଙ୍ଗିଆ । ସାହେବ ନିଜେ ଆସି ତାହା ଦେଇଗଲେ ଓ ମୁଁ ଯେପରି ତାହା ପିନ୍ଧେ ସେଥିପାଇଁ ବୁଢ଼ୀକୁ ତାଗିଦ କରିଦେଇଗଲେ । ମୁଁ ସେ ପୋଷାକ କେଭେ ପିନ୍ଧିବି ନାହିଁ ବୋଲି ଜିଦ ଧରିବାରେ ବୁଢ଼ୀ ମୋତେ ବୁଝାଇଲା, 'ମା ! ଏ ସାଇବଟା ବାଘୁଆ ହାତୀ, ତା' କଥା ଅନୁସାରେ ନ ଚାଲିଲେ ସେ କେତେବେଳେ କ'ଣ କରିବ ଠିକଣା ନାହିଁ । ତା' ହାବୁଡ଼ରେ ଯେତେବେଳେ ପଡ଼ିଛୁ ତା' କଥା ଅମାନ୍ୟ କର ନା ।' ମୁଁ ବାଧ୍ୟ ହୋଇ ନୂଆ ପୋଷାକ ପିନ୍ଧିଲି । ବୁଢ଼ୀ ଦେଖି କହିଲା, 'ଓଃ ! କେତେ ରୂପ ତୋତେ ପ୍ରଭୁ ଦେଇନାହାନ୍ତି ସତେ ? ତୋ' ମଇଳା କପଡ଼ାରେ, ନିଆଁ ପାଉଁଶରେ ଘୋଡ଼େଇ ହେଲା ପରି ହୋଇଥିଲା ।' ମୁଁ ତ ଏଇ ରୂପକୁ ଡରି ପୋଷାକ ପିନ୍ଧିବାକୁ ନାହିଁ କରୁଥିଲି ।'

"ଏ ଘରେ ରହିବାର ସାତ ଦିନ ହୋଇଯାଇଥିଲେ ବି ସାହେବଙ୍କ ଆଉ ମୋ ଉପରେ ବିଶେଷ ନଜର ନ ପଡ଼ିବାର ଦେଖି ମୋ ମନରେ ଗୋଟାଏ କେମିତି ବିଶ୍ୱାସ ହୋଇଯାଇଥାଏ ଯେ ବୋଧହୁଏ ମୁଁ ଯାହା ଡରୁଥିଲି ତା ନୁହେଁ । ମୁଁ ସ୍ୱଚ୍ଛନ୍ଦରେ କୋଠି ଭିତରେ ବୁଲାବୁଲି କରିବାକୁ ଆରମ୍ଭ କଲି । ସାହେବାଣୀ ଯେଉଁ ପଟେ ଥାନ୍ତି ସେ ପଟକୁ ଯିବାକୁ ବୁଢ଼ୀ ମୋତେ ମନା କରିଥାଏ । ଦିନେ ଚାଲି ଚାଲି ହୋଇ ଯାଉ ଯାଉ ମୁଁ ସେ ପଟକୁ ଚାଲିଗଲି । ଦୂରରୁ ମୋତେ ଦେଖି ମୋ ଭଳି ବୟସର ଜଣେ ସ୍ତ୍ରୀ ମୋତେ ଆସ ବୋଲି ଡାକଲେ ।

( ୧୦ )

ସନ୍ଧ୍ୟା ଲାଗିବାର ଘଡ଼ିକ ଭିତରେ ଆମେ ସମସ୍ତେ ଏକାଠି ହୋଇଯାଇଥାଉ । ମହାପାତ୍ରଙ୍କର ପ୍ରାୟ ଡେରି ହୁଏ, ତାଙ୍କର ସାନ୍ଧ୍ୟକର୍ମ ସାରି ଆସିବାକୁ । ସେ ନାୟକଙ୍କ ପଛେ ପଛେ ଆସି ପହଞ୍ଚିବାରୁ, ଦାସେ ପଚାରିଲେ, "ଆଜି ମହାପାତ୍ରଙ୍କର ସବୁ ସଂକ୍ଷିପ୍ତରେ ହୋଇଗଲା ପରା !" ମହାପାତ୍ରେ କହିଲେ, "ଆମ ସୁରଭି ଆଜି ସବୁ ସଂକ୍ଷିପ୍ତ କରିଦେଲେ । ଆଜି ଆଉ ଦହିଡ଼ କରିବାକୁ ପଡ଼ିଲା ନାହିଁ । ଗୋଠରୁ ଆସୁ ଆସୁ ଶ୍ରୀମନ୍ତିନୀ ବାଡ଼ି ଭିତରେ ପଶି ତୋରାଣି କୁଣ୍ଡରେ ମୁହଁ ମାରିଦେଲେ ଯେ ଉଠାଇବାକୁ ନାରାଜ । ତରବରରେ କୁଣ୍ଡା ଢ଼ିଙ୍ଗିବା ନେଇ ଗୋଳାଇଦେଲି । ସାଧାରଣତଃ ଯେତକ ଖାଏ, ତା'ର ଦେଢ଼ା ହୋଇଗଲା । ତା' ଦେଖି ମୁଁ ମଧ୍ୟ ପଖାଳ ପୁଞ୍ଜିଏ ହାଣ୍ଡିରୁ ଆଣି ସଦ୍ୟପ୍ରାପ୍ତ ଚେଙ୍ଗୁଲି ଫଟାକର ସହାୟତାରେ କଂସାଟିଏ ମାରିଦେଲି ।"

ବାହିନୀପତିଏ କହିଲେ, "ସଅଳର କାରଣ ସିନା କହିଲ । କିନ୍ତୁ ଆଚରଣ ଅଶାସ୍ତ୍ରୀୟ ହୋଇଗଲା । ଗୋମାତା ଅତ୍ୟାହାର କଲେ ଗୃହସ୍ଥ ଗୁହାଳରେ ଜାଗ୍ରତ ରହି ତାଙ୍କର ଅବସ୍ଥା ଲକ୍ଷ୍ୟ କରିବା ଉଚିତ । ପେଟ ଫାମ୍ପୁ ଫାମ୍ପୁ ତାଙ୍କର ଇହଲୀଳା ସାଙ୍ଗ ହେବାର ଭୟ ଅଛି ।"

ମହାପାତ୍ରେ କହିଲେ, "ବ୍ୟବହାରକୁ ଦୃଷ୍ଟି ନ ଦେଇ ଖାଲି ଶାସ୍ତ୍ରକୁ ଧରି ବସିଲେ ପାଣ୍ଡିତ୍ୟ ଓ ମୂର୍ଖତା ଭିତରେ ପାର୍ଥକ୍ୟ ଲୋପ ହୋଇଯାଏ । ଦହିଡ଼ ଖାଇଲେ ପେଟ ଫାମ୍ପିବାର ସମ୍ଭାବନା ଅଛି ସିନା, କାଲ୍ଦୁଆ ଖାଇଲେ ସେ ପ୍ରଶ୍ନ ଅବାନ୍ତର । ଗୋରୁର ଯେମିତି, ମଣିଷର ସେମିତି ।"

ନାୟକେ କହିଲେ, 'ପୁଣି, ଖାଇବା ବିଷୟରେ ଯେମିତି ଅନ୍ୟ ସବୁ ବିଷୟରେ ସେମିତି ।"

ଦାସେ କହିଲେ, "ଭୁଜ୍ ଧାତୁର ଅର୍ଥ ବଡ଼ ବ୍ୟାପକ । ଭୋଗ ପୁଣି ସୁଖରେ ଆବଦ୍ଧ ନୁହେଁ । ଦୁଃଖକୁ ବି ଭୋଗ କରିବାକୁ ହୁଏ । ସବୁ ଭୋଗ—ଆମର ଏ ଗଳ୍ପରେ, ତାସର ଯେମିତି ଭୋଗ, ବଡ଼ ସାଇବ ଇତ୍ୟାଦି ସମସ୍ତଙ୍କର ସେମିତି ଭୋଗ ।"

ବାହିନୀପତିଏ କହିଲେ, "ଭୋଗ ମାତ୍ରେ ଦୁଃଖଦାୟୀ ବୋଲି କୁହାଯାଏ । ଧନ ଧାନ୍ୟର ସଂଗ୍ରହରେ ଯେଉଁ ସୌଭାଗ୍ୟ, ତାହା ପରିଣାମରେ ଦୁର୍ଭାଗ୍ୟ ଆଣି ଥୋଇଥାଏ, ପଣ୍ଡିତଙ୍କ ପୁଅ ମୂର୍ଖ ନ୍ୟାୟରେ ।"

ଦାସେ ସମ୍ମତି ସୂଚାଇଲେ । ମୁଁ, କାଲି ଆମର କଥା ଯେଉଁଠି ରହିଥିଲା ସେଇଠୁ ପଢ଼ିବାକୁ ଆୟୋଜନ କରୁଛି, ମହାପାତ୍ରେ କହିଲେ, "ମୋତେ ତ ସମସ୍ତେ କାଲି ଠକେଇ-ଥିଲ । ପଶ୍ଚିମକବାଟଙ୍କଠେଇ ପାସ ଅନ୍ତର ହୋଇନପାରେ ।"

ବେଶି ବେଳ ଅପେକ୍ଷା କରିବାକୁ ପଡ଼ିଲା ନାହିଁ । ପଶ୍ଚିମକବାଟେ ସଶବ୍ଦେ ଆସି ପହଞ୍ଚିଲେ । ସେ ବଢ଼ି ପାଟିରେ ଦାଶଙ୍କ ଉଦ୍ଦେଶ୍ୟରେ ଶୁଣାଉଥାନ୍ତି, "ଆଉ ଏ ଗାଁରେ ରହି ହେବ ନାହିଁ । ଓଃ କି ଅନ୍ୟାୟ ! ତୁ ଗର୍ହିତ କାମ କଲୁ, ମୁଁ ଦୋଷ ଦେଲି, ମୁହଁରେ ଜବାବ୍ ଦେଉଚୁ, ଆଗକୁ ପୁଣି ଏଇ ଦୋଷ କେଜାଣି ହେବ, ଆଉ ପାଞ୍ଚ ଟଙ୍କା ରଖିଥାଅ ।"

କଥାଟା ବୁଝାଇ ନାୟକେ କହିଲେ, "ମୁଁ କଥାଟା ଶୁଣିଚି, ଫଇସଲା ବି ଶୁଣିଚି । ସେ ଯେଉଁ କେଉଟ ଟୋକାଟା ଏବେ ସାଇବ ହୋଇ ଫେରିଚି, ସେ ଆଜି ସନ୍ଧ୍ୟାବେଳେ, ଗଉରି ଖର୍ଯ୍ୟାର ଦେହରେ ହାତ ମାରି ଦେଇଥିଲା । ପଶ୍ଚିମକବାଟେ ତାକୁ ପାଞ୍ଚଟଙ୍କା ଜୋରିମାନା କଲେ । ସେ କହିଲା, "କେଜାଣି ଏ ଦୋଷ ଆଉଥରେ ହୋଇଯିବ, ଆଉ ପାଞ୍ଚଟଙ୍କା ରଖିଥାଅ ।" ଟୋକାଗୁଡ଼ିକ ଉତ୍ତେଜିତ ହୋଇଗଲେ ; ଆଗରୁ ଯଦି ଜୋରିମାନା ଦେବୁ ପାଖରେ ଯାହା ଅଛି ସବୁ ଦେ ବୋଲି ତା ପକେଟରୁ ସବୁତକ ଟଙ୍କା ବାହାର କରୁ କରୁ ଘୁଡ଼ାଏ ମାଇଲେ । ପଶ୍ଚିମକବାଟେ ଦୋଷୀର ପକ୍ଷରେ ବାହାରି ତା'ର ସବୁତକ ଟଙ୍କା ତାକୁ ଫେରାଇ ଦେଲେ ଓ ତାକୁ ସଭାରେ ମୁଣ୍ଡିଆ ମରାଇଲେ ।"

ଦାସେ କହିଲେ, "ମୁଣ୍ଡିଆ ମାଇଲା କି ? ଗାଁରେ ରହି ହେବ ନାହିଁ କାହିଁକି ? ଏଠାରେ ତ ଦୋଷୀ ତା' ମନକୁ ମୁଣ୍ଡିଆ ମାରୁଚି । ହାଣ୍ଡିରେ କ'ଣ ହେଉଥିଲା ବୋଲି କାଲି ଶୁଣୁଥିଲ ?"

ପଶ୍ଚିମକବାଟେ ସାଙ୍ଗେ ସାଙ୍ଗେ ଲେଉଟି ପଡ଼ି କହିଲେ, "ହଁ ! ହଁ ! ପଢ଼ିବଟି କୁଳୁଆଁ ବାବୁ ! ତରି ତ ଯାଇ ସାହେବଙ୍କ ବଙ୍କ ପାଖରେ ପହଞ୍ଚିଲା, ସେଠୁ ? ମୁଁ ଏଇ କଥା ଭାବି ଭାବି ଆସୁଥିଲି । ଛତର କେଉଟ ଟୋକାଟା ମନଟାକୁ ବିଗାଡ଼ି ଦେଲା ।"

ମୁଁ ପଢ଼ିବାକୁ ଲଗିଲି, ତାରର ଆତ୍ମବୃତ୍ତାନ୍ତ—

"ଭଦ୍ରମହିଳାଙ୍କୁ ଦେଖିଲମାତ୍ରେ ମୁଁ ଜାଣି ପାରିଲି, ଯେ ସାହେବଙ୍କ ସାହେବାଣୀ । ଯାଙ୍କୁ ପୁଣି ସେ ରୂପ ନାହାନ୍ତି ! କେଡ଼େ ସୁନ୍ଦର ଚେହେରା, ଭୟରେ, ଆତଙ୍କରେ ଆଖି ଯୋଡ଼ିକ ହରିଣୀ ଆଖି ପରି ଛନ ଛନ, ନାକ ଆଡ଼କୁ ଢଳ ହୋଇ ରହିଚି । ଓଠ ଦୁଇଟି କମ୍ପି ଉଠୁଚି, କ'ଣ ଗୋଟେ କହିବାକୁ । ମୁଁ କିଛି ନ କହି ତାଙ୍କ ପାଖକୁ ଲାଗି ସୋଫାରେ ବସିପଡ଼ିଲି ଓ ନ ଜାଣିଲା ପରି ତାଙ୍କ ଗୋଡ଼ରେ ହାତ ମାରିଦେଲି । ସେ ମୋତେ ଜାକି ଧକାଇ ପାଞ୍ଚ ମିନଟ୍ ପର୍ଯ୍ୟନ୍ତ ତୁନି ରହି କହିଲେ, 'ମୋ ବିଷୟରେ କ'ଣ ସିଦ୍ଧାନ୍ତ କରିଚ ? ମୋତେ ଘୁଡ଼ାଏ ଦିନ ଏମିତି କିଲବିଲ କରିବ ନାହିଁ, ମୋ ସୁନାଭଉଣୀଟି ପରି !'

"ଏ କଥାର ମର୍ମ ବୁଝିଲେ ବି ପ୍ରତିବାଦ କଲି, 'ମୋତେ ଏମିତି କାହିଁକି କହୁଛନ୍ତି ? ମୁଁ ତ ଆସିଚି ଆପଣଙ୍କ ସାହାଯ୍ୟରେ ନିଜର ସଦ୍‌ଗତି ପାଇଁ ! ମୋତେ ଆପଣଙ୍କର ଭଉଣୀ ବୋଲି ଗ୍ରହଣ କରନ୍ତୁ । ମୋର ଅଳି ଏତିକି ।'

"ମେମ୍ ସାହେବଙ୍କ ମୁହଁ ମୁହୂର୍ତ୍ତେ ତମତମ ହୋଇଗଲା । ସେହିକ୍ଷଣି ପୁଣି ତାଙ୍କ ବଙ୍ଗାଳୁଣୀ ମନ ମୋ ପ୍ରତି ସୌହାର୍ଦ୍ଦ୍ୟରେ ପୂରିଗଲା । ସେ ମୋତେ ଜାକିଧରି କହିଲେ,

'ତୋତେ ଦେଖିଲା ବେଳୁ ଭଉଣୀ ବୋଲି ଗ୍ରହଣ କରିଛୁ ମ ; କିନ୍ତୁ ମୋଠାରୁ ଶ୍ରୀ ଉଠି-ଯାଇଛୁ । ମୁଁ ପ୍ରଥମେ ଏଠିକୁ ଆସିଲା ବେଳେ ସ୍ବାଙ୍କ ପୂର୍ବ ଭାର୍ଯ୍ୟାଙ୍କୁ ମୋର ବଡ଼ ନାମୀ ବୋଲି ମାନ୍ୟ ଦେଖାଇଥିଲି । ସ୍ବାଙ୍କର ସମସ୍ତ ସଂପତ୍ତି ତାକୁ ଅର୍ପିଦେବାକୁ ବସି, ଜୀବନ ତମାମ ତାଙ୍କର ଦାସୀ ହେବାକୁ କହିଥିଲି । କିନ୍ତୁ ମାଇକିନିଆ ମନ କ'ଣ ଖାଲି ପେଟକୁ ଖାଇଲେ ବୋଧ ହୁଏ ? ସେ ମୋତେ ପଦେ କିଛୁ ନ କହି ଗୃହ ଅଧରେ କୁଆଡ଼େ ପଳାଇଲେ ଯେ, ଏପର୍ଯ୍ୟନ୍ତ ଠେର ପାଇନାହିଁ । ମୋର ମନେ ହେଉଛି, ତାଙ୍କୁ ପାଆନ୍ତି କି ତାଙ୍କର ସାଙ୍ଗରେ କୋଉଠ ମୁଣ୍ଡ ଗୁଞ୍ଜି ରହିଯାଆନ୍ତି ।

"ମୁଁ ତାଙ୍କ ଆଖିକୁ ବଲବଲ କରି ଚାହିଁ ରହିଲି । ସେ କହି ଚାଲିଲେ, 'ସିନେମାରେ ହେଉ, ନାଟକରେ ହେଉ, କି ସୁଅଙ୍ଗରେ ହେଉ, ଅଭିନେତ୍ରୀ ହେଲେ ମାଇକିନିଆର ମନରେ ଘୁଣ ଧରିଯାଏ । ମୁଁ ଏଠାକୁ ପହିଲେ ଆସିଲା ବେଳେ ତୋ'ପରି ଏମିତି ନିଷ୍ପାପ ନ ଥିଲି ଲୋ ଭଉଣୀ ! ମନରେ କେତେ ଲୋକଙ୍କୁ ପତି ବୋଲି ବରଣ କରି ସାରିଥିଲି ; କାର୍ଯ୍ୟରେ ମଧ୍ୟ କୌଣସି ପୁରୁଷଙ୍କୁ ଆପଣାର କରିନଥିଲି ବୋଲି କହିପାରୁନାହିଁ । କିନ୍ତୁ ସ୍ବାଙ୍କର ମୋ ଉପରେ ନଜର ପଡ଼ିଲା ଦିନୁଁ ଆଶା କରିଥିଲି, ସ୍ବାଙ୍କୁଇ ଦେବତା ବୋଲି ପୂଜାକରି ମୋ ପୂର୍ବ ପାପର ପ୍ରାୟଶ୍ଚିତ୍ତ କରିବି । କିନ୍ତୁ ତା' କଣ ହୁଏ ? ପାପ କରିବା ସିନା ନିଜ ହାତରେ, ପ୍ରଭୁ କୃପା ନ ହେଲେ ପ୍ରାୟଶ୍ଚିତ୍ତ କରିବାର ସୌଭାଗ୍ୟ ମିଳିବ କୁଆଡ଼ୁ ?'

"ତାଙ୍କ ମୁହଁରେ କମିତି ଗୋଟାଏ ଦୀପ୍ତି ଖେଳିଗଲା । ମୋର ମନେ ହେଲା, ଯଦି ବା ପୂର୍ବେ ସ୍ବାଙ୍କର କିଛି ପାପ ଥିଲା, ତାର ଲେଶ ମାତ୍ର ଆଉ ଏତେବେଳକୁ ନାହିଁ । ଜେଠା ତ କହନ୍ତି, ପ୍ରାୟଶ୍ଚିତ୍ତ କରିବାକୁ ମନରେ ଆକାଂକ୍ଷା ଜାଗିବାମାତ୍ରେ ମଣିଷ ନିଷ୍ପାପ ହୋଇଯାଏ । ମେମ୍ ସାହେବ ମୋର ଓଠ ଧରି କହିଲେ, 'ଭଉଣୀ ! ମାଇକିନିଆଁର ଜୀବନଟା ବୃଥା ଜୀବନ । ଦେହରେ ପୋଡ଼ପାଡ଼ ମାଇପି ଲକ୍ଷଣ ଫୁଟିଉଠିବା ମାତ୍ରେ ପୁରୁଷଙ୍କର ମନ ହୁଏ, ପିଲାଂକ ପରି, ଫୁଲଟାକୁ ବୃନ୍ତରୁ ଛିଣ୍ଡାଇ ପକାଇ କେତେକେତେ କରି ଗୋଡ଼ରେ ଦଳି ଦିଅନ୍ତେ । ମୋତେ ଛିଣ୍ଡାଇ ଦେବାକୁ ପ୍ରଥମେ ବସିଲେ ମୋର ଗୁରୁ, ଯେ ମୋତେ ଗୀତ ଶିଖାଉଥିଲେ । ପଙ୍କରେ ଯେ ମୁଁ ଲଟପଟ ହୋଇଯାଇଛି ତାହା ପ୍ରଥମ କେଇ ବର୍ଷ ଜଣାପଡ଼ିଲା ନାହିଁ । ମନ ଉତଲା ହୋଇଗଲା । ବାପାଙ୍କ ମାନମର୍ଯ୍ୟାଦା, ବୋଉର ସ୍ନେହ ସବୁ ଗୋଡ଼ରେ ଦଳି ଦେଇ ତାଂକରି ସାଙ୍ଗେ ବମ୍ବେ ପଳାଇଗଲି । ପାପର ଭାଗ ଯେତିକି ବଢ଼ିଲା, ମୋର ଗୁରୁ, ମୋତେ ଚାକର ପରି ଦେଖିଲେ । ସିନେମାରେ ମାଲିକଙ୍କର ସ୍ନେହ ମିଳିବାରେ, ଗୁରୁଙ୍କୁ ମୋର ଚାକର ପରି ବ୍ୟବହାର କଲି । ସେ ଘରେ ତାଙ୍କର ପିଲା ମାଇପଙ୍କୁ ଛାଡ଼ି ଯାଇଥାନ୍ତି, ମୋ'ଠାରୁ ହତାଦର ପାଇଲେ ବି ମୋରି ହୁକୁମ୍ ତାମିଲ୍ କରିବାରେ ମୋରି ବାହାର ଘରେ ଜୀବନ କଟାଇଦେବାକୁ ତିଆର ହୋଇଗଲେ । ଆଜି ସେ ହେଲେ ଥାନ୍ତେ ! ତାଙ୍କର ଗୋଡ଼ ତଳେ ପୁଣି ବସି, ମୋର ଅସମ୍ପୂର୍ଣ୍ଣ ହୋଇଥିବା ବିଦ୍ୟା ପୂର୍ଣ୍ଣ କରିଥାନ୍ତି ।'

"ମୁଁ ତାଙ୍କ ମୁହଁକୁ ସେମିତ ଚାହିଁ ରହିଥାଏ । ପ୍ରତି ପଦ କଥା କହୁ କହୁ ସେ ମୋ ମନରେ ଉଚ୍ଚତର ଆସନକୁ ଉଠୁଥାନ୍ତି । ସେ ପୁଣି କହିଲେ, ସିନେମାରେ ଅଭିନେତ୍ରୀକୁ ଆଜିକାଲିର ସମାଜରେ ଯେଉଁ ସମ୍ମାନ ମିଳୁଛି, ତା ମୂଳରେ ବିଦ୍ୟାର ଆଦର ନାହିଁ ବୋଲି ଆଜିକୁ ବୁଝିଲିଣି । ମୋତେ ରାଷ୍ଟ୍ରପତିଙ୍କ ଆଗକୁ ଅଣାଗଲା । ରାଷ୍ଟ୍ରପତି ବ୍ରହ୍ମର୍ଷି ବୋଲାଉ-ଥିଲେ ସିନା, ପୁରୁଷର ସ୍ୱଭାବଗତ ଦୋଷ ତାଙ୍କୁ ଛାଡ଼ି ନ ଥାଏ । ସେ ଯେ ମୋତେ ସ୍ୱର୍ଣ୍ଣ-ପଦକ ଉପହାର ଦେଲେ ତାହା ନୃତ୍ୟଗୀତ ବା ଅଭିନୟରେ ମୋର ବ୍ୟୁତ୍ପତ୍ତି ପାଇଁ ନୁହେଁ । ଆଜି ଜାଣୁଛି, ସେ ପୂଜା କରିଥିଲେ ମୋର ଏ ଦେହର ଚେହେରାକୁ, ମୁହଁର ଝଲକୁ । ତାଙ୍କ ମନର କଥା ମନରେ ସିନା ରହିଗଲା ତାଙ୍କ ବୟସ ଯୋଗୁଁ, ତାଙ୍କ ପ୍ରତିଷ୍ଠା ଯୋଗୁଁ । ତାଙ୍କର ସେକ୍ରେଟାରୀ ଥିବା ସ୍ୱାମୀଙ୍କର ତ ଉଦ୍ଦାମ ଯୌବନ ; ମୂଳରୁ, ବଡ଼ ଚାକିରି ଲୋଭରେ, ନାରୀକୁ ପାଦର ଲଗୁଣୀ ପରି ମନେ କରିଥାନ୍ତି । ଗୋଟିଏ ଅଶିକ୍ଷିତା ଶୂଦ୍ର କନ୍ୟାକୁ ପତ୍ନୀ ରୂପେ ଗ୍ରହଣ କରି, ଭ୍ରାନ୍ତ କନ୍ୟାପିତାଠାରୁ ବହୁତ ଟଙ୍କା ପାଇ ବିଲାତ ଯାଇଥିଲେ ଆଇ. ସି. ଏସ୍. ଚାକିରି ପାଇବାକୁ । ଚାକିରି ମିଳିବାର ବର୍ଷକ ଭିତରେ ଲଗୁଣୀକୁ ଗୋଡରେ ଫୋପାଡି ଦେଇ ନିଜ କ୍ଷମତାବଳରେ ନାରୀର ନାରୀତ୍ୱ ଧର୍ଷଣ କରିବାକୁ ମନ କରିଥାନ୍ତି । ମୋ ବିକୃତ ମନ ବି ତାଙ୍କର ଆଡ଼କୁ ଆକୃଷ୍ଟ ହେଲା, ସମାଜରେ ଆହୁରି ପ୍ରତିଷ୍ଠା ପାଇବାକୁ । ମୁଁ ରେଜିଷ୍ଟ୍ରୀଖାନାରେ ସ୍ୱାମୀଙ୍କୁ ବିଭା ହୋଇ ସ୍ୱାମୀଙ୍କ ଘରକୁ ଆସିଲି ଓ ଅଗ୍ନିକୁ ସାକ୍ଷୀ କରି ଯେ ସ୍ୱାମୀଙ୍କର ସହଧର୍ମିଣୀ ହୋଇଥିଲେ ତାଙ୍କୁ ଏ ଘରୁ ନିକାଲିଦେଲି ।'

"ମୁଁ କହିଲି, 'ତୁମର ଦୋଷ କ'ଣ ଦିଦି ? ତୁମେ ତ ତୁମ ସଉତୁଣୀଙ୍କର ଦାସୀ ହୋଇ ରହିବାକୁ ଇଚ୍ଛା କରିଥିଲ ?' ସେ କହିଲେ, 'ଏଇଲେ ସିନା ସେମିତି ଲାଗୁଛି । ପ୍ରକୃତରେ ଯଦି ମୋର ତାଙ୍କ ପ୍ରତି ସଦ୍‌ଭାବ ଥାନ୍ତା, ତେବେ ସେ ମୋତେ ନ୍ଦ ପଳାଇ ଯାଇଥାନ୍ତେ କାହିଁକି ?' ମୁଁ କହିଲି, 'ସେ ତ ମକଦ୍ଦମା କରିଥିଲେ, ତାଙ୍କ ଅଧିକାର ଫେରି ପାଇଥାନ୍ତେ ?' ଦିଦି ଦୀର୍ଘନିଃଶ୍ୱାସ ଛାଡ଼ି କହିଲେ, 'ଭଉଣୀ ! ମକଦ୍ଦମାରେ ଜିଣିଲେ କ'ଣ ନାରୀର ଅଧିକାର ଫେରିଆସେ ? ପେଟକୁ ଦାନା ହୁଏତ ମିଳିଥାନ୍ତା ! କିନ୍ତୁ ମନ ମରିଗଲେ ପେଟର ଦାନା କ'ଣ ଜୀର୍ଣ୍ଣ ହେବ ? ମୋତେ ବି ଏବେ ଜଣେ ସହାନୁଭୂତି ଦେଖାଇ କହି ଯାଇଛି ସ୍ୱାମୀଙ୍କ ନାଁରେ ମକଦ୍ଦମା କରିବାକୁ, କିନ୍ତୁ ତା' ମୁଁ ପାରିବି ନାହିଁ । ଯାହାଙ୍କୁ ଦିନେ ଦେବତା ବୋଲି ଏ ପାପ ମନରେ ଥାନ ଦେଇଥିଲି, ମକଦ୍ଦମା କରି ତାଙ୍କୁ ଇ ସମାଜରେ ଲାଞ୍ଛିତ କରିବି ? ନାହିଁ ଭଉଣୀ ! ତା' ମୁଁ ପାରିବି ନାହିଁ । ତୋ'ଉଠାରେ ଏବେ ତାଙ୍କର ମନ ଲାଗିଛି । ତୁ ତାଙ୍କୁ ସୁଖ ଦେ । ମୁଁ ତୋତେ ଆଶୀର୍ବାଦ କରିବି । ଭଗବାନ ତୋର ମଙ୍ଗଳ କରିବେ । ମୋର ବଡ଼ ସଉତୁଣୀ ମୋତେ ଏଇ ଆଶୀର୍ବାଦ ଦେଇଥିଲେ ।' ମୋ ମନ ବିଦ୍ରୋହୀ ହୋଇ ଉଠିଲା । ମୁଁ କହିଲି, 'ତମେ କଣ ବିଚାରୁଛ, ନିଆଁରେ ପତଙ୍ଗ ପୋଡ଼ି ମଲାପରି, ଆମେ ପୁରୁଷର କାମନାରେ ନିଜକୁ ହାସ ଦେବା ?' ସେ କହିଲେ, 'ନାରୀର ତ ସେଇଥିରେ ଆନନ୍ଦ, ନିଆଁରେ ପତଙ୍ଗର ଯେପରି ।' ମୋ ମନ ମାନିଲା ନାହିଁ । ତାଙ୍କ ମନରେ ପତ୍ନୀର ଭାବ । କିନ୍ତୁ ମୁଁ ଏ ସାଇବଙ୍କର ପତ୍ନୀ ହେବି ? ଅସମ୍ଭବ ! ମୋ ଜେଠାଙ୍କୁ

ଯେହୁ ମାରୁଛନ୍ତି ବୋଲି ମୋ ମନରେ ବିଶ୍ୱାସ ଦୃଢ଼ତର ହେଲା । କିନ୍ତୁ ସାଇବଙ୍କ ପ୍ରତି ମୋ ମନରେ ଯେତିକି ଘୃଣା ହେଉଥାଏ, ଏ ନାରୀ ମୂର୍ତ୍ତିଟି ପ୍ରତି ମନରେ ସେତିକି ଭକ୍ତି ଜାତ ହେଉଥାଏ । ସାହେବଙ୍କ କୋଠିରେ ବନ୍ଦିନୀ ହୋଇ ରହି, ସବୁବେଳେ ମୋ ଅସହାୟ ଅବସ୍ଥା କଥା ବିଚାରି, ମୋ ମନ ଯାହା ଦବିଯାଉଥିଲା, ମେମସାହେବଙ୍କ ସଙ୍ଗେ ପରିଚୟ ଓ ଆଲାପ ହେବାରେ ତାହାର ପରିବର୍ତ୍ତନ ହେଲା । ମୋ ମୁହଁରୁ ଅବସାଦ ବହୁମାତ୍ରାରେ ଦୂର ହୋଇଗଲା ଓ ତାହାର ସୂଚନା ମୋ ମୁହଁରେ ଦିଶିଲା । ଦର୍ପଣରେ ମୋ ମୁହଁ ଦେଖି ମୁଁ ଏହା ବାରି ପାରିଲି । ଘୁକରାଣୀ ବୁଢ଼ୀ ଦିନେ ମୋ ମୁହଁକୁ ଚାହିଁ ବିଷାଦ ସଙ୍ଗେ ଆନନ୍ଦ ମିଶା ସ୍ୱରରେ ମୋତେ କହିଲା, 'ଆଲୋ ମା, ଆମ ଦେଶରେ ଲୋକେ କହନ୍ତି, ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରି ତେଣିକି ଯାଇ । ମନଟାକୁ ବୁଝାଇଦେଲୁ, ଭଲ କଲୁ । ଆମେ ମାଇପି ଲୋକ, ଯେତେବେଳେ ଯାହା ସୁଖ ଦୁଃଖ ଆସୁଛି, ମୁଣ୍ଡେଇଯିବା ଭଲ ।' ଏ କଥାର ଅର୍ଥ ମୁଁ ବୁଝିଲି, କିନ୍ତୁ ପ୍ରତିବାଦ କଲି ନାହିଁ । କ୍ରମେ ସାହେବଙ୍କ ପ୍ରତି ମୋର ଘୃଣା କମିଗଲା । ମେମସାହେବଙ୍କୁ ତ ମୋ ମା ପେଟର ଭଉଣୀ ବୋଲି ଭାବୁଥାଏ । ତାଙ୍କର ମନ୍ଦ ପାଞ୍ଚନ୍ତି କପଟ ? ସେ ମୋର ଭଣେଇ ବୋଲି ଭାବିବା ବେଳୁ ତାଙ୍କ ପ୍ରତି ମୋର ମମତା ବଢ଼ିଲା । ସେ ମୋ ଜେଠାଙ୍କ ପ୍ରତି ଯେଉଁ ଅପରାଧ କରିଛନ୍ତି ବୋଲି ମୋର ଧାରଣା ହୋଇଥିଲା ତାହା କ୍ରମେ ଅପସରିଗଲା । ମୋର ମନରେ ହେଲା, ଆମର ଯେଉଁ ସବୁ ଦୁର୍ଦ୍ଦଶା ହୋଇଛି ତାହା ଆମ ପୂର୍ବ କର୍ମର ଫଳ । ଭଗବାନଙ୍କଠାରେ ଅଳି କଲି, ସାହେବଙ୍କର ମନ ବଦଳୁ, ସେ ମୋ ନାନାଙ୍କ ସଙ୍ଗେ ପୂର୍ବପରି ଚଳନ୍ତୁ । ନାନୀ ମୋତେ ଭବିଷ୍ୟତର ବାଟ କରିବେ ।

"ଏହି ବିଚାର ମୋ ମନରେ ଯେତେ ଦୃଢ଼ ହେଲା, ସାହେବଙ୍କ ପ୍ରତି ମୋର ବ୍ୟବହାର ସେତିକି ବଦଳିଲା । ସେ ଦିନକୁ ଥରେ ଦୁଇଥର ମୋ କୋଠରୀକୁ ଆସି ମୋର ଭଲ ମନ୍ଦ ବୁଝି ଯାଆନ୍ତି । ସେ ଆସିଲେ ମୁଁ ଆଗେ ମୁହଁକୁ ଭାରି କରି ରହୁଥିଲି । ସେ ପ୍ରଶ୍ନପଦେ ପଚାରିଲେ ପଦେ ଉତ୍ତର ଦେଉଥିଲି । କ୍ରମେ ତାଙ୍କ ସଙ୍ଗେ ଆଲାପ ହେଲା, ଥରେ ଦି'ଥର ତାଙ୍କ ସଙ୍ଗେ ଏକା ଟେବୁଲରେ ଖାଇଲି ; ସେ ବି ମୋ ସାଙ୍ଗେ କଥାବାର୍ତ୍ତା ବେଳେ ମେମ୍ ସାହେବଙ୍କ ସୁଖ ଦୁଃଖ କଥା ପଚାରିଲେ । ମୁଁ ବିଚାରିଲି, ବୋଧହୁଏ ଏ ଦୁହିଁଙ୍କର ମିଳାମିଶା ନିକଟରେ ହୋଇଯିବ । ଏହି ଆଶାରେ ମୁଁ ସାହେବଙ୍କ ସଙ୍ଗେ କେତେବେଳେ କିମିତି ଟିକିଏ ରହସ୍ୟ ବି କରିଦିଏ, ଶାଳୀ ବୋଲି ।

"ସାହେବ, ମେମ୍ ସାହେବଙ୍କ ବିଷୟରେ ଭଲ କଥା କିଛି କହିଲେ ମୁଁ ମେମ୍ ସାହେବଙ୍କୁ କହିଦିଏ ; ମନ୍ଦ କଥା କହିଲେ, ପରିହାସରେ କହୁଛନ୍ତି ବୋଲି ବିଚାରି ତା'ର ଭଲ ଅର୍ଥ କରି ଦିଏ । ମେମ୍ ସାହେବ ମୋଠାରୁ ସବୁ ଶୁଣି ଯେତେବେଳେ ଗମ୍ଭୀର ହୋଇ ଯା'ନ୍ତି, ମୋତେ ଡର ମାଡ଼େ । ମୁଁ ବିଚାରେ, ସେ ବୋଧହୁଏ ମୋତେ ସନ୍ଦେହ କରୁଛନ୍ତି । ଯେତେବେଳେ ସେ ଟିକିଏ ହସହସ ହୋଇଯାନ୍ତି, ମୋତେ ଭାରି ଆନନ୍ଦ ଲାଗେ । ମୁଁ ବିଚାରେ, ବୋଧହୁଏ ଈଶ୍ୱରଙ୍କ ଅନୁଗ୍ରହରୁ ମୋ କାମନା ପୂରିବ । ମେମ୍

ସାହେବଙ୍କ ମୁହଁରେ ହସ ସବୁବେଳେ ଲାଗି ରହିବ । ହସହସ ହେଲେ ତାଙ୍କ ମୁହଁ ଚାରିଗୁଣ ସୁନ୍ଦର ହୋଇଯାଏ ସତେ !

"ସେ ଦିନ ସନ୍ଧ୍ୟାବେଳକୁ ମୁଁ ମେମ୍ ସାହେବଙ୍କ ପାଖେ ଯାଇ ବସିଲି ରାତି ଦଶଟା ପର୍ଯ୍ୟନ୍ତ । ତାଙ୍କ ମନରେ ସୁଖ ନଥାଏ । ସେ ସବୁଦିନ ପରି ମୋ ସଙ୍ଗେ ଆଲାପ ନକରି ଗୁମ୍ ହୋଇ ବସି ରହିଥାନ୍ତି । ତାଙ୍କ ମନ ଆନମାନ କରିବାକୁ ମୁଁ ସାନଭଉଣୀ ପରି କେତେ ବାଆଁରୁବାଆଁରି କଲି, କିଛି ଫଳ ହେଉନଥାଏ । ଦୁହେଁ ଏକ ସଙ୍ଗେ, ଏକ ଥାଳୀରୁ ଖାଇଲୁ । ମୋତେ ଖୁଆଇବା ପାଇଁ ସେ ନିଜ ପାଟିକୁ ଗୁଣ୍ଡା ନେଉଥାନ୍ତି ମାତ୍ର । ସବା ଶେଷରେ ମୋତେ କହିଲେ, 'ଭଉଣୀ ! ଦୋଦୋ ପାଞ୍ଚ ହୋଇ ରହିବାରୁ ଦିନଗୁଡ଼ାକ ସରୁ ନାହିଁ । ମୋ ବିଷୟରେ ଶୀଘ୍ର ଗୋଟାଏ କିଛି ଫଇସଲା କର । ତୋ'ର ସୁଖରେ ମୁଁ ଅନ୍ତରାୟ ହେବାକୁ ଚାହୁଁନାହିଁ । ମୋ ଦୁଃଖରେ ମୋତେ ଯିବାକୁ ଦେ ।'

"ମୋ ମନ ବିଦ୍ରୋହୀ ହୋଇ ଉଠିଲା । ମୁଁ ଅଭିମାନରେ ଫୁଲିଫୁଲି କାନ୍ଦ ପକାଇ ମୋ କୋଠରୀକୁ ଯିବାକୁ ବାହାରିଲି । ସେ ମୋ ମୁହଁକୁ ଚାହିଁଥିଲେ ଶେଷ ପଦ କହି ନଥାନ୍ତେ ବୋଧହୁଏ । ମୁହଁକୁ ତଳକୁ ପୋତି ସେ କହିଲେ, 'ଆଜି ରାତିରେ ସାହେବଙ୍କୁ କହି କାଲି ସକାଳୁ ମୁଁ ଏ ଜେଲଖାନାରୁ ଯେପରି ମୁକ୍ତ ହେବି ତା'ର ବ୍ୟବସ୍ଥା କର । ମୋ ସୁନା ଭଉଣୀ ପରା !' ଦୁଃଖ ସଙ୍ଗେ ମୋ ମନରେ ଭାରି ରାଗ ହେଲା । ସେ ମଧ୍ୟ ତେବେ ବିଶ୍ୱାସ କରନ୍ତି, ସବୁ ଦିନ ରାତିରେ ମୁଁ ସାହେବଙ୍କ ସଙ୍ଗେ ରହେ ! ତାଙ୍କ ପ୍ରତି ଯେଉଁ ଶ୍ରଦ୍ଧା ହୋଇଥିଲା, ତାହା ସମୂଳେ ନଷ୍ଟ ହେଲା କି ନାହିଁ କେଜାଣି ? ସମୁଦାୟ ରାଗ ଯାଇ ସାହେବଙ୍କ ଉପରେ ପଡ଼ିଲା । ସେ ମୋର ଯେଉଁ ଅନିଷ୍ଟ କରିଛନ୍ତି ତାହା ବିକଟାଳ ରୂପ ଧରି ମୋ ଆଗରେ ଠିଆ ହେଲା । ମୁଁ ଚମଚମ ହୋଇ ଉଠି ଆସିଲି ।

"ମୋ କୋଠରୀରେ ଆସି ପହଞ୍ଚିଲାବେଳକୁ ବୁଢ଼ୀ ଚାକରାଣୀ ମୋତେ ଡାକିବାକୁ ମେମ୍ ସାହେବଙ୍କ କାମରା ଆଡ଼କୁ ମୁହାଁଇଥାଏ । ସେ ମୋତେ ଦେଖି କହିଲା, 'ମା ! ସେଆଡ଼େ ଏତେଗୁଡ଼ାଏ ବେଳ ରହିଲ କାହିଁକି ? ସେ ଏଣେ ଗୋଟାକ ସାରୁଟା ହେଲେଣି । ମୋତେ ଏଇଲେ କହୁଥିଲେ, ସେ ନାଚନେବାଲୀ ସଙ୍ଗେ ଏତେ ଅଳାପ କରିବାକୁ ମୁଁ ତୁମକୁ ଛାଡ଼ିଛି କାହିଁକି ? ଏ ସାହେବଟା ବାସ୍ତା ହାତୀ ପରା ! ତାଙ୍କୁ ଏମିତି ବିଗାଡ଼ନା । ସେ ଚାହିଁଲେ ତୁମକୁ ରାଜାରାଣୀ କରିଦେବ, ଚାହିଁଲେ ମାଟିରେ ଲେସିଦେବ । ମୋ ମା'ଟି ପରା ! ସବୁ ଆଡ଼କୁ ଦେଖି ଚାହିଁ ଚଳ ।'

"ମୋ ମନରେ ଯେଉଁ ରାଗ ଘୋଟିଥିଲା ତାହା ଆହୁରି ଜମାଟ ବାନ୍ଧିଲା । ମୁଁ ଦୁମ୍ ଦୁମ୍ ହୋଇ ମୋ କୋଠରୀରେ ପଶିଯାଇ ଦେଖିଲି, ସାହେବ ସୋଫା ଉପରେ ବସି ଗୋଟାଏ କ'ଣ ବହି ପଢୁଛନ୍ତି । ତାଙ୍କ ପାଖରେ ଗୋଟିଏ ଗ୍ରେଟ ଟେବୁଲ୍ ଉପରେ ଯୋଡ଼ା ଏ ମଦ ବୋତଲ ଦୁଇଟା ଥୁଆ ହୋଇଛି । ତା' ପାଖରେ ଗୋଟାଏ ଗ୍ଲାସ । ସେ ମୋତେ ଚାହିଁ ଦେଇ, ଭିତରର ଅସହିଷ୍ଣୁତାକୁ ଚାପି ରଖି କୃତ୍ରିମ ହସ ହସି କହିଲେ, ସଖୀଙ୍କ ସଙ୍ଗେ ଅଳାପ କରିବାରେ ଗୁଡ଼ାଏ ସମୟ କଟାଇଛ । ଆସ, ଆସ । ଏହା କହି ସେ ସୋଫାର

ଗୋଟାଏ କଡ଼କୁ ଘଞ୍ଚଯାଇ ମୋ ପାଇଁ ଜାଗା କଲେ । ମୁଁ କଛି ଉତ୍ତର ନ ଦେଇ ଅଲଗା ଗୋଟିଏ ଚଉକି ଉପରେ ବସି କୈଫିୟତ୍ ଦେଲି, 'ଏକୁଟିଆ ଲାଗୁଛି ବୋଲି ତାଙ୍କ ପାଖକୁ ଯାଏ ।'

"ସେ କହିଲେ, 'ଏକୁଟିଆ ଲାଗିଲେ, ମୋ ପାଖକୁ ଆସ । ଯେଉଁ ଘୋଡ଼ା ଜିଣି ଧାଇବ ନାହିଁ ବୋଲି ଜାଣୁଛ, ତା' ଉପରେ ବାଜି ରଖିବା ମୂର୍ଖତା ମାତ୍ର । ଗୋଟାଏ ଭୁଲ କରି ସେ ଦାସୀଟାକୁ ଆଣି ଘରେ ପୂରାଇଥିଲି । ସେ ଶତଶଯ୍ୟାର ନାୟିକା । ଗୁଚୁ କରୁ କରୁ ଯେଉଁ ଲୋକଟାକୁ ସେ ପଛ କରିଥିଲି ସେ ଏବେ ଏଇ ଦିଲ୍ଲୀର ଗ୍ରାଇସିନା ହୋଟେଲରେ ଚାକିରି କରୁଛି । ତା' ଠାରୁ ସ୍ତ୍ରୀର ସବୁ ଗୁଣଗ୍ରାମ ମୁଁ ଜାଣିଲି ଦିନୁଁ, ସ୍ତ୍ରୀର ମୁହଁ ଦେଖିବି ନାହିଁ ବୋଲି ସ୍ଥିର କରିଛି । ତୁମ ପରି ନାରୀ ଯାହାର କରଗତ ସେ ସ୍ୱେ ଖାନ୍ଦାକୁ ବା ପରୱାବ କାହିଁକି ?'

"ମୋର ତାଳୁଠାରୁ ତଳିପା ପର୍ଯ୍ୟନ୍ତ ପାଚିଗଲା । ମୁଁ ସମ୍ଭାଳି ନ ପାରି ଉତ୍ତର ଦେଲି, 'ଆଜି ଯେଉଁ ଲୋକ ସ୍ତ୍ରୀମାନଙ୍କୁ ଫୁଲପରି ଶୁଙ୍ଘି ସାରି ଗୋଡ଼ରେ ଦଳିଦିଏ, ତା'କୁ ସ୍ତ୍ରୀଲୋକ ପରୱାବେ ବୋଲି କାହିଁକି ମନେ କରୁଛନ୍ତି ?'

"ସେ ହସି ହସି କହିଲେ, 'ବେଶ୍ ସାହସ ତ ! ତୁମର ସାହସକୁ ମୁଁ ତାରିଫ୍ କରୁଛି । ସ୍ତ୍ରୀ ଜାତିରେ ଏଇଭଳି ସାହସ ମୋତେ ସୁଖ ଲାଗେ ।' ମୁଁ ଜବାବ୍ ଦେଲି, 'ଯଦି ଆପଣଙ୍କୁ ମୋ ର ସାହସ ସୁଖ ଲାଗୁଛି, ତେବେ ମୋର ଏତିକି ମାତ୍ର ଅନୁରୋଧ, ଆପଣ ଅନୁଗ୍ରହ କରି ମୋତେ ଏ ସ୍ଥାନରୁ ମୁକ୍ତ କରନ୍ତୁ ।' ସେ କହିଲେ, 'କୁଆଡ଼େ ଯିବ, ଶୁଣି ପାରେବ ? ମୁଁ ତ ଜାଣେ ତୁମର ନିଜର ହୋଇ ଏଠାରେ କେହି ନାହାନ୍ତି ।'

"ମୁଁ କହିଲି, 'ଯାହାର କେହି ନାହାନ୍ତି ସେ ଏଠାରେ ବା ରହିବ, କାହିଁକି ? ଏଠାରେ ଯାହାର ସମସ୍ତେ ଅଛନ୍ତି, ଯାହାର ଏଠାରେ ରହିବାର ଅଧିକାର ଅଛି, ସେ ତ ଏଠାରେ ରହିବାକୁ ଚାହାନ୍ତି ନାହିଁ ! ମୁଁ ରହିବି କାହିଁକି ?'

"ସାହେବ ହୁଁ ବୋଲି କହି ଟିକିଏ ତୁନି ହେଲେ । ତା'ପରେ ଠିଆ ହୋଇ ପଡ଼ି ମୋ ଆଡ଼କୁ ଦୁଇ ପାହୁଣ୍ଡ ଅଗ୍ରସର ହୋଇ କହିଲେ । ମୁଁ ବି ଠିଆ ହୋଇ ପଡ଼ିଲି । ସେ କହିଲେ, 'ଭାରି ଦେଖା ! ତୁମେ ନାରୀ । ମୁଁ ଭଲ କରି ଜାଣିପାରୁଛି ତୁମେ ସାଧାରଣ ନାରୀ-ଙ୍କଠାରୁ ବେଳ ଉଚ୍ଚରେ—ରୂପରେ ଓ ଗୁଣରେ । ତୁମ ଆଖିର ତେଜକୁ ଡରି ମୁଁ ମୋର ମନର ନିବେଦନ ଏ ପର୍ଯ୍ୟନ୍ତ କରିପାରିନାହିଁ । ଆଜି ନିଜ ମୋର ମନର କଥା କହିବି ବୋଲି ମୁଁ ଏଠାରେ ଦୁଇ ଘଣ୍ଟା ହେଲା ଆସି ଅପେକ୍ଷା କଲିଣି । ତୁମେ ମୋର ନିବେଦନ ଗ୍ରହଣ କର । ମୁଁ ତୁମର ଅଯୋଗ୍ୟ ହେବି ନାହିଁ । ତୁମ ପ୍ରତି କୌଣସି ଅସତ୍ ଉଦ୍ଦେଶ୍ୟ ଥିଲେ ମୁଁ ଆଜି ଯାଏଁ ତୁନି ହୋଇ ରହି ନ ଥାନ୍ତି । ମୋର ଏ ଘରର ଶ୍ରୀ ତୁମେ ଇ ଫେରାଇ ଆଣି ପାରିବ ବୋଲି ମୋର, ତୁମକୁ ଦେଖିଲି ଦିନୁଁ ଧାରଣା ହୋଇଛି ।' ଏହା କହି ସେ ମୋ ଆଡ଼କୁ ଆଗେଇ ଆସି ମୋତେ ଜାକି ପକାଇବାକୁ ବସିଲା ବେଳକୁ ମୁଁ ଦୁଇ ହାତରେ ଖୁବ୍ ଜୋରରେ ତାଙ୍କ ଛାତିକୁ ଧକ୍କାଟାଏ ଦେଲି ଓ ମୋର ହାତର ଜୋର ପିରୁଡ଼ି

ମାରିବାରେ, ଧନ୍ଦିଜନ ମୋର ଚଉକି ଉପରେ ପଡ଼ିଗଲି । ସେ ଚଳି ହୋଇ ଠେଙ୍ଗା ପରି ପଡ଼ିଗଲେ ଭୂଇଁରେ । ଯେଉଁ ସ୍ଥାନ ଟେବୁଲରେ ମଦ ଥୁଆହୋଇଥିଲି ତାହାର ଆଂଶରେ ତାଙ୍କର ମୁଣ୍ଡ ପିଟି ହୋଇଗଲା ; ଟେବୁଲ ଅଣେଇ ହୋଇ ମଦ ଓ ସୋଡ଼ା ବୋତଲ ଦୁଇଟା ତଳେ ପଡ଼ି ଭାଙ୍ଗି ଗଲା । ମୁଁ କାବା ହୋଇ, ଉଠିବାକୁ ସାହସ କରି ପାରିଲି ନାହିଁ ।

"ସେ କିନ୍ତୁ ଧଡ଼ପଡ଼ ହୋଇ ଉଠିପଡ଼ି ମୋ' ପାଖେ ଆସି ଠିଆ ହେଲେ, ତାଙ୍କ ମୁଣ୍ଡ କଟିଯାଇ ରକ୍ତ ବାହାରୁଥାଏ । ମୋର ଦୟା ହେଉଥିଲା, କ୍ଷମା ମାଗିଥାନ୍ତି । କିନ୍ତୁ ସେ ଆସି ମୋ ଆଗରେ ଠିଆ ହୋଇଯିବାରୁ ମୋତେ ଏତେ ଭୟ ହୋଇଗଲା ଯେ ମୁଁ ପାଟି ଫିଟାଇ ପାରିଲି ନାହିଁ । ସେ ମୋ ଉପରକୁ ଝୁଙ୍କି ପଡ଼ି ମୋର ଦୁଇ କାନ୍ଧରେ ହାତ ରଖି ମୋତେ କହିଲେ, 'ତୁମେ ଯେଉଁ ବ୍ୟବହାର କଲ ତାହା ଅନ୍ୟ କେହି କରିଥିଲେ ଉଠି ପାଞ୍ଚିରୁ ଯାଇଥାନ୍ତା । କିନ୍ତୁ ମୁଁ ଜାଣେ ପ୍ରାଣୀଜଗତରେ ପ୍ରଣୟର ପୂର୍ବରାଗ ଏଇପରି ସଂଘର୍ଷରେ ଆତ୍ମପ୍ରକାଶ କରେ । ତୁମେ ଯାହା କଲ ସେଥିରେ ମୋର ତୁମପ୍ରତି ଶ୍ରଦ୍ଧା ଆହୁରି ବଢ଼ିଯାଇଛି ।' ତା'ପରେ ସେ ମୋର ଖୁଆ ମୂଳ ଧରି ମୋତେ ଚଉକିରୁ ଉଠାଇ ଠିଆ କରିଦେଲେ ଓ ମୋ ମୁହଁରେ ମୁହଁ ଘଷିବାକୁ ଆରମ୍ଭ କଲେ । ମୁଁ ବାଘୁଣୀ ହୋଇ ତାଙ୍କ ଗାଲରେ ଖୁବ୍ ଜୋରରେ ଗୋଟିଏ ଚାପୁଡ଼ାଏ ପକାଇଲି । ସେ ଖୁବ୍ ଚଟିଯାଇ, 'ରାକ୍ଷସୀ' ବୋଲି ଚିତ୍କାର କରି ମୋତେ ନେଇ ସୋଫା ଉପରେ ପକାଇଦେଇ ମୋ ଉପରେ ପଡ଼ିଗଲେ । ମୁଁ ତାଙ୍କର ମୁହଁ ଓ ହାତକୁ ଦୁଇ ହାତରେ ରାମ୍ପୁଡ଼ି ପକାଇଲି ଓ ତାଙ୍କ ବାହାକୁ ଜୋରରେ କାମୁଡ଼ିଦେଲି । ସେତେବେଳକୁ ବୁଢ଼ି ରୋଷେଇଆଣୀ ଆସି ମୋ କାମରାରେ ପଶିଯାଇଥାଏ ।

"ସାହେବ ସଂଯତ ହୋଇ ଠିଆ ହେଲେ ଓ ମୋତେ ଘୋଷାରି ଘୋଷାରି ନେଇ ସେଇ କାମରାର ପାଖରେ, ଆଉ ଗୋଟେ ଛୋଟ କାମରାରେ ପକାଇଦେଲେ । ସେତେବେଳକୁ ମୋର ଶାଢ଼ୀ ଦେହରୁ ଖସିଯାଇଥାଏ । ଦେହରେ ଗୋଟେ ଥାଏ ଖାଲି ସାୟା ଓ ବ୍ଲାଉଜ୍ । ମୁଁ ନୋଟ ବଣ୍ଡାଟା ପେଟରେ ଗୋଟେ ପାତଳା ଉଢ଼ଣିଆରେ ବାନ୍ଧିଦେଇଥିଲି । ସାଇୟା ଉପରେ ତାହା ଟୁମା ହୋଇ ତାଙ୍କ ଆଖିରେ ପଡ଼ିଯିବାରୁ ସେ ଅଟ୍ଟହାସ୍ୟ କରି କହିଲେ, 'ମଲ୍ଲିମା ! ଦେଖ୍, ଦେଖ୍, ଏ ସତୀ ସାଧ୍ୱୀ ମାଇକିନିଆକୁ । ପେଟରେ ବୋଧହୁଏ ଉଠି ଗୁରିସାସର ପିଲା ରହିଲାଣି ।' ମଲ୍ଲିମା ମୋ ଆଡ଼କୁ ଗୁହିଁ କହିଲା, 'ମା'ଲୋ, ଖାନ୍‌କିର କେଡ଼େ ଗୁତର ଦେଖ ।'

"ସାହେବ ହୁକୁମ ଦେଲେ, ଏଇ ପହାନ୍ତିଆରେ ମୋତେ ଗୋଟେ ଜରୁରି କାର୍ଯ୍ୟରେ ଯିବାକୁ ହେବ । ମୁଁ ଫେରିଲେ ଏଯାକୁ ଦେଖିବି । ମୁଁ ଘରେ ତାଲା ପକାଇ ଦେଇ ଯାଉଛି । ସବୁ ଝରକା ବନ୍ଦ କରି ଦେ । ଖାଲି ଭିତରୁ ଟାଧୂଆ ଘରକୁ ବାଟ ଥାଉ । ଏ ଘରେ ଆଉ କ'ଣ ଜିନିଷ ପତ୍ର ଅଛି ସବୁ କାଢ଼ି ଆଣ । ପାଣି ଟୋପେ ବି ଦେବାକୁ ହେବ ନାହିଁ । ପାଇଖାନା ପାଇପରୁ ପାଣି ପିଇ ବଞ୍ଚୁ । ଏଯାର ସବୁ ଟାଣପଣ କେତେବେଳ ରହିବ ଦେଖିବା । ବ୍ୟଭିଚାରଣୀଟାକୁ ମୁଣ୍ଡରେ ବସାଇବାକୁ ବସିଥିଲି !'

"ବାହାରୁ ଦୁଆର କଲା ହେଲା । ମୁଁ ଚଟାଣରେ ସେମିତ ପଡ଼ିଥାଏ । ଶାଢ଼ୀଟା ପାଇଁ ଆଖି ବୁଲାଇଲି । ଏଇ ଘରର ଦୁଆର ମୁହଁରେ ତାହା ମୋ ଦେହରୁ ପୂବ ଖସିଯାଇଥିଲା ବୋଲି ଶିଥିଲି ଥାଏ । ଦୁଆର ମୁହଁକୁ ଚାହିଁଲି । ବୋଧହୁଏ ଚାକରାଣୀଟା ତାକୁ ଗୋଟାଇ ନେଇଯାଇଛି । ଇଲେକ୍‌ଟ୍ରିକ୍ ଲାଇଟ୍‌ଟା ଜଳୁଥାଏ । ଉଠି ସୁଇଚ୍ ଟିପିବାକୁ ମନ ହେଲା ନାହିଁ । ଘର ନିର୍ଜନ ହୋଇସିବାରେ ମୋ ପିଲାଦିନ କଥା ମନେ ପଡ଼ିଲା, ବାପା ମା ମନେ ପଡ଼ିଲେ, ଜେଠା ମନେ ପଡ଼ିଲେ, ସ୍ୱାମୀ ମନେ ପଡ଼ିଲା । ଆଖିରୁ ଲୁହ ବୋହିଯାଉଥାଏ । ମନର ଅବସାଦ ସାଙ୍ଗକୁ ଦେହର କ୍ଳାନ୍ତି ମିଶି ମୁଁ ନିଶ୍ଚେଷ୍ଟ ହୋଇଗଲି । ଆଖିର ଲୁହ ପୋଛିବାକୁ ବି ହାତ ଚଳିଲା ନାହିଁ । ଏଇପରି କେତେବେଳ ପଡ଼ିବା ପରେ ମୋତେ ନିଦ ହୋଇଗଲା ।

## (୧୧)

ସଂଧ୍ୟା ଲଗିବା ପୂର୍ବରୁ ଦକ୍ଷିଣକବାଟେ ଆସି ପହଞ୍ଚିଥାନ୍ତି । ଦାସେ ଦାଣ୍ଡ ଦୁଆରକୁ ବାହାରି ତାଙ୍କୁ ଦେଖି ଅନ୍ୟମାନଙ୍କୁ ଡକାଇ ଆଣିବା ସକାଶେ ଲୋକ ପଠାଉ ପଠାଉ କହିଲେ, 'ଅଜି ତ ସମସ୍ତଙ୍କ ଆଗରୁ ଆସି ପହଞ୍ଚି ଯାଇଛ ?'

ଦକ୍ଷିଣ କବାଟେ କହିଲେ, 'କଣ କି ଦାସେ ଆପଣେ ! କାଲି ରାତିଟାଯାକ ମତେ ନିଦ ହେଲା ନାହିଁ । ବିଚାରୀ ମାଇକିନିଆଁ ଟିଏ ଗୋଟାଏ ନଗୁଣ୍ଟିଆ ଘରେ ତାଲା ବନ୍ଧ ହୋଇ ରହିଲା । ସେଇଠି ଆମର ପଢ଼ାଟା ବନ୍ଦ କରଦେବା ଠିକ୍ ହେଲା ନାହିଁ । ଆପଣ ତ ଜାଣନ୍ତି, ପୁରାଣ ହେଉକା ଲାଗିଥିବା ବେଳେ ପ୍ରତିଦିନ ଗୋଟାଏ ଭଲ ଠା'ରେ ପୁରାଣ ବନ୍ଦ ରହେ । ପୁରାଣରେ ଯେ ବଡ଼ ପୁରୁଷ ବା ନାରୀ ତାଙ୍କୁ ଶରଣାର୍ଥୀ କରି ବା ବନ୍ଦୀ କରି ବା ଦୁଃଖରେ ରଖି ପଢ଼ା ବନ୍ଦ କରାଯାଏ ନାହିଁ । କାଲି ସେ କୋଠରୀରୁ ତାରା ବାହାରିବା ପର୍ଯ୍ୟନ୍ତ ପଢ଼ିଥିଲେ ଭଲ ହୋଇଥାନ୍ତା ।'

ଦାସେ ମୁରୁକ ମୁରୁକ ହସି ମୋ' ଆଡ଼କୁ ଚାହିଁ କହିଲେ, 'କି, ବାରବାବୁ ! ଦକ୍ଷିଣ-କବାଟଙ୍କୁ କୈଫିୟତ ଦିଅ ।'

ମୁଁ ତ ତାରାର ଜୀବନ କାହାଣୀ ଆଦ୍ୟପ୍ରାନ୍ତ ପଢ଼ି ସାରିଥାଏ । ଦକ୍ଷିଣକବାଟେ ଜାଣି-ନ ଥାନ୍ତି, କିନ୍ତୁ ଆମେ ସମସ୍ତେ ଜାଣିଥାଉଁ ଯେ ତାରା ଆମର ଅତି ନିକଟରେ ଅଛି ; କେବଳ ମାର୍ଜି କଷ୍ଟ ବ୍ୟତୀତ ଅନ୍ୟ କୌଣସି କଷ୍ଟ ତାହାର ଆପାତତଃ ନାହିଁ । ତେଣୁ ଦକ୍ଷିଣକବାଟଙ୍କ ଉତ୍କଣ୍ଠାର କାରଣ ଯଥାର୍ଥ ବୋଲି ବିଚାରି ମୁଁ ତାଙ୍କୁ ବୁଝାଇବାକୁ ଚେଷ୍ଟା କଲି, 'ଜାଣିଲେ ଆପଣେ ! ତାରା ବର୍ତ୍ତମାନ ପିନା ବନ୍ଦୀଶାଳାରେ ଅଛି ବୋଲି ଆପଣ ଭାବିତ ହେଉଛନ୍ତି, ସେଥିରୁ ମୁକ୍ତ ହେଲେ ସେ ସୁଖ ପାଇବ କି ଦୁଃଖ ପାଇବ, ତା' କେମିତି ଜାଣିବା ? ସ୍ତ୍ରୀ

ପରେ ଯଦି ସେ ଦୁର୍ବୃତ୍ତଙ୍କ ହାତୁଡ଼େ ପଡ଼େ ତେବେ ତ ପୁଣି ବିଚାରିବା, ବିଚାର ବନ୍ଦୀ-
ଖାନାରେ ସବୁବେଳେ ପଡ଼ିଥିଲେ ଭଲ ହୋଇଥାନ୍ତା । ସୀତାଙ୍କ କଥା ବିଚାରନ୍ତୁ । ରାମଚନ୍ଦ୍ର
ଆସି ରାବଣକୁ ମାରି ସୀତାଙ୍କୁ ଉଦ୍ଧାର କଲେ ସିନା, ସୀତାଙ୍କର ବା ରାମଙ୍କର କ'ଣ ଦୁଃଖ
ସରିଲା ? ଲଙ୍କାରେ ସୀତାଙ୍କର ଅଗ୍ନିପରୀକ୍ଷା, ତା'ପରେ ଅଯୋଧ୍ୟାରେ ରାଜରାଣୀ ହୋଇ
କିଛି ଦିନ ରହିବା ପରେ ନିର୍ବାସନ ଓ ଶେଷରେ ପାତାଳ ପ୍ରବେଶ ବନାମ୍ ଆତ୍ମହତ୍ୟା ।
ରାମଚନ୍ଦ୍ର ବଣରେ ଯେପରି ଥିଲେ ଅଯୋଧ୍ୟାରେ ତହିଁରୁ କୁ ଅଧିକା ସୁଖ ପାଇଲେ ? ବଣରେ
ସୀତାଙ୍କୁ ହରାଇଥିଲେ ସିନା, ଅଯୋଧ୍ୟାରେ ସୀତାଙ୍କୁ ହରାଇଲେ, ଲକ୍ଷ୍ମଣଙ୍କୁ ହରାଇଲେ ।
ଶେଷ ବେଳକୁ କମ୍ ମନସ୍ତାପ ହୋଇନଥିବ ? ଏସବୁ ବିଚାରିଲେ, ଅଶୋକ ବନରେ
ସୀତା ଥିବାଟା ସୁଖର କଥା ବୋଲି ମନେ ହେଉଛି । ରାବଣ ସସମ୍ମାନେ ସୀତାଙ୍କୁ ରଖିଥିଲା ଓ
ସୀତାଙ୍କୁ ପାଇବେ ବୋଲି ରାମଙ୍କର ବି ଆଶା ଥିଲା ।'

ଦକ୍ଷିଣେକବାଟେ ତନ୍ମୟ ହୋଇ ଶୁଣୁଥିଲେ । କଥା ଶେଷରେ ହୁଁ ବୋଲି ବଡ଼
ପାଟିରେ କହିଲେ । ବୋଧହୁଏ ରାମଚନ୍ଦ୍ରଙ୍କ ଜୀବନୀ ଇତର ଲୋକର ଜୀବନୀ ବର୍ଣ୍ଣନା କଲାପରି
କରିବାରୁ ତାଙ୍କୁ ସୁଖ ଲାଗିଲା ନାହିଁ । ଯାହାହେଉ, ସେତେବେଳକୁ ମହାପାତ୍ରେ, ନାୟକେ
ଓ ବାହାନୀପତିଏ ପ୍ରମୁଖ ଆସି ପହଞ୍ଚିବାରୁ ଦାସେ କହିଲେ, "ଏଥର ତାଙ୍କର ବୃତ୍ତାନ୍ତ
ପଢ଼ନ୍ତୁ ।"

ମୁଁ ଆରମ୍ଭ କଲି—

"ନିର୍ଜନ କୋଠରୀରେ ମୋ ନିଦ ଭାଙ୍ଗିଲା ବେଳକୁ ରାତି କି ଦିନ ଜାଣି ହେଉ-
ନଥାଏ । ଇଲେକ୍ଟ୍ରିକ୍ ଆଲୁଅର ଉଗ୍ର ତେଜ ଆଖିକୁ କାଟିବାରୁ ଉଠି ତାକୁ ଲିଭାଇଦେଲି ।
ଘରଆଡ଼ ଅନ୍ଧାର ହୋଇଥିବାରୁ ଜଣାପଡ଼ିଲା ରାତି ସରି ନାହିଁ । ସେଇ ଅନ୍ଧାରରେ ଗାଧୁଆ
ଘରକୁ ଯାଇ ଧୂଆଧୋଇ ହେଲି । ସେ ଘରର ଲାଇଟ୍ ସୁଇଚ୍ କେଉଁଠି, ଅନ୍ଧାରରେ ଜଣା-
ପଡ଼ୁନଥାଏ । ମୋର ବି ଆଲୁଅ ଦରକାର ନଥାଏ । ମୋର ଅର୍ଦ୍ଧ ଉଲଗ୍ନ ଦେହକୁ ନିଜେ
ଦେଖିବାକୁ ମଧ୍ୟ ଲାଜ ମାଡ଼ୁଥାଏ ।

"ଅଣ୍ଟାର ନୋଟ ବିଡ଼ାଟା ଫିଟାଇ ପାଇଖାନାରେ ଗଳାଇ ଧକାଇବାକୁ ମନ
ହେଲା । ଏହାରି ଯୋଗୁଁ ସାହେବ ମୋର କେତେ କଳଙ୍କ ପ୍ରଚାର କରିନଦେଲେ ? ପୁଣି
ବିଚାରିଲି ଭଲ ହୋଇଛି । ହୁଏତ ଏଇ କଳଙ୍କ ଯୋଗୁ ସେ ମୋତେ ଛୁଇଁବାକୁ ଘୃଣା କରୁ-
ପାରନ୍ତି । ତାଙ୍କ ସ୍ନେହରେ ଯେଉଁ ବିପଦର ମୁହଁରେ ପଡ଼ିଥିଲି, ତାଙ୍କ ଘୃଣାରେ ଯଦି ସେଥିରୁ
ରକ୍ଷା ମିଳେ ତେବେ ଯଥାଲାଭ ।

"ଏ ଟଙ୍କାର ବା ଦୋଷ କ'ଣ ? ପାଖରେ ଥିଲା ବୋଲି ସିନା ଜେଜେଙ୍କ ପାଇଁ
ଶହେ ଟଙ୍କା ଖର୍ଚ୍ଚ କଲି । ଭଉଣୀ ଯଦି ପାଗଳା ଗାରଦରୁ ଫେରନ୍ତି ତେବେ ତ ଟଙ୍କା ଦରକାର
ହୋଇପାରେ । ମୁଁ ଯଦି ଏଠାରୁ ମୁକ୍ତି ପାଏ, ତେବେ ପାଖରେ ଟଙ୍କା ଥିଲେ ହୁଏତ ଅଧିକ
ନିରାପଦ ରହିପାରିବି । ସେତେବେଳେ ଜାଣିପାରିନଥିଲି ଯେ, ଅସହାୟା ସ୍ତ୍ରୀ ପାଖରେ
ଯାହା କିଛି ସବୁ ବିପଦର କାରଣ—ରୂପ, ଯୌବନ, ଅଳଙ୍କାର, ଟଙ୍କା ପଇସା ସବୁ । ଯାହା

ହେଲ ନୋଟଗୁଡାକ ସକାଡ଼ ଅଣ୍ଟାରେ କନା ପଟିଟା ଟାଣି କରି ଗୁଡ଼ାଇଦେଲି । ପେଟରେ ବୁଜୁଲା ହୋଇ ଯାହା ବାହାରେ ପଡ଼ିଥିଲା, ତାହା ଶଯ୍ୟାତଳେ ଲୁଚିଗଲା । ସେମିଜକୁ ଗ୍ରୁଣ୍ଡି ଉପରେ ଟିକିଏ ହୁଗୁଲା କରି ସଜାଡ଼ିଦେଲି । ମୋତେ ଦେଖି ଅଲଜୁକ ବୋଲି କହିବାକୁ କେହି ନ ଥିଲେ ବି ନିଜ ଦେହକୁ ନିଜେ ଯଥାସମ୍ଭବ ସଜାଡ଼ି ଦେଇ ପୁଣି ଆସି ସେଇ କୋଠରୀଟିରେ ବସିଲି ।

“ବସୁ ବସୁ କେତେ କଥା ମନେ ପଡ଼ିଲା । ବାପା ମା’ଙ୍କୁ ମନେ ପକାଇ ମନରେ ଯେଉଁ କ୍ଷୋଭ ଆସିଲା ସେଥିରେ ପ୍ରତି ଛୋଟ ଛୋଟ କଥା ପାଇଁ ମଧ୍ୟ ଲୁହ ଗଡ଼ୁଥାଏ । ଅତୀତ କଥା ସ୍ମରଣ କରିବା ଫଳରେ ବର୍ତ୍ତମାନ ଯେଉଁ ବିପଦରେ ପଡ଼ିଛି ତାହା ବେଶି ବାଧୁଥାଏ ।

“ଏଇମିତି କେତେବେଳ ଗଲା କେଜାଣି ? ଶେଷରେ ପୁଣି ଗାଧୁଆ ଘରକୁ ଯାଇ ଧୁଆଧୋଇ ହୋଇ ଆସି ବସିଛି, କୋଠରୀର ଏକମାତ୍ର ଜଳାବାଟେ ଚାକରାଣୀ ବୁଢ଼ୀର ଆବାଜ ଆସିଲା, ‘ଅଲୋ ଟୋକୀ, ଆଉ ବସି ସକେଇଲେ କ’ଣ ଫଳ ପାଇବୁ ? ନାଗ ସାପ ଲାଙ୍ଗୁଡ଼ରେ ତ ହାତ ମାରିଛୁ, ବହିନରୁ ବର୍ତ୍ତିବୁ କେମିତି ? ନେ, ଦାନ୍ତକାଠି ଖଣ୍ଡେ ନେ । ଏଇବାଟେ ଚା ଟିକିଏ ବଢ଼ାଇଦେବି ପିଇବୁ ।’ ମୋର ଦାନ୍ତ ଘଷିବା ପ୍ରୟୋଜନ ନ ଥାଏ, ଚା’ ଖାଇବାକୁ ବି ମନ ନ ଥାଏ । କିନ୍ତୁ ଚାକରାଣୀଟିର କଥା ଶୁଣିବାକୁ ମନ ହେଉଥାଏ । ସେ ନିଷ୍ଠୁର ଭାଷାରେ ଯାହା କହିଲା, ସେଥିରେ ସ୍ନେହବୋଳା ହେଲା ପରି ମୋତେ ଲାଗୁଥାଏ । ସତେ ମୋତେ କିଏ ଠେଲିଲା ପରି ମୁଁ ଜଳା ପାଖକୁ ଗଲି ଓ ଦାନ୍ତକାଠି ଆଣିଲା ବେଳେ ଆରପଟକୁ ଟିକିଏ ଚାହିଁଲି, କେଜାଣି ବୁଢ଼ୀ ମୁହଁ ଦିଶିବ ବୋଲି । ମୋତେ ଏ କୋଠରୀଟା ବଡ଼ ନିଗୁଟିଆ ଲାଗୁଥାଏ ।

“ଟିକିଏ ପରେ ପୁଣି ଜଳାମୁହଁରୁ ଶବ୍ଦ ଆସିଲା, ‘ଆଲୋ, ଦାନ୍ତ ଘଷିଲୁ ? ସାହେବ କାହିଁକି ଡାକୁଛନ୍ତି, ମୁଁ ଯାଉଛି । ଆସିଲେ ତୋତେ ଚା’ ଦେବି । ଆଜି ସକାଳୁ ବାପ୍ପା ହାଣ୍ଡଙ୍କ ମନ କ’ଣ ହୋଇଚି କେଜାଣି ?’ ସାହେବଙ୍କ ମନ ମୋ ପ୍ରତି କଠୋର କି କୋମଳ ହୋଇଛି ସେଥିକୁ ମୋର ଖାତିର ନଥାଏ । ଖାଲି ବୁଢ଼ୀ ତୁଣ୍ଡରୁ କଥା ଶୁଣିବାର ଆଗ୍ରହରେ ମୁଁ ଏ ସବୁ ଶୁଣିଲି ଓ ବୁଢ଼ୀ କଥା ମାନି ଦାନ୍ତ ଘଷିବାକୁ ଗାଧୁଆ ଘରକୁ ଗଲି ।

“ଅଧଘଣ୍ଟାକ ପରେ ବୁଢ଼ୀ ଆସି ସେଇ ଜଳାବାଟେ ମୁନ୍ଦାଏ ଚା ଓ ଦି’ଖଣ୍ଡ ପାଉଁରୁଟି ବଢ଼ାଇଦେଲା । ମୁଁ ତାକୁ ଆଣି ଏପଟେ ତଳେ ଥୋଇଦେବାର ଅନୁମାନ କରି ସେ କହିଲା, ‘ବୃଥାରେ ଦେହକୁ କଷ୍ଟ ଦେ’ନା । ମୋ ରାଣ, ଖାଇଦେ ଖାଇଦେ । କେତେଦିନ ଏମିତି ଏଠେଇ ପକେଇ ରଖିବ କେଜାଣି ? କେଡ଼େ ସାହସ କରି ମାଗିଲି ଏ କୋଠରୀର ଚାବିଟା ମୋ ହାତରେ ଦେବାକୁ । ମୋତେ ରଟମଟ କରି ଚାହିଁ ଚାଲିଗଲା । ତୁ ଆଗ ଖାଇବୁଟି, ତତେ ଗୋଟେ କଥା ନ ପଚାରିଲେ ମୋ ଆତ୍ମା ଶୀତଳ ହେବନାହିଁ । କାଲି ରାତିଟାଯାକ ତୋ ପାଇଁ ମୋତେ ନିଦ ହୋଇନାହିଁ । ଆଗ ଖାଇଦେ’ ।

"ତା କଥାରେ ମୁଁ ବାଧ ହୋଇ ଖାଇଲି । ଖାଇଲୁ କ ନାହିଁ ବୋଲି ବାରମ୍ବାର ପଗ୍ଭରୁଥାଏ । ମୁଁ ଖାଇସାରି ମୁହଁ ହାତ ଧୋଇବାର ଜାଣି ସେ ମୋତେ ଜଳାମୁହଁକୁ ଡାକି ପଗ୍ଭରିଲା, 'ଆଲୋ ଏ ପୋଡାମୁହିଁ ! ତତେ ଗୋଟେ କଥା ପଗ୍ଭରିବି ଯେ ତୁ ସତ କହିବୁଟି ? ତତେ ମୋ ରାଣ, ସତ କଥା ମୋତେ କହ । ମୁଁ ତୋର ଇଷ୍ଟ କରିପାରିବି ନାହିଁ କି ଅନିଷ୍ଟ କରିପାରିବି ନାହିଁ, ଖାଲି ମନରେ ଗୋଟାଏ ଓଶମାନ ରହିଯାଉଛି, ଟିକିଏ ଶୁଣିଲେ ଅସ୍ତ ହୁଅନ୍ତି' ।

"ମୁଁ ତା' କଥାରେ କିଛି ଉତ୍ତର ନ ଦେବାରୁ ସେ ପୁଣି କହି ଗ୍ଭଲିଲା, 'ଆଲୋ ଏ ହାନକପାଳୀ, ପାଟିରୁ କଥା ଯଦେ ନ ବାହାରୁଛି କାହିଁ ? ମୁଁ ଯାହା ପଗ୍ଭରିବି ସତ ସତ କହିବୁ ଟି ?'

"ତା'ର ପୋଡାମୁହିଁ, ହାନକପାଳୀ ସମ୍ବୋଧନ ଶୁଣି ରାଗ ଲଗିବା ଠାରୁ ବରଂ ମୋତେ ସୁଖ ଲାଗୁଥାଏ । ସେ ବହୁତ ଲଗାଇବାରୁ ମୁଁ ହଁ ବୋଲି ଉତ୍ତର ଦେଲି । ସେ କହିଲା, 'ଆଲୋ, ମୋର ଏ ପୋଡ଼ା ମାଇକିନିଆଁ ଜନମ ଆଜିକୁ ସତୁରି ବର୍ଷ ହେଲାଣି । କେତେ ଲୋକଙ୍କୁ ଦେଖିଛି, ଭଲ ଦେଖିଛି, ମନ୍ଦ ଦେଖିଛି । ଆଜିଯାଏଁ ମୁଁ ବଡ଼େଇ କରୁଥିଲି ଯେ, ମୁଁ ଯାହା ବାରେ ସେଥିରେ ଉଁ ଚୁ କରିବାକୁ କେହି ସମର୍ଥ ହୁଅନ୍ତି ନାହିଁ । ତୋ ଆଖି ଯୋଡ଼ିକ ଦେଖି ମୁଁ ବାରିଥିଲି ତୋ ଠେଇ ମରଦ ହାତ ବାଜିନାହିଁ । କାଲି ସାଇବ ଏଡ଼େ ବଡ଼ କଥା କହିଦେବାରୁ ମୋତେ ମେଘରୁ ପଡ଼ିଲା ପରି ଲଗିଲା । ଭାବଯାକ ଭାବି ଭାବି ଗୋଟାଏ କଥା ଠଉରେଇଚି, କହିଲୁ ଭଲା, ତୋ'ର କ'ଣ ମାସ ଗଡ଼ଯାଇଚି ? ମୁଁ ତୋ'ର ଆଇ ପରି, ମୋତେ ବିଶ୍ୱାସ କରି ସବୁକଥା କହ ।'

"ମୁଁ ଉତ୍ତେଜିତ ହୋଇ କହିଦେଲି, 'ଏସବୁ ମିଛ କଥା ।' ସେ ସାଙ୍ଗେ ସାଙ୍ଗେ ଉତ୍ତର ଦେଲା, 'ତୋ କଥା ମୋତେ ସତ ପରି ଲାଗୁଛି । ମୁଁ ଯାହା ବିଗ୍ଭରିଚି ସେ କଥା ତେବେ ସତ । ହଉ ମୋ ମୁଣ୍ଡରୁ ଗୋଟେ ବୋଝ ଓହ୍ଲେଇଗଲା । ଆଉ ହେଇଟି ଝିଅ ! ସାଇବ ଆସିଲେ ଆଉ ତାଙ୍କ ସଙ୍ଗେ ମାଡ଼ଗୋଳ କରିବୁନାହିଁ । ସେ ବଡ଼ ଲୋକ । ଆମେ କର୍ମ ଆଦରି ରହିଲେ ସିନା ହେବ । ହଉ, ତୁ ଯା ଟିକିଏ ଶୋଇପଡ଼ । ତୋ' ଶାଢ଼ୀଟା ମୁଁ ଦୁଆର ମୁହଁରୁ ଗୋଟେଇ କରି ଥୋଇଛି, ହେଇଟି ଏ କଣାବାଟେ ଗଲେଇଦେଉଚି, ନେ ।'

ଶାଢ଼ୀଟି ପାଇ ମୁଁ ସାଙ୍ଗେ ସାଙ୍ଗେ ପିନ୍ଧି ପକାଇବାରୁ ମୋତେ ବଡ଼ ଆରାମ ଲାଗିଲା । ବୁଢ଼ୀର କଥା ଶୁଣି ଟିକିଏ ସୁଖ ଲାଗୁଥାଏ, ଯଦିଓ ସାଇବଙ୍କ ପ୍ରତି ସଦଭାବ ଦେଖାଇବାକୁ ସେ ଯାହା କହିଲା ସେ କଥା ମୋ ମନକୁ ଆଦୌ ପାଉ ନ ଥାଏ । ମୁଁ ମନେ ମନେ ଠିକ କରିଥାଏ, ଏଥର ଯଦି ସେ ମୋ ସାଙ୍ଗେ ଲାଗିବେ, ତେବେ ମରିବି ପଛେ ତାଙ୍କୁ ପ୍ରଶ୍ରୟ ଦେବି ନାହିଁ । ଜେଠାଙ୍କ ଯୋଗୁଁ ଭିଖାଙ୍କ ଯୋଗୁଁ ଓ ମେମ୍ ସାହେବଙ୍କ ଯୋଗୁଁ ମୋର ତାଙ୍କ ପ୍ରତି ଘୃଣା ପୂରି ରହିଥାଏ । ବେଳେବେଳେ ମେମ୍ ସାହେବଙ୍କ ପାଇଁ ସାହେବଙ୍କ ପ୍ରତି ମୋ ମନରେ ଟିକିଏ ଦରଦ ଜାତ ହେଉଥାଏ । ତାଙ୍କ ମନ ଘର ଧରନ୍ତା କି ? ଯୌବନ

ପାର ହୋଇଗଲେ ବି, ସେ ଯାହା ନୂଆ ନୂଆ ମାଇକିନିଆ ଖୋଜିବାରେ ଲଗିଛନ୍ତି ତାହା ଛାଡ଼ନ୍ତେ କି ? ମେମ୍ ସାହେବଙ୍କ ମୁହଁରେ ହସ ଉକୁଟିନ୍ତା । ତାଙ୍କର ମୁହଁରେ ହସ ଦେଖିଲେ ମୁଁ ଖୁସୀ ମନରେ ଏ ଘରୁ ବିଦା ହୋଇଯାନ୍ତି । ଏମିତି କେତେ କଥା ବିଚାରି ବିଚାରି ମୁଁ ଶୋଇପଡ଼ିଲି । ଦେହରେ ଶାଢ଼ୀଟି ଘୁଡ଼ାଇ ହେବାରୁ ମୋତେ ନିଘୋଡ଼ ନିଦ ହୋଇଗଲା ।

"ନିଦରେ ସ୍ୱପ୍ନ ଦେଖିଲି : ମେମ୍ ସାହେବ ଭଗୀଙ୍କ ସଙ୍ଗରେ ଧରି ମୋ କୋଠରୀ ଭିତରକୁ ଆସି ମୋତେ ଚାହିଁଛନ୍ତି । ମୋ ଦେହରେ ସାଇଆ ଖଣ୍ଡ ଓ ବ୍ଲାଉଜଟି ବ୍ୟତୀତ ଆଉ କିଛି ନାହିଁ । ମୁଁ ତାଙ୍କୁ ବାଲ୍ ବାଲ୍ ହୋଇ ଚାହୁଁଛି, କିନ୍ତୁ ଚିହ୍ନି ପାରୁନାହିଁ । ଭଗୀ କହୁଛନ୍ତି, 'ତାରା, ମୋତେ ଚିହ୍ନି ପାରୁନାହିଁ ?' ମେମ୍ ସାହେବ କହୁଛନ୍ତି, 'ମୋତେ ବି ଚିହ୍ନି ପାରୁନାହିଁ ?' ତା'ପରେ ଦୁହେଁ କଥାବାର୍ତ୍ତା ହେଉଛନ୍ତି, 'ବିଚାରୀ ବାୟାଣୀ ହୋଇ ଗଲା ।' ଭଗୀ କହୁଛନ୍ତି ଏତେ ଦୁଃଖରେ ବାୟାଣୀ ନ ହୋଇ ଆଉ ମଣିଷ କ'ଣ ହେବ କହିଲ ! ମୁଁ ଚାହୁଁଛି ବାୟାଣୀ ହେଲେ ଭଲ । ଦୁଃଖ ଦୁଃଖପଣ ଜଣାପଡ଼ିବ ନାହିଁ । ଫାଙ୍କା ମନରେ ମଣିଷ ପିଲାପରି ଚଳିବ ।' ସାହେବାଣୀ କହୁଥାନ୍ତି, 'ସତେ ମ ଭଗୀ ! ଭାଗ୍ୟରେ ଥିଲେ ମଣିଷ ବାୟାଣୀ ହୁଏ । ମୁଁ ତ ଚାହୁଁଛି ବାୟାଣୀ ହୋଇଗଲେ ମୁଁ ରକ୍ଷା ପାଇଯାନ୍ତି । ନହେଲେ ପ୍ରାଣ ହେଲେ ଚାଲିଯାନ୍ତା । ବାୟାଣୀ ହେବାଠାରୁ ସେ ଆହୁରି ନିଶ୍ଚିନ୍ତିଆ କଥା ।'

'ଛି ମା' ଏମିତି କହନ୍ତି ?' ବୋଲି ରୋଷେଇଆଣୀ ବୁଢ଼ୀ କୁଆଡ଼ୁ ଆସି ପହଞ୍ଚି ପାଟିକଲା । 'ଯାହାର ଯେତିକି ଦିନ ଷଠୀଦୁସୀ ଆୟୁଷ ଦିଅନ୍ତି ସିଏ ସେତିକିରେ ଯାଏ । ଆମେ କାନ୍ଦିଲେ ବୋବେଇଲେ ବିଧିର ବିଧାନ କିଏ ଆନ କରିବ କହିଲ ?' ବୁଢ଼ୀର ପାଟି ଶୁଣି ଚମକିକି ମୋ ନିଦ ଭାଙ୍ଗିଗଲା ।

"ମୁଁ ଆଖି ମେଲେଇ ଦେଖିଲି ମେମ୍ ସାହେବ ମୋ ପାଖରେ ଠିଆ ହୋଇଛନ୍ତି, ବୁଢ଼ୀ ତାଙ୍କ ପଛରେ ଲସରପସର ହେଉଚି । ମେମ୍ ସାହେବଙ୍କ ଆଖି ରଙ୍ଗ ଦିଶୁଥାଏ । ତାଙ୍କ ମୁହଁରେ ଦୁଃଖ ବୋଲି ହେଲା ପରି ଦିଶୁଥାଏ । ସେ କିଛି ନ କହି ଖାଲି ଏଣେତେଣେ ଅନାଇ କରି ଚାହୁଁଥାନ୍ତି । ବୁଢ଼ୀ ମଝିରେ ମଝିରେ ପାଟି କରୁଥାଏ । ଓଃ ! ଏପରି ମଣିଷର କପାଳେ ପୁଣି ଏୟା ଲେଖାଥିଲା ? ମହାପୁରୁ ଆମର ଗତି କଣ ହେବ ? ତାଙ୍କରି ଯୋଗୁଁ ସିନା ମୁଁ ଏଠେଇ ଠା ପାଇଥିଲି, ଏବେ ଯିବି କୁଆଡ଼େ ? ଏମିତି ବାହୁନି ହୋଇ ସେ ମୋ ଦିହକୁ ଲାଗିଯାଇ ମୋ ଅଣ୍ଟାଠାରୁ ବେକ ପର୍ଯ୍ୟନ୍ତ ଚାରିଆଡ଼େ ହାତ ବୁଲେଇଗଲା । ମୋ ଅଣ୍ଟାରେ ବନ୍ଧା ହୋଇଥିବା କନାରେ ହାତ ବୁଲାଇ ନୋଟ ପୁଟୁଳାଟାକୁ ଆଉଁସି ପକାଇ ପାଟି କରି କହିଲା କାଲି ରାତିରେ ପରା ମୁଁ ଏଇଆ ଅନୁମାନ କରିଥିଲି । ଏତେ କାଳ ବଞ୍ଚିଲଣି ମୁଁ ମଣିଷ ଚିହ୍ନି ପାରିବି ନାହିଁ ?' ବୁଢ଼ୀର ବଚନ କାରବାରରେ ମୁଁ ବିରକ୍ତ ହେଲେ ବି କଥାଟା କ'ଣ ଜାଣିବା ଉତ୍କଣ୍ଠାରେ ତାକୁଇ ପଚାରିଲି, ଏମିତି ବାଇଆଣୀ ପରି କାହିଁକି ହେଉଚ । କଥା କଣ ? ସେ ମୋ କଥା ନ ଶୁଣିଲା ପରି କହି ଲଗିଲା, ଆହା ବିଚରା ଏତିକି ହେଲେ ଜାଣି କରି ଯାଇଥାନ୍ତେ...... ।'

"ବୁଢ଼ୀ ଆଡ଼କୁ ବାଲ୍ ବାଲ୍ କରି ଚାହିଁ ମେମ୍ ସାହେବ ମୋ ଆଡ଼କୁ ଲାଗି ଆସିଲେ ଓ ମୋ ହାତ ଧରି କହିଲେ 'ଆସ ମୋ କାମରାକୁ ଯିବା ।' ବୁଢ଼ୀକୁ ନ ଡାକଥିଲେ ବି ସେ ଏକୁଟିଆ ରହି ନ ପାରି ଆମରି ପଛେ ପଛେ ଆସିଲା । ମେମ୍ ସାହେବଙ୍କ କାମେରାରେ ଆମେ ଯାଇ ବସିଛୁ କି ନାହିଁ ସାହେବଙ୍କ ଅର୍ଡରଲି ପିଅନ ଆସି ମେମ୍ ସାହେବଙ୍କୁ ସଲାମ କରି କହିଲା, ହଜୁର, ଟେଲିଫୋନ୍ ଆସିଛୁ । ମେମ୍ ସାହେବ ଚପରାସି ସଙ୍ଗେ ଚାଲିଗଲେ । ବୁଢ଼ୀ ମୋ ମୁହଁକୁ ଖାଲି ଚାହୁଁଥାଏ, ମୁହଁରୁ ଆଖି ନେଇ ଉପରକୁ ଚାହୁଁଥାଏ । ଏଇପରି ଦି' ଚାରିଥର କରି ସେ ବାହୁନି ବସିଲା, 'ଧର୍ମ ନାହିଁ ବୋଲି ଯେ ମନେ କରୁଛନ୍ତି, ତାଙ୍କରି ଏଇ ଦଶା ନ ହେବ ତ ଆଉ କାହାର ହେବ ? ନିର୍ଦ୍ଦୋଷୀ ପିଲାଟି ଦେହରେ ହାତ ଲଗେଇଲା ସାଙ୍ଗେ ସାଙ୍ଗେ ଫଳ ଫଳିଲା । ମୁଁ ସବୁ କଥା ସାନ ସାଇବାଣୀକୁ କହିଦେଇଛୁ ଲୋ ମା ।' ମୁଁ ଏଥିରୁ କିଛି ବୁଝି ପାରୁ ନ ଥାଏ । କିଛି ପଚାରିବାକୁ ବି ମନ ହେଉ ନ ଥାଏ । ବୁଢ଼ୀ ମୁହଁକୁ ଖାଲି ଚାହିଁ ରହିଥାଏ ମାତ୍ର ।

"ସାଇବଙ୍କ ଅଫିସ ସାହାଲାରୁ ଆସି ମେମ୍ ସାହେବ ମୋ ପାଖକୁ ଲାଗି କରି ବସିଲେ । ତାଙ୍କ ଆଖିରୁ ପୁଣି ଲୁହ ଗଡ଼ିବାକୁ ଲାଗିଲା । ସେ ମୋ ହାତକୁ ଟାଣି ନେଇ ତାଙ୍କ ହାତରୁ ଗୋଟି ଗୋଟି କରି ସୁନା କାଚ ମୋ ହାତରେ ଭରିଦେଲେ । ଦୁଇ ହାତରୁ ଲୁହା କାଚ ଦି'ପଟି କାଢ଼ି ସୋଫା ତଳକୁ ପକାଇଦେଲେ । ମୁଁ ପଚାରିଲା ପରି ତାଙ୍କ ମୁହଁକୁ ଚାହିଁଲି । ତାଙ୍କ ମୁହଁରେ ବିଷାଦ ଦେଖାଦେଲା । ସେ ବୁଢ଼ୀ ଆଡ଼କୁ ବିରକ୍ତ ହେଲା ପରି ଚାହିଁ ମନକୁ ମନ ଗୁଣୁଗୁଣୁ କରି କହିଲେ, 'ସବୁକଥା ମତେ ଇ ବଖାଣିବାକୁ ପଡ଼ିବ' । ମୁଁ ଆଉ କିଛି ଜାଣିବାକୁ ନ ଚାହିଁ ତଳକୁ ମୁହଁ ପୋତିଲି । ବୁଢ଼ୀ ଆମ ପାଇଁ କିଣି ଖାଇବାକୁ ବରାଦ କରିବା ସକାଶେ ଗଲା । ସେତେବେଳକୁ ଦିନ ଦୁଇଟା ହୋଇଥାଏ ।

"ମେମ୍ ସାହେବଙ୍କ ପାଖରେ ମୁଁ ସେଇ ସୋଫାରେ ରାତି ଏଗାରଟା ଯାଏଁ ବସିଲି । ତା' ପରେ ଶୋଇବା ପାଇଁ ତାଙ୍କୁ ସମସ୍ତ ସୋଫାଟା ଛାଡ଼ି ଦେଇ ମୁଁ ସୋଫାତଳକୁ କାର୍ପେଟ ଉପରେ ଶୋଇଲି । ମଝିରେ ମଝିରେ ତାଙ୍କ ମୁହଁରୁ ଖାପଛଡ଼ା ହୋଇ ଯେଉଁ ପଦେ ଦି'ପଦ କଥା ବାହାରୁଥାଏ ତାକୁ ଯୋଡ଼ା ଯୋଡ଼ି କରି ମୁଁ ବୁଝିଲି, କାଲି ସକାଳ ସାତଟା ବେଳେ ପ୍ରଧାନମନ୍ତ୍ରୀଙ୍କଠାରୁ ଡକରା ପାଇ ସାହେବ୍ ଯାଇଥିଲେ । ମୁସଲମାନଙ୍କ ବଡ଼ ମସ୍‌ଜିଦ ଜୁମା ମସ୍‌ଜିଦ୍‌ରେ ବହୁତ ହିନ୍ଦୁ ଆଶ୍ରୟ ନେଇଥାନ୍ତି । ପ୍ରଧାନମନ୍ତ୍ରୀ ଆଦେଶ ଦେଲେ, ଯେ କୌଣସି ଉପାୟରେ ହିନ୍ଦୁମାନଙ୍କୁ ଜୁମା ମସ୍‌ଜିଦ ହତା ଭିତରୁ ନିକାଲି ଦେବାକୁ ପଡ଼ିବ । ମୁସଲମାନ ନେତାମାନେ ପ୍ରଧାନମନ୍ତ୍ରୀଙ୍କ ପାଖେ ଆପତ୍ତି କରିଥାନ୍ତି ଯେ, ବିଧର୍ମୀ ଲୋକେ ମସ୍‌ଜିଦ୍‌ରେ ରହି-ବାରୁ ତାହା ଅପବିତ୍ର ହେଉଛି । ମସ୍‌ଜିଦ୍‌ରେ ହିନ୍ଦୁଙ୍କ ସଙ୍ଗେ ଅନେକ ଶିଖ ବି ଥାନ୍ତି । ତାଙ୍କ ଭୟରେ ମୁସଲମାନମାନେ ପ୍ରାର୍ଥନା କରିବାକୁ ମସ୍‌ଜିଦ୍ ଭିତରେ ପଶି ପାରୁନଥାନ୍ତି। ଶିଖ୍‌ମାନେ ଜିଦ୍ କରୁଥାନ୍ତି, ପାକିସ୍ଥାନରେ ସେମାନେ ମୁସଲମାନଙ୍କ ଯୋଗୁଁ ଯେଉଁ ଘର ଦ୍ୱାର ଛାଡ଼ି ଆସିଛନ୍ତି ତାରି ବଦଳରେ ଏଇ ଜୁମାମସ୍‌ଜିଦ୍‌ଟା ନେଇ ଏଥିରେ ବାସ କରିବେ । ସ୍ଥାପରେ ଆଗ୍ରାରେ ତାଜ୍‌ମହଲଟା ମଧ୍ୟ ନେବେ । ପାକିସ୍ଥାନରେ ହିନ୍ଦୁ ଓ ଶିଖ୍‌ମାନେ ଯଦି ରହି ନ ପାରିବେ, ତେବେ ଭାରତବର୍ଷରୁ ମୁସଲମାନଙ୍କୁ ନିକାଲିବାକୁ ହେବ ବା ବନସୋତ ନିକାସ

କରିଦେବାକୁ ପଡ଼ିବ । ପାକିସ୍ଥାନର ଶାସକମାନେ ମୁସଲମାନଙ୍କ ଧର୍ମାନ୍ଧତାକୁ ପ୍ରଶ୍ରୟ ଦେଉଥାନ୍ତି; କିନ୍ତୁ ଆମର ଶାସକମାନେ ପାରୁପର୍ଯ୍ୟନ୍ତ ଚେଷ୍ଟା କରୁଥାନ୍ତି, ହିନ୍ଦୁ ଓ ଶିଖ୍‌ମାନଙ୍କୁ ରୋକି ମୁସଲମାନଙ୍କ ପ୍ରତି ଉଦାରତା ଦେଖାଇବାକୁ । ହିନ୍ଦୁ ଓ ଶିଖ୍ ସରକାରୀ ଚାକିରିଆମାନଙ୍କର କିନ୍ତୁ ଭିତରେ ମତଲବ ଥାଏ, ଭାରତରୁ ମୁସଲମାନ ଲୋପ ହୁଅନ୍ତୁ ; ଅନ୍ତତଃ ଦିଲ୍ଲୀରେ ସେମାନଙ୍କର ଚିହ୍ନ ବର୍ତ୍ତି ନ ରହୁ । ସେମାନେ ତେଣୁ ହିନ୍ଦୁଙ୍କୁ ଆକଟ କରୁନଥାନ୍ତି ; ହିନ୍ଦୁଙ୍କୁ ଦବାଇବା ଆଳରେ ଯାଇ ସେମାନଙ୍କୁ ତେଜି ଦେଉଥାନ୍ତି । ଫଳରେ ଦିଲ୍ଲୀରେ ହଜାର ହଜାର ମୁସଲମାନ ହାଣ ଖାଉଥାନ୍ତି । ଏକଥା ପ୍ରଧାନମନ୍ତ୍ରୀଙ୍କୁ ଜଣାଥାଏ । ସେ ଆଉ ମଧ୍ୟ ସନ୍ଦେହ କରୁଥାନ୍ତି ଯେ, ତାଙ୍କର ଜଣେ ପ୍ରଧାନ ସହଯୋଗୀ ମନ୍ତ୍ରୀଦପ୍ତରରୁ ଗୁପ୍ତ ନିର୍ଦ୍ଦେଶ ହିନ୍ଦୁ ଓ ଶିଖ୍ ଅଫିସରଙ୍କୁ ଦେଇ ମୁସଲମାନଙ୍କ ବିରୁଦ୍ଧରେ ଲଗାଇଥାନ୍ତି । ପ୍ରଧାନମନ୍ତ୍ରୀ ଏଥି ଯୋଗୁଁ ଖୁବ୍ ଉଦ୍‌ବିଗ୍ନ ଥିଲେ । 'ତୁମେମାନେ କାମରେ ଖିଲାପ କରୁଛ' ବୋଲି ଆମ ସାହେବଙ୍କୁ ସେ ଦୁଇଥର ଦିନ ତଳେ ଭର୍ତ୍ସନା କରିଥିଲେ । ତେଣୁ ଆଜି ନିଜେ ବଡ଼ ସାହେବ ପୁଲିସ ଓ ସୈନ୍ୟ ବଳ ଧରି ଜୁମା ମସ୍‌ଜିଦ୍ ଉପରେ ଚଢ଼ାଉ କରିବାକୁ ସକାଳୁ ସକାଳୁ ଯାଇଥିଲେ । ସେ ପ୍ରଥମେ ଯାଇ ଜୁମା ମସ୍‌ଜିଦ୍‌ର ଅଗଣାରେ ହିନ୍ଦୁ ଓ ଶିଖ୍ ବାସୁହରାମାନଙ୍କୁ ଏକାଠି କରି ବହୁତ ବୁଝାଇଲେ । ସେମାନଙ୍କ ପକ୍ଷରୁ ଦାବି ହେଲା, ଆମ ପାଇଁ ଅନ୍ୟ ବାସସ୍ଥାନ ଠିକଣା କଲା ପରେ ଯାଇ ଆମେ ଏ ସ୍ଥାନ ଛାଡ଼ିବୁଁ । ସାହେବ ଚଟିଯାଇ କହିଲେ, 'ତୁମେମାନେ ମଇଦାନର ମାଟିରେ ରହିପାର, କିନ୍ତୁ ଏଠାରେ ରହିବାକୁ ଦେବି ନାହିଁ । ପାଞ୍ଚ ମିନିଟ୍ ଭିତରେ ତୁମେମାନେ ଏ ମସ୍‌ଜିଦ୍ ନ ଛାଡ଼ିଲେ ମୁଁ ବଳ ପ୍ରୟୋଗ କରି ନିକାଲି ଦେବି' । ଏତିକବେଳେ ଜଣେ ଶିଖ୍ ଟୋକା ଠିଆ ହୋଇ ପଡ଼ି 'ଓଃ, ତୁ ବି ନିକାଲି ଦେବୁ ? ମୁସଲମାନ୍‌କା ବଚ୍ଚା !' କହି ତାଙ୍କ ସାମନାକୁ ଆସି ଗୁଳି ଫୁଟାଇ ଦେଲା । ତତ୍‌କ୍ଷଣାତ୍ ସାହେବଙ୍କର ପ୍ରାଣବାୟୁ ଉଡ଼ିଗଲା । ତା'ପରେ ପୁଲିସ୍ ଓ ସୈନ୍ୟମାନେ ଧୈର୍ଯ୍ୟ ହରାଇ ହିନ୍ଦୁଙ୍କ ଉପରେ ଗୁଳି ଚଳାଇଲେ । ହିନ୍ଦୁମାନେ ଛନ୍‌ଛନ୍ ହୋଇ ମସ୍‌ଜିଦ୍‌ରୁ ବାହାରି ନିକଟ-ବର୍ତ୍ତୀ ପଠାଣ ବସ୍ତିରେ ନିଆଁ ଲଗାଇଦେଲେ ଓ ପଠାଣମାନଙ୍କୁ ହାଣି ମାରିବାରେ ଲାଗିଲେ । ଦିନ ଏଗାରଟା ବେଳକୁ ଗଣ୍ଡଗୋଳ ଥମିଲା । ସେତେବେଳକୁ ପ୍ରାୟ ପାଞ୍ଚଶହ ଲୋକ ମରି ପଡ଼ିଥାନ୍ତି ; ତାହାର ଦୁଇଗୁଣ ଖଣ୍ଡିଆ ଖାବରା ହୋଇ ଡାକ୍ତରଖାନାକୁ ଯାଇଥାନ୍ତି । ସକାଳ ୧୦ଟାରେ ଜଣେ ସରକାରୀ ଅଫିସର ଆସି ସାଇବାଣୀଙ୍କୁ ଖବର ଦେଇଥିଲେ । ଦୁଇଟା ବେଳକୁ ଟେଲିଫୋନ୍‌ରେ ଖବର ଆସିଲା, ଡାକ୍ତର ସାର୍ଟିଫିକେଟ୍ ଦେଇସାରିଲେଣି, ଅନୁମତି ଦେଲେ ତାଙ୍କର ଦାହ କାର୍ଯ୍ୟ ହେବ । ସାଇବାଣୀ ହୁକୁମ ଦେଲେ, ବ୍ରାହ୍ମଣମାନଙ୍କ-ଦ୍ୱାରା ଦାହ କରାଇଦିଆଯାଉ । ଏତେ ଲୋକ ମରିଥିବା ସ୍ଥଳେ ସ୍ୱାମୀଙ୍କ ପାଇଁ ଶବ ଶୋଭାଯାତ୍ରା ପ୍ରୟୋଜନ ନାହିଁ କି ଶବ ଏଠାକୁ ଆଣିବା ପ୍ରୟୋଜନ ନାହିଁ ।

"ଶବସତ୍କାର କଥା ପଡ଼ିଲା ବେଳେ ସେ ଅଧୀର ଭାବେ କାନ୍ଦି କାନ୍ଦି ହୋଇ ମତେ କହିଲେ, 'ତାଙ୍କ ଶବକୁ ଜାବୁଡ଼ି ଧରି ମୁଁ କାନ୍ଦିଲିନାହିଁ ବୋଲି, ତାଙ୍କ ଚିତା ପାଖରେ ଲଙ୍ଗଳା ମୁକୁଳା ହୋଇ ଠିଆ ହେଲି ନାହିଁ ବୋଲି ଲୋକେ କହିପାରନ୍ତି, ମୋର ତାଙ୍କ ପ୍ରତି ମମତା

ନ ଥିଲି । ଏବେ ତାଙ୍କର ମୋର ଯେଭଳି ସଂପର୍କ ଥିଲା ତାହା ଜାଣି ତୁ ବି କହିପାରୁ; ଏହା ସ୍ୱାଭାବିକ । କିନ୍ତୁ ଭଉଣୀ ! ମୁଁ ଜାଣେ, ଭଗବାନ୍ ଜାଣନ୍ତି, ମୁଁ ସଂପୂର୍ଣ୍ଣରୂପେ ତାଙ୍କଠାରେ ଆତ୍ମସମର୍ପଣ କରିଥିଲି । ସେ ମୋତେ ଗୋଡ଼ରେ ଫିଙ୍ଗିଦେଲେ ସିନା ! ମୁଁ ତାଙ୍କୁ ପ୍ରଥମ ଦିନ ପରି ଏବେ ବି ମୁଣ୍ଡରେ ବସାଇଛି । ସେ ମୋତେ ତଡ଼ିଦେଇଥିଲେ ମୁଁ ଯାନ୍ତି ; କିନ୍ତୁ ଗଲେ ବି ମୋର ପ୍ରେମରୁ କାଣିଚାଏ ବି ଊଣା ହୋଇନଥାନ୍ତା । ମୁଁ ଚାହୁଁଥିଲି, ସେ ମୋତେ ଧରି ବା ଆଉ ଯାହାକୁ ଧରି ସୁଖରେ ରହନ୍ତୁ ; ମୁଁ ଦୁଃଖ ଦୈନ୍ୟରେ ଗଛମୂଳରେ ପଡ଼ି ବି ତାଙ୍କର ସୁଖରେ ସୁଖୀ ହୋଇଥାନ୍ତି ।

"ମୋ ମନ ବୋଧହୁଏ ଟିକିଏ ବିଗିଡ଼ିଗଲା । ତାକୁ ଲକ୍ଷ୍ୟକରି ସେ କହିଲେ, 'ଭଉଣୀ ! ଆଜି ସକାଳେ ବୁଢ଼ୀଠାରୁ ସବୁ ଶୁଣିଛି । ଏ ବୁଢ଼ୀଟି ପାଠଶାଠ ନ ପଢ଼ିଥିଲେ କ'ଣ ହେଲା, ସ୍ୱାର ତାଙ୍କ ପ୍ରତି ଗୋଟାଏ କମିତ ପୁତ୍ରସ୍ନେହ ଅଛି । ଦୁର୍ଘଟଣା କଥା ଶୁଣି ସେ ମୋ ପାଖକୁ ଧାଇଁ ଆସିଲା । ସାହେବ ମୋତେ ଛାଡ଼ିବା କଲା ଦିନୁଁ ସେ କେବେ ହେଲେ ମୋ ଖୁଆଡ଼ ମାଡ଼େ ନାହିଁ. ଧାଇଁ ଆସି ସେ ମୋତେ କହିଲା, 'ମା ! ସେ ଟୋକାଟା ଉପରେ ବିଗିଡ଼ି ବାପ୍ପା ହାକିମ ତାକୁ ଗୋଟାଏ ଘରେ ତାଲା ଠୁକି ଚାବିଟା ନେଇ ଚାଲିଯାଇଛନ୍ତି । ଆଗ ସେ ଟୋକାଟାକୁ ମୁକୁଳାଇ ଦିଅ । ଯଦି ହାକିମ ହୁକୁମା କିଏ ଆସି ଏକଥା ଜାଣେ, ତେବେ ବାଙ୍କର ନିନ୍ଦା ରଟିବ । ଶତ୍ରୁମାନେ କିଏ କେତେ କଥା କହିବେ ।' ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି, 'କାହିଁକି ?' ସେ କହିଲା, 'ଏତିକି ଜାଣି ପାରୁନାହଁ ? ସେ ଟୋକାଟା ଭଲ ମଣିଷ । ତୁମକୁ ତ ବଡ଼ନାନୀ ବୋଲି ମାନେ । ସାହେବଙ୍କୁ ସୁଖ ପାଇଲେ ତୁମଠାରେ ଦୋରେହା ହେବ, ଆପେ ଅଧର୍ମରେ ବୁଡ଼ିବ ବୋଲି ସେ ସାହେବଙ୍କ ପାଖ ପଶେ ନାହିଁ । ତା' ଉପରେ ବଳାତ୍କାର କରିବାକୁ ଯିବାରୁ ସେ ପେଲିଦେଲା । ସେ ତ ବୁଢ଼ାଏ ମଦ ସବୁବେଳେ ପିଇ କଣ୍ଟା ହୋଇଗଲେଣି ; ସଂଭାଳି ନ ପାରି ପଡ଼ିଗଲେ । ଟୋକାର ଏଇ ଦୋଷ ।' ସାହେବାଣୀ ମୋତେ କହିଲେ, 'ଏକଥା ଶୁଣିବାମାତ୍ରେ, ମୁଁ ସାହେବଙ୍କ ଖାସ୍ କାମେରା ଭିତରେ ପଶି ସବୁ ଦରଣ୍ଡାଦରଣ୍ଡି କଲି, ଚାବିଟା ପାଇବା ପାଇଁ । ପାଇଲି ନାହିଁ । ମୋ ନିଜ କାମେରାରେ ମୁଠାଏ ପୁରୁଣା ଚାବି ଥିଲା । ତାକୁ ନେଇ କେଁଚ୍ କେଁଚ କରୁ କରୁ ଗୋଟାଏ ଲାଗିଗଲା । ତୋତେ ଫିଟାଇଲି । ପରେ ଟେଲିଫୋନ୍‌ରେ ପୁଲିସ୍ ସାହେବ କହିଲେ, 'ପଶ୍ଚିମ ପଟର ବାକ୍‌ସରଖା କାମେରାରେ ଜଣକୁ ସେ ବନ୍ଦ କରି ଅସିଛନ୍ତି ବୋଲି ସାହେବ ଶେଷ ନିଃଶ୍ୱାସ ଛାଡ଼ିବାର ମୁହୂର୍ତ୍ତିକ ଆଗରୁ କହିଲେ, 'ପକେଟରେ ଚାବି ଅଛି ବୋଲି ଇସାରା ଦେଲେ । ଏକଥା କ'ଣ ଆପଣ ଜାଣନ୍ତି ?' ମୁଁ ଉତ୍ତର ଦେଲି, 'ବୋଧହୁଏ ବାଉଳା ଚାଉଳା ହୋଇ ସେ ଏପରି କହିଛନ୍ତି । ମୁଁ ଜାଣେ ଆମର କୌଣସି ଘର ବନ୍ଦ ନାହିଁ ।' ଯା ପରେ ପୁଲିସ ସାହେବ ଚାବିଟା ନେଲେ ଆଣି ଆମ ମେମ୍ ସାହେବଙ୍କୁ ଦେଇ ଗଲେ ବୋଲି ମଧ୍ୟ ଶୁଣିଲି ।

"ଏ ଘା ଶୁଖିବାର ଅନେକ ଦିନ ପରେ ମୁଁ ଥରେ ପଚାରିଥିଲି, 'ଦିଦି ! (ସାହେବାଣୀ ନ ଡାକି ଦିଦି ବୋଲି ଡାକିବାକୁ ସେ ମୋତେ ହୁକୁମ ଦେଇଥାନ୍ତି), ଯେଉଁ

ସ୍ତ୍ରୀ ଲୋକମାନେ ଥିଏଟର ଓ ସିନେମାରେ ଅଭିନୟ କରନ୍ତି, ସେମାନଙ୍କର କୌଣସି ଜଣେ ପୁରୁଷ ପ୍ରତି ଏକାନ୍ତ ମମତା ଜାତ ହେବା ସଂଭବ ନୁହେଁ ବୋଲି ମୁଁ ଶୁଣିଥିଲି । କିନ୍ତୁ ତୁମକୁ ଦେଖି ତାହା କେଡ଼େ ଭୁଲ୍ ଜାଣିପାରୁଛି ।' ସେ ଉତ୍ତର ଦେଲେ, 'ଭାଇ, ଯାହା ଶୁଣିଛ, ତାହା ହୁଏତ ସତ, କିନ୍ତୁ ମୋତେ ଲାଗୁଛି, ଅଭିନୟ କରୁଥିଲେ ବି ମୋ ହୃଦୟ ଅଭିନେତାଙ୍କ ଭିତରେ ଖୋଜି ହେଉଥିଲା ଏପରି ଜଣେ ଲୋକ, ଯାହାଠାରେ ମୁଁ ହୃଦୟ ସମର୍ପି ଦେଇପାରିବି । ଏଇପରି ଖୋଜିବାରେ ମୁଁ ଥରେ ଖାଲରେ ପଡ଼ିଯାଇଥିଲି । ଏଭଳି ଜଣେ ଲୋକକୁ ଧରି ପକାଇଥିଲି, ଯେ କି ମୋ ରୂପକୁ ଚାହୁଁଥିଲେ କିନ୍ତୁ ମୋ ମନକୁ ନୁହେଁ । ଭୁଲ ହୋଇଛି ବୋଲି ଜାଣିବା ମାତ୍ରେ ମୁଁ ନିଜକୁ ସଂଭାଳି ନେଇଥିଲି । ଲୋକଙ୍କ ବିଚାରରେ ମୁଁ ନିଶ୍ଚୟ ଦୋଷୀରୁଣୀ । କିନ୍ତୁ ମୋ ନିଜ ବିଚାରରେ ମୁଁ ମୋର ଭୁଲ ବୁଝି ପ୍ରାୟଶ୍ଚିତ୍ତ କରି ସାରିଛି ।'

"ମୋ ମନରେ ସନ୍ଦେହ ରହିଗଲା ବୋଲି ଠଉରାଇ ସେ ପୁଣି କହିଲେ, 'ତୁ ବିଶ୍ୱାସ କରିଥିବୁ, ତୋର ଏ ସାହେବଙ୍କୁ ପାଇ ମଧ୍ୟ ମୁଁ ଠିକ୍ ଲୋକକୁ ପାଇନଥିଲି । ସେ ହୁଏତ ମୋର ରୂପକୁ ଚାହୁଥିଲେ, ମନକୁ ନୁହେଁ । ହୋଇଥିବ । ସ୍ୱାଙ୍କ ହତାଦର ପାଇଲା ବେଳକୁ ମୋ ମନରେ ପରିବର୍ତ୍ତନ ହୋଇଥାଏ । ମୁଁ ବିଚାରୁଥାଏ, କୌଣସି ପୁରୁଷ ନାରୀର ମନକୁ ଖୋଜନ୍ତି ନାହିଁ । ଖୋଜନ୍ତି ତା'ର ରୂପକୁ, ଚାହାନ୍ତି ଫୁଲଟିକୁ ହାତରେ ଚିକି ଚିକି କରି ଫୋପାଡ଼ି ଦେବେ । ସେଇପରି ଯେଉଁ ଲୋକର ବଳାତ୍କାରକୁ ନାରୀ ଅନ୍ତରର ସହିତ ସ୍ୱାଗତ କରେ, ସେଇ ଲୋକଟି ତା'ର ସବୁ । ସେଇ ଲୋକର ତୁଷ୍ଟି ପାଇଁ ନାରୀର ତପସ୍ୟା । ସ୍ୱାଙ୍କ ପ୍ରତି ମୋର ସେ ଭାବ ଆସିଯାଇଥିଲା । ମୁଁ ମନେ ମନେ ସ୍ୱାଙ୍କୁ ମୋର ଦେବତା ବୋଲି ମାନିଯାଇଥିଲି । ଯାହାକୁ ଦେବତା ବୋଲି ମାନିଗଲେ, ସେ ଦେବତା କି ନୁହଁ ପଚାରିବା କାହିଁକି ?' ମୋ ମନର ସଂଶୟ ଦୂର ନ ହୋଇ ବଢ଼ିଲା । ମୁଁ କହିଲି, 'ପ୍ରଥମେ ଯେଉଁ ଜଣକ ତୁମକୁ ଅବ୍ୟବହାର କରିଥିଲା, ତା'ଠାରେ ମନକୁ ବିକିଦେଇଥିଲେ ତ ଯାଇଥାନ୍ତା । ତା'ର ଯେଉଁ ଦୋଷ ଦେଖି ତାକୁ ସେତେବେଳେ ଛାଡ଼ିଥିଲ, ସ୍ୱାଙ୍କର ସେଇ ଦୋଷ ପ୍ରତି ଅନ୍ଧ ହୋଇ ଯାଇ ସ୍ୱାଙ୍କୁ ଦେବତା ଆସନରେ ବସାଇଦେଲ ବୋଲି ମୋତେ ଲାଗୁଛି ।' ସେ ଟିକିଏ ତୁନି ରହି କହିଲେ, 'ବୟସରେ ତୁ ବହୁତ ସାନ ହେଲେ ବି ତୋ' କଥାର ଉତ୍ତର ମୁଁ ଦେଇପାରୁନାହିଁ ଦେଖୁଛି । ହୁଏତ ତୁ ଯାହା କହୁଛୁ ସେ କଥା ସତ । ଖାଲି ଏ ବିଷୟରେ କାହିଁକି, ସଂସାରର ସବୁ ବିଷୟରେ ମନକୁ ଧରି ଗୋଟାଏ ଖୁଣ୍ଟରେ ବାନ୍ଧିଦେଲେ ମନ ବୁଝିଯାଏ । ଆମ ପୂର୍ବପୁରୁଷମାନେ ଏକଥା ବୁଝିଥିଲେ ବୋଲି ଧରିବାନ୍ଧି ଗୋଟାକୁ ନେଇ ଗୋଟାକ ସାଙ୍ଗେ ଛନ୍ଦିଦେଉଥିଲେ । ଆମେ ମନକୁ ସ୍ୱାଧୀନ ରଖିବାକୁ ଆଗ ଉଚ୍ଛୃଙ୍ଖଳତାକୁ ପ୍ରଶ୍ରୟ ଦେଉଥାଉଁ ଏବଂ ଶେଷରେ ଯାଇ ଗୋଟାଏ ଖୁଣ୍ଟିମୂଳେ ମନକୁ ବେଢ଼ି ଦେଖାଇ ଦେଉଥାଉଁ ।' ମୁଁ ତୁନି ହେଲି ।

"ସେ ତ ବହୁଦିନ ପରର କଥା । ସେ ରାତିରେ ଦୁହେଁ ଏକାଠି ଶୋଇଲୁଁ—ସେ ସୋଫା ଉପରେ ଓ ମୁଁ ତାଙ୍କର ସୋଫା ପାଖରେ, ତଳେ । ବୁଢ଼ୀ ଆସି ଦୁଆର

ମୁହଁରେ ଶୋଇଲା । ଘରର ଅନ୍ୟ ଚାକର ବାକର କେଉଁଠି ଥିଲେ ମୁଁ ଜାଣିନାହିଁ । ଏତିକି ଜାଣିଛି, ତାହାର ଘରେ ୫୬ ଜଣ ପୁଲିସବାଲା ରହିଥାନ୍ତି ଓ ମଝିରେ ମଝିରେ କୋଠି ଚାରପଟେ ବୁଲୁଥାନ୍ତି । ତହିଁ ଆର ଦିନ ସକାଳୁ ସାଇବାଣୀ ଘରର ଚାକରମାନଙ୍କୁ ଡକାଇ କିଛି କିଛି ବାଟଖର୍ଚ୍ଚ ଦେଇ ବିଦା କରିଦେଲେ । ନିଜ ଦିହଲଗା ଚାକରାଣୀକୁ କହିଲେ, 'ମୁଁ ଦିଲ୍ଲୀ ଛାଡ଼ି ଚାଲିଯିବା ପର୍ଯ୍ୟନ୍ତ ରହ' । ବୁଢ଼ୀକୁ କହିଲେ,'ମଲ୍ଲୀମା, ତୁମେ ଏ ଘରର ଲୋକ । ମୋ ପୂର୍ବରୁ ତ ତୁମେ ଏଠି ଅଛ । ତୁମର ଯେତେ ଦିନ ମନ, ମୋ ପାଖରେ ରହ । ଦିଦିଙ୍କ ପାଖରେ ଯଦି ରହିବ ସେଠାରେ ନେଇ ଛାଡ଼ି ଦେଇ ଆସିବି, ଦେଶକୁ ଯଦି ଯିବ ତେବେ ତା'ର ବି ବ୍ୟବସ୍ଥା କରିବି ।' ବୁଢ଼ୀ ସାଙ୍ଗେ ସାଙ୍ଗେ ଉତ୍ତର ଦେଲା, 'ମା ! ଆଗ ନିଜ କଥା ବିଚାର, ମୋ କଥାରେ କ'ଣ ଅଛି ? ତମେ ଅସ୍ଥ ହୋଇ କୋଉଠି ନ ରହିବା ପର୍ଯ୍ୟନ୍ତ ମୁଁ ଛାଡ଼ିକରି କେମିତି ପଳେଇବି କହିଲ ?' ବୁଢ଼ୀ ଏଇ ପଦେ କଥାରେ ସମସ୍ତଙ୍କର ମୁରବି ହୋଇଗଲା ।

"ଘଟଣାର ପରଦିନ ସକାଳ ୯ଟା ହେବ । ଚାକର ବାକରଙ୍କୁ ବିଦା କରି ଦେଇ ସାର ସାହେବାଣୀ ଡମା ହୋଇ ବସି କ'ଣ ଭାବୁଥାନ୍ତି, ମୁଁ ପାଖରେ ରହି ତାଙ୍କ ମୁହଁକୁ ଚାହିଁ ବସିଥାଏ । ମଲ୍ଲୀମା ଆସି ତୁନି ତୁନି କହିଲା, 'ମା ! ଦୁଇ ତିନିଜଣ ଜଣେ ବୈଠକଖାନାରେ ଅପେକ୍ଷା କରୁଛନ୍ତି । ତାଙ୍କୁ କ'ଣ କହିବି ?' ତାଙ୍କ ଭିତରୁ ଜଣଙ୍କୁ ଡାକି ଆଣିବାକୁ ମେମ୍ ସାହେବ ହୁକୁମ ଦେଲେ । ସେ ଆସି ନମସ୍କାର କରି କହିଲେ, 'ଆପଣଙ୍କ ସଙ୍ଗେ କେତୋଟି ଗୁରୁତର ବିଷୟରେ କଥାବାର୍ତ୍ତା ହେବାକୁ ଥିବାରୁ ମୁଁ ଆସିଛି । ମୁଁ ପ୍ରଧାନ ମନ୍ତ୍ରୀଙ୍କ ସେକ୍ରେଟାରୀ ।' ମେମ୍ ସାହେବ ପ୍ରତିନମସ୍କାର କରି ଉତ୍ତର ଦେଲେ, 'ଆପଣଙ୍କର ଯାହା କହିବାର କଥା, ଆପତ୍ତି ନ ଥିଲେ ଏଇଠାରେ କହିପାରନ୍ତି । (ମୋତେ ଦେଖାଇ) ଏ ମୋର ଭଉଣୀ, ଏହାର ଉପସ୍ଥିତରେ କଥାବାର୍ତ୍ତା ହେବାରେ ମୋର ତ କୌଣସି ଆପତ୍ତି ନାହିଁ, ଆପଣଙ୍କର ବି ନ ଥିବ ।' ଆଗନ୍ତୁକ କହିଲେ, 'ମୋ ସାଙ୍ଗରେ ମୋର ସହକାରୀ ଓ ଅର୍ଥବିଭାଗର ସଚିବ ଅଛନ୍ତି । ସେମାନଙ୍କୁ ଡାକିପାରେ ?' ମେମ୍ ସାହେବ ତାଙ୍କୁ ଡାକି ଦେବାକୁ ଓ ସମସ୍ତଙ୍କ ପାଇଁ ଚା ଆଣିବାକୁ ମଲ୍ଲୀମାକୁ ବରାଦ କରି, ମୋ ସାହାଯ୍ୟରେ ସମସ୍ତଙ୍କ ପାଇଁ ବସିବାର ଆୟୋଜନ କଲେ ।

"ସମସ୍ତେ ବସିଲା ପରେ ପ୍ରଧାନମନ୍ତ୍ରୀଙ୍କ ସେକ୍ରେଟାରୀ ପକେଟରୁ ଖଣ୍ଡିଏ ଚଠି ବାହାର କରି ମେମ୍ ସାହେବଙ୍କ ହାତକୁ ବଢ଼ାଉ ବଢ଼ାଉ କହିଲେ, ପ୍ରଧାନମନ୍ତ୍ରୀ ଏ ଚଠି ଖଣ୍ଡି ନିଜ ହାତରେ ଲେଖି ଦେଇଛନ୍ତି । ଆପଣଙ୍କ ଶୋକରେ ସେ ଅତିଶୟ ବ୍ୟଥିତ । ଆପଣଙ୍କ ସୁବିଧା ସୁଯୋଗ ଦେଖି ସେ ନିଜେ ଆପଣଙ୍କ ପାଖକୁ ଆସି ସମବେଦନା ଜ୍ଞାପନ କରିଯିବାକୁ ଇଚ୍ଛା କରନ୍ତି ।'

"ମେମ୍ ସାହେବ ଚଠି ଖଣ୍ଡି ଫିଟାଇ ବହୁ ସମୟ ଆଖି ଆଗରେ ମେଲାଇ ରଖିଲେ । ତା'ପରେ ଧୀରେ ଧୀରେ ତାକୁ ଚଉତି ପୁଣି ପୁଳିନ୍ଦା ଭିତରେ ଭର୍ତ୍ତି କରି ନିଜର ବ୍ୟାଗ୍ ଭିତରେ ରଖି କାନ୍ଦୁରା କାନ୍ଦୁରା ସ୍ୱରରେ କହିଲେ, 'ଏ ଚଠିଟି ପାଇଁ ଆପଣଙ୍କ ପ୍ରଧାନ-ମନ୍ତ୍ରୀଙ୍କୁ ମୋର କୃତଜ୍ଞତା ଜଣାଇଦେବେ । ମୋର ବର୍ତ୍ତମାନ ଅବସ୍ଥାରେ କାହା ପାଖକୁ

ଶଠି ଦେବାକୁ ମୋର ଅବସର ନାହିଁ କି ଇଚ୍ଛା ନାହିଁ ।' ସେକ୍ରେଟାରୀ ପଚାରିଲେ, 'ଆଉ କଣ କହିବି ?' ମେମ୍ ସାହେବ ସ୍ୱଚ୍ଛନ୍ଦଭାବେ କହିଲେ,'ନିତାନ୍ତ ଯଦି କିଛି କହିବା ଦରକାର, ତେବେ କହିବେ—ମୋ'ର ସ୍ୱାମୀ ଦେଶପାଇଁ ପ୍ରାଣ ଦେଲେ ବୋଲି ସେ ଯାହା ଲେଖିଛନ୍ତି, ତାହା ନୁହେଁ । ମୁଁ ମନେ କରୁଛି, ଜଣେ ଲୋକର ପଦବୀ ଲୋଭରେ ଏ ଦେଶରେ ହଣାକଟା ଆରମ୍ଭ ହୋଇଛି ଓ ସେହି ଲୋକର ପ୍ରାଣଭୟ ହେତୁ ମୋ ସ୍ୱାମୀ ପ୍ରାଣ ହରାଇଲେ । ଜୁମା ମସଜିଦ୍‌ରେ ଯେଉଁମାନେ ଆଶ୍ରୟ ନେଇଥିଲେ ସେମାନେ ମନଖୁସିରେ ସେଠାକୁ ଆସିନ-ଥିଲେ । କିପରି ବେଗେ ପ୍ରଧାନମନ୍ତ୍ରୀ ହୋଇଯିବି ବୋଲି ଯେ ଭାରତକୁ ଦୁଇଖଣ୍ଡ କରାଇ-ଦେଲେ, ସେଇ ନିଜେ ଆସି ସେମାନଙ୍କୁ ବୁଝାଇ ସେଠାରୁ କାଢ଼ିଥିଲେ ହୋଇଥାନ୍ତା ।'

''ଆଗନ୍ତୁକମାନେ ପରସ୍ପର ମୁହଁ ଚୁହାଁଚୁହିଁ ହେଲେ । ସେମାନଙ୍କୁ ଚାହିଁ ମୁଁ ଲକ୍ଷ୍ୟ କଲି, ମେମ୍ ସାହେବଙ୍କ କଥାକୁ ସମସ୍ତେ ସମର୍ଥନ କରୁଛନ୍ତି । କାହାର ପ୍ରଧାନମନ୍ତ୍ରୀଙ୍କ ପ୍ରତି ଟିକିଏ ହେଲେ ଆନୁଗତ୍ୟ ଥିଲି ପରି ମନେହେଉନଥାଏ । ଟିକିଏ ଚୁପ୍ ରହି ମେମ୍‌ସାହେବ ପୁଣି କହିଲେ, ମୋତେ ସମବେଦନା ଜଣାଇବାକୁ ପ୍ରଧାନମନ୍ତ୍ରୀ ନିଜେ ଆସିବେ ବା କିଅଙ୍କୁ ପଠେଇବେ ବୋଲି ଯାହା ଲେଖିଛନ୍ତି, ସେ ବିଷୟରେ ତାଙ୍କୁ ସାବଧାନ କରିଦେବେ ଯେ, ତାଙ୍କ ଲାଳସା ଓ ଲୋଭରୁ ଯେଉଁମାନେ ପ୍ରାଣ ହରାଉଛନ୍ତି ସେମାନଙ୍କୁ ସମବେଦନା ଜଣାଇବାରେ ସମସ୍ତ ଖର୍ଚ୍ଚ କଲେ ନିଜ କାର୍ଯ୍ୟ ପାଇଁ ଅନୁତାପ କରିବାକୁ ତାଙ୍କୁ ବେଳ ମିଳିବ ନାହିଁ ।'

''ଏତିକି କହି ସେ ଅଫିସରମାନେ ବିଦାୟ ନେବାକୁ ଅପେକ୍ଷା କରି ରହିଲେ । କିନ୍ତୁ ସେମାନେ ବିଦାୟ ନେବାର କୌଣସି ଲକ୍ଷଣ ଦେଖାଗଲା ନାହିଁ । ଅର୍ଥବିଭାଗର ସେକ୍ରେଟାରୀ ଟିକିଏ ଅଟକେଇ ଅଟକେଇ କହିଲେ, ଆପଣଙ୍କ ସଙ୍ଗେ ଆଉ ଗୋଟିଏ କାମ ଅଛି । ସ୍ୱର୍ଗତ ସାହେବଙ୍କର ଶୁଦ୍ଧାଦି କ୍ରିୟା ସକାଶେ ପ୍ରଧାନମନ୍ତ୍ରୀ ନିଜ ହାତପାଣ୍ଠିରୁ କୋଡ଼ିଏ ହଜାର ଟଙ୍କା ମଞ୍ଜୁର କରିଛନ୍ତି । ସେ ଟଙ୍କାଟା ଟ୍ରେଜେରିରୁ କଢ଼ା ହୋଇ ସାରିଛି । ଆପଣ ତାହା ଗ୍ରହଣ କରନ୍ତୁ ବୋଲି ମୋର ଅନୁରୋଧ ।'

''ମେମ୍ ସାହେବ କହିଲେ, 'ତାଙ୍କ ଶୁଦ୍ଧାଦି କାର୍ଯ୍ୟ ପାଇଁ ମୋ ପାଖରେ ଯଥେଷ୍ଟ ଧନ ଅଛି । ମୋର ଅଳଙ୍କାର ସବୁ ବିକ୍ରି କରି ମୁଁ ସେ କାର୍ଯ୍ୟ ଚଳାଇବାକୁ ସ୍ଥିର କରିଛି । ତା'ପରେ ମୋର ଆଉ ଟଙ୍କା ଦରକାର ହେବ ନାହିଁ । ଆପଣଙ୍କ ଏ ଟଙ୍କା ମୋର ଦରକାର ହେବ ନାହିଁ ।'

''ସରକାରୀ କର୍ମଚାରୀମାନେ ପରସ୍ପର କଥାବାର୍ତ୍ତା ହେଲେ । ଶେଷ ମସୁଧା କରି ସେମାନେ ଅନୁରୋଧ କଲେ, 'ଆପଣଙ୍କୁ ଆମମାନଙ୍କର ବ୍ୟକ୍ତିଗତ ଅନୁରୋଧ, ଆପଣ ଏ ଟଙ୍କାଟା ରଖନ୍ତୁ, ଏବଂ ଆପଣଙ୍କ ଇଚ୍ଛା ଅନୁସାରେ ଏହାର ବ୍ୟୟ କରନ୍ତୁ । ଦୁଃଖୀ, ରଙ୍ଗୀ, ସାଧୁ ସନ୍ନ୍ୟାସୀଙ୍କର ଏ ଦେଶରେ ଅଭାବ ନାହିଁ । ଆପଣ ଏ ଟଙ୍କାଟା ନ ନେଲେ ଦେଶର ଏ ଟଙ୍କାଟା ଯେ ରହିଯିବ ତାହା ନୁହେଁ । ବର୍ତ୍ତମାନ ଯେଉଁମାନଙ୍କ ହାତରେ ରାଜ୍ୟ ପଡ଼ିଛି, ସେମାନେ ନିଜର ବିଳାସବ୍ୟସନରେ ଯାହାକୁ କାହିଁକି, ଏହାର ଲକ୍ଷେ ଗୁଣ ସହଜରେ ଉଡ଼ାଇ

ଦେଇପାରିବେ । ସବୁଠାରୁ ବଡ଼କଥା, ଏ ଟଂକାଟା ଆପଣ ଯଦି ଫେରାଇଦିଅନ୍ତି, ତେବେ ଆମମାନଙ୍କର ସ୍ୱାର୍ଥରେ ବାଧା ପଡ଼ିବ । ଦେଶରେ ଅରାଜକତାର ଲକ୍ଷଣ ଦେଖାଯାଉଛି । ଆପଣଙ୍କ ସ୍ୱାମୀଙ୍କ ପରି କେତେ ଯେ ପ୍ରାଣ ଦେବେ ତାର ଠିକଣା ନାହିଁ । ଆପଣଙ୍କର ଟଙ୍କା ଦରକାର ହୋଇନପାରେ, କିନ୍ତୁ ସେମାନଙ୍କର ପିଲାପିଲି ଏ ଟଙ୍କା ନ ପାଇଲେ ଦାଣ୍ଡକୁ ଯିବେ ସିନା ! ଆପଣ ଟଙ୍କା ଫେରାଇଦେଲେ ସେମାନଙ୍କ ଟଙ୍କା ପାଇବାର ବାଟ ବନ୍ଦ ହୋଇଯିବାର ଆଶଂକା ଅଛି ।'

''ମେମ୍ ସାହେବ ନିଜର ସମସ୍ତ ଦୁଃଖ ସତ୍ତ୍ୱେ ଟିକିଏ ହସିଦେଲେ ; କହିଲେ, 'ଏ ଯୁକ୍ତି ଗ୍ରହଣ ନ କରୁଥିଲେ ହେଁ ଆପଣମାନଙ୍କର ସମବେଦନା ମୁଁ ବୁଝୁଛି । ମୋର ସ୍ୱାମୀଙ୍କ ସ୍ମୃତିରେ କିଛି ଗୋଟାଏ କରିବାକୁ ମୁଁ ଏ ଟଙ୍କା ରଖିବି ।' ଏହା କହି ସେ ଅର୍ଥବିଭାଗ ସେକ୍ରେଟାରୀ ବଢ଼ାଇଦେବା ଖଣ୍ଡେ କାଗଜରେ ଦସ୍ତଖତ କରିଦେଲେ । ସେକ୍ରେଟାରୀଙ୍କ ସହକାରୀ ଗୋଟିଏ ବ୍ୟାଗ୍‌ରୁ ଶହେ ଟଙ୍କିଆ ନୋଟ୍ ଦୁଇ ତାଡ଼ା ଟେବୁଲ୍ ଉପରେ ଥୋଇ-ଦେଲେ । ତା'ପରେ ଆଉ ଖଣ୍ଡିଏ କାଗଜ ବଢ଼ାଇଦେଇ ସେକ୍ରେଟାରୀ କହିଲେ, 'ଏହା ଆପଣଙ୍କର ପେନ୍‌ସନ୍ କାଗଜ । ଆପଣଙ୍କ ବିଷୟରେ ପ୍ରୟୋଜନ ସାର୍ଟିଫିକେଟ୍ ଆଦି ଆମେ ଦେଇ ସାରିଛୁ । ଖାଲି ଆପଣଙ୍କର ଏଇ ଦସ୍ତଖତଟା ଦରକାର ।' ମେମ୍ ସାହେବ ଗୁଣୁଗୁଣୁ ସ୍ୱରରେ କହିଲେ, 'ଏହାର ଅଧିକାରୀ ଆଉ ଜଣେ ଅଛି । ଆଚ୍ଛା, ସେ କଥା ମୁଁ ବୁଝିବି' ବୋଲି କହି ସେ ଦସ୍ତଖତ ଦେଇଦେଲେ ।

''ବିଦାୟ ନେବାବେଳେ ପ୍ରଧାନମନ୍ତ୍ରୀଙ୍କ ସେକ୍ରେଟାରୀ କହିଲେ, 'ଆମେ ଆଉ କ'ଣ କରିପାରୁ କହନ୍ତୁ ।' ମେମ୍ ସାହେବ କହିଲେ, 'ଆପଣମାନେ ମୋ ପାଇଁ ବହୁତ କଷ୍ଟ ସହିଲେଣି । ତେବେ ମଣିଷ ତ ପାଇଲା ଗାଡ଼ିଆ ବୁହାନ୍ତି । ତେଣୁ ଆପଣଙ୍କ ଉପରେ ମୁଁ ଆଉ ଟିକିଏ କାମ ଲଦୁଛି । ଏ କୋଠିରେ ବହୁତ ଗୁଡ଼ାଏ ଆସ୍‌ବାବ୍ ପତ୍ର ଅଛି । ଏହା ଶୀଘ୍ର ବିକ୍ରୀ ହୋଇଯିବା ଦରକାର । ମୋର ଓ ସାହେବଙ୍କ ନାମରେ ବ୍ୟାଙ୍କ୍‌ରେ ଯେଉଁ ଆକାଉଣ୍ଟ୍-ଗୁଡ଼ାକ ଅଛି ତାହା ବନ୍ଦ କରି ସେ ଟଙ୍କା ମୋତେ ମିଳିବାର ବନ୍ଦୋବସ୍ତ କରିଦେବାକୁ ଅନୁରୋଧ । ସର୍ବୋପରି, ସାହେବଙ୍କ ଅସ୍ଥି ଜଣେ ବ୍ରାହ୍ମଣଦ୍ୱାରା ସଂଗ୍ରହ କରି ମୋତେ ଆଣାଇ-ଦେବେ । ଦଶାହ ଦିନକୁ ମୁଁ ହରିଦ୍ୱାରରେ ଯାଇ ପହଞ୍ଚିବି । ତେଣୁ ଏଇ ଦୁଇ ଚାରିଦିନ ଭିତରେ ଏତକ କାମ କରାଇଦେବାକୁ ଅନୁରୋଧ । ଆମେ ଏଠାରେ ଦୁଇଟି ମାତ୍ର ସ୍ତ୍ରୀ ଲୋକ । ଆପଣ ସହାୟ ନ ହେଲେ ଏ କାମ ସରିବ ନାହିଁ ।'

''ପ୍ରଧାନମନ୍ତ୍ରୀଙ୍କ ସେକ୍ରେଟାରୀ କହିବା ସାଙ୍ଗେ ସାଙ୍ଗେ କାମଗୁଡ଼ିକ ଗୋଟିଏ କାଗ-ଜରେ ଟିପି ସାରିଥାନ୍ତି । ବିଦାୟ ନେବାକୁ ଉଠୁ ଉଠୁ ସେ କହିଲେ, 'ଏହା ଦୁଇଦିନ ଭିତରେ କରାଇଦେଉଛି । ତଡ଼ବଡ଼ରେ ଏ ଜିନିଷପତ୍ର ବିକି କରିଦେଲେ, ଦାମ ଟିକିଏ କମ୍ ହୋଇ-ଯାଇପାରେ । ପ୍ରଧାନମନ୍ତ୍ରୀ କହିଛନ୍ତି, ଆପଣଙ୍କର ଯେତେଦିନ ଇଚ୍ଛା ଆପଣ ଏଠାରେ ରହିପାରନ୍ତି ।' ମେମ୍ ସାହେବ କହିଲେ, 'ଆଉ ଏଠାକୁ ଫେରିବାକୁ ମୋର ଇଚ୍ଛା ନାହିଁ । ମୁଁ ସ୍ଥାୟୀଭାବେ ହରିଦ୍ୱାରରେ ରହିଯିବି । ପଇସା, ଅଳ୍ପ ହେଉ ବା ବେଶୀ ହେଉ ଏ ଜିନିଷ

ସବୁ ଶୀଘ୍ର ଅଖି ଆଗରୁ ଯିବା ଦରକାର ।' ହଉ ବୋଲି କହି ଉଠୁ ଉଠୁ ଅର୍ଥ ବିଭାଗ ସେକ୍ରେ-ଟାରୀ କହିଲେ, ଆପଣଙ୍କର ଆପତ୍ତି ନ ଥିଲେ, ଘରେ କ'ଣ ଅସ୍‌ବାବ୍ ପତ୍ର ଅଛି, ତା'ର ମୋଟାମୋଟି ଧାରଣା କରିବାକୁ ଆମେ ଟିକିଏ ଦେଖିପାରିବୁ କି ?' ଆପତ୍ତି ନାହିଁ ବୋଲି କହି, ସବୁ ଘର ଦେଖାଇଦେବାକୁ ମେମ୍ ସାହେବ ହୁକୁମ କଲେ ।

"ଆଗନ୍ତୁକମାନେ କୋଠରୀରୁ ବାହାରକୁ ଯିବା ପରେ ମେମ୍ ସାହେବଙ୍କର ମୋ ଉପରେ ଦୃଷ୍ଟି ପଡ଼ିଲା । ସେ ହଠାତ୍ ଉଠିପଡ଼ି ପ୍ରଧାନମନ୍ତ୍ରୀଙ୍କ ସେକ୍ରେଟାରୀଙ୍କୁ ପୁଣି ଡାକି ଆଣିଲେ ଓ ପାଖରେ ବସାଇ ଅନୁନୟ ସ୍ୱରରେ କହିଲେ, ମୋର ସ୍ୱାର୍ଥ ଚିନ୍ତାରେ ମୁଁ ଗୋଟିଏ କଥା ପାସୋରି ଯାଇଛି । ମୋର ଏ ଭଉଣୀର ସ୍ୱାମୀକୁ ସାହେବ ନେଇ ପାଗଳ ଗାରଦରେ ରଖାଇଛନ୍ତି । ତା'ର ବର୍ତ୍ତମାନ ଅବସ୍ଥା କ'ଣ ମୁଁ ଜାଣେ ନାହିଁ । ତାକୁ ମୁକୁ-ଲାଇ ଦେଲେ ମୁଁ ତାକୁ ମୋ ସାଙ୍ଗରେ ନିଅନ୍ତି ।' ସେକ୍ରେଟାରୀ କହିଲେ, 'ଏଇ ତ ? ମୁଁ ଅଜି ତାହା କରାଇଦେଉଛି । ରୋଗିଣୀର ନାମ କ'ଣ ?' ମେମ୍ ସାହେବ ବିବ୍ରତ ହୋଇ ମୋତେ ଚାହିଁଲେ । ମୁଁ କହିଲି, ତାଙ୍କ ନାମ ଦୁର୍ଗା । କିନ୍ତୁ ତାଙ୍କ ନାମ ପାଗଳା ଗାରଦର ରେଜିଷ୍ଟ୍ରିରେ ଲେଖାହୋଇନଥାଇପାରେ । ସାହେବ ମୋତେ ନାମ ପଚାରି ନାହାନ୍ତି । ସ୍ୱାମୀ ବି ନାମ କହିନଥିବେ ।' ସେକ୍ରେଟାରୀ କହିଲେ, 'ତାହାହେଲେ ଆପଣଙ୍କୁ କଷ୍ଟକରି ପାଗଳାଗାରଦକୁ ଯିବା ଦରକାର ପଡ଼ିପାରେ । ମୁଁ ଯାଇ ବର୍ତ୍ତମାନ ସବୁ ଠିକ୍‌ଠାକ୍ କରୁଛି । ଆପଣଙ୍କୁ ଯେତେବେଳେ ସୁବିଧା ହେବ, ଆସି ନେଇଯିବ । କିନ୍ତୁ ଗୋଟିଏ କଥା । ରୋଗି-ଣୀର ଅବସ୍ଥା ଯଦି ଖୁବ୍ ଖରାପ ଥାଏ, ତେବେ ତାକୁ ସାଙ୍ଗରେ ନେବା କ'ଣ ଠିକ୍ ହେବ ?'

"ମେମ୍ ସାହେବ କହିଲେ, 'ମୋର ବିଶ୍ୱାସ, ପାଗଳା ଗାରଦରେ ତାଙ୍କର ଯେତିକି ଯତ୍ନ ନିଆହେଉଥିବ, ସେତିକି ଆମେ କରିବାକୁ ସମର୍ଥ ହେବୁ ।' ସେକ୍ରେଟାରୀ ମୁରୁକି ହସି କହିଲେ, 'ପାଗଳା ଗାରଦବାଲା ଗୋଟିଏ ରୋଗୀକୁ ମାସେ ଖଣ୍ଡେ ଚିକିତ୍ସା କରିବାକୁ ପାଇଲେ ଆଉ ମଣିଷ କରି ରଖନ୍ତି ନାହିଁ । ସେ କେତେ ଦିନ ରହିଲେଣି ?'

( ୧୩ )

ତାବର ଜୀବନ ବୃତ୍ତାନ୍ତ ପଢ଼ା ଆମର ପ୍ରାତ୍ୟହିକ କର୍ମ ହୋଇଯାଇଥାଏ । ସନ୍ଧ୍ୟା ଲାଗିବାର ପରେ ପରେ ସମସ୍ତେ ଆସି ଜୁଟିଯାଉଥାନ୍ତି । ପଶ୍ଚିମକବାଟେ ସାଙ୍ଗରେ ଆଜି ଅଣିଥାନ୍ତି ପ୍ରାୟ ପାଞ୍ଚ ସାତ ଜଣ ସାଙ୍ଗ । ପୁରାଣ ଶୁଣିବାଠାରୁ ତାଙ୍କର ଏଥିରେ ଅଧିକ ଆଗ୍ରହ ହେଉଥାଏ ।

ମୁଁ ପଢ଼ିବାକୁ ଆରମ୍ଭ କରିବା ପୂର୍ବରୁ ମହାପାତ୍ରେ କହିଲେ, ସେ ଦିନ ଯେଉଁ ସ୍ତ୍ରୀଲୋକଟି ପୁରୁଣି ଏ ଖାଇବାକୁ ଏଠାରେ ଆସି ପହଞ୍ଚିଥିଲା, ତା'ଠାରେ ଏତେ ସାହିତ୍ୟିକ ପ୍ରତିଭା ଥିବାର କିଏ କେମିତି ଅନୁମାନ କରନ୍ତା କହିଲ !'

ନାୟକେ ଜବାବ ଦେଲେ, 'ହିଁ, ସାହିତ୍ୟିକ ପ୍ରତିଭା ଯା'ଠାରେ ତା'ର କୋଠା, ମଟରଗାଡ଼ି, ବ୍ୟାଙ୍କରେ ମହଜୁଦ୍ ଟଙ୍କା ଥିବାର ଗୃହ, ନା ?'

ସମସ୍ତେ ହସିଲେ । ଦାସେ କହିଲେ, 'ସାହିତ୍ୟିକ ପ୍ରତିଭା ତାହାଠାରେ ଯେ ନାହିଁ ତାହା ନୁହେଁ ; କିନ୍ତୁ ବାରିବାବୁ ଯାହା ପଢ଼ୁଛନ୍ତି ତାହା ସଂପୂର୍ଣ୍ଣ ତାହାର କୃତି ନୁହେଁ । ସେ ପ୍ରତିଦିନ ଯାହା ଲେଖୁଛି ତାହା ଆମ ଘରେଇ ବଗିଚାରେ ଆଗ କାଟଛାଁଟ ହେଉଛି ; ତା'ପରେ ତାହା ଆସି ପଡ଼ୁଛି ବାରିବାବୁଙ୍କ ହାତରେ । ସାହିତ୍ୟିକ ରୂପଟା ଦେଉଛନ୍ତି ବାରିବାବୁ । ଅନୁଭୂତି ତାହାର, ଭାଷାରେ ରୂପାୟନ ବାରିବାବୁଙ୍କର ।'

ମହାପାତ୍ରେ କହିଲେ, 'ଆଉ ସାଂସ୍କୃତିକ ସମୀକ୍ଷା ଆମ ଭାଉଜଙ୍କର । ଏହା ତେବେ ଗୋଟିଏ ସମବାୟିକ ଉଦ୍ୟମ !'

ପଣ୍ଡିତ ମିଶ୍ର କବାଟଙ୍କ ଅଧୀରତା ଲକ୍ଷ୍ୟ କରି ବାହିନୀପତିଏ କହିଲେ, 'ଚକୁଳି ଖାଇବା ଛାଡ଼ି ବନ୍ଧ ଗଣି ଲାଗିଛ କାହିଁକି ? ଆଗ ପଢ଼ାଟା ସରିଯାଉ ।'

କାଲି ଯେଉଁଠାରେ ରହିଥିଲି ମୁଁ ସେଇଠାରୁ ଆରମ୍ଭ କଲି :

''ପ୍ରଧାନମନ୍ତ୍ରୀଙ୍କ ସେକ୍ରେଟାରୀ ତହିଁଆରଦିନ ସାଢ଼େ ଦଶଟାବେଳେ ଆସି ପହଞ୍ଚିଗଲେ । ତାଙ୍କ ସଙ୍ଗେ ୧୦।୧୨ ଜଣ ଲୋକ—ଅଫିସର ହେବେ ବୋଲି ଅନୁମାନ କଲି—ଆସି ଘରର ଆସବାବ ପତ୍ର ବନ୍ଦୋବସ୍ତ କରି ନେବାକୁ ଆଡ଼େଇଲେ । ଯେ ଯାହା ଦେଲା ମେମ୍ ସାହେବ ତାହା ବିନା ବାକ୍ୟବ୍ୟୟରେ ଗ୍ରହଣ କରୁଥାନ୍ତି । ଏଇ ଅବସରରେ ପ୍ରଧାନମନ୍ତ୍ରୀଙ୍କ ସେକ୍ରେଟାରୀ କହିଲେ, 'ଆପଣଙ୍କର ଦୁଇଖଣ୍ଡ ମଟର ଗାଡ଼ି ଅଛି ମୁଁ ଜାଣେ । ଦୁଇଖଣ୍ଡ ଯାକ ଦେଇଦେବେ ନା ଖଣ୍ଡେ ରଖିବେ ?'

ମେମ୍ ସାହେବ ତାଙ୍କ ଆଡ଼କୁ ଶୂନ୍ୟ ଦୃଷ୍ଟିରେ ଚାହିଁଲେ । ମୁଁ ଲକ୍ଷ୍ୟ କଲି ସତେ ଯେମିତି ତାଙ୍କ ପାଟିରୁ ନାଳ ଗଡ଼ି ପଡ଼ୁଥାଏ । ବୋଧହୁଏ ଖଣ୍ଡିଏ ମଟର ପୁରସ୍କାର ପାଇଯିବା ଲୋଭରେ ସେ ଆମକୁ ସାହାଯ୍ୟ କରିବାରେ ଏତେ ଆଗ୍ରହୀ ହୋଇପଡ଼ିଥାନ୍ତି । ମେମ୍ ସାହେବ ତାଙ୍କ ଏ ପ୍ରଶ୍ନର ଉତ୍ତର ନ ଦେଇ ପଚାରିଲେ, 'ପାଗଳା ଗାରଦକୁ ଆମକୁ ନେବା କଥା ପାସୋର ଦେଲେ କି ?' ସେକ୍ରେଟାରୀ ସାହେବ ଉତ୍ସୁକ ହୋଇ ଉତ୍ତର ଦେଲେ, 'ଅପରନ୍ତୁ ମୁଁ ପ୍ରଧାନମନ୍ତ୍ରୀଙ୍କ ନିଜ ଚଠି କାଗଜରେ ଚଠି ଲେଖି ସୁପରିନ୍‌ଟେଣ୍ଡେଣ୍ଟଙ୍କୁ ଜଣାଇ ଦେଇଛି ଯେ ସେ ୧୨ଟା ବେଳେ ଆମକୁ ପ୍ରତୀକ୍ଷା କରିବେ ଓ ଆମର ଯାହା ଦରକାର ତାହା କରିବାକୁ ଚେଷ୍ଟିତ ହେବେ । ବାରଟା ଯାଏଁ ଆପଣଙ୍କ ଆସବାବ୍ ପତ୍ର ପାର କରିବାରେ ଲାଗିବ ବୋଲି ଟେଲିଫୋନ ସାହାଯ୍ୟରେ କାଲି ଅଧରାତି ଯାଏ ବିଭିନ୍ନ ଲୋକଙ୍କୁ ଜଣାଇ ଦେଇଥିଲି । ଆଉ ଘଣ୍ଟାକ ଭିତରେ ଅଧାଅଧି ଜିନିଷ ଚାଲିଯିବ, ବାକି ଯାହା ରହିବ ଆପଣ ଫେରିବା ପରେ ବୁଝିବା ।'

ମେମ୍ ସାହେବ କହିଲେ, 'ମୋତେ ଅପେକ୍ଷା କରିବାର ପ୍ରୟୋଜନ ନାହିଁ । ଆପଣ-ଙ୍କର ଜଣେ ବିଶ୍ୱସ୍ତ ଲୋକଙ୍କୁ ଆପଣ ଘର ଦେଖାଇଦିଅନ୍ତୁ । ସେ ଯାହା ବନ୍ଦୀ କରିବେ ତା'ର ଦାମ ତାଲିକାଟା ମୋତେ ଦେଇଦେଲେ ଯଥେଷ୍ଟ । ତାଙ୍କୁ କିଛି ପାରିଶ୍ରମିକ ବି ଦେବାକୁ ମୁଁ ପ୍ରସ୍ତୁତ ।'

ପାରିଶ୍ରମିକ କଥା ସତେ ଯେପରି ସେ ସ୍ୱପ୍ନରେ ଶୁଣି ନ ଥିବ ଭାବିଥିଲି ପରି କହିଲେ, 'ନା, ନା, ପାରିଶ୍ରମିକ କଥା ଆପଣ ମନକୁ ବି ଆଣନ୍ତୁ ନାହିଁ । ଆପଣଙ୍କୁ ସାହାଯ୍ୟ କରିବା ଆମର କର୍ତ୍ତବ୍ୟ । ପ୍ରଧାନମନ୍ତ୍ରୀଙ୍କର ବି ତାହାହିଁ ଇଚ୍ଛା ।' ମେମ୍ ସାହେବ କିଛି ଜବାବ ନ ଦେଇ ଘୃ'ର ବ୍ୟବସ୍ଥା କରିବାକୁ ଉଠିଗଲେ । ମୁଁ ଭଦ୍ର ଲୋକଟି ସଙ୍ଗେ ଏକୁଟିଆ ରହି-ଗଲାରୁ ଟିକିଏ ବିବ୍ରତ ହୋଇ ଉଠିଗଲାକୁ ଆଳ ଖୋଜୁଛି, ସେ କହିଲେ, 'ଆପଣ ମେମ୍ ସାହେବଙ୍କର ଜନ୍ମିତ ଭଉଣୀ, ନା ସମ୍ପର୍କୀୟା ?' ମୁଁ କିଛି ଉତ୍ତର ନ ଦେଇ ମୁହଁକୁ ତଳକୁ କରି ବସି ରହିଲି । କିଛି ସମୟ ପରେ ସେ ପୁଣି କହିଲେ, 'ଏକାନ୍ତରେ ମୁଁ ଆପଣଙ୍କ ପରିଚୟ ପଚାରିବାଦ୍ୱାରା ଯେଉଁ ଅସୌଜନ୍ୟ କରିଛି, ସେଥିପାଇଁ କ୍ଷମା ମାଗୁଛି ।' ଏଥର ବି ମୁଁ କିଛି ଉତ୍ତର ଦେଲି ନାହିଁ । ଅଳ୍ପ ସମୟ ଭିତରେ ମେମ୍ ସାହେବ ଫେରି ଆସିଲେ ଓ କହିଲେ, 'ମୁଁ ମଟର ମଗାଇ ନେଇଛି । ଘୃ ଟିକିଏ ଖାଇବା ପରେ ବାହାରିପଡ଼ିବା । ବାରଟାକୁ ଆଉ ମାତ୍ର ୧୫ ମିନିଟ୍ ବାକି ଅଛି ।'

ବାରଟା ବାଜିବାକୁ ୨।୩ ମିନିଟ୍ ଥାଇ ଆମେ ପାଗଳା ଗାରଦର ଫାଟକ ପାଖରେ ଯାଇ ପହଞ୍ଚିଲୁ । ସତକୁ ସତ ସୁପରିଣ୍ଟେଣ୍ଡେଣ୍ଟ ଫାଟକର ଅଳ୍ପ ଦୂରରେ ଜଣେ ଆମର ପ୍ରତୀକ୍ଷାରେ ଥାନ୍ତି । ଭାବୀଙ୍କ ବିଷୟ ପଚାରିବାରେ ସେ କହିଲେ, 'ହଁ, ମୁଁ ଜାଣେ । ବଡ଼ ସାହେବ ତାଙ୍କୁ ଆଣି ଏଠାରେ ୧।୧୨ ଦିନ ତଳେ ଛାଡ଼ି ଯାଇଛନ୍ତି । ତାଙ୍କର ନାମ ସେ କହି ନାହାନ୍ତି, କି ରୋଗିଣୀ ବି କିଛି କହୁ ନାହାନ୍ତି । ମୁଁ ଯେତେଦୂର ପରୀକ୍ଷା କରିଛି, ସେ ପାଗଳ ନୁହନ୍ତି, ମନରେ ଖୁବ୍ ଚୋଟ ଲାଗିଗଲାରୁ ମୂକ ପାଲଟିଯାଇଛନ୍ତି । ମୋର ବିଶ୍ୱାସ, କିଛି ଦିନ ବିଶ୍ରାମ ପାଇଲେ ଓ ଟିକିଏ ଅନୁକୂଳ ପରିବେଶରେ ରହିଲେ ସେ ସୁସ୍ଥ ହୋଇ-ଯାଇପାରନ୍ତି ।'

ସେକ୍ରେଟାରୀ ସାହେବ ମେମ୍ ସାହେବଙ୍କ ସଙ୍ଗେ ଚୁପ ଚୁପ ପରାମର୍ଶ କରି କହିଲେ, 'ପ୍ରଧାନ ମନ୍ତ୍ରୀଙ୍କ ଇଚ୍ଛା, କିଛି ଦିନ ଏଇ ମେମ୍ ସାହେବଙ୍କ ସଙ୍ଗେ ତାଙ୍କୁ ରଖାଇବେ । ସମ ଦୁଃଖୀ ସଙ୍ଗେ ରହିଲେ ତାଙ୍କର ମାନସିକ ଅବସାଦ, ଲଘୁ ହୋଇଯାଇପାରେ । ଫଳ ନ ହେଲେ ପୁଣି ଆପଣଙ୍କ ପାଖକୁ ଆସିବୁ ।'

ମେମ୍ ସାହେବଙ୍କ ପରିଚୟ ପାଇ ସୁପରିନ୍‌ଟେଣ୍ଡେଣ୍ଟ ସାହେବ ସମବେଦନା ପ୍ରକାଶ କଲେ ଓ କହିଲେ, 'ପ୍ରଧାନମନ୍ତ୍ରୀଙ୍କ ଆଦେଶରେ ରୋଗିଣୀଙ୍କୁ ଛାଡ଼ିଦେବାରେ ମୋର ଆପତ୍ତି ହୋଇନପାରେ । ଆପଣ ଦୁହିଙ୍କୁ ଦୁଇଟା ଦସ୍ତଖତ ମାତ୍ର ଦେବାକୁ ହେବ ।'

ପାଞ୍ଚ ମିନିଟ୍ ଭିତରେ ମେମ୍ ସାହେବ ଓ ମୁଁ ଯାଇ ଭାବୀଙ୍କ କୋଠରୀ ଆଗରେ ଠିଆ ହେଲୁଁ । ସେ ତଳକୁ ମୁହଁ ପୋତି, ବସିଥିବା ଖଟର ଶେଯକୁ ଆଉଁସୁଥାନ୍ତି । 'ଭାବୀ' ବୋଲି

ମୁଁ ଡାକ ଦେବା ମାତ୍ରେ ସେ ଚମକି ପଡ଼ି ମୋତେ ଚାହିଁଲେ ଓ ଡେଇଁ ପଡ଼ିଲା ପରି ଖଟରୁ ଓହ୍ଲାଇ ଆସି ମୋତେ କୁଣ୍ଢାଇ ପକାଇଲେ । ତାଙ୍କ ଆଖିରୁ ଲୁହ ଗଡ଼ି ମୋର ଗ୍ରୀବା ଓଦା ହୋଇଗଲା । ମୋ ଆଖିରୁ ବି ଲୁହ ଗଡ଼ୁଥାଏ । ମେମ୍ ସାହେବଙ୍କ ଆଖି ମଧ୍ୟ ଛଳ ଛଳ ହୋଇଥାଏ ବୋଲି ପରେ ଲକ୍ଷ୍ୟ କଲି ।

ମୋ' ଠାରୁ ଆଖି ବୁଲାଇ ବାବା ଛନ୍ନ ଛନ୍ନ ହୋଇ ଘର ଆଡ଼କୁ ଚାହିଁଲେ । ତାଙ୍କ ଆଖିରେ ବ୍ୟସ୍ତତାର ଲକ୍ଷଣ ଦିଶୁଥାଏ । ପରେ ଠଉରାଇଲି, ସେ ସେଇ ବଡ଼ ସାହେବଙ୍କୁ ଖୋଜୁଥାନ୍ତି । ସେତେବେଳେ ଏକଥା ମନକୁ ଆସିଥିଲେ ତାଙ୍କୁ ଶୁଣାଇ ଦେଇଥାନ୍ତି । ତାଙ୍କୁ ଚୁମି ଚୁମି କରି ଆମ ନିଜ ଭାଷାରେ ଶୁଣାଇଦେଲି ଯେ ଆମ ପାଖରେ ଠିଆ ହୋଇଥିବା ମହିଳାଟି ଆମରି ପରି ଦୁଃଖୀ ; ହିନ୍ଦୁ ମୁସଲମାନଙ୍କ ଦଙ୍ଗାରେ ନିଜର ପତିଙ୍କୁ ହରାଇଛନ୍ତି ।

ଏହା ଶୁଣିବାମାତ୍ରେ ବାବା ମୋ ପାଖରୁ ଧୀରେ ଧୀରେ ମେମ୍ ସାହେବଙ୍କ ପାଖକୁ ଗଲେ ଓ ତାଙ୍କ ହାତ ଦୁଇଟିକୁ ନିଜର ଦୁଇ ହାତରେ ଧରି ନିଜର ମୁଣ୍ଡରେ ଓ ତା ପରେ ମେମ୍ସାହେବଙ୍କ ମୁଣ୍ଡରେ ଲଗାଇଲେ । ଦୁହେଁ ଯାକ ନୀରବ । ଏଥକରେ ଦୁଇଜଣଙ୍କ ଭିତରେ କଣ ଚିଠ ଟାଏ ବୁଝାମଣା ହୋଇଗଲା ଯେ ଦୁହେଁ ଯେତେ ଦିନ ଏକାଠି ରହିଲେ ପରସ୍ପର ସଙ୍ଗେ ଯୋଡ଼ି ହୋଇଗଲେ । ମୁଁ ଆଡେଇ ହୋଇ ରହି ଏ ଦୁଇଜଣଙ୍କୁ ତପସ୍ୱିନୀ ପରି ଭକ୍ତିପୂର୍ଣ୍ଣ ପୂଜା କରିବାରେ ଲାଗିଲି ।

ସୁପରିନ୍‌ଟେଣ୍ଡେଣ୍ଟ ସାହେବଙ୍କଠାରୁ ବିଦାୟ ନେଇ ଆମେ ଆମ ମଠର ପାଖକୁ ଆସିଲୁ । ମଠର ଭିତରେ ପ୍ରଧାନମନ୍ତ୍ରୀଙ୍କ ସେକ୍ରେଟାରୀ ବସିବାରେ ବାବାଙ୍କର ଅସ୍ୱସ୍ତି ଭାବ ପୁଣି ଦେଖାଗଲା । ମେମ୍ ସାହେବ ଏହା ଲକ୍ଷ୍ୟ କରିବାରୁ ଆମେ କୋଠିରେ ପହଞ୍ଚିବା ପରେ ବାବାଙ୍କୁ ମୋ ସଙ୍ଗେ ନିଜ କୋଠରୀକୁ ଛାଡ଼ିଦେଇ ମେମ୍ସାହେବ ବାହାର ବୈଠକ-ଖାନାରେ ସେକ୍ରେଟାରୀଙ୍କ ସଙ୍ଗେ କଥାବାର୍ତ୍ତା ହେବାକୁ ରହିଲେ ।

ବାବା ପ୍ରଥମେ କେତେବେଳ ମୋତେ କିଛି ନ କହି ଖାଲି ମୋର ମୁହଁରେ ଦେହରେ ହାତ ବୁଲାଉଥାନ୍ତି । ମୋର ଇଙ୍ଗିତରେ ମଲ୍ଲୀ ମା ଖାଇବା ଜିନିଷ ଆଣି ଦେଲା । ମୁଁ ତାହା ବାବାଙ୍କୁ ଖୁଆଇବାକୁ ଉଦ୍ୟତ ହେବାରେ ସେ ନ ଖାଇ ମୋତେ ଖୁଆଇବାକୁ ଲାଗିଲେ । ମୁଁ ଆପତ୍ତି ନ କରି ଖାଇଲି । ମୋର ମା ମନେପଡ଼ିବାରୁ ମୋ ଆଖିରୁ ଲୁହ ଗଡ଼ିବାର ଦେଖି ସେ ନିଜ ପଣତକାନିରେ ଆଖି ପୋଛିଦେଉଥାନ୍ତି । ଏଥକବେଳେ ମେମ୍ସାହେବ ଆସି ପହଞ୍ଚି ଆମ ଦୁଇ ଜଣଙ୍କୁ ଚାହିଁ ଟିକିଏ ଠିଆହେଲେ । ତାଙ୍କ ମୁହଁରେ ତୃପ୍ତିର ଆଭାସ ଲକ୍ଷ୍ୟ କଲି । ମୋର ଆପତ୍ତି ସତ୍ତ୍ୱେ ମୋତେ ଆଉ ଦି' ଗୁଣ୍ଡା ଖୁଆଇବା ପରେ ମୁଁ ଉଠି ଯାଇ ମୁହଁ ଧୋଇଲି । ମେମ୍ ସାହେବ ବାବାଙ୍କ ପାଖରେ ଆସି ବସିଲେ ଓ ସରବତ ମଗାଇ ଗ୍ଲାସେ ବାବାଙ୍କ ହାତକୁ ଦେଇ କହିଲେ, 'ତୁମେ ନ ପିଇଲେ ମୁଁ ପିଇବି ନାହିଁ ।' ବାବା କିଛି ନ କହିବାରେ ସେ ପୁଣି କହିଲେ, 'ଆଜିଠାରୁ ତୁମେ ଓ ମୁଁ ସବୁ ଦିନ ଏକ ସଙ୍ଗେ ଖାଇବା । ତୁମେ ନ ଖାଇଲେ, ମୁଁ ବି ଓପାସ ରହିବି ।' ବାବାଙ୍କ ମୁହଁରେ

ମୃଦୁହାସ ଦେଖାଦେଲା । ସେ ସରବତ୍ ଗ୍ଲାସକ ପିଇଲେ । ସେଇ ଦିନଠାରୁ ଏ ଦୁଇଜଣ ଖାଇବା ଶୋଇବା ସବୁ ବିଷୟରେ ଏକାନ୍ତ ସଙ୍ଗୀ ହୋଇଗଲେ ।

ଖିଆ ଶୋଇବା ପରେ ମେମ୍ ସାହେବ ମୋତେ ଡାକି ତାଡ଼ାଏ ନୋଟ୍ ଦେଲେ ଓ କହିଲେ, 'ଆମର ଦୁଇଟା ମଟରରୁ ଗୋଟାଏ ସେକ୍ରେଟାରୀଙ୍କୁ ଦେଇଦେଲି । ବିଚାରି ସେଇ ଲେଭରେ ଆମକୁ ସାହାଯ୍ୟ କରିଥିଲା । ମୋତେ ଦାମ୍ ପଚାରିଲା, ମୁଁ କହିଲି, ଆପଣଙ୍କର ଯେତିକି ଦେବାକୁ ମନ, ଦିଅନ୍ତୁ, ସେ ଏତିକି ଦେଇଛି ।'

ମୁଁ ଗଣିବାକୁ ଆରମ୍ଭ କରନ୍ତେ ସେ କହିଲେ, 'ଗଣିବା ଦରକାର ନାହିଁ । ବୃଥା ସମୟ ନଷ୍ଟ । ଏ ଟଙ୍କାତକ ସରିଲେ ଆମେ ବଞ୍ଚିବା ।' ଏତିକିବେଳେ ମଲ୍ଲୀମା ଆସି ଆଉ ବିଡ଼ାଏ ନୋଟ୍ ଦେଲା । ତାକୁ ବି ମେମ୍ ସାହେବ ମୋତେ ବଢ଼ାଇଦେଲେ । ବୁଢ଼ୀ କହିଲା, 'ଆଉ କେତେ ବାକୀ ରହିଛି ବୋଲି ସେ ବାବୁ କହିଲା । ଚାରିଟାବେଳେ ଆଣି ଦେଇଯିବ । ଆମର ସବୁତକ ଜିନିଷ ଚାଲିଯିବାରୁ ଘରଟା ଖାଁ ଖାଁ କରୁଛି ।'

ମେମ୍ ସାହେବ କହିଲେ, 'ସବୁ ତ ଖାଁ ଖାଁ କରୁଛି, ଘରଟା କାହିଁକି ବାକୀ ରହିବ ? ସେକ୍ରେଟାରୀଙ୍କୁ କହିଛି, ସେ ଦୁଇଜଣ ଜହ୍ରୁରି ଆଣି ଅଳଙ୍କାରଗୁଡ଼ାକ ବିକ୍ରୀ କରିଦେବାର ବ୍ୟବସ୍ଥା କରିବେ । ସାମାନ୍ୟ କିଛି ତାରା ପାଇଁ ରଖି ବାକୀ ସବୁତକ ଦେଇଦେବା ।'

ମୁଁ କହିଲି, 'ମେମ୍ ସାହେବ ! ମୋର କିଛି ଅଳଙ୍କାର ଦରକାର ନାହିଁ । ମୋ ପାଇଁ କିଛି ରଖ ନାହିଁ ।'

ବିରକ୍ତ ହୋଇ ମେମ୍ ସାହେବ କହିଲେ, 'ଅଳଙ୍କାର କଥାରେ ତୋ'ର ମୁଣ୍ଡ ଘୂରାଇବା ଦରକାର ନାହିଁ ; କିନ୍ତୁ ଗୋଟିଏ କଥାକୁ ସାବଧାନ ! ତାରା, ଆଉ ଦିନେ ମୋତେ ମେମ୍ ସାହେବ ବୋଲି କହିବୁ ନାହିଁ । ସେ ବେଳ ଯାଇଛି । ମୁଁ ତୋର ଦିଦି । ମୋତେ ଦିଦି ବୋଲି ଡାକିବୁ ଓ ଦିଦି ପରି ମାନିବୁ, ଜାଣିଥା ।' ମୁଁ କାନ୍ଦି କାନ୍ଦି ହୋଇ କାନ୍ଧ ତାଙ୍କୁ କୁଣ୍ଢାଇ ପକାଇଲି । ସେ ମୋ ମୁଣ୍ଡରେ ହାତ ବୁଲାଉ ବୁଲାଉ କହିଲେ. 'ତୋର ସୁଖ ଦେଖିପାରିଲେ, ମୋର ମନ ବହୁତ ଶୀତଳ ହେବ ।' ଖିଆ ମୋ ଆଡ଼କୁ ସନ୍ତୋଷରେ ଚାହିଁଲେ, କହିଲେ. 'ମୋର ମଧ୍ୟ ସେଇ କାମନା ।' ମଣିଷର କାମନା ! ମୋର ଭବିଷ୍ୟତ ପାଇଁ ଏତେ ଯନ୍ତ୍ରଣା, ଏତେ ଦହଗଞ୍ଜ ଥିଲା ବୋଲି ସେମାନେ ଜାଣନ୍ତେ କିଅଁ ? ଖିଆ ୯ ଦିଦିଙ୍କ ପାଖରେ ଅଲିଅଳି ଝିଅ ହୋଇ ଚଳିବାବେଳେ କିନ୍ତୁ ମୋ ମନରେ ସବୁବେଳେ ଆଶଂକା ଥାଏ, ମୋ ପରି ଅଲକ୍ଷଣୀର ଏତେ ସୁଖ ଭାଗ୍ୟଦେବତା ସହିବ ନାହିଁ ।

ଯାହାହେଉ, ଜେଠା ମରିବା ଦିନୁ ମୂକ ହୋଇଯାଇଥିବା ଖିଆଙ୍କ ତୁଣ୍ଡରୁ ଚାରିପଦ କଥା ଶୁଣି ମୋ'ର ପେଟ ପୂରିଗଲା । ମୁଁ ତାଙ୍କ ସଙ୍ଗେ କଥାବାର୍ତ୍ତା ହେବାକୁ ଚେଷ୍ଟା କଲି । ମୋ ବିଷୟରେ ସେ କ'ଣ ପଚାରି ବୁଝିବେ ବୋଲି ଆଶା କରି ରହିଲି । କିନ୍ତୁ ତୁନି ହୋଇ ରହିବା ଖିଆଙ୍କର ଅଭ୍ୟାସ ହୋଇଯାଇଥାଏ ପରା ! ଦିଦିଙ୍କ ସଙ୍ଗେ ଖାଲି ଚାହାଁଣିରେ ତାଙ୍କର କଥାବାର୍ତ୍ତା ହେଉଥାଏ ; ଉଭୟେ ଅଧିକାଂଶ ସମୟ ତୁନି ହୋଇ ରହନ୍ତି ।

ମଝିରେ ମଝିରେ ବାବା ମତେ ପଦେ ଦ'ପଦ କହୁଥାନ୍ତି, ଖୁଡ଼ୀ ପ୍ରାୟ ସବୁବେଳେ ସନ୍ତୋଷପୂର୍ଣ୍ଣ ଦୃଷ୍ଟିରେ ମୋତେ ଟିକିଏ ଚାହୁଁଥାନ୍ତି ମାତ୍ର । ଦିନକେ ପଦେ ଦ'ପଦରୁ ଅଧିକ କଥା ତାଙ୍କ-ଠାରୁ ମିଳେନାହିଁ ।

ସାହେବଙ୍କ ମରିବାର ଚତୁର୍ଥ ଦିନ ସଂଧ୍ୟାରେ ବାବା ମୋତେ କହିଲେ, 'ତାରା ! କାଲି ସକାଳୁ ଆମେ ଏଠା ଛାଡ଼ିବା । ମୋ'ର ଲୁଗାପଟା ସବୁ ତ ଧୂଆ ହୋଇ ସାରିଲାଣି । ମୋର ଛେଦା ଶାଢ଼ୀ ୩ ଖଣ୍ଡ ଓ ଖୁଡ଼ୀଙ୍କର ୩ ଖଣ୍ଡ, ବ୍ଲାଉଜ ଦୁଇ ଚାରିଟା ଗୋଟିଏ ଛୋଟିଆ ସୁଟ୍‌କେସ୍‌ରେ ରଖିଦେବୁ । ତୋର ଲୁଗାପଟା, ପଇସା ଓ ଜିନିଷ ପତ୍ର ଗୋଟିଏ ଟ୍ରଙ୍କରେ ରଖିବୁ ; ବୁଢ଼ୀକୁ ଗୋଟିଏ ଭଲ ଟ୍ରଙ୍କ ଓ କେତେଖଣ୍ଡ ଶାଢ଼ୀ ଦେବୁ । ତାଙ୍କ କାଠର ବାଧବା ବ ଶାଢ଼ୀ ପିନ୍ଧୁଛନ୍ତି । ଆମେ ଯିବା ଆମ ମଟରରେ । ଡ୍ରାଇଭରକୁ କହିଛି, ସେ ଆମକୁ ହରଦ୍ୱାରରେ ଛାଡ଼ିଦେଇ ମଟରଟି ନେଇ ଚାଲିଆସିବ । ତା'ର ମନ ସେ ଆମ ପାଖରେ ରହନ୍ତା । କିନ୍ତୁ ଆମର ଏଡ଼େ ବଡ଼ ମଟର କ'ଣ ଦରକାର ? ମୁଁ ସ୍ୱାମୀଙ୍କ ଘରକୁ ଆଗ ହୋଇ ଏଇ ମଟରରେ ଆସିଥିଲି, ଯିବି ଏଇଥିରେ ; ବେଶ୍ ସେତିକି । ଡ୍ରାଇଭର ବିଚାରା ଏ ଖଣ୍ଡି ଟ୍ୟାକ୍‌ସି କଲେ ଜୀବନ ତମାମ ଚଳିଯିବ । ଆମେରିକାନ୍ ହଡ଼୍‌ସନ୍ ଗାଡ଼ି, ନୂଆ ପରି ରହିଛି । ଏଖଣ୍ଡ ବିକିଦେଲେ ବି ଦ'ଖଣ୍ଡ ଦେଶୀ ମଟର କିଣିପାରିବ । ବିଦା କଲାବେଳେ ତାକୁ କିଛି ଟଙ୍କା ବି ଦେବା । ସାହେବଙ୍କ ପାଖେ ବହୁତ ଦିନରୁ ରହିଛି ।'

ତହିଁ ଆର ଦିନ ନିର୍ଦ୍ଦିଷ୍ଟ ସମୟରେ ଯାଇ ହରଦ୍ୱାରରେ ପହଞ୍ଚିଲୁ । ଡ୍ରାଇଭରର ଚେଷ୍ଟାରେ ଗୋଟିଏ ସୁନ୍ଦର ଭଡ଼ାଘର ଗଙ୍ଗାମାତାଙ୍କ କୂଳରେ ଅତି ଅଳ୍ପ ସମୟ ଭିତରେ ମିଳିଗଲା । ଭଡ଼ା ଖୁବ ବେଶୀ । କିନ୍ତୁ ବାବା କହିଲେ, 'ସେଥିକୁ ଚିନ୍ତା ନାହିଁ । ଆମେ ତ ବେଶୀଦିନ ଏ ଘରେ ରହିବା ନାହିଁ । ଦଶାହ କାର୍ଯ୍ୟ ସରିଲେ ଆମେ ହୃଷୀକେଶ ବା ଅନ୍ୟ କୌଣସି ଆଶ୍ରମରେ ରହିବା । ବର୍ତ୍ତମାନ ପ୍ରଥମ କାର୍ଯ୍ୟ ମୋ ବାବାଙ୍କୁ ଯାଇ ବାହାର କରିବା । ତାଙ୍କ ସଙ୍ଗେ ମୋର ବହୁତ କାମ । ପେନ୍‌ସନ୍ କାଗଜଟା ତାଙ୍କ ନାମରେ ଟ୍ରାନ୍‌ସ୍‌ଫର କରିବାକୁ ହେବ । ଶୁଭଘରେ ସେ ମଧ୍ୟ ମୋ ସଙ୍ଗେ ମିଶିବା ଦରକାର ।'

ସାହେବଙ୍କଠାରୁ ପ୍ରତିମାସ ଆରମ୍ଭରେ ତାଙ୍କ ପାଖକୁ ୩ ଶହ ଟଙ୍କା ଖୁରାକ ପୋଷାକ ଆସେ । ଯେଉଁ ଠିକଣାରେ ଟଙ୍କା ଆସେ, ସେଇ ଠିକଣାରେ ଯାଇ, ପହଞ୍ଚିବା ଦିନ ଓପରଓଳି ଅନୁସନ୍ଧାନ କଲୁଁ । କିନ୍ତୁ ସେ ଠିକଣାରେ କେହି ନ ଥାନ୍ତି । ଘର ଖାଲି । ପାଖ ପଡ଼ିଶାରେ ପଚାରି ପଚାରି କରି ଘରର ମାଲିକଙ୍କ ପାଖେ ଯାଇ ପହଞ୍ଚିଲୁ । ବାବା ତାଙ୍କୁ ତାଙ୍କ ସହଭୁଣୀଙ୍କ ଖବର ପଚାରିବାରେ ସେ କହିଲେ, 'ଆପଣଙ୍କର ଯଦି କିଛି ଖବର ଦେବାର ଅଛି ତେବେ ଆପଣ ଦେଇ ଯା'ନ୍ତୁ, କିନ୍ତୁ ତାଙ୍କ ସଙ୍ଗେ ବର୍ତ୍ତମାନ ଦେଖା ହେବ ନାହିଁ ।' ବାବା ତାଙ୍କୁ ବିଶେଷ ଅନୁନୟ ବିନୟ କଲେ, ଗୁରୁତର ଖବର ତାଙ୍କୁ ଦେବାକୁ ଅଛି ବୋଲି କହିଲେ, ତାଙ୍କ ସଙ୍ଗେ ଦେଖା କରାଇଦେଲେ ଘର ମାଲିକଙ୍କୁ ପୁରସ୍କାର ଦେବେ ବୋଲି ପ୍ରଲୋଭନ ଦେଖାଇଲେ ଓ ତାଙ୍କର କୌଣସି ଘର ଖାଲି ଥିଲେ ଭଡ଼ାରେ ରହିବେ ବୋଲି କହିଲେ । ସ୍ୱାମୀଙ୍କ ପ୍ରଲୋଭନରେ ନୁହେଁ, ସ୍ୱାମୀଙ୍କ ବିକଳଭାବ ଦେଖି ଚୌଧୁରୀଙ୍କ ହୃଦୟ

ଟିକଏ ତରଳିଲା ବୋଧହୁଏ । ସେ ବଦଦଙ୍କ ମୁହଁକୁ ଚାହିଁ, ମୋ ମୁହଁକୁ ଚାହିଁ ଟିକଏ ଇତସ୍ତତଃ ହୋଇ କହିଲେ 'ମା ! ସେ ସ୍ତ୍ରୀଲୋକଟାକୁ ଖୋଜ ନାହିଁ । ସେ ବିଧବା ହେବ ନାହିଁ କି ତୁମ ସ୍ୱାମୀଙ୍କ ଶୁଙ୍କଘରେ ଯୋଗ ଦେବ ନାହିଁ । ସେ ଏଠାରେ ଗୋଟାଏ ଲୋକକୁ ଧରି ରହିଛି । ଆଗେ ଏଇ ଘରେ ଥିଲେ । ବର୍ତ୍ତମାନ ଘରର ଭଡ଼ା ବଢ଼ିଯିବାରୁ ବଡ଼ କଷ୍ଟରେ ତାଙ୍କୁ ଉଠାଇ ଗୋଟିଏ ଗ୍ରେଟ ଘରେ ରଖାଇଛି । ତା'ର ଖୋରାକ ଟଙ୍କା ଆସିବାର ଖବର ପାଇଲେ ସେ ଏ ଠିକଣାକୁ ଆସି ମନିଅର୍ଡର ନିଏ । ତା'ପରେ ଚାଲିଯାଏ । ଏଥର ତ ଟଙ୍କା ବନ୍ଦ ହୋଇଯିବ, ସେ ଚଳିବ କେମିତି ? ଯେ ତାକୁ ରଖିଛି, ସେ ତ ତା' ଟଙ୍କା ପାଇଁ ରଖିଛି । ଅଳ୍ପ ଦରମା ପାଇବା ଚାକିରିଆଟାଏ, ସ୍ୱାମୀର ଟଙ୍କାଯୋଗୁଁ ପିଲାପିଲିଙ୍କୁ ଚଳାଇ-ନେଉଥିଲା ।'

ବଦଦ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, 'ତେବେ ସେ ଲୋକଟିର 'ଭାର୍ଯ୍ୟା ଓ ପିଲାପିଲି ବି ଅଛନ୍ତି ।'

ଚୌଧୁରୀ ପାଲୁଆ ପାଟିରେ ହସି ହସି କହିଲେ, ଭାର୍ଯ୍ୟା ବୋଲି କ'ଣ ବେଦୀରେ ହାତ ଗଣ୍ଠି ପଡ଼ି ଭାର୍ଯ୍ୟା ହେବା କଥା କହୁଛନ୍ତି ? ସ୍ୱାଙ୍କର ଆଉ ସେପରି ଭାର୍ଯ୍ୟା ଦରକାର କଣ ? ଏଇ ମାଇକିନିଆ ଆଉ ୨ଟା ପିଲା ହେଲେଣି, ଆଉ ଗୋଟାଏ ହେବ କି ହେଲାଣି କେଜାଣି ? ଆପଣ ସ୍ୱା କଥା ପାସୋରି ଦିଅନ୍ତୁ, ନିଜ କାମରେ ନିଜେ ଯାନ୍ତୁ ।'

ବଦଦ ଶହେଟଂକିଆ ନୋଟ୍ ଖଣ୍ଡିଏ ଚୌଧୁରୀଙ୍କ ଆଗରେ ଥୋଇ କହିଲେ, 'ଆପଣ ଆମ ପାଇଁ ଯେଉଁ ପରିଶ୍ରମ କଲେ ସେଥିକୁ ଏ କିଛି ନୁହେଁ । ଅନୁଗ୍ରହ କରି ବଦଦଙ୍କୁ ଖବର ଦେବେ, ସେ ମୋ ସଙ୍ଗେ ଟିକଏ ଦେଖା କରିବେ ।' ଏହା କହି ଯେ ଆମେ ଭଡ଼ା ନେଇ-ଥିବା ଘରର ଠିକଣା ଖଣ୍ଡେ କାଗଜରେ ଲେଖିଦେଲେ ।

ଚୌଧୁରୀ ଶହେ ଟଂକିଆ ନୋଟ ଖଣ୍ଡ ଚଉତୁ ଚଉତୁ କହିଲେ, 'ମା ! ତୁମର ମୁଁ କିଛି କାମ କରି ନାହିଁ ; ତୁମ ବଦଦଙ୍କୁ ତୁମ ଠିକଣା ଦେଲେ ତୁମର ଭଲ ହେବା ଅପେକ୍ଷା ମନ୍ଦ ହେବାର ଆଶଂକା ଅଧିକ । ମୋର ତୁମ ଟଙ୍କା ନେବାର ନୁହେଁ, କିନ୍ତୁ ରୋଗ ତ ଖାଉଛି ।'

ରୋଗ ନାମ ଶୁଣି ବଦଦଙ୍କ ମନରେ ଦୟା ହେଲା । ବୋଧହୁଏ ଆଉ ଦେବାକୁ ବିଚାରି ସେ ଅନୁକଂପାରେ ପଚାରିଲେ, 'ରୋଗ ! କି ରୋଗ ? ଚୌଧୁରୀ ହସି ହସି କହିଲେ, 'ଏ ଦେହକୁ ମାମୁଲି ରୋଗ ଛୁଇଁ ପାରିବ ନାହିଁ । ମନର ରୋଗ, ମା ! ମନର ରୋଗ ! ଶହେ ଟଙ୍କା ତ ବଡ଼ କଥା, ଦଶଟଂକା ନୋଟ୍ ଖଣ୍ଡେ, ମଇଳାରେ ପଡ଼ିଥିଲେ ବି ଗୋଟେଇ ନେବାକୁ ମୁଁ ପଛାଏ ନାହିଁ ।'

ବଦଦ ବିପନ୍ନ ମନରେ ମୋ ସଙ୍ଗେ ମଟରକୁ ଆସିଲେ ; ନିଜ ମନକୁ ମନ କହିଲା ପରି କହିଲେ, ସ୍ତ୍ରୀ ଲୋକର ମନ ଦେବତାମାନେ ବି ଜାଣିପାରନ୍ତି ନାହିଁ ବୋଲି ପୂର୍ବରୁ ଲେଖା ହୋଇ ରହିଛି । ଓଲିଆ ଗାଈଙ୍କ ପରି ବାଡ଼ ଡେଇଁବାର ପ୍ରବୃତ୍ତି ତେବେ କ'ଣ ସମସ୍ତଙ୍କର ଅଛି ? ପ୍ରଥମ ଯୌବନରେ ଓଲିଆ ହୋଇ ଏବେ ମୁଁ ଖୁଣ୍ଟମୂଳେ ବନ୍ଧା ନ ହୋଇ

ଣ, ଠିଆ ହେବାକୁ ତିଆର, ଆଉ ଦାଦା, ପ୍ରଥମ ଯୌବନରେ ସମାଜର ନିଗଡ଼ରେ ବନ୍ଧି, ପିଞ୍ଜରରେ ବାଡ଼ ଡେଇଁ ଚାଲିଯାଇଛନ୍ତି । ତଥାପି ତାଙ୍କ ସଙ୍ଗେ ମୋର ଦେଖା ହେବା ଦରକାର । ହୁଏତ ମୋଦ୍ୱାରା ତାଙ୍କର କିଛି ଉପକାର ହୋଇପାରେ ।' ମୁଁ କିଛି ନ କହି ତୂନୀ ହୋଇ ତାଙ୍କ ପାଖରେ ବସିଥାଏ । ଏ ବିଷୟରେ ମୋର କହିବାକୁ କିଛି ନ ଥାଏ ।

ଦଶାହ ଦିନ ପାଇଁ ଦାଦା ଭାରି ଆୟୋଜନ କରିଥାନ୍ତି । ହରଦ୍ୱାରରେ ଯେତେ ସାଧୁ ସନ୍ଥ ସମସ୍ତଙ୍କୁ ନିମନ୍ତ୍ରଣ ହୋଇଥାଏ । ଦୁଃଖୀ ରଙ୍କୀ ମଧ୍ୟ ବହୁତ ଜମିବେ ବୋଲି କଳନା କରି ଦଶହଜାର ଲୋକଙ୍କ ପାଇଁ ପୁରି, କଚୋଡ଼ି ଓ ହାଲୁଆର ବନ୍ଦୋବସ୍ତ ହୋଇଥାଏ । ଜଣେ ପଣ୍ଡା, ଜଣକୁ ଦେଢ଼ଟଙ୍କା ରେଟ୍‌ରେ ପନ୍ଦର ହଜାର ଟଙ୍କା ନେଇ ଏ ବନ୍ଦୋବସ୍ତ କରି-ଦେବେ ବୋଲି ଭାର ନେଇଥାନ୍ତି । ଆମେ ଯେଉଁ ପ୍ରକାଣ୍ଡ ଘରେ ଥାଉ, ତହିଁରେ ୩୦ଟା ପର୍ଯ୍ୟନ୍ତ ଚୁଲି ଲଗି ଖାଦ୍ୟ ସାମଗ୍ରୀ ତିଆର ହେଉଥାଏ । ଏହା ବାହାରେ ପ୍ରାୟ ୧୦ ହଜାର ଟଙ୍କାର ଲୁଗା କମ୍ବଳ ଆସି ଗୋଟାଏ ଘରେ ଜମା ହୋଇଥାଏ । ବ୍ରାହ୍ମଣମାନଙ୍କୁ ଦକ୍ଷିଣା ଦେବାରେ ପାଞ୍ଚହଜାର ଖର୍ଚ୍ଚ ହେବ ବୋଲି ଅଟକଳ ହୋଇଥାଏ ।

ଦଶାହ ଦିନ ପ୍ରାୟ ଏଗାରଟା ବେଳ, ଦାଦା ଗଙ୍ଗାଦ୍ୱାରକୁ ଯିବାକୁ ପ୍ରସ୍ତୁତ ହେଉ-ଥାନ୍ତି । ଭାବୀ ଓ ମୁଁ ମଧ୍ୟ ତାଙ୍କ ସଙ୍ଗେ ଯିବାକୁ ତିଆର ହେଉଥାଉ । ମଲ୍ଲୀମା ସଁ ସଁ ହୋଇ ଦାଦାଙ୍କ ପାଖକୁ ଆସି କହିଲା, 'ମା, ବଡ଼ମା ! ଗୋଟାଏ କିଏ ତାଙ୍କୁ ସାଙ୍ଗରେ ଆଣି ଏ ଘର ଭିତରେ ଗୁଞ୍ଜିଦେଇ ବାହାରେ ଟହଲ କରୁଛି । ତାଙ୍କୁ ଡାକିବି ?'

ଦାଦା କହିଲେ, 'ସାଙ୍ଗେ ସାଙ୍ଗେ ଡାକି ନ ଆଣି, ମୋତେ ପଚାରିବାକୁ ଆସିଛୁ କ'ଣ ମ ?' ମଲ୍ଲୀମା ଚାଲିଗଲା । ମୁଁ ବି ସେ ଘରୁ ଉଠି ଉପର ମହଲାର ବାରଣ୍ଡାକୁ ଗଲିଭାରି ଏ ଦୁହିଙ୍କ କଥାବାର୍ତ୍ତା ବେଳେ ପାଖରେ ରହିବା ଉଚିତ ହେବ ନାହିଁ ବୋଲି ଭାବି । ଭାବୀ ସେତେବେଳକୁ ଗୋସଲଖାନାକୁ ଯାଇଥାନ୍ତି ।

ମୁଁ ବାରଣ୍ଡାରେ ବୁଲି ବୁଲି ତଳେ ପଇଁତରା ମାରୁଥିବା ଜଣେ ଲୋକ ଉପରେ ଦୃଷ୍ଟି ପଡ଼ିଯିବାରେ କାବାକାଠ ହୋଇଗଲି । ଏ ତ ପ୍ରଧାନମନ୍ତ୍ରୀଙ୍କ ସେଇ ସେକ୍ରେଟାରୀ ଯେ ଆମକୁ ପାଗଲାଖାନାକୁ ନେଇଥିଲେ, ଦାଦାଙ୍କର ସବୁ ଜିନିଷପତ୍ର ବିକାଇ ଦେଇଥିଲେ, ତାଙ୍କ ସାନ ମଟରଟା ନେଲେ । ଘର ଭିତର ଆଡ଼କୁ ପଶି ଆସି ପୁଣି କୌତୂହଳୀ ହୋଇ ଚାହିଁଲା । କିନ୍ତୁ ସେ ତ ଥିଲେ ଦେଖିବାକୁ ଫର୍ସା ଫିଟ୍‌ଫାଟ୍ ; ଆଉ ଏହି କାଳିଆ, ଲୁଗା ପଟାର ପରିପାଟୀ ନାହିଁ, ମୁହଁର ଚେହେରାରେ ତେଜ ନାହିଁ—କମିଠ ରୋଗୀ ପରି ଲିଙ୍ଗ୍ ଲିଙ୍ଗ୍ ଢଙ୍ଗ । ମୁଁ ଛପି ଛପି ତାଙ୍କ ଆଡ଼କୁ ଚାହୁଁ ଚାହୁଁ ଥରେ ତାଙ୍କର ନଜର ମୋ ଉପରେ ପଡ଼ିଗଲା । ମୁଁ ପଛକୁ ଲସିଗଲି, କିନ୍ତୁ ଅନୁଭବ କଲି ସେ ନିର୍ନିମେଷ ଦୃଷ୍ଟିରେ ମୋତେ ଚାହିଁ ରହିଛନ୍ତି । ଲୋକଟାକୁ ମୋର ଯେତିକି ଭୟ ହେଲା, ସେତିକି ଜିଦ୍ ହେଲା ତାର ଗତିବିଧି ଆହୁରି ଲକ୍ଷ୍ୟ କରିବାକୁ ।

ଏତିକିବେଳେ ଦାଦା ମୋତେ ଡାକିବାର ଶୁଣି ମୁଁ ଯାଇ ତାଙ୍କ ପାଖେ ପହଞ୍ଚିଲେ ସେ କହିଲେ, 'ଯେଉଁ ବଡ଼ ମେମ୍ ସାହେବଙ୍କ କଥା ମୁଁ ତୋତେ କହୁଥିଲି, ଏହି ସେଇ—

ତୋ'ର ବଡ଼ ଦାଦା । ସ୍ତ୍ରୀଙ୍କର ଟଙ୍କା ଦରକାର, ଦେ ।' କେତେ ଟଙ୍କା ନ ଶୁଣି ମୁଁ ଚୁପ୍‌ହୋଇ ରହିଲି ।

ଦାଦା ପଚାରିଲେ, 'ଦାଦା, କେତେ ଦେବି ?'

ସେ କହିଲେ, 'ମୁଁ କ'ଣ କହିବି, ଇଲା ! ତୁ ଯେତେ ଦେଇପାରିବୁ ଦେ । ମୁଁ ଯେଉଁ ଅବସ୍ଥାରେ ପଡ଼ିଛି ଯେତେ ଦେଲେ ବି କାଲିକୁ ନଅଣ୍ଟ । ଶହେ ଟଙ୍କା ଦେ ।' ଟିକିଏ ପରେ କହିଲେ, 'ମୋତେ ଲୋଡ଼ା ଭୁଲି କଲୁ । ମୁଁ ଯେଉଁ ରାକ୍ଷସ ହାତରେ ପଡ଼ିଛି, ତା'ର ନଜର ତୋ ଉପରେ ପଡ଼ିଲେ, ତୋର ସର୍ବନାଶ । ଏ ଘର ଗୁଡ଼ା କୁଆଡ଼େ ଗଲା । ତା'ର ନଜର ଏ ଘର ଉପରେ ପଡ଼ିବଣି ।'

ଦାଦା କହିଲେ, 'ଦାଦା ! ମୋ ପାଇଁ ଦୁଃଖ କର ନାହିଁ । ମୁଁ ନିଜକୁ ଭଗବାନଙ୍କ ହାତରେ ସମର୍ପି ଦେଇଛି । ମୋର କେହି କିଛି ଅନିଷ୍ଟ କରି ପାରିବେ ନାହିଁ । ତୁମ ପାଇଁ ମୋର ଚିନ୍ତା । ତୁମେ ମୋ ସଙ୍ଗେ ଗଙ୍ଗାଦ୍ୱାରକୁ ଯିବ ନାହିଁ ?'

ସେ କହିଲେ, 'ଛ' ମାସ ଆଗରୁ ପଚାରିଥିଲେ ଯାଇଥାନ୍ତି । ମୋ'ର ଦୁର୍ଦ୍ଦଶା ଲୁଚାଇ ଭଲ ମଣିଷ ପରି ମୁଁ ତୋ ସାଙ୍ଗେ ଯାଇଥାନ୍ତି । କିନ୍ତୁ ଆଜି ଆଉ ପାରିବି ନାହିଁ । ମନ ଛୁଆ ହୋଇଗଲାଣି । ରାକ୍ଷସ ଦାଣ୍ଡ ଦୁଆରେ ଠିଆ ହୋଇଥିବ । ଯେଉଁ ଚନୋଟି ପାପର ବୋଝ ମୁଣ୍ଡାଇଛି, ସେ ଘରେ ଅଥୟ ହେବେଣି । ମତେ ଭୁଲି ଯାଆ, ଭଉଣୀ ! ମୁଁ ଆଉ ଆସିବି ନାହିଁ । ମୋତେ ସେ ଯଦି ପୁଣି ଏଠାକୁ ଠେଲିବ, ମୁଁ ଦଉଡ଼ି ଲଗେଇଦେବି । ତୁ ବି ମୋତେ ଆଉ ଖୋଜିବୁ ନାହିଁ ।'

ଦାଦା ତାଙ୍କୁ କୁଣ୍ଡେଇ ପକେଇଲେ, କହିଲେ, 'ଛି, ଏମିତି କଥା ଆଉ ପଦେ ମନରେ ବିଚାରିବ ନାହିଁ ।' ମୋତେ ଆଙ୍ଗୁଠିରେ ସଙ୍କେତ ଦେଲେ ତିନିଶହ ଟଙ୍କା ଆଣି-ଦେବାକୁ ।

ବଡ଼ ଦାଦା ଟଙ୍କାକୁ ଦି'ଠା କରି ଅଣ୍ଟାରେ ଖୋସି ତଳକୁ ଓହ୍ଲାଇଗଲେ । ମୁଁ ଦାଦାଙ୍କୁ କିଛି ନ କହି, ବାରଣ୍ଡାକୁ ଚାଲିଗଲି ଲୋକଟାକୁ ଲକ୍ଷ୍ୟ କରିବାକୁ । ଏଇ ତେବେ ସେଇ ରାକ୍ଷସ, ପର ସ୍ତ୍ରୀକୁ ଧରି ଘର କରୁଛି ।

ବଡ଼ ଦାଦା ତଳକୁ ଓହ୍ଲାଇବା ମାତ୍ରେ ସେ ତାଙ୍କ ପାଖରେ ଆସି ପହଞ୍ଚିଗଲା । ଇଙ୍ଗିତରୁ ଜଣାପଡ଼ିଲା, କେତେ ଟଙ୍କା ଆଣିଲୁ ଦେ ବୋଲି ମାଗୁଛି । ବଡ଼ ଦାଦା ଅଣ୍ଟାରୁ ଗୋଟିଏ ଠା'ରୁ ଟଙ୍କା କାଢ଼ି ତା' ହାତକୁ ବଢ଼ାଇଦେଲେ । ସେ ଦୁଇଟା 'ଏକ୍କା' ଡାକଦେଲା । ଗୋଟାକରେ ବଡ଼ ଦାଦାଙ୍କୁ ବସାଇ ଗୁଡ଼ିଦେଲା ଓ ଆଉ ଗୋଟାକରେ ଆପେ ବସି ଅନ୍ୟ ବାଟକୁ ଚାଲିଲା—ମୋର ମନେହେଲା ମଦ ଖଟିକୁ ଯାଉଛି । ସେ ଯିବା ପରେ ମୁଁ ଘର ଆଡ଼କୁ ମୁହଁ ଫେରାଇବା ବେଳକୁ ଦେଖିଲି, ଦାଦା ମୋ'ର ପଛରେ ଠିଆହୋଇ ସେଇ ତା'ରି ଆଡ଼କୁ ଚାହିଁଛନ୍ତି । ଘରକୁ ଫେରିଲା ବେଳକୁ ସେ ଗୋଟାଏ ବଡ଼ ଦୀର୍ଘଶ୍ୱାସ ଛାଡ଼ିଲେ ।

## (୧୪)

କାଲି ଯେଉଁ ପର୍ଯ୍ୟନ୍ତ ପଢ଼ିଥିଲି, ଆଜି ସମସ୍ତେ ଏକାଠି ହେବା ମାତ୍ରେ, ଅନ୍ୟ କିଛି ଆଲୋଚନା ନ କରି ସେଠାରୁ ତାପରର ବୃତ୍ତାନ୍ତ ପଢ଼ିବାକୁ ଆରମ୍ଭ କରିଦେଲି ।

"ବଡ଼ ଦାଦା ପ୍ରଥମଥର ଟଙ୍କା ନେଇଯିବାର ଚାରିପାଞ୍ଚ ଦିନ ପରେ ପୁଣି ଥରେ ଆସିଲେ । ଏଥର ତାଙ୍କ ସାଙ୍ଗରେ ଆଉ କେହି ଆସିନଥାନ୍ତି । ତାଙ୍କୁ ଦେଖି ଆମେ ସମସ୍ତେ କାବା କାଠ ହୋଇଗଲୁ । ତାଙ୍କୁ ଚିହ୍ନିବା କଷ୍ଟ ହେଉଥାଏ । ମୁହଁରେ ଦୁଇ ଚାରି ଜାଗା ଚୋଟ ଲାଗିଲା ପରି ଦିଶୁଥାଏ । ମୁହଁ କଳା ପଡ଼ିଯାଇଥାଏ । ଦେହ ଅଧେ ଶୁଖିଯାଇଥାଏ । ଦାଦା କହୁଥିଲେ, ସେ ଦେଖିବାକୁ ଥିଲେ ଭାରି ସୁନ୍ଦର, ତାଙ୍କ ନିଜଠାରୁ କେତେ ନା କେତେ ଗୁଣ ସୁନ୍ଦର । ମୁଁ ଆଜିଯାଏଁ ଯେତେ ମାଇକିନିଆ ଦେଖିଥିଲି ସେ ସମସ୍ତଙ୍କଠାରୁ ଦାଦା ସୁନ୍ଦର ବୋଲି ମୋର ଧାରଣା ହୋଇଥିଲା । ତାଙ୍କଠାରୁ ପୁଣି ଅଧିକ ସୁନ୍ଦର କେହି ହୋଇପାରେ ବୋଲି ମୋର ବିଶ୍ୱାସ ହେଉନଥିଲା । ଆଜି ବଡ଼ ଦାଦାଙ୍କୁ ଦେଖି ଏକଥା ସତ ହୋଇଥିବ ବୋଲି ବିଚାରିଲି । ପାଞ୍ଚଦିନ ପୂର୍ବେ ସେ ଯେମିତି ଦିଶୁଥିଲେ, ତହିଁର ଶହେ ଭାଗରୁ ଭାଗେ ରୂପ ବି ତାଙ୍କର ନ ଥାଏ । ପୂର୍ବେ ଦୁଃଖକଷ୍ଟ ସହିତ, ମନସ୍ତାପ ଭୋଗି କେତେ ରୂପ ନଷ୍ଟ ହୋଇଥିବ ଅନୁମାନ କଲି ।

ଦାଦା ତାଙ୍କୁ ଦେଖିବା ମାତ୍ରେ କିଛି ନ କହି ପାଖକୁ ଭିଡ଼ି ନେଇ ବସେଇଲେ । ଦୁହେଁ ଯାକ ତୁନିହୋଇ ଦଣ୍ଡେ ବସିବା ପରେ ମୁଁ ଓ ଭାବୀ ସେ ଘରେ ଅଛୁ ବୋଲି ବୋଧହୁଏ ତାଙ୍କର ନଜର ପଡ଼ିଲା । ଭାବୀ ଉଠିପଡ଼ି ଅନ୍ୟ ଘରକୁ ଯିବାକୁ ବାହାରୁଥିଲେ । ମୁଁ ବି ବିଚାରୁଥିଲି ଭାବୀଙ୍କ ପଛେ ପଛେ କ'ଣ ଗୋଟାଏ ଆଳରେ ଖସିଯିବି । କିନ୍ତୁ ବଡ଼ ଦାଦା ଭାବୀଙ୍କୁ ଠାରିଲେ ବସିବାକୁ । ପୁଣି କିଛି ସମୟ ଗଲାରୁ ସେ ଦାଦାଙ୍କୁ କହିଲେ, "ଇଲା, ଆଉ ସମ୍ଭାଳି ହେଲା ନାହିଁ ବୋଲି ପଳେଇ ଆସିଛି । ସେ ଦି' ପହରେ ମୋତେ ବାହାରୁ ଶିକୁଳି ଦେଇ କୁଆଡ଼େ ଯାଇଛି । ପଡ଼ଶାଘରର ଝିଅଟି ଦୁଆର ଫିଟାଇ ଦେଲା । ସେ ଆସି ମୋତେ ଯଦି ନ ଦେଖିବ, ତେବେ ଏଇଠାକୁ ପୁଣି ଆସିପାରେ । ତୁମେ ଏଠେଇ ରହିଲେ, ମୁଁ ଶାନ୍ତି ପାଇବି ନାହିଁ କି ତୁମେ ନିଶ୍ଚିନ୍ତରେ ରହିପାରିବ ନାହିଁ ।'

ଦାଦା କିଛି ବୁଝିନପାରି ବାଲୁ ବାଲୁ କରି ତାଙ୍କୁ ଚାହିଁଥାନ୍ତି । ମଝିରେ ସେ ମୋତେ ଇଙ୍ଗିତ ଦେଲେ, ଜଳଖିଆ କିଛି ଆଣିବା ପାଇଁ । ଘରେ ସବୁବେଳେ କିଛି ସାମଗ୍ରୀ ମହଜୁଦ୍ ରଖିଥାଉଁ । ଅତିଥି ପ୍ରାୟ ସବୁବେଳେ ଆସୁଥାନ୍ତି । ବହୁତ ବଳେଇବାରେ ବଡ଼ ଦାଦା ଦି' ଚାରିଟା ମିଠା ଓ ନିମକି ଖାଇ ଏକାଥରକେ ଦୁଇଗ୍ଲାସ ପାଣି ପିଇଲେ । ଟିକକ ପରେ ସାବ୍ୟସ୍ତ ହୋଇ ତାଙ୍କ କଥା କହିଲେ । ତାଙ୍କଠାରୁ ଶୁଣିଲୁଁ, ଏବେ ଦୁଇତିନି ଦିନ ହେଲା

ରାକ୍ଷସଟା ତାଙ୍କୁ ସବୁବେଳେ ବାଡ଼ଉଛି । ତା'ର ଜିଦ୍ ବଡ଼ ଦାଦା ପୁଣି ଆମ ଏଠିକୁ ଆସି ଆଉ ପଇସା ନେବେ । ବଡ଼ ଦାଦା ତାକୁ କହିଲେ, 'ନିତାନ୍ତ ଯଦି ପଇସା ପାଇଁ ଯିବ ତେବେ ମାସକେ ଥରେ ଯିବ, ସ୍ତେ ତ ନ ଥିଲେ, ଚଳୁଥିଲି । ସ୍ତେ ଆସି ପହଞ୍ଚିଲେ, ତାଙ୍କ ମନକୁ ଦୟା କରି କିଛି ଦେଲେ ବୋଲି ଥରକୁ ଥର ତାଙ୍କୁ ବିରକ୍ତ କରିବା ଭଲ ହେବ ନାହିଁ ।' 'ଭଲ ମନ୍ଦର ତୋର ଏତେ ବିଚାର ! ଯା, ଟଙ୍କା ଆଣ ; ନ ହେଲେ, ତୋତେ ଠିକଣା କରିବି । ତାକୁ ବି ଠିକଣା କରିବି' ବୋଲି ସେ ଡରେଇଛି । ଆହୁରି ରାଗବେଳେ କିଛି କହି କହୁଛି ତାର ସାଙ୍ଗ ଦିଲ୍ଲୀରୁ ଆସିଲେ ତା' ସାହାଯ୍ୟରେ ତୁମର ସବୁ ଲୁଟି ନେଇ ଯିବ । ତା' ସାଙ୍ଗ ଦିଲ୍ଲୀରେ ଗୋଟାଏ ବଡ଼ ଲୋକ ପାଖେ ଚାକିରି କରିଛି । ତା'ର ଝିଅ ସାଙ୍ଗେ ସ୍ତାର ଭାରି ଭାବ । ସେଇ ଯୋଗୁଁ ସେ ଏଡ଼େ ବଢ଼ିଆ ହୋଇଛି ଯେ ହରିଦ୍ୱାରର ପୁଲିସ, ହାକିମ, ଗୁଣ୍ଡାମାନେ ବି ତା' ହାତ ମୁଠାରେ ଅଛନ୍ତି ।

ଏ ସବୁ କହିସାରି ବଡ଼ ଦାଦା କହିଲେ, 'ଇଲା ! ତୁ ଏ ସ୍ଥାନରୁ କୁଆଡ଼େ ଚାଲି ଯା ।' ମୋ ଆଡ଼କୁ ଚାହିଁ କହିଲେ, 'ତ ରା, ତୁ ସ୍ତାକୁ ଟିକିଏ ବୁଝା, ମା ! ସ୍ତେ ବଡ଼ ଜିଦ୍‌ଖୋର । ସ୍ତାର କାହାକୁ ଭୟ ନାହିଁ । ଆଜିକାଲି ଯେଉଁ କାଳ ହୋଇଛି, ସବୁବେଳେ ଡରି ମରି ରହିଲେ ଯାଇ କେଜାଣି ବଞ୍ଚିହେବ । ପୁଣି ତମର ମୁରବି ହୋଇ କେହି ନାହିଁ । ଦିଲ୍ଲୀର ସେ ଲୋକଟାର କଥା ଶୁଣି ମୋର ରକ୍ତ ଶୁଖିଯାଇଛି । ସ୍ତା ଭିତରେ ସେଇଟା ଦିନେ ଆସିଥିଲା । ସ୍ତା ସାଙ୍ଗେ ଦାଣ୍ଡ ଦୁଆରେ ବହୁତ ଫୁସ୍‌ଫାସ୍ ହୋଇ ଗଲା ।' ଏକଥା ଶୁଣି ମୋର ପ୍ରଧାନମନ୍ତ୍ରୀଙ୍କର ସେଇ ସେକ୍ରେଟାରୀ ମନେ ପଡ଼ିଗଲେ । ବଡ଼ ଦାଦା ଯେଉଁ ଦୁର୍ବୃତ୍ତଟାର ହାବୁଡ଼େ ପଡ଼ିଛନ୍ତି ସେକ୍ରେଟାରୀ କ'ଣ ତା'ର କ'ଣ ହୁଅନ୍ତି ! ଦୁଇଜଣଙ୍କ ଚେହେରାରେ ମୁଁ ସାଦୃଶ୍ୟ ଲକ୍ଷ୍ୟ କରିଥିଲି ।

ଦାଦା ଟିକିଏ ମାତ୍ର ବିଚଳିତ ନ ହୋଇ କହିଲେ, 'ଦାଦା, ମୋପାଇଁ କିଛି ଭାବନା କରନାହିଁ । ମୁଁ ଯେତେଦିନ ଅଛି, ତୁମର ଦୁର୍ଦ୍ଦଶା ଦୂର କରିବା ପାଇଁ ଚେଷ୍ଟା କରିବି । ମୋ'ର ଯାହା ଦୁର୍ଦ୍ଦଶା ହୋଇ ସାରିଛି, ତହିଁରୁ ଅଧିକ ଆଉ କଣ ହେବ ଯେ ମୋର ଡର ?' ମୁଁ ଦାଦାଙ୍କ ମୁହଁକୁ ବଲବଲ କରି ଚାହିଁ ରହିଥାଏ । ସ୍ତାଙ୍କର ବୟସ ଅଛି, କିନ୍ତୁ ଭବିଷ୍ୟତ ପାଇଁ ମନରେ ଟିକିଏ ହେଲେ ଭାବନା ନାହିଁ । ଭାବୀ ମଧ୍ୟ ଆନନ୍ଦ ଓ ବିସ୍ମୟରେ ତାଙ୍କ ଆଡ଼କୁ ବହୁତ ସମୟରେ ଚାହାନ୍ତି । ଦୁହିଁଙ୍କ ଭିତରେ କଥାବର୍ତ୍ତା ଖୁବ୍ କମ ହୁଏ । ଏଇ ଚାହାଁ ଚାହିଁରେ ସେମାନେ ନିଜ ନିଜର ମନର କଥା ବୁଝାବୁଝି ହୋଇଯାନ୍ତି ।

ଦୁଇଶହ ଟଙ୍କା ଆଣିବାକୁ ମୋତେ ଇସାରା ଦେଇ ଦାଦା ବଡ଼ ଦାଦାଙ୍କୁ କହିଲେ, 'ଦାଦା, ଏଥର ଯେଉଁ ଦିନ ଆସିବ ତୁମ ପିଲାଙ୍କୁ ଏଠାକୁ ଆଣିବ । ପିଲାଟିଏ ଦେଖିଲେ ମୋତେ ବଡ଼ ସୁଖ ଲାଗେ । ଆମର ତ ଯାହା ହେବାର ହେଲାଣି, ଆଗକୁ ଯାହା ଅଛି ହେବ । ପିଲାଟିମାନଙ୍କର ଟିକିଏ ଯତ୍ନ ନେବା ।' ବଡ଼ ଦାଦା ଟଙ୍କା ନେଇ ଚାଲିଗଲେ ।

କ୍ରମେ ଆମ ଘରଟା ସେ ସାଇରେ ସମସ୍ତଙ୍କ ଆଖିରେ ପଡ଼ିଲା । ଯେ ଆସି ଭିକ ମୁଠାଏ ମାଗିଲା, ତାକୁ ଖାଇବାକୁ ମିଳିଲା, ଲୁଗା ମିଳିଲା ଦେଖି ଭିଖାରୀ ଦୁଆର ଛାଡ଼ିଲେ

ନାହିଁ । ଦାଣ୍ଡ ଦୁଆରେ ନେପାଳୀ ଦରୁଆନ୍ ପାଖରେ ପ୍ରତିଦିନ ପାଞ୍ଚସେର ପର୍ଯ୍ୟନ୍ତ ଅଟା, କିଛି ଚାଉଳ, ପାଞ୍ଚ ସାତଖଣ୍ଡ ଲୁଗା ରଖା ହୁଏ । ସେ ତା ବିବେଚନାରେ ସ୍ୱାଙ୍କୁ ବାଣ୍ଟେ । ସରିଗଲେ ଆଉ ନାଏ, ନ ହେଲେ କାଲିକୁ ଆସ ବୋଲି କହି ଫେରାଇଦିଏ ।

ଦିନେ ମୋତେ ଡାକି ଦାଦା କହିଲେ, 'ଦେଖ, ଗୁଡ଼ାଏ ଟଙ୍କା ପାଖରେ ରହିବାରୁ ଶଂକା ହେବାର କଥା । ସ୍ୱାଙ୍କୁ ବେଗେ ସାରିଲେ ଆମେ ରକ୍ଷା ପାଇବା । ଟଙ୍କାତକ ସରିଲେ ଆଉ ବାକୀ ରହିବ ଇଜ୍ଜତ୍ ରକ୍ଷା କରିବା । ଟଙ୍କା ପାଖରୁ ଗଲେ ଇଜ୍ଜତ୍ ରଖିବାରେ ଭଗବାନ ସହାୟ ହେବେ । ପଇସାକୁ ଯେ ଜାବୁଡ଼ି ବସନ୍ତି, ଭଗବାନ୍ ତାଙ୍କଠାରୁ ଦୂରରେ ରହି, ପଇସାରେ କ'ଣ ହେଉଛି ଦେଖିବାକୁ ଅପେକ୍ଷା କରନ୍ତି । ଆଣିଲ୍, ଆମର ଆଉ କେତେ ଅଛି ଦେଖିବା' ।

ତିନିଜଣଯାକ ଗଣାଗଣି କରି ନୋଟ୍‌ଗୁଡ଼ାକ ଥାକ ଥାକ କରି ରଖିଲୁଁ । ଆଜିଯାଏଁ ଟଙ୍କା ମୁଁ ଗଣି ନ ଥିଲି କି କେତେ ଟଙ୍କା ଅଛି କଳନା ନ ଥିଲା । ମୁଁ ଅଣ୍ଟାରେ ଗୁଡ଼ାଇ ଯାହା ଆଣିଥିଲି ତାକୁ ଗଣିବାରେ ସେ ହେଲା ଚାରିହଜାର ଆଠଶହ । ଆଉ ଦି' ସେତିକି ସେଥିରେ ମିଶାଇ ଦାଦା କହିଲେ ଏଇତକ ଆମର ନିଜର । ଏତକ ଆମେ ଖର୍ଚ୍ଚ କରି ସାରିଲା ବେଳକୁ ଭଗବାନ୍ ଆମ ପାଇଁ କାମ ଖଞ୍ଜି ଦେବେ । ସ୍ୱା ବାଦ ଆଉ ରହିଲା ସତୁରି ହଜାର ଟଙ୍କା । ସେଥିରୁ ପଇଁଚାଳିଶ ହଜାର ଆଡ଼େଇ କରି ରଖି ଦାଦା କହିଲେ, 'ଦାଦାଙ୍କ ପିଲା ତିନୋଟିଙ୍କ ପାଇଁ ଏତକ ରଖିବା । କିମିତି ରଖିବା ସେ ବିଷୟରେ ଏଠାକୁ ଆସି ଯେଉଁ ଘରବାଲା ସାଙ୍ଗେ ଆଗ ଦେଖା ହୋଇଥିଲା ତାରି ସଙ୍ଗେ ପରାମର୍ଶ କରିବି । ବାକୀ ପଚିଶ ହଜାର ସର୍ବସାଧାରଣ ସମ୍ପତ୍ତି । ଏଇଥିରୁ ବଡ଼ଭାଗ ଦାଦାଙ୍କର ବୋଲି ବିଚାରୁଛି ।'

ତହିଁ ଆରଦିନ ସକାଳୁ ସେଇ ଶେଠ୍ ପାଖକୁ ଗଲୁ । ସବୁ କଥା ଶୁଣି ସେ କହିଲେ 'ମା ! ଏତେ ଗୁଡ଼ାଏ ଟଙ୍କା ମୋ ପାଖରେ ଥୋଇଦେଇ ଗଲେ ମୋର ଯଦି ଲୋଭ ହୁଏ ? ଯେଉଁ ପିଲାଟିମାନଙ୍କ ପାଇଁ ସ୍ୱାଙ୍କୁ ରଖୁଛ ସେ ସାବାଳକ ହେଲେ ଯାଇ ଟଙ୍କା ପାଇବେ । ସେତେବେଳକୁ ମୁଁ ଥିଲେ ତ ! ସେମିତି ହୋଇ ପାରିବ ନାହିଁ । ଯଦି ସରକାରୀ ବ୍ୟାଙ୍କରେ ଟଙ୍କା ନ ରଖିବେ, ତେବେ ମୋର ଇଚ୍ଛା, ଆମ ସଂପ୍ରଦାୟରୁ ସଚ୍ଚ-ଲୋକ ଦି'ଜଣ ମୋସାଙ୍ଗେ ରଖିବା । ଆମ ତିନିଜଣଙ୍କ ଜମା ଟଙ୍କା ରହିବ, ବେପାରରେ ଲାଗିବ । ପିଲାଙ୍କ ପାଇଁ କିଛି ମୁନାଫା ମଧ୍ୟ ମୂଳ ଟଙ୍କାରେ ବର୍ଷକୁ ବର୍ଷ ମିଶୁଥିବ । ଦୁଇଚାରି ଦିନ ପରେ ମୁଁ ଏକଥା ଠିକଣା କରୁଛି ।'

ବଡ଼ ଦାଦା ପିଲାଙ୍କୁ ଯେଉଁ ଦିନ ଆଣିଲେ, ସେଦିନ ତାଙ୍କ ପାଇଁ ନୂଆ ଜାମା ପେଣ୍ଟ କରାଇ ତାଙ୍କୁ ଧରି ସମସ୍ତେ ଶେଠଙ୍କ ଗଦିକୁ ଗଲୁ । ଶେଠ୍ ବାକୀ ଦୁଇଜଣ ବନ୍ଧୁଙ୍କୁ ସାଙ୍ଗେ ସାଙ୍ଗେ ଡକାଇଲେ । ଗୋଟିଏ ଫଟୋଗ୍ରାଫର ଡକାହୋଇ ପିଲାଙ୍କର ଫଟୋ ଉଠିଲା—ଗୋଟାଏ ତିନିଜଣଙ୍କର ଏକାଠି ଓ ବାକୀ ତିନୋଟି ପ୍ରତ୍ୟେକଙ୍କର ଅଲଗା ଅଲଗା । ବଡ଼ ଦାଦାଙ୍କୁ ପଚାରି ପିଲାଙ୍କ ନାମ, ରହିବା ଜାଗାର ଠିକଣା

ଇତ୍ୟାଦି ଗୋଟାଏ ଖାତାରେ ଟିପାଗଲା । କଣ ପାଇଁ ଏସବୁ ହେଉଛି ବଡ଼ଦିଦିଙ୍କୁ ଦିଦି କହୁନଥାନ୍ତି । ଆମେ ସବୁ ବସାକୁ ଫେରିଲୁ । ବଡ଼ଦିଦିଙ୍କୁ କିଛି ଟଙ୍କା ଦେଇ ବିଦାୟ ଦେଲା ପରେ ଦିଦି ମୋତେ ସାଙ୍ଗରେ ନେଇ ପୁଣି ଶେଠ୍‌ଙ୍କ ଗଦିକୁ ଗଲେ ଓ ପଇଁଚାଳିଶ ହଜାର ଟଙ୍କା ତାଙ୍କ ଜମା ଦେଇ ଚାଲି ଆସିଲେ । ଆସିଲା ବେଳେ ଶେଠ୍ କହିଲେ, 'ମା ! ତୁମେତ ସଂସାରବାହାର କାମ କରୁଛ । ଖଣ୍ଡେ ରସିଦ୍ ହେଲେ ମୋଠାରୁ ନେଇ ରଖି-ଥାଅ । ଆଜିକାଲି ଦୁନିଆର ହାଲତ ଖରାପ ।' ଦିଦି କହିଲେ, 'ତଥାପି ମୁଁ ବିଶ୍ୱାସ କରୁଛି, ଦୁନିଆଁରେ ଏ ପର୍ଯ୍ୟନ୍ତ ଭଲଲୋକ ଅଛନ୍ତି । ମୁଁ ଆପଣଙ୍କୁ ମୋର ବାପ ପରି ବିଶ୍ୱାସ କରୁଛି । ଯଦି ଆପଣ ବିଶ୍ୱାସ ନ ରଖିନ୍ତି ତେବେ ସେଇ ପିଲାଙ୍କର ଯାହା କ୍ଷତି ସିନା ହେବ, ମୋର କଣ ହେବ ? ଯଦି ଏଥିରେ ତାଙ୍କର ଦୁଃଖ ନ ଯିବ ତେବେ ଜାଣିବା, ତାଙ୍କ କପାଳରେ ଦୁଃଖ ହିଁ ଭଗବାନ୍ ରଖିଥିଲେ ।' ଶେଠଜୀ କିଛି ନ କହି ଦିଦିଙ୍କୁ ହାତ ଯୋଡ଼ିଲେ, କହିଲେ 'ମା' ଯାହାର ମନ ଯେଡ଼େ ତାହାର ପ୍ରଭୁ ତେଡ଼େ । ଏଡ଼େ ସ୍ୱଚ୍ଛରେ ଯେଉଁ ଟଙ୍କା ଥୋଇଦେଇ ଗଲ ତାର ଫଳ ନିଶ୍ଚୟ ଫଳିବ । ମଝିରେ ମଝିରେ ଆସି ମୋତେ ଟିକିଏ ଦର୍ଶନ ଦେଉଥିବ । ପିଲାଟିମାନଙ୍କୁ ଧରି ତାଙ୍କ ମା ବି ବେଳେ ବେଳେ ଆସିବେ ।'

ଆଉ ଦି'ଚାରି ଦିନ ପରେ ବଡ଼ଦିଦିଙ୍କୁ ଦିଦି କହିଲେ, ତାଙ୍କର 'ସ୍ୱାମୀ'ଙ୍କୁ ପଠାଇ ଦେବାକୁ । ସେ ଲୋକଟା ଆସିବାରେ ଦିଦି ମୋତେ ଓ ବାବାଙ୍କୁ ଅନ୍ୟ ଘରକୁ ଯିବାକୁ କହି ଏକୁଟିଆ ତାଙ୍କ ସଙ୍ଗେ ରହିଲେ । ପ୍ରାୟ ଦୁଇଘଣ୍ଟା ଚାଲିଗଲା । କଣ କଥାବାର୍ତ୍ତା ହେଲା ମୁଁ କିଛି ଜାଣିଲି ନାହିଁ । ଗଲାବେଳେ ଦିଦି କହିଲେ ସୂର୍ଯ୍ୟବାବୁଙ୍କୁ ପଚାଶ ଟଙ୍କା ଦେ । ପ୍ରତି ସୋମବାର ଦିନ ସେ ପଚାଶ ଟଙ୍କା ନେବେ ମୁଁ ତାଙ୍କ ସଙ୍ଗେ ଯେଉଁ ସର୍ତ୍ତ କରିଛି ସେଇ ସର୍ତ୍ତରେ । ଦରୁଆନ୍‌କୁ କହିଦେ, ସ୍ୱାଙ୍କର ଯେତେବେଳେ ଇଚ୍ଛା ଆସିବେ ।' ସୂର୍ଯ୍ୟବାବୁଙ୍କୁ କହିଲେ, ଆପଣ ସ୍ୱାର ବି ହେଲେ ଭଉଣୀ । ଆପଣଙ୍କର ଶଳାଭାଉଜ ବି ଜଣେ ଅଛନ୍ତି । ତାଙ୍କର ପୂଜାପୂଜି ଲାଗିଥିବ । ଆଉ ଦିନେ ସାକ୍ଷାତ ହେବ । ଗଲାବେଳେ ସୂର୍ଯ୍ୟବାବୁ କହିଲେ, ମା, ତୁମକୁ ମୁଁ ଖାଲି ଲେଖା କରିପାରିବି ନାହିଁ । ତୁମ କଥା ଅନୁସାରେ ଚଳିବାକୁ ଚେଷ୍ଟା କରିବି । ଯଦି ନ ପାରିବି ତେବେ ଆଉ ମୁହଁ ଦେଖାଇବି ନାହିଁ । ତୁମକୁ ନୁହେଁ କି ତୁମ ଦିଦିଙ୍କୁ ନୁହେଁ ।' ସ୍ୱା ତୁଣ୍ଡରୁ ଏକଥା ଶୁଣି ମୁଁ ତାଜୁବ୍ ହୋଇଗଲି । ପାଞ୍ଚ ଦଶଦିନ ପରେ ବଡ଼ଦିଦି ଆସି କହିଲେ, ଇଲା ! ସ୍ୱାଙ୍କୁ ତୁ କଣ ଜଡ଼ିବୁଟି କଲୁ କିଲୋ ? ସେ ତ ଏକା-ବେଳକେ ସାଧୁସନ୍ଥ ହୋଇଗଲେଣି । ଦିଦି କହିଲେ, ଯାହା କରିଛି ସେ ଜାଣନ୍ତି ମୁଁ ଜାଣେ । ତମକୁ ଛାଡ଼ି ମୋତେ ଧରି ରହିଯିବାର ଭୟ ଅଛି, ସାବଧାନ ଥାଅ । ବଡ଼ ଦିଦିଙ୍କ ମୁହଁ ହସରେ ଫାଟିଗଲା । ଏଭଳି ନିର୍ମଳ ଆନନ୍ଦ ତାଙ୍କ ମୁହଁରେ ମୁଁ ଦେଖିନଥିଲି । ସେ କହିଲେ, ସେଇତକ ଅନୁଗ୍ରହ କରନ୍ତୁ କି ଇଲା । ମୁଁ ରକ୍ଷା ପାଇ ଯା'ନ୍ତି । କିନ୍ତୁ ନିଆଁ ସାଙ୍ଗେ କଣ ସେ ଖେଳିପାରିବେ ? ଦିଦି କିଛି ନ କହି ମୁରୁକି ମୁରୁକି ହସିଲେ । ବଡ଼ ଦିଦିଙ୍କ ସଂସାର ଭଲରେ ଚାଲିଲା ପରି ଲାଗିଲା । ତାଙ୍କ ମୁହଁର ଚେହେରା ବଦଳି ଯାଇ-

ଥାଏ । ତାଙ୍କୁ ଦେଖି ଆମ ସମସ୍ତଙ୍କ ମନରେ ବି ଆନନ୍ଦ ବଢ଼ିଥାଏ । ସୂର୍ଯ୍ୟବାବୁଙ୍କର ପରିବର୍ତ୍ତନ ମୋତେ ବିଚିତ୍ର ଜଣାଯାଉଥାଏ । ଦିଦି ଏହା କିପରି କରିଥିଲେ ଜାଣିବାକୁ ମନ ହେଉଥାଏ । କିନ୍ତୁ ପଚାରିବାକୁ ସାହସ ହୁଏ ନାହିଁ । ତାଙ୍କ ମନ ହେଲେ କହିବେ ବୋଲି ଅପେକ୍ଷା କରୁଥାଏ ।

ହରଦ୍ୱାରରେ ଆସି ରହିବାର ତିନି ମାସରୁ ବେଶୀ ହୋଇଗଲା । ଦିନେ ଦିଦି ଆମ ଡ୍ରାଇଭରକୁ ଡାକି କହିଲେ, ରାମଲଗନ୍, ଗାଡ଼ିଟା ତୁମ ନାମରେ ଏଥର ଲାଇସେନ୍ସ୍ କର । ଟ୍ୟାକ୍ସି କରି ଚଳାଅ । ଗାଡ଼ି ତୁମ ନାମରେ ଟ୍ରାନ୍ସଫର୍ କରିବାକୁ ଲେଖି ଦେଇଛି । ରାମଲଗନ୍ କହିଲା, ମା, ମୋ ପ୍ରତି ଏଭଳି ବେଅନୁଗ୍ରହ କାହିଁକି ? ମୁଁ ବର୍ତ୍ତମାନ ଯେପରି ଅଛି, ସେ ମୋତେ ଭଲ । ପିଲାପିଲି ବି ଆସି ଏଠାରେ ରହିଲେ । ତାଙ୍କ ପାଇଁ କି ମୋ ପାଇଁ ମୋ ହାତରୁ ପଇସାଟିଏ ପଡ଼ୁନାହିଁ । ତା' ପରେ ମାସକୁ ଦୁଇ ଶହ ଟଙ୍କା ଦେଉଛନ୍ତି ଯେ ତାହା କେଉଁଠି ରଖିବି ଥାନ ନ ପାଇ ତାରି ଦିଦିଙ୍କ ପାଖେ ରଖୁଛି । ଟ୍ୟାକ୍ସି କଲେ ଆଉ କ'ଣ ପାଇବି ?

ଦିଦି କହିଲେ, ମୁଁ ଏଠାରେ ଥିବା ପର୍ଯ୍ୟନ୍ତ ତୁମେ ସେପରି ରହିବ । କିନ୍ତୁ ମୁଁ ତ ସବୁଦିନେ ଏଠାରେ ରହିବି ନାହିଁ । ମୋର ଜଞ୍ଜାଳ ସବୁ ସରିଛି, ଖାଲି ତୁମର ଓ ତାରିର ଠିକଣା କରିଦେଲେ ସ୍ୱାମୀଙ୍କର ମୋର ଆମ ରାସ୍ତା ଧରିବୁ । ରାମଲଗନ୍ ଯେମିତି ଥିଲା ସେମିତି ରହିଲା, ବହୁତ ବଳାଇବାରେ ତା' ନାରେ ଗାଡ଼ି ଟ୍ରାନ୍ସଫର କରିବାକୁ ଚିଠିଖଣ୍ଡ ପାଖରେ ରଖିଲା । ତା'ର ଜିଦ୍, ମା ହରଦ୍ୱାର ଛାଡ଼ି କୁଆଡ଼େ ଗଲେ ସେ ସିଆଡ଼େ ଯିବ । ଆହା ବିଚାରା ! ଦିଦି କୁଆଡ଼େ ଯିବେ ସେ ଜାଣନ୍ତା କୁଆଡ଼ୁ ? କିଏବା ଜାଣିଥିଲା ? କିନ୍ତୁ ମୁଁ ତାଙ୍କର ଗୋଟିଏ ଜଞ୍ଜାଳ ଶୁଣି ମୋତେ ଖାରାପ ଲାଗିଲା । ମୁଁ ସେ ଦିନଟି ତମାମ ମନ ମାରି ରହିଲି । ତାହା ଲକ୍ଷ୍ୟକରି ଦିଦି ମୋ ମୁହଁରେ ହାତ ବୁଲାଇ କହିଲେ, ଦୂର୍ ପାଗଳୀ ! ରାମଲଗନ୍ ଉପରେ ଗାଡ଼ିଟା ଲଦିଦେବାକୁ ସେପରି କହିଲି ନା ? ତୋତେ ଛାଡ଼ି କୁଆଡ଼େ ଯିବି ? ଶେଷକୁ ତୁ'ଇ ତ ହୋଇଛୁ ମୋର ସଂସାର । ଶେଷଯାଏଁ ତୋତେ ଛାଡ଼ି ପାରିବି ନାହିଁ । ମୋ ମନ ତୁଟିଗଲା, ଶେଷ କଥାଟା ବାରମ୍ବାର କହିବାରୁ କେମିତି କେମିତି ଲାଗୁଥାଏ ।

ଦିନେ ଅଲ୍ଲାହାବାଦରୁ ଦୁଇଜଣ ଲୋକ ଆସି ପହଞ୍ଚିଲେ—ଗାନ୍ଧୀବାଲା, ଖଦଡ଼ ପିନ୍ଧିଥାନ୍ତି, ମୁଣ୍ଡରେ ଗାନ୍ଧିଟୋପି, କାନ୍ଧରୁ ଗାନ୍ଧି'ଝୁଲା ଖଣ୍ଡେ ଖଣ୍ଡେ ବି ଓହଳିଥାଏ । ଘଣ୍ଟାଘରି ଚଉକରେ ସେଦିନ ଓପରଓଳି ଗୋଟାଏ ସଭା ହେଉଥାଏ । ଆମ ତିନିଜଣଙ୍କୁ ଖୁବ୍ ଲଗାଇବାରୁ ଆମେ ଗଲୁଁ । ଏଣୁ ତେଣୁ ବହୁତ ବକ୍ତୃତା ପରେ ଆମପାଖକୁ ଯେଉଁ ଦୁଇଜଣ ଆସିଥିଲେ ତାଙ୍କ ଭିତରୁ ବଡ଼ ଜଣକ ଘୋଷଣା କରିଦେଲେ ଯେ, 'ଆସନ୍ତା ନିର୍ବାଚନରେ ଏ ନିର୍ବାଚନ ମଣ୍ଡଳୀରୁ ଶ୍ରୀମତୀ ଇଲା ଦେବୀଙ୍କୁ କଂଗ୍ରେସ-ପ୍ରାର୍ଥୀ କରି ଠିଆ କରାଯିବ ବୋଲି ପ୍ରାଦେଶିକ କଂଗ୍ରେସ କମିଟି ସ୍ଥିର କରିଛି । ସେ ଏଠାରେ ରହି କଂଗ୍ରେସ କାର୍ଯ୍ୟ କରିବାକୁ ପଣ୍ଡିତ ଜବାହାରଙ୍କ ନିର୍ଦ୍ଦେଶରେ ଦିଲ୍ଲୀର ସୁଖସ୍ୱାଚ୍ଛନ୍ଦ୍ୟ ଛାଡ଼ି ଏଠାକୁ

ଆସିଛନ୍ତି । ଆଜି ତାଙ୍କୁ ଚିହ୍ନାଇଦେବାକୁ ଏ ସଭା ହୋଇଛି । ଏଥର ଏଣିକି ପ୍ରତି କ୍ଷେତ୍ରରେ ହରଦ୍ୱାର ଓ ନିକଟବର୍ତ୍ତୀ ଗ୍ରାମମାନଙ୍କର ଲୋକେ ତାଙ୍କୁ ଦେଖିବେ ।' ଏକଥା ଶୁଣି ଦାଦା ସ୍ତମ୍ଭୀଭୂତ ହୋଇଗଲେ । ନିର୍ବାଚନରେ ଠିଆ ହେବେ, ତା' ପୁଣି ପଣ୍ଡିତ ଜବାହାରଙ୍କ ନିର୍ଦ୍ଦେଶରେ—ଏହା ସେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ । ବିରକ୍ତ ହୋଇ ସେ ବକ୍ତାଙ୍କ ପାଖକୁ ଡାକି ପ୍ରତିବାଦ କଲେ । ବକ୍ତା—ପରେ ଜାଣିଲୁଁ ସେ ପ୍ରଦେଶର ଜଣେ ବଡ଼ କଂଗ୍ରେସ ନେତା—କହିଲେ, 'ସଭା ସରିବା ପରେ ମୁଁ ଆପଣଙ୍କ ସଙ୍ଗେ ସବୁ ବିଷୟ କଥାବାର୍ତ୍ତା ହେବି । ଆମେ ବଡ଼ ଅଡ଼ୁଆରେ ପଡ଼ି ଆପଣଙ୍କ ନାମ ପ୍ରସ୍ତାବ କରିଛୁଁ । ଆପଣଙ୍କର ଯଦି ଅନିଚ୍ଛା ଥାଏ, ପରେ ଲୋକଙ୍କୁ ଜଣାଇଦେବା । ଆଜି ଆମର ମାନ ରଖନ୍ତୁ ।' ଦାଦା ତୁନି ହେଲେ ଓ ସଭା ସରିବା ପୂର୍ବରୁ ଠିଆ ହୋଇ ମିନିଟିଏ ଦୁଇମିନିଟ ବକ୍ତୃତା ଦେଇ ଦେଶର ମଙ୍ଗଳ ପାଇଁ ସେ ଜୀବନ ଉତ୍ସର୍ଗ କରିବାକୁ ପ୍ରସ୍ତୁତ ବୋଲି ଶୁଣାଇ ଦେଲେ । ପୁଣି କହିଲେ, 'ରାଜନୀତିରେ ଯଦି ଜନସେବା କରିବାର ସୁଯୋଗ ମିଳିପାରିବ ତେବେ ଆପତ୍ତି ନାହିଁ, କିନ୍ତୁ ମୁଁ ବିଶ୍ୱାସ କରୁଛି ଲୋକସେବାର ପ୍ରକୃତ କ୍ଷେତ୍ର ରାଜନୀତିର ବାହାରେ ।' ସଭାରେ ଘନ ଘନ କରତାଳି ହେଲା । ସେ ଯାହା କହିଲେ ସେଥିରେ ବିଶେଷ କିଛି ଥିଲା ମୁଁ ଧରି ପାରିଲି ନାହିଁ । ମୋର ବିଶ୍ୱାସ ତାଙ୍କର ଚେହେରା, ବିନମ୍ର ବ୍ୟବହାର, ଛୋଟିଆ ପିନ୍ଧା ଖଣ୍ଡିକ ଓ କଥା କହିବାର ଭଙ୍ଗୀ ଦେଖି ଲୋକେ ମୁଗ୍ଧ ହୋଇଗଲେ ।

ସଭା ପରେ ଆମ ଘରେ କଂଗ୍ରେସ ନେତା ଶ୍ରୀଯୁକ୍ତ ତ୍ରିପାଠୀ ଦାଦାଙ୍କ ମୁକ୍ତି ଗ୍ରହଣ କରିବାକୁ ଏକାବେଳକେ ନାରାଜ । ସେ କହୁଥାନ୍ତି, 'ମୁଁ ଆପଣଙ୍କୁ ଚିହ୍ନି ନଥିଲି । ଖାଲି ଉପରୁ ନିର୍ଦ୍ଦେଶ ପାଇ ଆପଣଙ୍କୁ ସଭାକୁ ନେଇଥିଲି । ବର୍ତ୍ତମାନ ଆପଣଙ୍କ ବକ୍ତୃତା ଶୁଣି ଏବଂ ଆପଣଙ୍କ ସଙ୍ଗେ କଥାବାର୍ତ୍ତା କରି ମୁଁ ଦେଖୁଛି, ଆପଣ ହିଁ ଏ ନିର୍ବାଚନ ମଣ୍ଡଳୀ ପାଇଁ ଏକମାତ୍ର ପ୍ରାର୍ଥୀ ।' ଦାଦାଙ୍କ ମନ ମାନୁ ନ ଥାଏ । ଶ୍ରୀଯୁକ୍ତ ତ୍ରିପାଠୀଙ୍କଠାରୁ ଜଣାଗଲା ଏ ନିର୍ବାଚନମଣ୍ଡଳୀରୁ ପ୍ରଧାନମନ୍ତ୍ରୀଙ୍କ ନିଜ ଭଉଣୀ ପ୍ରାର୍ଥୀ ହେବାକୁ ଲାଳାୟିତ । ପ୍ରଧାନମନ୍ତ୍ରୀ ତାଙ୍କୁ ହଁ କରିଛନ୍ତି, କିନ୍ତୁ ତାଙ୍କ ଝିଅଙ୍କର ଇଚ୍ଛା ନୁହେଁ, ପିଉସୀଙ୍କୁ ବ୍ୟବସ୍ଥା ସଭାରେ ସ୍ଥାନ ଦେବାକୁ । ତାଙ୍କର ଇଚ୍ଛାରେ ପ୍ରଧାନମନ୍ତ୍ରୀ ଭିତରେ ଭିତରେ ଭଉଣୀଙ୍କର ଜଣେ ପ୍ରତିଦ୍ୱନ୍ଦୀ ଠିଆ କରାଇବାକୁ ଚାହୁଁଛି । ଦାଦାଙ୍କ ନାମ ପ୍ରଧାନମନ୍ତ୍ରୀଙ୍କ ଝିଅଙ୍କ ଆଡ଼ୁ ପ୍ରସ୍ତାବ ହୋଇଛି । ପ୍ରାଦେଶିକ କଂଗ୍ରେସ କମିଟିରେ ଶ୍ରୀଯୁକ୍ତ ତ୍ରିପାଠୀଙ୍କ ଦଳ ସଂଖ୍ୟାଗରିଷ୍ଠ । ନେହେରୁ ପରିବାରର ଆଉ କାହାରିକୁ ପ୍ରଶ୍ରୟ ଦେବା ତ୍ରିପାଠୀଙ୍କ ଦଳର ଇଚ୍ଛା ନୁହେଁ ।

କଂଗ୍ରେସର ଏ ସବୁ ଭିତରି କଥା ଶୁଣି ଦାଦାଙ୍କ ମନ ବିଗିଡ଼ିଲା । ସେ ଶେଷରେ ଶୁଣାଇ ଦେଲେ, 'ରାଜନୀତିରେ ପଶିବାକୁ ମୋର ଆଦୌ ଇଚ୍ଛା ନୁହେଁ । ଆପଣଙ୍କଠାରୁ ଯାହା ଶୁଣିଲି ସେଥିରେ ମୋର ମନରେ ଆହୁରି ବିତୃଷ୍ଣା ହେଉଛି । ୧୫ ଦିନ ଭିତରେ ଆପଣ ନୂଆ ପ୍ରାର୍ଥୀ ଠିକଣା କରି ଯଦି ଘୋଷଣା ନ କରିବେ, ତେବେ ମୋ ଆଡ଼ୁ ମୁଁ ସଂବାଦ ପତ୍ରରେ ମୋର ଅନିଚ୍ଛା ଜଣାଇ ଦେବି । ଯେଉଁ କାରଣ ଦେବି, ସେ କଥା ଆପଣମାନଙ୍କୁ

ସୁଖ ଲଗିନପାରେ।' ଶ୍ରୀଯୁକ୍ତ ତ୍ରିପାଠୀ ଏ କଥାକୁ ଖୁବ୍ ଲଘୁ ଭାବରେ ଗ୍ରହଣ କରି ବିଦାୟ ନେଲେ ।

ତା' ପରେ ରାଜନୀତିକ ଲୋକଙ୍କର ଧାଉଁଡ଼ି ଲଗିଲା । କିଏ ଚାନ୍ଦା ପାଇଁ ଆସୁଥାଏ, କିଏ ମଫସଲ ଅଞ୍ଚଳରେ ହେଉଥିବା ନାରୀମାନଙ୍କର ସଭାକୁ ଯିବା ପାଇଁ ଡାକୁଥାଏ, କିଏ ଆସି ସରକାରଙ୍କୁ ସୁପାରିସ୍ କରି ତା' ପୁଅ ପାଇଁ ଚାକିରି ଖଣ୍ଡେ କରାଇଦେବାକୁ ଲଗାଇ-ଥାଏ । ବାବା ମହା ଅଡୁଆରେ ପଡ଼ିଥାନ୍ତି । ପଇସା ଖର୍ଚ୍ଚ କରିବାରେ ସେ ମୁକ୍ତହସ୍ତ ଥିଲେ ବି ଏମାନଙ୍କୁ ଚାନ୍ଦା ଦେବାକୁ ମନ କରୁ ନ ଥାନ୍ତି । କୌଣସି ସଭାରେ ଯାଇ ବକ୍ତୃତା ଦେବାକୁ ତାଙ୍କର ସ୍ପୃହା ନ ଥାଏ, କାହା ପାଇଁ ଚାକିରି କରାଇ ଦେବାକୁ ସରକାରୀ ମନ୍ତ୍ରୀ ବା ହାକିମଙ୍କୁ ନେହୁରା କରିବା ତ ତାଙ୍କ ପକ୍ଷେ ଅସମ୍ଭବ । ଶ୍ରୀଯୁକ୍ତ ତ୍ରିପାଠୀଙ୍କୁ ଦେଇଥିବା ପନ୍ଦର ହଜାର ବାଇଦା କଥା ମନେ ପକାଇ ସେ ସମସ୍ତଙ୍କୁ ବୋଧସୋଧ କରି ବାହୁଡ଼ାଉଥାନ୍ତି ଓ ଦିନ ଗଣୁଥାନ୍ତି ।

ଅନ୍ୟ ସମସ୍ତଙ୍କୁ ବିଦାୟ କରି ଦେଇ ସେ ଆଶ୍ୱସ୍ତ ହେଉଥାନ୍ତି, କିନ୍ତୁ 'ନ୍ୟାସନାଲ୍ ସେଣ୍ଟିନାଲ୍' କାଗଜର ସ୍ଥାନୀୟ ସଂବାଦଦାତାଙ୍କ ସଙ୍ଗେ ତାଙ୍କର ଆନ୍ତରିକତା ହୋଇ ଯାଇଥାଏ । ଏ ମହାଶୟ ଉଚ୍ଚଶିକ୍ଷିତ ଯୁବକ, ଚେହେରା ଖୁବ୍ ଫଟ୍‌ଫାଟ୍, କର୍ଣ୍ଣି ଗୋରା ଦକ୍ ଦକ୍, ବୟସ ବାଇଶି ତେଇଶି ହେବ । ସେ ପ୍ରାୟ ପ୍ରତିଦିନ ଆସନ୍ତି । ବାବାଙ୍କ ସଙ୍ଗେ ଯାହା ଆଲୋଚନା କରନ୍ତି, ତାହାକୁ ବଡ଼ ସୁନ୍ଦର ଭାବେ କାଗଜରେ ପ୍ରକାଶ କରାଉଥାନ୍ତି । ବାବାଙ୍କର ପରିଚୟ ନେଇ ଖାଲି ଏତିକି ସୂଚାଉଥାନ୍ତି ଯେ, ଏହିପରି ନାରୀମାନେ ରାଜନୀତିରେ ପଶିଲେ ଯେଉଁ ଉଚ୍ଛୃଙ୍ଖଳାମାନେ ରାଜନୀତିରେ ପଶି ଭାରତୀୟ ନାରୀତ୍ୱର ଅମର୍ଯ୍ୟାଦା କରୁଛନ୍ତି ସେମାନେ ମନକୁ ମନ ଆଡ଼େଇ ହୋଇଯିବେ । ବାବା ଏଥିରେ ଆପତ୍ତି କରିଥିଲେ । କହିଥିଲେ ଯେ, ଉଚ୍ଛୃଙ୍ଖଳ ଓ ଉଚ୍ଛୃଙ୍ଖଳାମାନେ ରାଜନୀତିରେ ପଶିବା ଅବଶ୍ୟମ୍ଭାବୀ । ସେ ଯାହାହେଉ ଏ ଯୁବକଟି ପ୍ରତି ତାଙ୍କ ମନରେ ମମତା ଜାତ ହୋଇଥାଏ । ଭାବୀଙ୍କ ମନରେ ବି ମମତା ହେଉଥାଏ । ମୁଁ ଲକ୍ଷ୍ୟ କରୁଥାଏ, ଯୁବକ ମଝିରେ ମଝିରେ ମୋ ଆଡ଼କୁ କେମିତି ଚାହୁଁଥାନ୍ତି । ସେ ଆସିଲେ, ମୁଁ ଆଡ଼େଇ ହୋଇ ଚାଲିଯିବାକୁ ଚେଷ୍ଟା କରେଁ କିନ୍ତୁ ବାବା ଓ ଭାବୀ ତାଙ୍କର ଚର୍ଚ୍ଚା କରିବାକୁ ମୋତେ ବାଧ କରୁଥାନ୍ତି ।

( ୧୪ )

ସନ୍ଧ୍ୟା ପୂର୍ବରୁ ପଣ୍ଡା ମକବାଟେ ଆସି ବସିଥାନ୍ତି । ଆମର ତାରି-କୃଷ୍ଣନ୍ତି ପଡ଼ିବାରେ ଡେରି ଦେଖି ସେ ବ୍ୟସ୍ତ ହୋଇ କହିଲେ, 'ଭାଇ ଗଡ଼ିଲାବେଳୁ ମୋ ମନ ଆସି ଏଇଠାରେ ପହଞ୍ଚିଛି । ବାଘଭାଲୁଙ୍କ ନିରକ୍ଷ ହୋଇ ହରିଦ୍ୱାରରେ ପଡ଼ିଛନ୍ତି । ସେମାନେ କପରି ଦୁଷ୍ଟ

ଲୋକଙ୍କ ହାତୁଡ଼ରୁ ଉଦ୍ଧାର ପାଇ ନିଶ୍ଚିନ୍ତ ରହିବେ, ଏଇ କଥା ଶୁଣିବାକୁ, ମନ ବଡ଼ ବ୍ୟାକୁଳ ହେଉଛି । ମହାପାପେ ତାଙ୍କର ସାନ୍ଧ୍ୟକର୍ମ ଯଥାଶୀଘ୍ର ସାରି ଆସି ପହଞ୍ଚିଗଲେ । ପଢ଼ା ଆରମ୍ଭ ହେଲି :

''ସମ୍ବାଦଦାତା ପ୍ରଦୀପ ବାବୁ ଆମ ଘରକୁ ନିତ, ସମୟ ଅସମୟ ନ ବୁଝି ଆସୁଥାନ୍ତି । କ୍ରମେ ଲକ୍ଷ୍ୟ କଲି, ସେ ଅସମୟରେ ବେଶି ଆସିଲେ । ସଂଧ୍ୟା ଲାଗିଲେ ଭାବୀ ଓ ଦାଦା ଦୁହେଁ ଯାକ ପୂଜା କରି ବସନ୍ତି—ଘଣ୍ଟାକରୁ ଅଧିକ । ସେତକ ବେଳେ ମୋତେ ବଡ଼ ଏକୁଟିଆ ଲାଗେ । ଅନ୍ୟ ସମୟରେ ଦୁଇଜଣକରୁ ଅନ୍ତତଃ ଜଣେ ମୋ ପାଖେ ରହନ୍ତି । ଏକୁଟିଆ ନ ହେବ ବୋଲି ମୁଁ ବି ପୂଜା କରିବାକୁ ଆରମ୍ଭ କରିଥିଲି ; ଭାବୀ ଅଟ୍ଟା କରିବାରୁ ଛାଡ଼ିଲି । ଦାଦା କହିଲେ, ଏକାନ୍ତରେ ବସି ଗୋଟାଏ କିଛି ପଢ଼ । ମୋ କୋଠରିଟି ଭିତରୁ କଲି, ପଢ଼ି ବସେ । ପ୍ରଦୀପ ବାବୁ ଏହି ସମୟରେ ଆସିବାକୁ ଆରମ୍ଭ କଲେ ଏବଂ ମୋତେ ଡାକି ମୋ ସଙ୍ଗେ ଏତକବେଳେ ଆଳାପ ଜମାଇ ବସିଲେ । ଦାଦା ବି କହିଲେ, ଭଦ୍ରଲୋକଙ୍କ ସଙ୍ଗେ କଥାବାର୍ତ୍ତା ନ କରିବା ଅଭଦ୍ରତା ହେବ । ମୁଁ ଭଦ୍ରତା ଲାଗି ସଂକୁଚିତ ଭାବେ ତାଙ୍କ କଥାରେ ହଁ ନାହିଁ ଉତ୍ତର ଦେଉ ଦେଉ ନିଃସଙ୍କୋଚରେ ତାଙ୍କ ସଙ୍ଗେ କଥାବାର୍ତ୍ତା ହେବାକୁ ଆରମ୍ଭ କଲି ଏବଂ ସେ ଭଦ୍ରତା ଭୁଲି ମୋ ସଙ୍ଗେ ଏଣୁ ତେଣୁ କଥାବାର୍ତ୍ତା ପକାଇ ବସିଲେ । ଦିନେ ନିର୍ଲଜ୍ଜ ଭାବେ କହି ପକାଇଲେ, 'ତାରା ଦେବୀ ! ମୁଁ ଅପାତ୍ର ନୁହେଁ । ଦ୍ୱିତୀୟ ଶ୍ରେଣୀରେ ଏମ୍. ଏ. ପାସ୍ କରିଛି । ଇଚ୍ଛା କରିଥିଲେ ଆହ୍ଲାବାଦର କୌଣସି କଲେଜରେ ଶିକ୍ଷକତା କରି ପାରିଥାନ୍ତି । ସାଂବାଦିକତା ପ୍ରତି ମୋର ବହୁ ଦିନରୁ ଆକର୍ଷଣ ଥିବାରୁ, ଏହା କରୁଛି । ସଂପାଦକ ମହାଶୟ ଜବାବ୍ ଦେଇଛନ୍ତି, ଆଉ ଦି ମାସ ପରେ ସେ ମୋତେ ତାଙ୍କର ସହକାରୀ କରି ଅଫିସ୍‌ରେ ରଖିବେ । ଦରମା ବି ବଢ଼ିବ । ମୁଁ ଏକାକୀ । ମୋ ସଙ୍ଗେ ଜୀବନ ସଂପର୍କ ରଖିଲେ ତୁମର ଅସୁବିଧା ହେବ ନାହିଁ ବୋଲି ମୁଁ ବିଶ୍ୱାସୁଛି । ମୋର ଜୀବନ ସାର୍ଥକ ହୁଅନ୍ତା ।

ମୁଁ ଏ ଲମ୍ବା ବକ୍ତୃତା ତୁନି ହୋଇ ଶୁଣିଲି ଓ ସେ କଥା ଶେଷ କରି ମୋ' ଆଡ଼କୁ ଉତ୍ସୁକ ହୋଇ ଚାହିଁ ରହିବାରୁ, କଣେଇ କଣେଇ ଦେଖି ମଧ୍ୟ ତୁନି ହେଲି । ତାଙ୍କର ସାହସ ବଢ଼ିଲା । ସେ ଗୋଟିଏ ବାକ୍ୟରେ ମୋତେ ପଚାରି ନିର୍ଦ୍ଦିଷ୍ଟ ଉତ୍ତର ଖୋଜିଲେ । ମୁଁ ଉତ୍ତର ଦେଲି ଆପଣଙ୍କ ଇଂରେଜୀ ପଢ଼ାଯୋଗୁଁ ଆପଣ ଏଭଳି ପଚାରୁଛନ୍ତି । କିନ୍ତୁ ମୁଁ ବିଶ୍ୱାସୁଛି, ଏ ପ୍ରଶ୍ନ ମୋତେ ନ ପଚାରି, ଦାଦାଙ୍କୁ ପଚାରିଲେ ଭଲ ହୁଅନ୍ତା । ମୁଁ ଏକାକୀନଲାକେ ଅଭିଭାବକହୀନା ନୁହେଁ । ଏତକ କହି ମୁଁ ଗୋଟାଏ କାମ ବାହାନାରେ ଉଠିଗଲି । ତାର ଅଳ୍ପ ସମୟ ପରେ ଦାଦାଙ୍କର ପୂଜା ସରିଲା ଓ ପ୍ରଦୀପବାବୁ ତାଙ୍କ ସଙ୍ଗେ ବହୁତ ସମୟ ଏକାନ୍ତରେ କଥାବାର୍ତ୍ତା ହେଲେ । ମୋର ମନେ ହେଉଥାଏ, ମୋର କଥା ପଡ଼ିଥିବ । କିନ୍ତୁ ସେ ଦିନ ଦା ତା' ପରେ ଅନେକଦିନ ଯାଏଁ ଦାଦା ଏ ବିଷୟରେ ମୋତେ କିଛି କହିଲେ ନାହିଁ । ପ୍ରଦୀପ ବାବୁଙ୍କ ସଙ୍ଗେ କଥାବାର୍ତ୍ତା ହେବାକୁ ଆଉ ସୁଯୋଗ ଯେପରି ନ ମିଳିବ, ସେଥିପ୍ରତି ମୁଁ ଖୁବ ସାବଧାନ ରହିଲି । ସେ ମଧ୍ୟ ଅନଧିକାର ଚର୍ଚ୍ଚା

କରିବାକୁ ଉଦ୍ୟମ କଲେ ନାହିଁ । ମୋର ଧାରଣା ହେଲା ବାପା ବୋଧହୁଏ ତାଙ୍କୁ ତାଗିଦ୍ କରିଦେଇଛନ୍ତି ।

ସେଇ ହପ୍ତା ଭିତରେ ପ୍ରଧାନମନ୍ତ୍ରୀଙ୍କ ସହକାରୀ, ଆମର ପୂର୍ବପରିଚିତ ଭଦ୍ରଲୋକ ଆମ ଘରକୁ ଦୁଇ ତିନଥର ଆସି ବାପାଙ୍କ ସହିତ କ'ଣ କଥାବାର୍ତ୍ତା କରି ଗଲେ । ଦୁଇ ଦିନ ପରେ ପୁଣି ଆସିଲେ । ସେ ଦିନ ମୁଁ ଓ ଭାଇ ଉଭୟେ ବାପାଙ୍କ ପାଖରେ ଥାଉ । ବାପା ଆମକୁ ଯିବାକୁ କହିଲେ ନାହିଁ, ଓଲଟି ଭାଇ ଉଠିଗଲା ବେଳକୁ ବାପା ତାଙ୍କୁ ବସ ବୋଲି କହିଲେ । ଭଦ୍ରଲୋକ ସାଧାରଣ କୁଶଳ ପ୍ରଶ୍ନ ପଚାରି ଆରମ୍ଭ କଲେ, 'ଇଲା ଦେବୀ ! ମୁଁ ଆପଣଙ୍କୁ ଯେଉଁ ପ୍ରସ୍ତାବ ଦେଉଛି, ତାହା ଅନ୍ୟ ଯେ କୌଣସି ଭଦ୍ରମହିଳା ସ୍ୱୀକାର କରନ୍ତେ । ଏହାଦ୍ୱାରା ଆପଣଙ୍କ ଜୀବନ କର୍ମମୟ ହେବ ଏବଂ ଆପଣଙ୍କ ଯୋଗୁଁ ବହୁ ଅରକ୍ଷିତା ସ୍ତ୍ରୀଲୋକଙ୍କର ଉପକାର ହେବ । ମୁଁ ସ୍ପଷ୍ଟଭାବେ କହିପାରୁଛି, ଆପଣ ଗୋଟାଏ ଦସ୍ତଖତ କରିଦେଲେ ମୁଁ ଏ କାର୍ଯ୍ୟରେ ଆଗ୍ରସର ହୁଅନ୍ତି । ପ୍ରଧାନମନ୍ତ୍ରୀଙ୍କର ଏକାନ୍ତ ଇଚ୍ଛା, ଆପଣ ଏ ଭାରଟି ନେବେ ଏବଂ ଏଇଠାରେ ମହିଳା ଆଶ୍ରମଟି ଆସନ୍ତା ସ୍ୱାଧୀନତା ଦିବସ ପୂର୍ବରୁ ସ୍ଥାପିତ ହେବ । ଆପଣଙ୍କଠାରୁ ଜବାବ୍ ପାଇବାମାତ୍ରେ ମୁଁ ପ୍ରାରମ୍ଭିକ କାର୍ଯ୍ୟ ପାଇଁ ପଚିଶ ହଜାର ଟଙ୍କା ଆଣିଦେବି, ତା' ପରେ ବାର୍ଷିକ ଖର୍ଚ୍ଚ ସକାଶ ବଜେଟ ତିଆରି କରିବି' ।

ବାପା କହିଲେ, 'ଆପଣ ଯେଉଁ ପ୍ରସ୍ତାବ କରିଛନ୍ତି ତାହା ଖୁବ୍ ଭଲ, ମୁଁ ସ୍ୱୀକାର କରୁଛି । କିନ୍ତୁ ମୋ ପାଇଁ ତାହା ଭଲ ହେବ କି ନାହିଁ ସେ ବିଷୟରେ ମୋ'ର ଅଦ୍ୟାପି ସଂଶୟ ଅଛି । ମୁଁ କୌଣସି କାର୍ଯ୍ୟରେ ବାନ୍ଧିହୋଇ ରହିବାକୁ ଚାହୁଁନାହିଁ । ମୁଁ ଜାଣିଛି ଆଜିକାଲି ସମସ୍ତରେ ପାଞ୍ଚଜଣ ମିଶି କୌଣସି କାମ କଲେ ସଫଳ ହେବା ସମ୍ଭବ ନୁହେଁ । ହୁଏତ ଆମ ଭିତରେ ଜଣେ କେହି କୃତ୍ରିମ କରି ଗୁଡ଼ାଏ ଟଙ୍କା ଖାଇଯିବ । ସେତେବେଳେ ମୁଁ ଓ ଆପଣ ଉଭୟଙ୍କର କି ଅବସ୍ଥା ହେବ, ବିଚାରନ୍ତୁ । ପୁଣି ଭିନ୍ନ ପ୍ରକୃତିର ଗୁଡ଼ାଏ ସ୍ତ୍ରୀଲୋକ ଏକାଠି ଠାଏ ରଖିବା ; ତାଙ୍କ ଭିତରୁ ଜଣେ ଦି'ଜଣ କେହି ଅବାଟକୁ ଗଲେ ସମସ୍ତଙ୍କର ନିନ୍ଦା । ଏଇଭଳି ବିଚାର ମୁଁ ଏ କାର୍ଯ୍ୟରେ ପଶିବାକୁ ଭରସି ପାରୁନାହିଁ' ।

ଭଦ୍ରଲୋକ, ପ୍ରଭାକରବାବୁ କହିଲେ, 'ଇଲାଦେବୀ ! ଆପଣଙ୍କ ମନରେ ଏପରି ସଂଶୟ ହେବାରୁହିଁ ଜଣାପଡ଼ୁଛି, ଆପଣଙ୍କ ହୃଦୟ କେଡ଼େ ମହତ୍ । କିନ୍ତୁ ଆପଣ ଭୟ କରନ୍ତୁ ନାହିଁ । ପଇସାପତ୍ରରେ କୌଣସି ଗଣ୍ଡଗୋଳ ହେବ ନାହିଁ । ସେ ଦିଗରେ ମୁଁ ସବୁବେଳେ ସତର୍କ ବୋଲି ପ୍ରଧାନମନ୍ତ୍ରୀ ଜାଣିଥିବାରୁ ମୋତେ ଏତେ ବିଶ୍ୱାସ କରନ୍ତି । ଆଉ ଆଶ୍ରମର ଶୃଙ୍ଖଳା ରଖିବାକୁ ସେ ତାଙ୍କର ବିଶ୍ୱାସୀ କେତେଜଣ ଭଦ୍ର ବ୍ୟକ୍ତି ଓ ଭଦ୍ରମହିଳାଙ୍କୁ ଏ ଅନୁଷ୍ଠାନ ପାଇଁ ବାଛିଛନ୍ତି । ଆପଣ କେବଳ ସମ୍ପାଦିକା ଓ ଆଶ୍ରମର ପରିଚାଳିକା ହେଲେ କାମ ଶେଷ' ।

ବାପା କହିଲେ, 'ଆପଣଙ୍କ କାମ ଶେଷ ହୋଇପାରେ, କିନ୍ତୁ ସେଇଠାରୁ ତ ମୋର କାମ ଆରମ୍ଭ ହେବ ଏବଂ ମୁଁ ନିତ୍ୟ ବହୁ ଜଞ୍ଜାଳରେ ଘାଣ୍ଟି ହେବି । ଆପଣଙ୍କୁ 'ନାସ୍ତି'ବାଣୀ

ଶୁଣାଇ ଦେବାକୁ ମୁଁ ଦୁଃଖିତ, କିନ୍ତୁ ମୋତେ କ୍ଷମା କରନ୍ତୁ' । ପ୍ରବୀର ବାବୁ ବିଦାୟ ନେଲେ କିନ୍ତୁ କହିଗଲେ, 'ମୁଁ ପୁଣି ହପ୍ତେ ଖଣ୍ଡେ ଭିତରେ ଆସିବି । ସେତେବେଳକୁ ଆପଣ ଏ ବିଷୟରେ ଅଧିକ ଚିନ୍ତା କରିଥିବେ ଓ ମୋ ପ୍ରସ୍ତାବରେ –ମୋର କାହିଁକି, ପ୍ରଧାନମନ୍ତ୍ରୀ ଆପଣଙ୍କ ସକାଶେ କରିଥିବା ଏ ପ୍ରସ୍ତାବରେ ରାଜି ହେବେ ।' ଦାଦାଙ୍କଠାରୁ ଅସମ୍ମତି ଗ୍ରହଣ କରିବାକୁ ସେ ଏକା-ବେଳକେ ନାରାଜ । ସେ ଯିବା ପରେ ଦାଦା କହିଲେ, 'ଦାଦାଙ୍କ ବର ସୂର୍ଯ୍ୟବାବୁ ଏ ଲୋକଟିର ପରିଚୟ ଆଗରୁ ମୋତେ ନ ଦେଇଥିଲେ ମୁଁ ଚିହ୍ନି ଧରି ପାରି ନ ଥାନ୍ତି' । ସୂର୍ଯ୍ୟ ବାବୁଙ୍କ ସଙ୍ଗେ ପ୍ରବୀର ବାବୁଙ୍କ ଚେହେରାର ସାଦୃଶ୍ୟ ମୁଁ ଲକ୍ଷ୍ୟ କରିଥିଲି । କିନ୍ତୁ ଅଧିକ ଜାଣିବାକୁ ସେତେବେଳେ କିଛି ପଚାରିଲି ନାହିଁ । ଦାଦାଙ୍କୁ ଉପରେ ପଡ଼ି କିଛି ପଚାରିବାକୁ ମୋର କେଜାଣି କାହିଁକି ଭୟ ହେଉଥାଏ ।

ସମ୍ବାଦଦାତା ପ୍ରଦୀପବାବୁ ଦାଦାଙ୍କଠାରୁ ପ୍ରବୀରବାବୁଙ୍କ ବିଷୟ ଶୁଣି ଓ ତାଙ୍କ ପ୍ରସ୍ତାବିତ ମହିଳାଶ୍ରମରେ ଦାଦା ଯୋଗ ନ ଦେବାର କାରଣ ବୁଝି, ବନେଇ ଚୂନେଇ ଗୋଟିଏ ପ୍ରବନ୍ଧ ତାଙ୍କ କାଗଜରେ ଛପାଇଲେ ଓ ତହିଁରେ ସୂଚାଇଲେ ଯେ, ପ୍ରଧାନମନ୍ତ୍ରୀଙ୍କ ସେକ୍ରେଟାରୀ ପ୍ରବୀରବାବୁ ଏଭଳି ବିଷୟରେ ପ୍ରଧାନମନ୍ତ୍ରୀଙ୍କ ନାମରେ ଯେପରି ମୁଣ୍ଡ ପୂରାଉଛନ୍ତି ତା' ଫଳରେ ଭବିଷ୍ୟତରେ ଗଣ୍ଡଗୋଳର ଆଶଂକା ଅଛି । ଆଗରୁ କ'ଣ ସୂଚନା ମିଳିଥିଲା କେଜାଣି, ଏ ଖବର ବାହାରିବାର ଦୁଇ ଦିନ ଭିତରେ କେନ୍ଦ୍ର ଗୁଇନ୍ଦା ପୁଲିସର ଜଣେ ଅଫିସର ଦାଦାଙ୍କ ସଙ୍ଗେ ଦେଖା କରିବାକୁ ଆସି ପହଞ୍ଚିଲେ । ପରେ ଶୁଣିଲି, ଦାଦାଙ୍କ ଦସ୍ତଖତରେ ପଚିଶ ହଜାର ଟଙ୍କା ଟ୍ରେଜେରୀରୁ ଅଣାହୋଇଛି । ଆମ ଭାଗ୍ୟକୁ ଦାଦାଙ୍କ ଦସ୍ତଖତ ଜାଲ୍ ବୋଲି ପୁଲିସ୍ ଅଫିସରଙ୍କ ବିଶ୍ୱାସ ହେଲା । ସେ ଦାଦାଙ୍କର ଦଶବାରଟା ଦସ୍ତଖତ ନେଇ ଦିଲ୍ଲୀ ଫେରିଗଲେ । ପ୍ରଦୀପ ବାବୁ ମଧ୍ୟ ଦିଲ୍ଲୀ ଗଲେ । ତା'ର ଦୁଇ ଚାରିଦିନ ପରେ ପ୍ରଦୀପ ବାବୁ ତାଙ୍କ କାଗଜରେ ଯେଉଁ ପ୍ରବନ୍ଧ ଛପାଇଲେ ତାହା ପଢ଼ି ସମଗ୍ର ଭାରତରେ ଗୋଟାଏ ଚହଳକା ପଡ଼ିଗଲା ବୋଲି ପ୍ରଦୀପ ବାବୁଙ୍କଠାରୁ ଶୁଣିଲିଁ । ସେଇ ପ୍ରବଂଧରୁ ପଢ଼ିଲିଁ, ଗୁଇନ୍ଦା ପୁଲିସ୍ ଯାଙ୍ଗେ ଯାଙ୍ଗେ ପ୍ରବୀର ବାବୁଙ୍କ ଘର ଖାନତଲାସ କରି ଦାଦାଙ୍କ ନାମରେ ଉଠା ହୋଇଥିବା ସବୁତକ ଟଙ୍କା ହସ୍ତଗତ କଲେ ଏବଂ ଜାଲ ଫାରିଆଦରେ ସେ ଆହୁରି ବହୁ ଟଙ୍କା ସରକାରୀ ତହବିଲରୁ ମାରି ନେଇଥିବାର ପ୍ରମାଣ ପାଇଲେ । ଦାଦାଙ୍କ ଦସ୍ତଖତ ଜାଲ କିପରି ହୋଇଥିଲା ତାର ବି ପ୍ରମାଣ ମିଳିଲା । ମଝିରେ ଥରେ ଦାଦା ପ୍ରବୀର ବାବୁଙ୍କ ହସ୍ତାନ୍ତର କଲାବେଳେ, ପୁଲିସ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ଯେଉଁ ଦରଖାସ୍ତ କରିଥିଲେ, ସେଇ ଦରଖାସ୍ତର ଦସ୍ତଖତରୁ ଫଟୋ ଉଠାଇ ମୋହର ତିଆରି ହୋଇଥିବାର ଜଣାପଡ଼ିଲା । ବୋଧହୁଏ ପ୍ରଧାନମନ୍ତ୍ରୀଙ୍କ ଝିଅଙ୍କ ସଙ୍ଗେ ସଦ୍‌ଭାବ ଥିବାରୁ ପ୍ରବୀର ବାବୁଙ୍କ ନାମରେ ମକଦ୍ଦମା ନ ହୋଇ ଚାପି ଦିଆଗଲା । ପ୍ରବୀରବାବୁଙ୍କୁ ପ୍ରଧାନମନ୍ତ୍ରୀ ଚାକିରିରୁ ବିଦା କରି ଦେଲେ, ବାହାରେ ଦେଖାଇବାକୁ ମାତ୍ର । ତାଙ୍କ କୋଠିକୁ ସେ ଅଦ୍ୟାପି ଯା' ଆସ କରୁଛନ୍ତି ବୋଲି ପ୍ରଦୀପ ବାବୁଙ୍କଠାରୁ ଶୁଣିଲିଁ । ସ୍ୱାମୀଙ୍କର ପ୍ରବୀର ବାବୁଙ୍କ ଉପରେ ଏତେ ରାଗ କାହିଁକି, ଭାବୁଥିଲି ମୁଁ ବିସ୍ମିତ ହେଉଥାଏ । ଦାଦା ଥରେ ଦି' ଥର ମୋ ଆଗେ କହିଲେ, ପ୍ରଦୀପ ଜଣେ ସଚ୍ଚା ଲୋକ;

ଦେଶର ଧନ ବରବାଦ୍ ହେଉଥିବାରୁ ଉଦ୍‌ବ୍ୟସ୍ତ ହୋଇ ଦୁର୍ବୃତ୍ତଙ୍କ ପିଛୁ ଧରିଛନ୍ତି । ଉଦ୍ଦେଶ୍ୟ ରଖି ମୋ ଆଗେ ପ୍ରଦୀପ ବାବୁଙ୍କ ପ୍ରଶଂସା କରୁଥାନ୍ତି ବୋଲି ମୁଁ ଅନୁମାନ କରୁଥାଏଁ । ପ୍ରଦୀପ ବାବୁଙ୍କ କଥା ପଡ଼ିଲେ ଭାବି ଯେମିତି ମୁହଁ କରୁଥାନ୍ତି, ତୃପ୍ତିରେ ହସୁଥାନ୍ତି, ତାହା ଦେଖି ମୁଁ ସନ୍ଦେହ କରୁଥାଏ, ଦାଦା ଓ ସେ ଦୁହେଁ ମୋ'ଙ୍କ ବିଷୟରେ କ'ଣ ସିଦ୍ଧାନ୍ତ କରି-ସାରିଲେଣି ।

ଏ କଥା କାହାକୁ କହିନାହିଁ । ନିଜର ବିବେକକୁ ମଧ୍ୟ ଜଣାଇନାହିଁ ଯେ, ପ୍ରବୀର ବାବୁଙ୍କୁ ପ୍ରଥମେ ଦିଲ୍ଲୀରେ ଦେଖିଲି ବେଳୁ ତାଙ୍କର ରୂପ ଓ ଆଚରଣରେ ମୁଁ ଆକୃଷ୍ଟ ହୋଇ-ଥିଲି । ସେ ସ୍ୱତଃପ୍ରବୃତ୍ତ ହୋଇ ଦାଦାଙ୍କର ଅଡ଼୍‌ଆ ନିଷ୍ପତ୍ତି କରିବାରେ ଓ ଭାବୀଙ୍କୁ ପାଗଲା ଗାରଦରୁ ମୁକ୍ତ କରିବାରେ, ତାଙ୍କ ପ୍ରତି କୃତଜ୍ଞତା ସଙ୍ଗେ ସଙ୍ଗେ ଶ୍ରଦ୍ଧା ବି ମୋ ମନରେ ଜାତ ହୋଇଥିଲା । ସେ ମୋ ଆଡ଼କୁ ଗୃହିବାରେ ଆଗ୍ରହୀ ହେବାରେ ମୋର ମନ ଉଷତ ହେଉଥିଲା । ଆକାଶକୁସୁମ ପରି ମନରେ ଆଶା ଜାଗିଥିଲା, ଯଦି ଭଲବେଳ ଆସେ ଓ ପ୍ରବୀର ବାବୁଙ୍କ ଅନୁଗ୍ରହ ହୁଏ, ତେବେ ତାଙ୍କୁଇ ଆଶ୍ରା କରି ଏ ଯୋଡ଼ା ଜୀବନଟାରେ ଲେପ ଦେବାକୁ ଚେଷ୍ଟା କରିବି । ସୂର୍ଯ୍ୟବାବୁଙ୍କ ସଙ୍ଗେ ତାଙ୍କୁ ଦେଖି ମନରେ ଖଟକା ଲଗିଥିଲା ; କିନ୍ତୁ ଆଶା ଥାଏ ଯେ, ପ୍ରବୀର ବାବୁ ଭଲ ଲୋକ ବୋଲି ଶେଷରେ ଜଣାପଡ଼ିବ । କିନ୍ତୁ ପ୍ରଦୀପ ବାବୁଙ୍କ ଅଧ୍ୟବସାୟ ଫଳରେ ତାଙ୍କର ଅସାଧୁତା ଯେ ଖାଲି ପ୍ରକାଶ ପାଇଲା, ତା ନୁହେଁ, ତାଙ୍କ ଜନ୍ମ ବିଷୟରେ କଳଙ୍କ ମଧ୍ୟ ରଟିଲା । ପ୍ରଦୀପ ବାବୁ ପ୍ରବୀର ବାବୁଙ୍କ ବିଷୟରେ ଅନୁ-ସନ୍ଧାନ କରି ପ୍ରକାଶ କଲେ ଯେ, ସୂର୍ଯ୍ୟବାବୁଙ୍କ ଘରେ ପ୍ରବୀର ବାବୁଙ୍କ ମା' ଗୃହକର୍ତ୍ତ୍ରୀ ହୋଇ ରହିଥିଲେ । ଘରେ ପିଲା କହିଲା କେହି ନ ଥାନ୍ତି । ଆଗ ଜନ୍ମ ହେଲେ ପ୍ରବୀର ବାବୁ, ବର୍ଷେକ ପରେ ଜନ୍ମ ହେଲେ ସୂର୍ଯ୍ୟବାବୁ । ଉଭୟଙ୍କ ଚେହେରାରେ ସାଦୃଶ୍ୟ ଦେଖି କେତେ ଲୋକ କେତେ ପ୍ରକାର କଳଙ୍କ ରଟାଇଲେ; କିନ୍ତୁ ସୂର୍ଯ୍ୟବାବୁଙ୍କ ମା' ଭଲ ଲୋକ ଥିବାରୁ ସେସବୁକୁ କାନ ନ ଦେଇ ଯୋଡ଼ିକଯାକ ପିଲାଙ୍କୁ ସମାନ ସ୍ନେହ କରି ପାଳିଲେ । ସୂର୍ଯ୍ୟବାବୁଙ୍କ ବାପା ଉଭୟଙ୍କୁ ଉଚ୍ଚ ଶିକ୍ଷା ଦେଲେ, କିନ୍ତୁ ସେମାନଙ୍କ ପାଇଁ କର୍ମସଂସ୍ଥାନ କରାଇବା ପୂର୍ବରୁ ତାଙ୍କର ମୃତ୍ୟୁ ହୋଇଗଲା । ପିଲାଦିହେଁ ଅବାଟରେ ଗଲେ ବି ଦୁହିଙ୍କ ଭିତରେ ସୌହାର୍ଦ୍ଦ୍ୟ ଏପର୍ଯ୍ୟନ୍ତ ଥିଲା । ଏ ବିଷୟ ଜାଣିବା ପରେ ମୋର ପ୍ରବୀର ବାବୁଙ୍କ ପ୍ରତି ଘୃଣା ହେବା ସଙ୍ଗେ ସଙ୍ଗେ ପ୍ରଦୀପ ବାବୁଙ୍କ ପ୍ରତି ମଧ୍ୟ ବିରକ୍ତି ଜାତ ହେଲା । ମୋ ମନ ଭିତରେ କିପରି ଗୋଟାଏ ଭାବ ହେଲା ଯେ, ସ୍ୱାଙ୍କର ଯୋଗୁଁ ମୋର ବାଲିଘର ଭୁସୁଡ଼ି ପଡ଼ିଲା ।

କିନ୍ତୁ ପ୍ରଦୀପ ବାବୁଙ୍କର ଆମ ଘରେ ଆଦର ବିଶେଷ ଭାବେ ବଢ଼ିଯାଇଥାଏ । ମୋ ସଙ୍ଗେ କଥାବାର୍ତ୍ତା କରିବାକୁ ତାଙ୍କୁ ଦାଦା ପ୍ରଶ୍ରୟ ଦେଇଥାନ୍ତି ବୋଲି ମୋର ସନ୍ଦେହ ହେଉଥାଏ । ପ୍ରଥମ କଥାବାର୍ତ୍ତାର ପ୍ରାୟ ମାସେ ଖଣ୍ଡେ ପରେ ଦିନେ ପ୍ରଦୀପ ବାବୁ ମୋତେ ଏକୁଟିଆ ପାଇ ପୁଣି ସେଇ କଥା ଉଠାଇଲେ । ମୋର ମୁରବି ମୁଁ ନୁହେଁ ବୋଲି କହିବାରୁ ସେ ଫିଟାଇ କହିଲେ, "ମୁଁ ଇତିମଧ୍ୟରେ ଦାଦାଙ୍କ ସଙ୍ଗେ କଥାବାର୍ତ୍ତା କରିଛି, ଭାବୀ ଉପସ୍ଥିତ ଥିଲେ ।

ମୋର ଜାତକୁଳ ବିଷୟରେ ପ୍ରମାଣ ଦେଇଛୁ, ଆହୁରି ବି ଦେବାକୁ ତିଆର ଅଛୁ । ମୁଁ ଚ୍ରୀର ଘରି ନୁହେଁ—ଏ କଥା ଶପଥ କରି କହିପାରେ ।'

ମୁଁ ଉତ୍ତେଜିତ ଭାବେ କହିଲି, 'ତାଙ୍କ କଥା ଉଠାଇବାର କି ପ୍ରୟୋଜନ ? ମୁଁ ତ ତାଙ୍କ ସଙ୍ଗେ କଥାବାର୍ତ୍ତା ବି କରି ନାହିଁ ।'

ସେ ହସି ହସି କହିଲେ, 'ତୁମେ କଥାବାର୍ତ୍ତା ହୋଇନାହିଁ, ଏକଥା ମୁଁ ଜାଣେ । ଖାଲି ଗୋଟାଏ ସନ୍ଦେହ କେମିତି ହୋଇଯାଇଥିଲା ଯେ ସେ ମୋର ପ୍ରତିଦ୍ୱନ୍ଦୀ । ତୁମର ଉତ୍ତେଜିତ ପ୍ରତିବାଦରୁ ତ ବିଚାରୁଛି, ମୋର ସନ୍ଦେହ ଏକାବେଳକେ ଅମୂଳକ ନୁହେଁ । ଏହାର ମୁଁ ଜବାବ୍ ଦେଲି ନାହିଁ । ମୁଁ ଧରା ପଡ଼ିଗଲି ବୋଲି ମନକୁ ମନ ବିଚାରିଲି । ସେ କ'ଣ ବିଚାରିଲେ କେଜାଣି ? କିଛି ସମୟ ପରେ ମୁଁ ଗୋଟିଏ କାମର ବାହାନା କରି ଉଠି-ଗଲାବେଳକୁ ସେ ମୋତେ କହିଲେ, 'ମୋର ଆଉ ଗୋଟିଏ ମାତ୍ର କଥା ଶୁଣିଯାଅ । ଦାଦା ମୋତେ କହିଛନ୍ତି, ତୁମର ଯଦି ଆପତ୍ତି ନ ଥାଏ, ତାଙ୍କର ଆଦୌ ଆପତ୍ତି ନାହିଁ । ଅପରନ୍ତୁ ସେ ଖୁବ୍ ଖୁସୀ ହେବେ ।' ଏତିକି ସେ କହିବାରେ ମୋତେ କେଜାଣି କାହିଁକି କାନ୍ଦ ମାଡ଼ିଲା । ମୁଁ ମୁହଁରେ ଲୁଗା ଦେଇ ବାହାରିଗଲି । ସେଇ ତାଙ୍କ ସଙ୍ଗେ ମୋର ଶେଷ ଦେଖା ।

ସେଦିନ ରାତିରେ ଆମେ ସବୁ ଖାଇ ସାରି ଶୋଇବା ପୂର୍ବରୁ ଦାଦା ମୋତେ ପାଖକୁ ଡାକିଲେ ଓ ମୋ ପିଠିରେ ହାତ ବୁଲାଉ ବୁଲାଉ କହିଲେ 'ତାରା ! ଆଜି ଗୋଟିଏ ନୂତନର ବିଷୟରେ ତୋ' ସଙ୍ଗେ ପଦେ କଥାବାର୍ତ୍ତା ହେବାକୁ ବିଚାରୁଛି । ଭାବୀଙ୍କର ମତ ତୋତେ ପଚାରିବା ନିଷ୍ପ୍ରୟୋଜନ । ଆମେ ଦୁହେଁ ତୋର ହିତ ପାଇଁ ଯାହା କରିବାକୁ ଯାଉଛୁ ସେଥିରେ ତୋର ଅମତ ହେବାର କାରଣ ନାହିଁ ବୋଲି ସେ କହୁଛନ୍ତି । କିନ୍ତୁ ମୁଁ ବିଚାରୁଛି, ତୁ ଆମ ସଙ୍ଗେ ବିଚାରରେ ମିଶିଲେ ଭଲ ।' ଭାବୀ ମୋ'ର ଏ ପାଖରେ ବସି ମୁରୁକି ମୁରୁକି ହସୁଥାନ୍ତି ।

ମୁଁ କିଛି କହିଲି ନାହିଁ କି ଶୁଣିବାକୁ ଉତ୍ସୁକ ବୋଲି ଭାବଭଙ୍ଗୀ ଦେଖାଇଲି ନାହିଁ । ସେ ଯେଉଁ ବିଷୟରେ କହିବେ ତା ତ ମୁଁ ଆଗରୁ ଜାଣିଥାଏଁ । ସେ କହିଲେ, 'ଆମ ଦୁହିଙ୍କ ସଙ୍ଗେ ଚିରକାଳ ରହିଲେ ଭଲ ବୋଲି ତୁ ବିଚାରୁଛୁ, ମୁଁ ଜାଣେ । କିନ୍ତୁ ତୋତେ ସିନା ଭଲ ଆମକୁ ସେଇଟା ଭାରି ଅସୁନ୍ଦର ହେବ । ଜୀବନକୁ ଉପଭୋଗ କରିବାକୁ ଆମକୁ ଯେଉଁ ସୁଯୋଗ ମିଳିଥିଲା, ତାହା ଆମେ ହରାଇଛୁ । ଅତୀତକୁ ସ୍ମରଣ କରି ସାନ୍ତ୍ୱନା ପାଇ ଆମେ କାଳ କଟାଇଦେବୁ । କିନ୍ତୁ ତୁ ? ତୋର ଜୀବନଟା ଆଗରେ ପଡ଼ିଛି । ତୋ ପାଇଁ ଭଲ ଜାଗାଟିଏ ବାଛି ତୋତେ ତୋର ସଂସାର କରିବାକୁ ଛାଡ଼ିଦେବା ଆମ ପକ୍ଷରେ ଉଚିତ ହେବ ନାହିଁ କି ?

ମୁଁ ସକ ସକ ହୋଇ କହିଲି, 'ତୁମର ଦୁହିଁଙ୍କ ସେବା କରି ମୁଁ ଯେଉଁ ସୁଖ ପାଉଛି, ତୁମକୁ ଛାଡ଼ି ମୁଁ ସେ ସୁଖ କୁତ୍ରାପି ପାଇବି ନାହିଁ । ମୋତେ ନିଜ ପାଖରୁ ଘଉଡ଼ିବା କଥା ବିଚାର ନାହିଁ ।'

ଦାଦା ମୋତେ କୁଣ୍ଢାଇ ପକାଇ କହିଲେ, 'ଦୂର୍ ପାଗଳୀ ! ତୋତେ ପାଖରୁ ଘଉଡ଼ାଉଛୁ କିଏ ? ଆମେ ତ ଯାହା କରୁଛୁ, ତା'ହେଲେ ବଞ୍ଚିଥିବା ଯାଏ ଆମେ ତୋତେ ସୁହିଁ ରହିପିବୁ । ତୋର ସୁଖ ଦୁଃଖରେ ଆମେ ଭାଗୀ ହେବୁ ।' ଭାବୀ ମୋ ମୁଣ୍ଡରେ ହାତ ବୁଲାଇ କହିଲେ, 'ଆଗ ସବୁ କଥା ଶୁଣିସାର, ତା ପରେ ଭଲ ମନ୍ଦ ବାଛିବୁ ।'

ଦାଦା ପୁଣି କହିଲେ, 'ତୋ ପାଇଁ ଗୋଟିଏ ସତ୍‌ପାତ୍ର ବାଛିବାକୁ ଭାବୀ ଡାକ୍ତର-ଖାନାରୁ ଆସିବା ଦିନୁଁ ଲାଗିଛନ୍ତି । ଆଖି ବୁଲାଇବାକୁ ମୋତେ ତ ଅବସର ମିଳି ନ ଥିଲା । ମନକୁ ମନ ଭଲ ପିଲାଟିଏ ଆସି ଜୁଟିଛି । ଶିକ୍ଷିତ, ଭଦ୍ର ବ୍ୟବହାର, କୁଳୀନ । ମୁଁ ଭଲରକମ ପ୍ରମାଣ ନେଇଛି, ସେ ଖାଲି ଉଚ୍ଚ କୁଳରେ ଜାତ ନୁହନ୍ତି, ତାଙ୍କର ମନଟା ବି ଉଚ୍ଚ । ସେ ରାଜି ହେଲେ ତୋର ଭାଗ୍ୟ ବୋଲି ଆମେ ଦୁହେଁ ବିଚାରିଲାବେଳକୁ ସେ ନିଜେ ତାଙ୍କ ଆଡ଼ୁ ପ୍ରସ୍ତାବ କଲେ ; କହିଲେ, ତୁ ତାଙ୍କୁ କହିଲୁ ଏ ବିଷୟରେ ନିଷ୍ପତ୍ତି କରିବେ ଦାଦା ଓ ଭାବୀ । କହିଥିଲୁ କି' ?

ମୋର ଆଖିରୁ ଦୁଇଟୋପା ଲୁହ ଦାଦାଙ୍କ ଲୁଗାରେ ପଡ଼ିଲା । ମନରେ ବିଚାରିଲି, ମୋର ସବୁ ଯାଇଛି ବୋଲି ବେଳେ ବେଳେ ବୃଥାରେ କାହିଁକି ? ଦାଦାଙ୍କଠାରେ ମୋ ପ୍ରତି ଯେଉଁ ବାତ୍ସଲ୍ୟ ଅଛି, ମୋ ବାପା ମା'ଙ୍କର ବି ତହିଁରୁ ଅଧିକ କଣ ରହିପାରନ୍ତା ? ମୋ ପାଇଁ ୟାଙ୍କର ଏତେ ମମତା ! ମୁଁ ୟାଙ୍କ କଥାରେ ଉଁ ଚୁଁ କରିବାକୁ କିଏ ? ମୁଣ୍ଡ ନାଡ଼ି ତାଙ୍କ ପ୍ରଶ୍ନର ଉତ୍ତର ଦେଲି । ଭାବୀ କହିଲେ, 'ତୁମକୁ ମୁଁ କଣ କହୁଥିଲି ଦାଦା ? ଦାଦା ଓ ଭାବୀ ନିଷ୍ପତ୍ତି କରିବେ ବୋଲି ତ ସେ କହି ସାରିଛନ୍ତି, ଆଉ ପଚାରିବା ଦରକାର କଣ ?'

ଦାଦା ମୋତେ ପୁଣି ପଚାରିଲେ, 'ଆମେ ନିଷ୍ପତ୍ତି କରିଛୁଁ, ଆଗାମୀ ତିଥିରେ ପ୍ରଦୀପ ବାବୁଙ୍କ ହାତରେ ତୋତେ ସମର୍ପଣ କରିଦେବୁଁ । ତୋର ମନ ମାନୁଛି କି ? ତୁ ଯଦି ସାନ ପିଲା ହୋଇଥାନ୍ତୁ, ତୋ ମତ ନେବା କଥା ଉଠନ୍ତା ନାହିଁ, କିନ୍ତୁ ଭାବୀ କହୁଛନ୍ତି, ତୋତେ ଅଠର ଚାଲୁଛି । ସେ ତୁମ ଗାଁକୁ ଆସିଲାବେଳକୁ ତୋତେ ହୋଇଥିଲା ୬।୭ ବର୍ଷ । ଏବେ ସେ ବାରବର୍ଷରୁ ଅଧିକ ହେଲା ଆସିଲେଣି । ନୁହେଁ ? ବଡ଼ିଲା ଝିଅଙ୍କ ମତ ନ ନେଇ ବିଭା-ଘର ପ୍ରସ୍ତାବ କରିବା ଉଚିତ ନୁହେଁ । କଣ କହୁଛୁ ?' ମୁଁ ଆଉ କଣ କହନ୍ତି ? ଉଠିପଡ଼ି ଦୁହିଁଙ୍କ ପାଦତଳେ ଯୋଡ଼ାଏ ମୁଣ୍ଡିଆ ମାରିଲି । ଦୁହେଁଯାକ ଠିଆହୋଇପଡ଼ି ଏକା ସଙ୍ଗେ ମୋତେ କୁଣ୍ଢାଇ ପକାଇଲେ ଓ ଏକସ୍ୱରରେ କହିଲା ପରି କହିଲେ, 'ମା ! ତୁମର ଜୀବନ ସୁଖମୟ ହେଉ । ଭଗବାନ ଯେତେ ଦୁଃଖ ଦେଲେଣି ତାର ବିନିମୟରେ ତୁମକୁ ସୌଭାଗ୍ୟ-ବତୀ କରନ୍ତୁ । ଦୁହେଁ ମୋତେ ବାସର ଘରକୁ ବାଟ କଢ଼େଇ ନେଲାପରି ମୋ ଶେଯ ପାଖକୁ ନେଇଗଲେ । ସମସ୍ତେ ଶୋଇଲୁଁ ।

ଦଶମିନଟ୍ ଭିତରେ ବାରିଲି, ଭାବୀ ଓ ଦାଦା ଦୁହେଁ ନିଘୋଡ଼ ନିଦରେ ଶୋଇଛନ୍ତି । କିନ୍ତୁ ମୋତେ ନିଦ ହେଲା ନାହିଁ । ପ୍ରଦୀପ ବାବୁଙ୍କ ପାଖରୁ ଆଜି ସଂଧ୍ୟାରେ ଯେପରି ଅଭଦ୍ର ଭାବେ ଉଠି ଆସିଲି ତାହା ମନେ ପଡ଼ି ନିଜକୁ ଧିକ୍‌କାରିଲି । ମୋଠାରେ ଅଛି କଣ ? ସବହରା ଅଜ୍ଞାତକୁଳଶୀଳା ବାଳିକାଟାଏ । ସେ କୁଳୀନ, ଉଚ୍ଚ ଶିକ୍ଷିତ, ସୌମ୍ୟ । ତାଙ୍କର

ମୋ' ପ୍ରତି ଏତେ ଅନୁଗ୍ରହ ଅଥଚ ତାଙ୍କୁ ମୁଁ ଗୋଡ଼ରେ ଫିଙ୍ଗି ଦେଲା ପରି ପଳାଇ ଆସିଲି । ସେ କ'ଣ ବିଗିଡ଼ିଥିବେ ? ଦାଦା ମୋତେ ପାଖରୁ ଅନ୍ତର କରିଦେବେ ବୋଲି ମୋତେ କାନ୍ଦ ମାଡ଼ିଲା । ଅଥଚ ସେ ଯଦି ବିଗିଡ଼ିଥିବେ, ତାଙ୍କର ଦୁର୍ବ୍ୟବହାରରେ ମୁଁ ବ୍ୟଥିତ ହୋଇ କାନ୍ଦିଲି ବୋଲି ? ତାଙ୍କଠାରୁ କି ଭାଷାରେ କ୍ଷମା ମାଗିବି, ମନେ ମନେ ଭାବିଲି ।

ଭାଉଜଙ୍କ ପ୍ରତି, ବିଶେଷ କରି ଦାଦାଙ୍କ ପ୍ରତି କୃତଜ୍ଞତାରେ ମନ ପୂରିଗଲା । ନିଜେ ସେ ଦୁହେଁ ଗରିବ, ଅଥଚ ମୋତେ ସୁଖୀ କରିବାକୁ ଦୁହିଁଙ୍କର କେତେ ଆଗ୍ରହ ! ମୋ ଜୀବନ ତମାମ ସେମାନଙ୍କ ଋଣ ଶୁଝିବାକୁ ସଂକଳ୍ପ କଲି । ପ୍ରଦୀପ ବାବୁ ତ ଅଳ୍ପ ଦିନରେ ଏଲ୍ଲାବାଦରେ ସ୍ଥାୟୀ ହୋଇ ରହିବେ, ତା ହେଲେ ଏ ଦୁହିଁଙ୍କୁ ମଧ୍ୟ ସାଙ୍ଗରେ ଧରି ଯିବି । ଏଲ୍ଲାବାଦରେ ରହିବାକୁ ଦାଦା ତ ଥରେ ଦି'ଥର କହିଛନ୍ତି । ସମସ୍ତେ ଏକ ସଙ୍ଗେ ରହିବୁ, ମୋର ମା ଓ ଶାଶୁଙ୍କୁ ଯେପରି ମାନ୍ୟ କରିବାର କଥା, ଏମାନଙ୍କୁ ସେହିପରି ମାନ୍ୟ କରିବି । ଭୁଲେ ବି ଏପରି କିଛି କରିବି ନାହିଁ, ଯହିଁରେ ତାଙ୍କ ମନରେ ଟିକିଏ ମାତ୍ର ଦୁଃଖ ହେବ ।

ପ୍ରଭାତ ବାବୁଙ୍କ କଥା ମନେ ପଡ଼ିଲା । ତାଙ୍କ ରୂପ ଦେଖି ତାଙ୍କ ପ୍ରତି ମନେ ମନେ ଆକୃଷ୍ଟ ହୋଇଥିଲି ଯିନା ! ପ୍ରକୃତରେ କ'ଣ ସେ ସ୍ୱାମୀଙ୍କଠାରୁ ସୁନ୍ଦର ? ଛି, ତାଙ୍କର ଯେଉଁ ଗୁଣ ! ବ୍ୟଭିଚାରୀ ସେ, ଠିକ ନୂଆଗୋଉଁର ପିଏ ! ଦୈବାତ୍ ତାଙ୍କ ହାତରୁ ଯେ ପଡ଼ିଥିଲେ, ବଡ଼ ଦାଦାଙ୍କ ଦଶା ଭୋଗ କରିଥାନ୍ତି ଯିନା ! ସାଙ୍ଗେ ସାଙ୍ଗେ ମନେ ପଡ଼ିଲା ସୂର୍ଯ୍ୟବାବୁଙ୍କ ଚରିତ୍ରରେ ପରିବର୍ତ୍ତନ କଥା । ବଡ଼ ଦାଦା ଏବେ ଦୁଇଚାରି ଦିନ ତଳେ ଆସିଥିଲେ, ତାଙ୍କ ମନରେ ଆଉ ଲେଶମାତ୍ର ଅସନ୍ତୋଷ ନାହିଁ । ତାଙ୍କର ପୂର୍ବ ରୂପ ଫେରି ଆସୁଛି ବୋଲି ଦାଦା ମୋତେ ସେ ଦିନ ବଡ଼ଦାଦା ଯିବା ପରେ କହିଥିଲେ । ସୂର୍ଯ୍ୟବାବୁ ବର୍ତ୍ତମାନ ପୁରା ବଦଳି ଯାଇଛନ୍ତି ବୋଲି ବଡ଼ ଦାଦା କହୁଥିଲେ । ପିଲାମାନଙ୍କର ଯତ୍ନ ନେଉଛନ୍ତି, ବଡ଼ ପୁଅଟିକୁ ପଢ଼ାଉଛନ୍ତି । ଟିକିଏ ବେଳ ମିଳିଲେ କ'ଣ ଗୋଟାଏ ଲେଖୁଛନ୍ତି, ଇଂରେଜୀ ଭାଷାରେ ଏମ୍. ଏ. ପାସ କରିଛନ୍ତି, କଲେଜରେ ପତ୍ରିକାର ସଂପାଦକ ହୋଇଥିଲେ । ଲେଖି ପଢ଼ି ଜାଣୁଥିଲେ ଯେପରି, ବକ୍ତୃତା ଦେଇପାରୁଥିଲେ ସେପରି । ନିଜର ଦୁରଭ୍ୟାସ ଓ କୁସଙ୍ଗ ଛାଡ଼ିପାରିଲେ ପୁଣି ସେ ମଣିଷ ପରି ମଣିଷ ହୋଇଯିବେ ।

ତାଙ୍କ କଥା ଭାବୁ ଭାବୁ ଭାବିଗଲି ପ୍ରଭାତ ବାବୁଙ୍କ କଥା । ତାଙ୍କର ବି ପରିବର୍ତ୍ତନ ହୋଇପାରେ । ସେ ବି ଭଲ ମଣିଷ ହୋଇପାରନ୍ତି । ଏ କଥା ମନରେ ଆସିବା ମାତ୍ରେ ଆପଣାକୁ ଦୋଷିଲି । ଛି ! ସେ ପରପୁରୁଷ, ତାଙ୍କ କଥା ମୁଁ ଭାବୁଛି କାହିଁକି ? ପ୍ରଦୀପ ବାବୁଙ୍କ କଥା ଭାବୁ ଭାବୁ କେତେବେଳେ ନିଦ ଲାଗିଗଲା । ନିଦରେ ମଧ୍ୟ ତାଙ୍କରି ସାଙ୍ଗରେ ସ୍ୱପ୍ନରାଜ୍ୟରେ ବୁଲିଲି, ପାଖରେ ପିଲା ଦୁଇଟି ଥାନ୍ତି, ଅଳ୍ପ ଦୂରରେ ଭାଉଜ ଓ ଦାଦା ବସି କ'ଣ କଥାବାର୍ତ୍ତା କରୁଥାନ୍ତି । ସେତେବେଳକୁ ସେମାନଙ୍କ ମୁଣ୍ଡରେ ଦି ଗୋଟି ଝୋଟ ।

ମୋ ନିଦ ଭାଙ୍ଗିଲା ଆଗ । ମୋ ପଛେ ପଛେ ଭାଉଜ ଉଠିଲେ । ତାଙ୍କର ଲମ୍ବା ଘଞ୍ଚ ବାଳ କେଉଁକି ବାନ୍ଧି ଶେଯରୁ ସେ ଉଠିଲା ବେଳକୁ ସ୍ୱପ୍ନରେ ବିଭୋର ହୋଇଥିବା ମୁଁ

କହିଦେଲି, 'ସ୍ୱାମୀ, ମୁଁ ସ୍ୱପ୍ନ ଦେଖିଲି ଯେ, ତୁମ ମୁଣ୍ଡର ବାଳ ଝୋଟ ଧଳ ହୋଇ-ଯାଇଛି ।' ସାଙ୍ଗେ ସାଙ୍ଗେ ସେ ଉତ୍ତର ଦେଲେ, 'ଆଉ ସେତେବେଳକୁ ତୁମର କୋଡ଼ରେ କାଖରେ ହୋଇ ଚାରିଟି ପିଲା ।' ମୁଁ ବି ଚାରିଟା ପିଲା ସ୍ୱପ୍ନରେ ଦେଖିଥିଲି । ତେବେ କ'ଣ ସ୍ୱାମୀ ବି ସେଇ ସ୍ୱପ୍ନ ଦେଖୁଥିଲେ ! ମୁଁ ଲାଜରେ ମୁହଁ ଘୋଡ଼ିଦେଲି । ଦାଦାଙ୍କର ନିଦ ଭାଙ୍ଗି ଯାଇଥାଏ, ସେ ବିଛଣାରେ ଖାଲି ଗାମେଇ କରି ପଡ଼ିଥାନ୍ତି । ଆମ ବଚନିକା ଶୁଣି ସେ ଖେଁ କିନି ହସିଦେଲେ ; ଓଃ କି ହସ ! ସେଇ ଦିନ ଆମ ସମସ୍ତଙ୍କର ହସ ଉକୁଆଁ ହୋଇଗଲା ।

ଆମ ଶୋଇବା ଘର ଚଞ୍ଚଳ ହୋଇଯିବାର ଇସାରା ପାଇ ସାଙ୍ଗେ ସାଙ୍ଗେ ନେପାଳୀ ଦରୁଆନ ଆସି ସଲାମ ଦେଇ କହିଲା, 'ହଜୁର ! ସେ ପଡ଼ାର ଦାଦା ତାଙ୍କ ପିଲା ଛନୋଟିଙ୍କୁ ଧରି ଆସିଛନ୍ତି ; ଖୁବ୍ କାନ୍ଦୁଛନ୍ତି ।'

ଦାଦା ଉଠିପଡ଼ି ବିରକ୍ତ ହୋଇ କହିଲେ, 'ତାଙ୍କୁ ଦୁଆରେ ନ ରୋକିବାକୁ ମୁଁ କେତେଥର କହିଲିଣି ?' ଦରୁଆନ ବିଚରା ଦୋଷ କଲାପରି କହିଲା, 'ଆପଣ ଉଠି ନାହାନ୍ତି ବୋଲି କହି ତାଙ୍କୁ ବୈଠକଖାନାରେ ବସାଇଛି ।' କଥା ସରିବା ପୂର୍ବରୁ ସେ ତଳ ମହଲାକୁ ଚାଲି ଯାଇ ଦୁଇ ମିନିଟ୍ ଭିତରେ ବଡ଼ ଦାଦା ଓ ପିଲାମାନଙ୍କୁ ଧରି ଆସିଲା । ମୋତେ ପିଲା-ମାନଙ୍କ ଯତ୍ନ ନେବାକୁ ସଂକେତ ଦେଇ ଦାଦା, ବଡ଼ ଦାଦାଙ୍କୁ ଧରି ଗୋଟାଏ ଘରକୁ ପଶି-ଗଲେ ଓ ଦୁଇ ତିନି ମିନିଟ ଭିତରେ 'ରାମଲଗନ ରାମଲଗନ' କହି ତଳକୁ ବଡ଼ ଦାଦାଙ୍କ ସାଙ୍ଗେ ଓହ୍ଲାଇଗଲେ । ତଳକୁ ଗଲାବେଳେ ମୋ ଉପରେ ନଜର ପଡ଼ିଯିବାରୁ କହିଲେ, 'ତାରା ! ତୁ ଆମ ସାଙ୍ଗରେ ଆ, ସ୍ୱାମୀ ପିଲାଙ୍କ କଥା ବୁଝିବେ ।' ମୁଁ ତରତରରେ ସ୍ୱାମୀଙ୍କ-ଠାରୁ ଅନୁମତି ନେଇ ଓହ୍ଲାଇ ଆସିଲି । ସେତେବେଳକୁ ମଟର ବାହାରି ଷ୍ଟାର୍ଟ ହୋଇ-ଯାଇଥାଏ, ମୁଁ ବସିବା ସାଙ୍ଗେ ସାଙ୍ଗେ ଚାଲିଲା ।

କେଉଁଠିକୁ ଯିବାକୁ ହେବ ଆଗରୁ ବୋଧହୁଏ କୁହାଯାଇଥାଏ । ରାମଲଗନ୍ କିଛି ନ ପଚାରି ବଡ଼ ଥାନା ଦୁଆରେ ମଟର ରଖି ଓହ୍ଲାଇଗଲା ଓ ପଛ ସିଟ୍‌ର ବାଁ ପଟ ଦୁଆର ଫିଟାଇଲା । ଆମେ ତିନିହେଁ ତୁନୀ ହୋଇ ଥାନା ଭିତରେ ପଶିଲୁ । ଡିଉଟିରେ ଥିବା ଅଫିସରଙ୍କୁ ଦାଦା କହିଲେ, 'ଏଙ୍କ ଘରେ ଦୁଇ ଜଣ ଖୁନ୍ ହୋଇଛନ୍ତି, ଇତଲା ଦେବାକୁ ଆସିଲୁଁ । ସାଙ୍ଗେ ସାଙ୍ଗେ ଡାକ୍ତର ବ୍ୟବସ୍ଥା ନ କଲେ ଦୁହେଁଯାକ ମରିଯାଇପାରନ୍ତି ।' ଆଚ୍ଛା, ଅଚ୍ଛା ବୋଲି କହି ଅଫିସର ଡାକ୍ତରଖାନାକୁ ଓ ତାଙ୍କର ଉପରିସ୍ଥ ଅଫିସରଙ୍କୁ ଟେଲି-ଫୋନ କରିଦେଇ ସେମାନଙ୍କୁ ଘଟଣାର ସ୍ଥାନ ଜଣାଇଦେଲେ । ଦୁଇ ଚାରି ଧାଡ଼ି ଇତଲା ଲେଖି ବଡ଼ ଦାଦାଙ୍କ ଦସ୍ତଖତ ନେଇ କହିଲେ, 'ଭୋର ବେଳ । ଆମ ଡ୍ରାଇଭର ଆସିବାକୁ ଟିକିଏ ବିଳମ୍ବ ହେବ । ଆପଣଙ୍କ ଗାଡ଼ି, ଅଧଘଣ୍ଟେ ବ୍ୟବହାର କରିବାକୁ ଦେଲେ ଭଲ ହୁଅନ୍ତା ।' ଦାଦା ହଁ କଲେ । ତାଙ୍କ ସାଙ୍ଗରେ ଆସିବାକୁ ସେ ଦାଦାଙ୍କୁ ଡାକିବାରେ ଦାଦା କହିଲେ, 'ମୋ ସାଙ୍ଗେ ଏ ପିଲାଟା ଅଛି, ଏଙ୍କୁ ବାଟରେ ଆମ ଘରେ ଛାଡ଼ିଦେଲେ ଭଲ ହୁଅନ୍ତା ।' ମୁଁ ଅମାନିଆ ହୋଇ ସାଙ୍ଗରେ ରହିବି ବୋଲି କହିଲି, କାହିଁକି କେଜାଣି ?

ଆମେ ସମସ୍ତେ ଯାଇ ମଟରରେ ବସୁଛୁ, ଏଇ ସମୟରେ ଦୁଇଜଣ ସିପାଇ ପ୍ରବୀର ବାବୁଙ୍କୁ ଟଳାଇ ଟଳାଇ ଆଣି ଥାନା ପାହାଚରେ ଉଠିଲେ । ବଡ଼ ସିପାହୀ ଅଫିସରଙ୍କୁ କୁର୍ଣିସ୍ କରି କହିଲା, 'ହଜୁର ! ଏ ସାହେବ ଆକ୍‌ସିଡେଣ୍ଟ କରି ଗୋଟାଏ ପିଲାକୁ ଜଖମ କରିଦେଇଛନ୍ତି' । ଅଫିସର ପଚାରିଲେ, 'ପିଲା ?' ସିପାହୀ କହିଲା, 'ସେ ବର୍ତ୍ତମାନ ଡାକ୍ତର-ଖାନାରେ ।' ଏତିକିବେଳେ ପ୍ରବୀର ବାବୁଙ୍କର ନଜର ଆମ ଉପରେ, ବିଶେଷ କରି ବଡ଼ ଦାଦାଙ୍କ ଉପରେ ପଡ଼ିଗଲା, ତାଙ୍କ ଆଖି ଲାଲ ହୋଇଗଲା । ବଡ଼ ଦାଦା ଶଂକା ଯାଇ ଅଥମତ ହୋଇ କହିଲେ, 'ହଜୁର ! ଏଇ ଖୁନୀ ଆସାମୀ, ଦେଖନ୍ତୁ, ୟାର ଡାହାଣ ହାତ କଟଟି ମୁଁ କାମୁଡ଼ି ଦେଇଛି । ତାକୁ ଘୋଡ଼ାଇବାକୁ ସେ କେମିତି ରୁମାଲ ବାନ୍ଧିଛି, ଦେଖନ୍ତୁ ।'

ଅଫିସର ମଟରକୁ ନ ଯାଇ ଅଫିସକୁ ଫେରିଲେ ଓ ଆକ୍‌ସିଡେଣ୍ଟର ଇତଲା କାଟି ଆଉ ଥରେ ଟେଲିଫୋନ କଲେ । ପାଞ୍ଚ ମିନିଟ୍ ଭିତରେ ଦୁଇଟା ଗାଡ଼ି ଦୁଇ ଦିଗରୁ ଆସି ପହଂଚିଲା । ଗୋଟିକରେ ଆସିଥାନ୍ତି ବଡ଼ ପୁଲିସ ଅଫିସର ଓ ଆଉ ଗୋଟିକରେ ଆସିଥାନ୍ତି ମଟର ପରୀକ୍ଷା କରିବା ହାକିମ୍ । ବଡ଼ ଅଫିସର ଟେଲିଫୋନ କରି ଖବର ନେଲେ ଯେ, ଆମ୍ବୁଲାନ୍‌ସ୍ ବଡ଼ ଦାଦାଙ୍କ ଘର ପାଖକୁ ଯିବାକୁ ପ୍ରସ୍ତୁତ ହେଲାଣି । ପୁଲିସ୍ ସାହେବ ହୁକୁମ ଦେଲେ, ଖୁନ ହୋଇଥିବା ଲୋକଙ୍କୁ ଡାକ୍ତରଖାନା ଅଣାଯିବ । ସାହେବ ପ୍ରବୀର ବାବୁଙ୍କୁ ହାଜତରେ ପୂରାଇବାକୁ ହୁକୁମ ଦେଲେ । ପ୍ରବୀର ବାବୁ ଚିତ୍କାର କରି କହୁଥାନ୍ତି, 'ଭଦ୍ର-ଲୋକଙ୍କୁ ଏଭଳି ହାଜତରେ ପୂରାଇବାର ଫଳ ଭୋଗିବାକୁ ହେବ ।' ଦୁଇ ତିନିଥର ଏଭଳି ଚିତ୍କାର କରିବା ପରେ ବଡ଼ ସାହେବ ଜମାଦାରଙ୍କୁ କହିଲେ, 'ୟାର ପାଟି ବନ୍ଦ କର ।' ସଙ୍ଗେ ସଙ୍ଗେ ମୋଟା ଜମାଦାର ଆମ ଆଡ଼କୁ ପଛ କରିଦେଲେ, ଠାଇ କିନା ଗୋଟାଏ ଶବ୍ଦ ହେଲା । ପ୍ରବୀର ବାବୁଙ୍କ ପାଟିରୁ ଶୁଣାଗଲା 'ଉଃ' ବୋଲି ଶବ୍ଦ ।

ବଡ଼ ସାହେବ ବଡ଼ ଦାଦାଙ୍କୁ କହିଲେ, 'ଆପଣଙ୍କୁ ଆମ ସଙ୍ଗେ ଯିବାକୁ ହେବ ।' ବଡ଼ ଦାଦାଙ୍କ ଘରଆଡ଼େ ତିନୋଟା ମଟର ଗଲା, ଗୋଟାକରେ ବଡ଼ ପୁଲିସ ସାହେବ ଏବଂ ଆଉ ଦୁଇଜଣ ଅଫିସର । ମଝିରେ ଆମ ଗାଡ଼ିରେ ଆମେ ତିନିହେଁ, ପଛ ଜିପ୍‌ରେ ପ୍ରାୟ ଦଶଜଣ ଜମାଦାର ଓ ସିପାହୀ । ପୁଲିସ୍ ସାହେବ ବଡ଼ ଦାଦାଙ୍କ ଦୁଆର ପାଖେ ପହଂଚି ଫଟକକୁ ଓହ୍ଲାଇ ପଡ଼ିଲେ ଓ ଦୁଆରେ କଡ଼ା ପହରା ରଖି ବଡ଼ ଦାଦାଙ୍କ ସହିତ ଘର ଭିତରକୁ ଗଲେ । ଘର ଭିତରେ ପ୍ରାୟ ପାଞ୍ଚ ମିନିଟ ରହି ସେ ବାହାରକୁ ବାହାରି ଆସିଲେ । ସେତେବେଳକୁ ଡାକ୍ତରଖାନାରୁ ଆମ୍ବୁଲାନ୍‌ସ୍ ଆସି ପହଂଚିଥାଏ । ଡାକ୍ତରଖାନାକୁ ଦୁଇଟି ଯାକ ଖୁନ ହୋଇଥିବା ଲୋକଙ୍କୁ ନେଇଯିବାକୁ ହୁକୁମ ଦେଇ ସେ ବଡ଼ ଦାଦାଙ୍କୁ କହିଲେ, 'ଏଠାରେ ବସିବାର ସୁବିଧା ନାହିଁ ଦେଖୁଛି । ଆପଣଙ୍କୁ କଷ୍ଟ କରି ପୁଣି ପୁଲିସ୍ ଥାନାକୁ ଯିବାକୁ ପଡ଼ିବ ।' ଦାଦାଙ୍କୁ ଗୁହିଁ କହିଲେ, 'ଆପଣଙ୍କୁ ବି ଟିକିଏ କଷ୍ଟ ଦେବି ।'

ସିପାହୀଙ୍କ ସହିତ ଜଣେ ଅଫିସର ସେ ଘର ଦୁଆରେ ରହିଲେ, ଆଉ ଜଣେ ଅଫିସରଙ୍କୁ ବରାଦ ହେଲା, ଆକ୍‌ସିଡେଣ୍ଟ ଜାଗାକୁ ମଟର ଇନସପେକ୍‌ଟରଙ୍କ ସହିତ ଯିବାକୁ ;

ଆମେ ଉନହେଁ ଓ ବଡ଼ ପୁଲିସ୍ ସାହେବ ଥାନାକୁ ଫେରିଲୁଁ । ଥାନାରେ ସମସ୍ତେ ବସିଲା ପରେ ପୁଲିସ୍ ସାହେବ ବଡ଼ ଦାଦାଙ୍କୁ କହିଲେ, 'ମୁଁ ତ ଆପଣଙ୍କଠାରୁ ସବୁ ବିଷୟ ପ୍ରାୟ ଶୁଣି ସାରିଛି । ତଥାପି ସ୍ୱସ୍ଥ ଭାବରେ ବସି ସବୁ କଥା ଆପଣ ମୂଳରୁ ଶେଷ ଯାଏଁ ଥରେ କହନ୍ତୁ । ମୁଁ ଲେଖି ନେବି ।'

ବଡ଼ ଦାଦା କହିଲେ, "ରାତି ପ୍ରାୟ ନ'ଟା ହେବ । ଆସାମୀ ମୋ ସ୍ୱାମୀଙ୍କ ବ୍ୟକ୍ତିତ ଆଉ ଯେଉଁ ଜଣକୁ ଛୁରୀ ଭୁଷି ମାରିଛନ୍ତି ( ସାହେବ ଆପତ୍ତି କଲେ, 'ଛୁରୀ ଭୁଷିଛନ୍ତି, କିନ୍ତୁ ମାରିଛନ୍ତି ବୋଲି ତ ଜଣାଯାଇନାହିଁ') ତାଙ୍କୁ ସାଙ୍ଗରେ ଧରି ଆମ ଘରକୁ ଆସିଲେ । ସେ ମଝିରେ ମଝିରେ ଅନେକ ଥର ଆମ ଘରକୁ ଆସନ୍ତି । ମୋର ସ୍ୱାମୀଙ୍କୁ ନିଜର ସାନଭାଇ ବୋଲି କହନ୍ତି । ସେ ଆସି କହିଲେ, 'ସୂର୍ଯ୍ୟ ! ଆଜି ଦୁଇଜଣ ଅତିଥିଙ୍କୁ ସତ୍କାର କରିବାକୁ ପଡ଼ିବ । ମୋ ସଙ୍ଗୀଙ୍କର ଖାଲି ରହିବାକୁ ଘର ଦରକାର । ତାଙ୍କର ପେଟ ଖରାପ । ମୁଁ ପୁଣି କିଛି ଖାଇବି । ପିଇବା ମଧ୍ୟ ଦରକାର । ତୋ ଘରେ ତ ଆଜକାଲି ପିଇବାକୁ କିଛି ରହୁନାହିଁ ; ବାହାରୁ ଆଣିବାକୁ ପଡ଼ିବ ।' ମୋର ସ୍ୱାମୀ ବଜାରକୁ ଗଲେ, ପ୍ରବୀର ବାବୁ ସାଙ୍ଗରେ ଆଣିଥିବା ଭଦ୍ରଲୋକଟିଙ୍କୁ ଆମର ଭିତର ଘରେ ବନ୍ଦ କରି ରଖିଲେ । ଆସିଲା-ବେଳେ ତାଙ୍କ ହାତ ଦୁଇଟି ପଛ ଆଡ଼ିଆ ହୋଇ ବନ୍ଧା ହୋଇଥାଏ, ଲକ୍ଷ୍ୟ କରିଛି । ତାଙ୍କୁ ଧକ୍କା ଦେଇ ଘରେ ପୂରାଇଲା ବେଳେ କହିଲେ, 'ବାବା ! କୃତ କର୍ମ ପାଇଁ ପଶ୍ଚାତ୍ତାପ କରୁ-ଥାଅ । ଯଥାସମୟରେ ମୁଁ ଆସିବି ।' ମୋ'ଠାରୁ ଗୋଟାଏ ଚାବି ନେଇ ସେ ଦୁଆରେ ପକାଇଲେ ଓ ଚାବିଟା ପକେଟରେ ରଖିଲେ ।"

ପୁଲିସ୍ ସାହେବ ଜଣେ ଜମାଦାରକୁ ଡାକି କହିଲେ, 'ହାଜତର ହାତ ପଛ ଆଡ଼ିଆ ବାନ୍ଧି ଏଠାକୁ ଆଣ ।' ପ୍ରବୀର ବାବୁଙ୍କୁ ଆଣି ଖଣ୍ଡେ ଦୂରରେ ଠିଆ କରାଗଲା । ପୁଲିସ୍ ସାହେବ କହିଲେ, 'ସ୍ଥିର ହୋଇ ନ ରହିଲେ ଗୋଡ଼ରେ ବେଡ଼ି ଦେବାକୁ ହେବ ।' ତା'ପରେ ସେ ହୁକୁମ କଲେ, 'ପକେଟରେ କ'ଣ ଅଛି ବାହାର କର । ଏହା ଆଗରୁ ହେବା ଉଚିତ ଥିଲା ।' ପକେଟରୁ ଗୋଟିଏ ସ୍ଲେଟ ତାଲା ଓ ଚାବି ବାହାରିଲା । ବଡ଼ ଦାଦା କହିଲେ, 'ସେ ତ ମୋର ତାଲା ଓ ଚାବି !' ପୁଲିସ ସାହେବ କହିଲେ, 'ସେଟାକୁ ଜମା ନିଅ । ସାକ୍ଷୀ ଦସ୍ତଖତ କରାଅ ।' ତୁନି ତୁନି କହିଲେ, 'ଏ ବଚ୍ଚା ଫାସୀ ଖୁଣ୍ଟରେ ଝୁଲିପାରିବ ।' ତା'ପରେ ବଡ଼ ଦାଦାଙ୍କୁ ଚାହିଁ କହିଲେ, 'ତା' ପରେ ?'

ବଡ଼ ଦାଦା କହିଲେ, 'ମୋର ସ୍ୱାମୀ ରାତି ବାରଟା ବେଳକୁ ଫେରିଲେ । ପ୍ରବୀର ବାବୁ ଖାଇ ବସିଲେ । ମୋର ସ୍ୱାମୀ ମୋତେ କହିଲେ, 'ତୁମେ ଶୋଇବାକୁ ଯାଅ ।' ମୁଁ ଶୋଇବାକୁ ଗଲି । କିନ୍ତୁ ମୋତେ ଭଲ ନିଦ ହେଉନଥାଏ । ପଛ ଆଡ଼ିଆ ହାତ ବାନ୍ଧି ଭଦ୍ର ଲୋକଟିକୁ କାହିଁକି ଏଭଳି ଘରେ ପୂରାଇଛନ୍ତି ବୋଲି ମୋ ମନରେ ଭୟ ହେଉଥାଏ । ତଥାପି କ୍ଲାନ୍ତିରେ ମୋତେ ଗୁଡ଼ାଏ ନିଦ ଲାଗିଯାଇଥିଲା ବୋଧହୁଏ । ହଠାତ୍ ଗୋଟାଏ ଗର୍ଜନ ଶୁଣି ମୁଁ ଉଠିପଡ଼ିଲି । ବାହାରକୁ ବାହାରି ଆସି ଦେଖିଲି, ପ୍ରବୀର ବାବୁ ଗୋଟାଏ ଛୁରୀ ଧରି ଠିଆ

ହୋଇଛନ୍ତି ଅଗଣାରେ । ଇଲେକ୍‌ଟ୍ରିକ୍ ଆଲ୍‌ଅରେ ତାଙ୍କର ମୁହଁ ଭୟାନକ ଦିଶୁଥାଏ । ସେ ବାରମ୍ବାର ଚିତ୍କାର କରୁଥାନ୍ତି, 'ସର୍ପ ! ତୋଠାରୁ ସାହାଯ୍ୟ ପାଇବାକୁ ଆସିଥିଲି । ସାହାଯ୍ୟ ନ କରିବୁ ନାହିଁ, କିନ୍ତୁ ବାଧା ଦେ'ନା କହୁଛି । ଭଲ ହେବ ନାହିଁ । ତୋ'ର ସ୍ତ୍ରୀ ପିଲା ଅରକ୍ଷ ହୋଇଯିବେ' ।

ମୋ ସ୍ୱାମୀ ଉତ୍ତେଜିତ ହୋଇ କହିଲେ, 'ମୋ ଘରେ ମୁଁ ମଣିଷମାରୁ କରାଇ ଦେବି ନାହିଁ । ସେ ଲୋକଟିକୁ ମୁକ୍ତ ଦିଅ, ମୁଁ କହୁଛି ।' ପ୍ରଦୀପ ବାବୁ ଆତୁର ପାଟି କରି କହିଲେ, 'ଗୋଟିଏ ମଣିଷମାରୁ କରାଇ ନ ଦେଲେ, ଦେଖୁଛି, ଦୁଇଟା ମାରିବାକୁ ହେବ ।' ମୋର ସ୍ୱାମୀ କିଛି ନ କହି ପଦ୍ମାର ବାବୁଙ୍କ ହାତରୁ ଛୁରୀଟା ଛଡ଼ାଇ ନବାକୁ ଚେଷ୍ଟା କଲେ । ପ୍ରଦୀପ ବାବୁ, 'ମୋର କିଛି ଦୋଷ ନାହିଁ' ବୋଲି କହି ଛୁରୀଟା ସ୍ୱାଙ୍କ ପେଟରେ ଭୂଷି ଦେଲେ । ମାରି ଦେଲା ଲୋ ବୋଲି କହି ମୁଁ ତାଙ୍କ ହାତକୁ କାମୁଡ଼ି ଦେଲି । ପରେ ଜାଣିଲି, ମୋ ପାଟିରେ ରକ୍ତ ଲାଗିଥିଲା । ସେ ମୋତେ ଛତରଖାଇ ବୋଲି ଗାଳିଦେଇ ଠେଲି ଦେଲେ ଯେ, ମୁଁ କାଠ ଓ କୋଇଲା ଗଦା ଉପରେ ପଡ଼ିଲି । କିନ୍ତୁ ହୋସ୍ ହରାଇ ନ ଥାଏ । ତା' ପରେ ସେ ତାଲା ଫିଟାଇ ସେ ଘରେ ପଶିଲେ । ସେ ଘରେ ଧସ୍ତାଧସ୍ତି ଶୁଭୁଥାଏ । ଯାହାକୁ ମାଇଲେ ସେ ଶେଷରେ ପାଟି କରି କହିବାର ଶୁଣିଲି, 'ଭଗବାନ୍ ଏହାର ଫଇସଲ କରିବେ ।'

ପୁଲିସ୍ ସାହେବ ପଚାରିଲେ, 'ଯାହାଙ୍କୁ ଖୁଣି କରାଗଲା ତାଙ୍କୁ ଆପଣ ଚିହ୍ନନ୍ତି ? ଆପଣଙ୍କ ଘରକୁ ସେ କେବେ ଆସିଥିଲେ ?'

ବଡ଼ ଦିଦି କହିଲେ, 'ମୋ ଘରକୁ ସେ କେବେ ଆସିନାହାନ୍ତି । କିନ୍ତୁ ମୋ ଭଉଣୀ ଘରେ ତାଙ୍କୁ ମୁଁ ଦେଖିଛି । ତାଙ୍କର ନାମ ପ୍ରଦୀପ ବାବୁ ବୋଲି ଶୁଣିଛି ।' ମୁଁ ଯେଉଁଠାରେ ବସିଥିଲି, ସେଇଠି ବେହୋସ ହୋଇଗଲି । ଚେତା ପାଇଲି ଆମ ନିଜ ବସାରେ ।

( ୧୭ )

ପୁଲିସ୍ ଥାନାରୁ ବେହୋସ୍ ହୋଇ ଆସିବାର ପ୍ରାୟ ଦୁଇମାସ ପରେ ମୁଁ ସାଧାରଣ ଅବସ୍ଥାକୁ ଫେରିଲି । ତା' ମଧ୍ୟରେ ଦିଦି ଓ ଭିନାଙ୍କୁ ମୁଁ କେତେ କଷ୍ଟ ଦେଇଥିବି ତାହା ଅନୁମାନ କରି ବଡ଼ ଦୁଃଖ ଲାଗୁଥାଏ । ସବୁ କଥା ସ୍ପେ ବା ସିଏ ମୋତେ ବିସ୍ତାର ଭାବେ କହିନାହାନ୍ତି । ତାଙ୍କଠାରୁ ମଝିରେ ପଦେ ଦି' ପଦ ଲେଖାଏଁ ଶୁଣି, ଡ୍ରାଇଭର ରାମଲଗନ୍ ଓ ନେପାଳୀ ଦରୱାନଠାରୁ ଯାହା ଆଦାୟ କଲି, ସେଥିରୁ ସେ ସମୟର ଗୋଟାଏ ଧାରଣା କରିଥିଲି ।

ପ୍ରାୟ ପାଞ୍ଚ ଦିନ ପର୍ଯ୍ୟନ୍ତ ମୋର ବେହୋସ ଅବସ୍ଥା ଲାଗି ରହିଲା । ହରିଦ୍ୱାରର ସବୁଠାରୁ ବଡ଼ ଡାକ୍ତର ଆସି ଚିକିତ୍ସା କଲେ । ମଝିରେ ଥରେ ସେ ମୋତେ ଡାକ୍ତରଖାନାକୁ ନେବାକୁ ପ୍ରସ୍ତାବ ଦେଇଥିଲେ । ଦିଦିଙ୍କ ଅପେକ୍ଷା ଭାବୀ ଏଥିରେ ବେଶୀ ଆପତ୍ତି କଲେ । ସେ କହିଲେ, 'ରୋଗୀକୁ ଚିକିତ୍ସା କରିବାରେ ଔଷଧ ଓ ଚିକିତ୍ସା ଅପେକ୍ଷା ତା' ପ୍ରତି ସ୍ନେହ ଓ ଶ୍ରଦ୍ଧା ବେଶୀ ଦରକାର । ତାହା ରୋଗୀ ଆମ ଘରେ ଯେତେ ପାଇବ, ଡାକ୍ତରଖାନାରେ ସେତେ ପାଇବ ନାହିଁ । ଡାକ୍ତରଖାନାଗୁଡ଼ିକ ଚିକିତ୍ସା କାରଖାନା । ସ୍ନେହ ଶ୍ରଦ୍ଧା କୁଆଡ଼ୁ ମିଳିବ ?' ଡାକ୍ତର ବି ଏଥିରେ ରାଜି ହେଲେ । ସେ କହିଲେ ଆପଣ ଯାହା କହୁଛନ୍ତି, ତାହା ଏକାବେଳକେ ମିଛ ବୋଲି ମୁଁ ଉଡ଼ାଇଦେଇ ପାରୁନାହିଁ । ବର୍ତ୍ତମାନ ପରିସ୍ଥିତିରେ ଡାକ୍ତରଙ୍କଠାରୁ ଆରମ୍ଭ କରି ନର୍ସ ଓ ବେହେରାଙ୍କର ପଇସା ଉପରେ ବେଶୀ ଦୃଷ୍ଟି ରହିବାରୁ ପଇସାରେ ଯେତିକି ସ୍ନେହ ଶ୍ରଦ୍ଧା କିଣିହେବ ସେତିକି ମାତ୍ର ମିଳୁଛି । ତେବେ କେତେବେଳେ କ'ଣ ଦରକାର ଡାକ୍ତରଖାନାରେ ଯେତେ ସହଜରେ ମିଳିପାରିବ, ଏଠାରେ ମିଳିବା ସେତେ ସହଜ ହେବ ନାହିଁ ।'

ଦିଦି କହିଲେ, 'ଯାହା ପଇସା ପଡ଼ିବ ଖର୍ଚ୍ଚ କରିବାକୁ ଆମେ ପ୍ରସ୍ତୁତ ଅଛୁ । ଆପଣ ପ୍ରତ୍ୟହ ଦୁଇଥର ଲେଖାଏଁ ଆସିଲେ ବୋଧହୁଏ ଚିକିତ୍ସାରେ କୌଣସି ଅସୁବିଧା ହେବ ନାହିଁ । ଆପଣଙ୍କଦ୍ୱାରା ପିଲାଟି ରକ୍ଷା ହୋଇଯିବ ବୋଲି ଭଗବାନଙ୍କର ଇଚ୍ଛା ଥିଲେ, ସେ ଭଲ ହେବ । ଆମ ଦୁହିଙ୍କ ଜୀବନ ତା'ରି ପାଖରେ ବନ୍ଧା ।' ସେଇଆ ହେଲା । ଡାକ୍ତର ଥରକୁ ୩୨ ଟଙ୍କା ଲେଖାଏଁ, ଦିନକୁ ୬୪ ଟଙ୍କା ନେଉଥାନ୍ତି । ହପ୍ତାକ ପରେ ସେ କହିଲେ, 'ମୁଁ ଆଉ ଫିସ୍ ନେବି ନାହିଁ । ମୋର ଦରକାର ହେଲେ ଆପଣଙ୍କୁ କହିବି ।' ତାର ହପ୍ତାକ ପରେ ଦିଦି ପୁଣି ପଇସା ଯାଚିଲେ । ଡାକ୍ତରବାବୁ କହିଲେ, 'ରୋଗୀର ଯାହା ଉପକାର ହେବାର ଲକ୍ଷ୍ୟ କରୁଛି ତାହା ମୋ ଚିକିତ୍ସା ଅପେକ୍ଷା, ଆପଣମାନଙ୍କ ସେବା ଓ ଯତ୍ନ ଯୋଗୁଁ ହୋଇଛି ବୋଲି ମୁଁ ଦେଖୁଛି । ଏଠାକୁ ଦି' ଓଳି ଆସିବାଦ୍ୱାରା ମୋର ନିଜର ବହୁତ ଉପକାର ହେଉଛି । ମୁଁ ଆପଣଙ୍କଠାରୁ ଫିସ୍ ନେବା ଅପେକ୍ଷା ଆପଣଙ୍କୁ ଫିସ୍ ଦେବା ଉଚିତ ।' ସେଥି ପରେ ସେ ଆମ ପରିବାରର ଜଣେ ହୋଇଗଲେ । ମୁଁ ପୂରା ଭଲ ହୋଇଗଲା ପରେ ବି ସେ ଡାକ୍ତରଖାନାକୁ ଯିବା ଓ ଡାକ୍ତରଖାନାରୁ ଫେରିବା ବାଟରେ ଆମ ଘରେ ମୁହଁ ମାରି ଯା'ନ୍ତି । ଥରେ ଆସିଲେ ଗୋଟିଏ କପ ଚା ଓ ଆମ ଘର ତିଆରି ସିଙ୍ଗଡ଼ା ଗୋଟିଏ ହିଁ ତାଙ୍କର ଫିସ୍ ହୋଇଥାଏ । ଥରେ ସେ ଭାବୀଙ୍କୁ ରହସ୍ୟରେ କହିଲେ, 'ତୁମେ ଏଠାରେ ବସି ତୁଳସୀରାମାୟଣ ପଢ଼ିବା ଅପେକ୍ଷା ଆମ ଡାକ୍ତରଖାନା ଗେଟ୍ ପାଖରେ ଗୋଟିଏ ଚା' ଦୋକାନ ଖୋଲିଲେ ଲୋକଙ୍କର ବେଶୀ ଉପକାର ହୁଅନ୍ତା ।' ଦିଦି କହିଲେ, 'ମାନେ, କଷ୍ଟକରି ଏଠାକୁ ଆସିବାକୁ ଆଉ ପଡ଼ନ୍ତା ନାହିଁ, ସେଠାରୁ ଚା ପାଇଯାନ୍ତେ ।' ଡାକ୍ତରବାବୁ ଦକ୍ଷିଣିଆ ଲୋକ । କିନ୍ତୁ ବାହାର ଲୋକ ଦେଖିଲେ ବାପ୍ରିବ, ଦିଦି ଓ ଭାବୀ ତାଙ୍କର ଦୁଇ ବିଧବା ଭଉଣୀ । କ୍ରମେ ଡାକ୍ତରାଣୀ ଓ ତାଙ୍କର ଝିଅ ଦୁଇଟି ମଧ୍ୟ ଆମ ପରିବାରରେ ସାମିଲ୍ ହୋଇଗଲେ ।

ମୋର ସବୁଠାରୁ ଅଧିକ ସେବା କରୁଥାନ୍ତି ପ୍ରଦୀପ ବାବୁଙ୍କର ବିଧବା ମା । ତାଙ୍କଠାରୁ ପରେ ଶୁଣିଲି, ଦୁର୍ଘଟଣାର ଦୁଇଦିନ ଭିତରେ ସେ ଆମ ଘରେ ଆସି ପହଞ୍ଚିଲେ । ଦିନେ ମୋର ସ୍ୱାସ୍ଥ୍ୟ ସାଧାରଣ ଅବସ୍ଥାକୁ ଫେରି ଆସିବାରେ ସେ ମୋତେ ସେ କଥା ସବୁ ବର୍ଣ୍ଣନା କରି କହିଲେ ; ତାଙ୍କ ଆଖିରୁ ଅଜସ୍ର ଲୁହ ଗଡ଼ିବାର ଦେଖି ମୋର ବି ଲୁହ ଗଡ଼ିଲା । ସେ ମୋ ମୁଣ୍ଡରେ ହାତ ବୁଲାଇ କହିଲେ, 'କାନ୍ଦ୍ ଲୋ ମା, କାନ୍ଦ୍ ! କାନ୍ଦରେ ମଣିଷର ମନରୁ କଲମଷ ଧୋଇ ହୋଇଯାଏ । ଦିନ ଆସିବ, ଆଖିର ପାଣି ଶୁଖିଯିବ, ସେତିକବେଳେ ଆଉ ଦୁଃଖ ରହିବ ନାହିଁ । ଯାହା ବା ରହିବ, ତାହା ମନ ଭିତରେ କୋଉଠି ଗ୍ରେଚଡ଼ା ପଡ଼ି ରହିଯିବ, ଶୁଖିଲା ପଞ୍ଚ ବହି ଭିତରେ ବହୁତ ଦିନ ଚପି ହୋଇ ରହି ପାରୁ ହୋଇଗଲା ପରି—ବହି ଜାଣିବ ନାହିଁ କି ପଞ୍ଚ ଜାଣିବ ନାହିଁ ।'

ସେ ତାଙ୍କ ପ୍ରୌଢ଼ାବସ୍ଥାରେ କବିତା ଲେଖୁଥିଲେ । ତାଙ୍କ ସ୍ୱାମୀ ଏଲ୍ହାବାଦରେ ଦଡ଼ ଚାକିରି କରୁଥିଲେ । ଯୋଡ଼ାଏ ନାବାଳକ ପୁଅ ଛାଡ଼ି ସେ ଅକାଳରେ ମରିଯିବା ଦିନୁଁ ସ୍ୱେ ସେଇ ପିଲାଟିମାନଙ୍କୁ ମଣିଷ କଲେ, ନିଜ ବହିମାନଙ୍କ ବିକ୍ରୀ ଧନରେ । ବଡ଼ ପୁଅ ବିଭା ହେବା ପରେ ଘର ଛାଡ଼ି ଚାଲିଗଲେ । ଏବେ ସେ ବମ୍ବେଇରେ ଅଛନ୍ତି, ଗୋଟିଏ କଲେଜରେ ବଡ଼ ଅଧ୍ୟାପକ । ବୁଢ଼ୀ ବେଳେ ବେଳେ କହନ୍ତି "ସୁଖରେ ରହୁ । ଏଡ଼େ ବଡ଼ କଥା ହୋଇଗଲା । ଖଣ୍ଡେ ଚିଠି ବି ଦେଲା ନାହିଁ । ନ ଦେଉ । ଭଗବାନ୍‌ଙ୍କୁ ଡାକେ, ସବୁଶୁଭରେ ଥାଉ, ମୋ ଶାଶୁ ଶଶୁରଙ୍କର ନାମ ଲିଭି ନ ଯାଉ । ବଡ଼ ପଣ୍ଡିତ ହୋଇଛି ବୋଲି ବେଳେ ବେଳେ ଶୁଣେ । ଭଗବାନଙ୍କୁ ଖାଲି ଏତିକି ମାଗେ, ମା'କୁ ଯେପରି ହନ୍ତସନ୍ତ କଲା ସେଇତକ ପିଲାଙ୍କୁ ନ ଶିଖାଉ' ।" ବୁଢ଼ୀଙ୍କର ଲୁହ ମରନାହିଁ କି କାନ୍ଦ ମରନାହିଁ ।

ସେ ମୋ ମୁଣ୍ଡରେ ହାତ ବୁଲାଇ ବୁଲାଇ କହିଲେ, "ତାକୁ ! ଟୋକା ତୋ କଥା ଚିଠିରେ ଲେଖିଥିଲା । ପ୍ରଥମ ଚିଠି ପାଇ ବହୁତ ଗୁଡ଼ାଏ କାନ୍ଦିଲି । ବଡ଼ ପୁଅ ଛାଡ଼ିଯିବା ପରେ, ଯାକୁଇ ଆଶ୍ରା କରିଥିଲି । ସ୍ୱେ ବି ବିଦେଶୀ ବୋହୂଟିଏ ଆଣିଲେ ମୋତେ ତ ନିଶ୍ଚୟ ଛାଡ଼ିଯିବ । ମୋଠାରୁ ସେ ଉତ୍ତର ନ ପାଇ ଦିନେ ଆସି ପହଞ୍ଚିଲା । ତୁମ ଏଠାର ହାଲ ହକିକତ ସବୁ କହିଲା । ଗୁଡ଼ାଏ କାନ୍ଦିଲା । କହିଲା, 'ମା, ବିଦେଶୀ ମାଇକିନିଆଁଙ୍କ ପ୍ରତି ତୋ ମନରେ ଯେଉଁ ଘୃଣା ରହିଯାଇଛି, ତୋର ଏଇ ବୋହୂ ତାକୁ ପୋଛି ଦେବ ।' ସତ କହିଥିଲା, ମୁଁ ତ ପୋଡ଼ା-କପାଳୀ, ସେ ଭାଗ୍ୟ ମୋତେ ମିଳନ୍ତା କି ଆଉ ?"

ଦେହ ଭଲ ହେବା ଦିନୁଁ ମୁଁ ମୋ ଭାଗ୍ୟ କଥା ମନେ ମନେ ବିଚାରି ସ୍ଥିର କରିଥିଲି ଯେ, ମୁଁ ବିଧବା ହୋଇଛି । ବେଦୀରେ ସିନା ବସିନଥିଲି, କଥା ତ ସ୍ଥିର ହୋଇ ଯାଇଥିଲା, ମନେ ମନେ ତ ପ୍ରଦୀପ ବାବୁଙ୍କୁ ପତିରୂପେ ଗ୍ରହଣ କରି ସାରିଥିଲି । ବାସର ଘରେ ଶୋଇଲା ପରେ ସ୍ୱାମୀ-ସ୍ତ୍ରୀ ସମ୍ପର୍କ ଆସେ ବୋଲି ସାଧାରଣରେ ଯେଉଁ ଗୀତ ପଡ଼ିଯାଇଛି,

ତାହା ମୋ ମନକୁ ପାଏ ନାହିଁ । ମୋ ବାପା କହୁଥିଲେ, ଜେଠା ବି କହନ୍ତି, ନିର୍ବନ୍ଧ ସରିଲେ ବିଭା ସରିଲା । ମୋର ଜଣେ ପିଉସୀ, ବାଗ୍‌ଦତ୍ତା ହେବା ପରେ ବର ମରିଯିବାରେ, ବିଧବା ପରି ରହି ଜୀବନ କଟାଇଦେଇଥିଲେ, ଶୁଣିଛି । ଆମ ଘରର ସେଇ ପରଂପରା ମୁଁ ପାଳିବି ବୋଲି ମନେ ମନେ ସ୍ଥିର କଲି । ଦାଦାଙ୍କ ଜିଦ୍ ସତ୍ତ୍ୱେ ମୋ ଦେହସାକ ଭରି ହୋଇଥିବା ଅଳଙ୍କାର, ଗୋଟି ଗୋଟି କରି କାଢ଼ି ରଖିଦେଲି । ମୁଣ୍ଡ ବି କୁଣ୍ଡାଏ ନାହିଁ । ଖୁଡ଼ୀ ଦୁଇ ଚାରିଥର ମୋତେ ବୁଝାଇଲେ । ଶେଷରେ ଦାଦା କହିଲେ, "ତାକୁ ଆଉ ବଳାଅ ନାହିଁ । ବିଧବା ହେବା ଆଗରୁ ସେ ଯଦି ବୈଧବ୍ୟ କ୍ଲେଶ ସହିବାକୁ ଚାହୁଁଛି, ସହୁ । ରିଷ୍ଟ କଟିଗଲେ ହୁଏତ ସ୍ୱାମୀ-ସୁଖ ପାଇବ ।" ଖୁଡ଼ୀଙ୍କ ଜିଦ୍‌ରେ କେବଳ ଦୁଇ ହାତରେ କଳା ପାଣିକାଚ ପଟେ ପଟେ ରହିଲା । ଦାଦା ଓ ଖୁଡ଼ୀଙ୍କ ପରି ବକ୍ତେ ବକ୍ତେ ମାଡ଼ ଖାଇଲି । କ୍ରମେ ଏଇପରି ଚଳଣି ମୋର ଦେହରେ ଚଳିଗଲା ।

ମୋର ଏ ସଂକଳ୍ପ ଦୃଢ଼ ହୋଇଗଲା, ପ୍ରଦୀପବାବୁଙ୍କ ମା'ଙ୍କ ଦୁଃଖର ସମବେଦନାରେ । ସେ ତ ମୋ ପାଖ କେତେବେଳେ ଛାଡ଼ୁ ନ ଥାନ୍ତି । ବୋହୂ ପରି ଝିଅ ପରି, ତାଙ୍କ ଜୀବନର ସର୍ବସ୍ୱ ପରି, ମୋତେ ମନେ କରୁଥାନ୍ତି । ମୋର ବିଧବା ପରି ଚଳିବା ତାଙ୍କୁ ସନ୍ତୋଷ ଦେବ ବୋଲି ମୋର ମନେ ହେଉଥାଏ । ତାଙ୍କ ମନ ରଖିବାକୁ ଥରେ ତାଙ୍କ ସଙ୍ଗେ ଆହ୍ଲାବାଦ ଯାଇ ତାଙ୍କ ଘରେ ପନ୍ଦର ଦିନ କାଳ ରହିଲି । ଦାଦା ଜିଦ୍ କରି ରାମଲଗନ୍‌କୁ ସାଙ୍ଗରେ ପଠାଇଲେ । କିନ୍ତୁ ମଟରରେ ଯିବାକୁ ମୁଁ ଏକବାରେ ରାଜି ହେଲି ନାହିଁ । ବସରେ ଗଲୁଁ ।

ମଟର ନେଇଥିଲେ ଭାରି ଅସୁବିଧା ହୋଇଥାନ୍ତା । ତାଙ୍କ ଘର ଗୋଟିଏ ଛୋଟ ଗଳିରେ । ଘର ବୋଇଲେ ମାତ୍ର ତିନି ବଖରା, କିନ୍ତୁ ପକ୍କା । କେତେ ବର୍ଷ ହେଲା ଓଳିଆ ପୋଛିଆ ହୋଇ ନ ଥାଏ କେଜାଣି ? ଘର ସଫା କରିବାରେ ମୁଁ ସେ ଘରେ ଗୋଡ଼ ଦେଲାବେଳୁ ଲାଗିଗଲି । ରାମଲଗନ୍ ସାହାଯ୍ୟରେ ଘର ଧୂଳାଇ ବି ହୋଇଗଲା ; ଛୋଟ ବଗିଚାଟିଏ ଆରମ୍ଭ ହୋଇଗଲା । ମା ଆପତ୍ତି କରୁଥାନ୍ତି, କାନ୍ଦୁଥାନ୍ତି, କିନ୍ତୁ ମୋ ସଙ୍ଗେ କାମରେ ଲାଗିଯାଉଥାନ୍ତି । ବଡ଼ ଘରର କାନ୍ଥରେ ସେ ପ୍ରଦୀପ ବାବୁଙ୍କର ଗୋଟିଏ ଫଟୋ ରାମଲଗନ୍‌କୁ କହି ଟଙ୍ଗାଇ ଦେଲେ; କହିଲେ, ପାଗଳୀ, ଯାକୁଇ ପୂଜା କରି ଶାନ୍ତି ପାଉ । ମୁଁ ନିର୍ଜନରେ ସେ ଫଟୋଟିକୁ ଟିକିଏ ଚାହିଁ ମୁଣ୍ଡିଆ ମାରେ । କାହା ଆଗରେ ସେ ଆଡ଼କୁ ଚାହିଁବାକୁ ଭାରି ଲାଜ ମାଡ଼େ ।

ମୋ ଲାଜ ବଢ଼ିଗଲା ସ୍ୱର୍ଣ୍ଣ ଅପାଙ୍କ ଯୋଗୁଁ । ଯେଉଁ ଖବରକାଗଜରେ ପ୍ରଦୀପ ବାବୁ କାମ କରୁଥିଲେ, ସେଇ 'ଅଗ୍ରଦୂତ' କାଗଜର ସମ୍ପାଦକ ବିଜୟ ବାବୁଙ୍କର ସ୍ତ୍ରୀ ସ୍ୱର୍ଣ୍ଣ ଅପା । ଆମେ ଆସିବାର ଖବର ସେ କୁଆଡ଼ୁ ପାଇଲେ କେଜାଣି, ଆସିବାର ଦ୍ୱିତୀୟ ଦିନ ଦ'ପହରେ ଆସି ପହଞ୍ଚିଲେ । ମୋର ଆପଣାର ହେବାକୁ ତାଙ୍କୁ ଘଣ୍ଟେ ବି ଲାଗିଲା ନାହିଁ । କି ଗପୁଡ଼ି ! ସେ ଅନର୍ଗଳ ଗପିବାର ଦେଖି ମୁଁ ଟିକିଏ ମୁରୁକି ହସିଲି । ସେ ମୋ ମନର କଥା ଧରିପାରି

କହିଲେ, "ଆଲୋ ! ମୋର ଏଇ ଗପୁଡ଼ିପଣ ଦେଖି ତୋ ଦେଢ଼ଶୁର କହନ୍ତି, ସେ ଲେଖିବାକୁ ଯେମିତି, ମୁଁ ଗପିବାକୁ ସେମିତି ।" ତାଙ୍କ ଗପୁଡ଼ି ପଣରେ ସେ ଦୁ'ଘଣ୍ଟାରେ ମୋତେ ଯେତେ ଖବର ଦେଇଦେଲେ, 'ଅଗ୍ରଦୂତ' କାଗଜ ସପ୍ତାହକେ ସେତେ ଖବର ଛାପିପାରୁନଥିବ । ପ୍ରଦୀପ ବାବୁ ସ୍ୱାଙ୍କୁ ଖୁଉଜ ମାନ୍ୟ କରୁଥିଲେ ଓ ନିଜର ସବୁ କଥା ସ୍ୱାଙ୍କୁ ଶୁଣାଇ-ଦେଇଛନ୍ତି । ସ୍ୱର୍ଣ୍ଣ ଅପା କହିଲେ, "ତୋର ବିଷୟରେ ସେ ମୋତେ ପାଞ୍ଚ ଖଣ୍ଡ ଚିଠି ଲେଖିଥିଲେ, ସେ ସବୁ ମୋ ପାଖେ ଅଛି, ତୋତେ ଦେବି, ରଖିବୁ । ସ୍ୱା ଭିତରେ ଥରେ ମାତ୍ର ସେ ଆମ ଘରକୁ ଆସିଥିଲେ । ଆସିଲେ ତ ଆମ ଘରେ ଓଳିଏ ଦୁ'ଓଳି ରହନ୍ତି । ସେ ଦିନ ତୋ ନାଁରେ ଖୁବ୍‌ ଗପିଲେ । ମୁଁ କହିଲି, ମାଲୋ ! ଏ୍ୟେ ତ ପ୍ରେମବିଭ କଥା । ଉପନ୍ୟାସରେ ପଢ଼ୁଥିଲି, ଏବେ ତୁମଠାରୁ ଶୁଣିଲି । ହଉ ଯେ, ବେଦୀକୁ ଯିବା ପୂର୍ବରୁ ତାକୁ ଛୁଆଁଛୁଇଁ କରୁନାହଁ ତ ? ଥରେ ଛୁଇଁଦେଲେ ଆଉ ବାହାଘରର ସୁଖ ରହିବ ନାହିଁ । ସେ ମୋତେ କହିଥିଲେ—ଭାଉଜ ! ସେ ବିଷୟରେ ନିଶ୍ଚିନ୍ତ ଥାଅ । ତୁମର ଯେ ଯା' ହେବ ସେ ସାକ୍ଷାତ୍‌ ନାଗ ସାପ । ହାତ ଟିକିଏ ମାରଦେଲେ, ଫଁ କରି ବହିନ ମାରଦେବ ।... ଆହା ଲୁଆଡ଼େ ଗଲେ ।"—ଅଖିରେ ପଣତ କାନି ବୁଲାଇ ସେ ମୋ ଗାଲରେ ହାତ ମାରି କହିଲେ, "କଲେ ପୋଡ଼ାମୁହିଁ ! ତୁ ତ କାହିଁ ସାପ ପରି ଦିଶୁନାହୁଁ । ତତେ ତ ଛୁଇଁଦେଲେ ତୁ ତରଳି ଯାଇ ତାଙ୍କ ଉପରେ ବୋହିଯାଇଥାନ୍ତୁ ।" ମୁଁ କିଛି ନ କହି ଲାଜ ବୁହାଇଲି । ସେ ପୁଣି କହିଲେ, "ମୁଁ ସବୁ ଜାଣୁଚି ମ । ତୁ ଯଦି ଲେଡ଼ଙ୍କ ହୋଇଥାନ୍ତୁ, ଏମିତି କ'ଣ ତାଙ୍କ ପାଇଁ ଜୀବନର ସବୁ ସୁଖ ମୂଛି ପାରୁଥାନ୍ତୁ । ମହାପ୍ରଭୁ କରନ୍ତୁ, ତୋ'ର ଏ୍ୟେ ମନଟାଣ ରହୁ । ଇମିତି କେତେଟା ଲୋକ ବାହାରିଲେ ଆମ ଦେଶର ମାଇକିନିଆଁଙ୍କ ଇଜ୍ଜତ ରହିଯାନ୍ତା ।" ସ୍ୱର୍ଣ୍ଣ ଦିଦି କୁଆଡ଼େ ରହିଲେ ଖବର ରଖି ନାହିଁ । ଏବେ ଦେଖା ହେଲେ କ'ଣ କହନ୍ତି ? ତାଙ୍କ ଆଶା କ'ଣ ମୁଁ ପୂର୍ଣ୍ଣ କରିପାରିଛି ? ଯାହା ହେଉ, ସେତେବେଳେ ତାଙ୍କ କଥାରେ ମନ ଖୁବ୍‌ ଟାଣ ହୋଇଥିଲା ।

ତାଙ୍କଠାରୁ ଶୁଣିଲି, ପ୍ରଦୀପ ବାବୁଙ୍କୁ ୧୦ ବର୍ଷ ଜେଲ୍‌ଦଣ୍ଡ ହୋଇଛି । ସେ ଅପିଲ୍‌ କରିଛନ୍ତି । ସ୍ୱର୍ଣ୍ଣ ଦିଦି କହିଲେ, "ଏ୍ୟେ ଅପିଲର ଓଲଟା ଫଳ ହେବ ବୋଲି ତୋ ଦେଢ଼-ଶୁରେ କହୁଥିଲେ । ଲୋକଟାକୁ ଫାଶୀକାଠରେ ଝୁଲାଇବାକୁ ସ୍ୱାଙ୍କର ଏଡ଼େ ଜୀଗର କାହିଁକି ଲାଗିଛି କେଜାଣି ? ଅମ ପୁଅ ତ ଗଲା । ଯେତେଟା ଫାଶୀ ଦେଲେ କ'ଣ ସେ ଆଉ ଫେରିବ ?"

ଏ କଥା ଶୁଣିବାକୁ ମୋର ଆଗ୍ରହ ନ ଥାଏ । କିନ୍ତୁ ମଣିଷ ମନରେ ଆଗ୍ରହ ଜାତ ନ କରାଇ ସେ କ'ଣ ଛାଡ଼ିବା ଲୋକ ? ଶୁଣିଲି, ଖବର ପାଇବା ସଙ୍ଗେ ସଙ୍ଗେ ବିଜୟବାବୁ ବାହ୍ୟା ପରି ହୋଇଗଲେ । କାଗଜ ଚଳାଇବାର ଭାର ସେ ତାଙ୍କ ସହକାରୀଙ୍କୁ ଦେଇ, ନିଜେ ଚାଲିଗଲେ ହରଦ୍ୱାର । ସେଠାରେ ହପ୍ତାଏ କାଳ ରହି ପୁଲିସ୍‌ଙ୍କୁ ସବୁ ପ୍ରମାଣ ଯୋଗାଇଲେ । ପ୍ରତିଦିନ କାଗଜରେ ମଧ୍ୟ ସବୁ କଥା ଛାପା ହେଉଥାଏ । ହପ୍ତାକ ପରେ

ଦିଲ୍ଲୀରୁ ଅର୍ଡ଼ର୍ ଆସିଲା ମକଦ୍ଦମା ଚଳାଇଦେବାକୁ । ଏହା ଶୁଣି ବିଜୟବାବୁ ଦିଲ୍ଲୀ ଧାଇଁଲେ । ନିଜେ ସଂଗ୍ରହ କରିଥିବା ସବୁ ପ୍ରମାଣ ବଡ଼ ବଡ଼ ଅଫିସର୍‌ଙ୍କୁ ଯୋଗାଇଲେ, ପାର୍ଲିଆମେଣ୍ଟ୍ ମେମ୍ବରମାନଙ୍କୁ ଦେଖାଇଲେ; ପ୍ରଧାନ ମନ୍ତ୍ରୀଙ୍କ ସଙ୍ଗେ ବି ଦେଖା କଲେ । ସବୁ କଥା ପ୍ରତିଦିନ 'ଅଗ୍ରଦୂତ'ରେ ବାହାରୁଥାଏ । ହିମାଚଳଠାରୁ କେରଳ ଯାଏଁ ଏ ବିଷୟରେ ଉତ୍ତେଜନା ବ୍ୟାପିଗଲା । 'ନରହତ୍ୟାକାରୀ କ'ଣ ଏ ଦେଶ ଶାସନ କରିବେ ?' ବୋଲି ଗୋଟାଏ ସମ୍ପାଦକୀୟ ବାହାରିଲା ଯେ, ତାକୁ ଭାରତର ସବୁ ଖବରକାଗଜ ଛାପିଲେ । ଶେଷରେ ଓପରବାଲାଙ୍କ ନିଦ ଭାଙ୍ଗିଲା । ତୁରନ୍ତ ପ୍ରମାଣ ସଙ୍କଳନ କରିବାକୁ ଦିଲ୍ଲୀରୁ ପୁଲିସ୍‌ବାଲା ଆସିଲେ । ପ୍ରଧାନମନ୍ତ୍ରୀଙ୍କର ଆଦେଶରେ ଏଥିପାଇଁ ଜଣେ ସ୍ୱତନ୍ତ୍ର ଜଜ୍ ନିଯୁକ୍ତ ହୋଇ ମକଦ୍ଦମା ବିଚାର ଚାଲିଲା, ଏକାଥରକେ ୪୫ଦିନ । ଜାଲ, ଜୁଆଚୋରି, ଟଙ୍କା ତୋଷରପାତ, ମଟର ଲାଇସେନ୍‌ସ ନ ଥାଇ ମଟର ଚଳାଇବା ଏମିତି ଶ୍ରେଷ୍ଠ ଶ୍ରେଷ୍ଠ ଅପରାଧରେ ଚାରି ପାଞ୍ଚ ବର୍ଷ ଲେଖାଏଁ ଜେଲ୍ ପାଇ ମଣିଷମାରୁରେ ୨୦ ବର୍ଷ ଜେଲ୍ ଦଣ୍ଡ ପାଇଲେ । ସବୁ ଦଣ୍ଡ ଏକ ସଙ୍ଗେ ଭୋଗ କରିବାକୁ ଆଦେଶ ହେବାରୁ, ବିଜୟ ବାବୁ ହିସାବ କଲେ ୧୩।୧୪ ବର୍ଷରେ ସେ ମୁକ୍ତ ପାଇବେ । ଜେଲଖାନାରେ ୨୦ ବର୍ଷରୁ ୬।୭ ବର୍ଷ ପରି ରିହାତି ମିଳେ । ବିଜୟ ବାବୁଙ୍କର ଭୟ, ୧୩।୧୪ ବର୍ଷ ପରେ ବି ପ୍ରବୀର ବାବୁଙ୍କର ଅପରାଧ କରିବାର ବୟସ ଥିବ, ତେଣୁ ପ୍ରାଣଦଣ୍ଡ ଏହାଙ୍କର ଉପଯୁକ୍ତ ଶାସ୍ତି । ନିଜର ସବୁ ସଂଚିତ ପଇସା ପାଣି ଛଡ଼ାଇ ସେ ସୁପ୍ରିମ କୋର୍ଟ୍‌ରେ ଟାଣୁଆ ଓକିଲ ଦେବାର ବନ୍ଦୋବସ୍ତ କରୁଥାନ୍ତି । ପ୍ରବୀର ବାବୁଙ୍କ ଦଣ୍ଡ ଅନ୍ତତଃ ଲଘୁ କରିବାକୁ ତାଙ୍କ ପକ୍ଷରେ ୨।୪ ଜଣ ବଡ଼ ନେତା ଉଦ୍ୟମ ଚଳାଇଥାନ୍ତି । ଏଥି ସକାଶ ପ୍ରଧାନମନ୍ତ୍ରୀ ଓ ତାଙ୍କ ସଂପୃକ୍ତ ବନ୍ଧୁ ଲୋକଙ୍କ ବିରୁଦ୍ଧରେ 'ଅଗ୍ରଦୂତ' ଓ ଅନ୍ୟ ଅନେକ ବିଖ୍ୟାତ ଖବରକାଗଜରେ ସମାଲୋଚନା ବାହାରୁଥାଏ ।

ଏ ସବୁ ଖବର ଅପେକ୍ଷା, ପ୍ରଦୀପ ବାବୁ ମୋ ବିଷୟରେ ସ୍ୱର୍ଣ୍ଣ ଅପାଙ୍କ ପାଖକୁ ଦେଇଥିବା ଚିଠି ପଢ଼ିବାକୁ ମୋ ମନରେ ଅଧିକ ଆକାଂକ୍ଷା ହେଉଥାଏ, କିନ୍ତୁ ଲାଜରେ ମୁଁ ଏ ପ୍ରସଙ୍ଗ ଉତ୍ଥାପନ କରିପାରୁନଥାଏ । ଯେଉଁ ଦିନ ମୋର ହରିଦ୍ୱାର ଫେରିବା କଥା, ସେଇଦିନ ସକାଳ ଓଳି ସ୍ୱର୍ଣ୍ଣ ଅପା ତାଙ୍କ ଡ୍ରେସ୍‌ର ଗୋଟିଏ ପୁଳିନ୍ଦା ମୋ ହାତକୁ ଦେଇ କାନ୍ଦି କାନ୍ଦି କହିଲେ, "ଭଉଣୀ ! ଆଉ ତୋ' ସଙ୍ଗେ ଦେଖା ହେବ କି ନାହିଁ କେଜାଣି ? ତୁ' ଯେଉଁ ବ୍ରତ ଧରିବାକୁ ବସିଛୁ ତାକୁ ପାଳିବୁ କି ନାହିଁ କେଜାଣି ? ଯେତେ ଦିନ ପାଳି ପାରିବୁ, ଏଇ ଚିଠିଗୁଡ଼ିକ ତୋତେ ବଳ ଦେବ । ଜଣେ ଲୋକ ତୋ' ଉପରେ ଆସ୍ଥା ରଖି କେଡ଼େ ଆଶା ବାନ୍ଧିଥିଲା ଜାଣି, ତୁ' ତା' ପାଇଁ ସର୍ବସ୍ୱ ତ୍ୟାଗ କରିବାରେ ପାନ୍ତ୍ୟ ନା ଯେନବୁ ।" ତାଙ୍କ କଥା ମୁଁ ଭଲ କରି ବୁଝି ପାରି ନ ଥିଲେ ହେଁ ମୋ ଦେବତାଙ୍କ ପ୍ରତୀକ ସ୍ୱରୂପ ଏ ଚିଠି ପୁଳିନ୍ଦାଟି ଗ୍ରହଣ କରିଥିଲି ଓ ଏକାନ୍ତରେ ଏହାକୁ ପଢ଼ି ମନରେ ବଳ ପାଇଥିଲି । ଦାଦା ଯେଉଁ ପଇସା ଥଳି ମୋ ଜମା ରଖିଦେଲେ ସେଇଥିରେ ଏ ଚିଠିଗୁଡ଼ିକ ରଖି-

ନ ଥିଲେ, ସେଗୁଡ଼ିକ ଏତେ ଶୀଘ୍ର ହରାଇ ନଥାନ୍ତା ବୋଧହୁଏ । ସେ ଚିଠିଗୁଡ଼ିକ ହରାଇ ନ ଥିଲେ ମୋର ଜୀବନର ଗତି କ'ଣ ହୋଇଥାନ୍ତା କେଜାଣି ?

ମୁଁ ହରିଦ୍ୱାରରେ ନ ଥିବା ଭିତରେ ଦିଦି ଓ ଭାଭୀ ଗଙ୍ଗାକୂଳରେ ପ୍ରକାଣ୍ଡ ବରଗଛ ମୂଳେ ଆସ୍ଥାନ କରିଥିବା ମହାତ୍ମାଙ୍କର ଶିଷ୍ୟ ହୋଇଯାଇଥାନ୍ତି । ଶିଷ୍ୟ ହେବାର ବିଧିବିଧାନ ହୋଇ ନ ଥିଲା, ମହାତ୍ମା ମଧ୍ୟ ଏ ଦୁହିଁଙ୍କୁ ଶିଷ୍ୟା କରିବାକୁ ରାଜି ହୋଇ ନ ଥିଲେ, କିନ୍ତୁ ଦିଦି ଓ ଭାଭୀ ମନେ ମନେ ମହାତ୍ମାଙ୍କୁ ଗୁରୁ କରି ସାରିଥାନ୍ତି । ପ୍ରାୟ ପ୍ରତ୍ୟେକ ଦିନ ଓପର-ଓଳି ଏ ଦୁହେଁ ମହାତ୍ମାଙ୍କ ପାଖରେ ଯାଇ ବସନ୍ତି । ମୁଁ ଫେରିବା ପରେ, ମୁଁ ଓ ପ୍ରଦୀପ ବାବୁଙ୍କ ମା' ମଧ୍ୟ ନିୟମିତ ମହାତ୍ମାଙ୍କ ପାଖକୁ ଗଲୁଁ । ମହାତ୍ମା ଖୁବ୍ ଅଳ୍ପ କଥା କହନ୍ତି । ଦିନେ ଦିନେ ଆମେ ତାଙ୍କ ପାଖରେ ଯେଉଁ ଘଣ୍ଟେ ଦେଢ଼ଘଣ୍ଟା ବସୁ, ତା ଭିତରେ ସେ କାହାକୁ ପଦେ ବି କହନ୍ତି ନାହିଁ । ଆମେ ଫେରିବାକୁ ଉଠି ତାଙ୍କୁ ନମସ୍କାର କଲେ ସେ ମୁରୁକି ମୁରୁକି ହସି ବିଦାୟ ଦିଅନ୍ତି । ଅନ୍ୟମାନଙ୍କ ମନର କଥା ମୁଁ ବୁଝିନାହିଁ ; ସ୍ୱାମୀଙ୍କ ମୁରୁକି ହସାର ଅର୍ଥ କ'ଣ ଭାବି ହୋଇ ହୋଇ ମୁଁ ଫେରେ । ଆଉ ଦିନେ ଦିନେ ସେ ଅନ୍ୟମାନଙ୍କ ସଙ୍ଗେ ଆଲୋଚନା କରୁଥିବାର ଆମେ ଶୁଣୁ ; ମହାତ୍ମା ଆମ ଆଡ଼େ ଥରେ ବି ଚାହାନ୍ତି ନାହିଁ । ତିନି ଚାରିଦିନରେ ଦିନେ ମାତ୍ର ସେ ଆମକୁ ଗୋଟିଏ ପ୍ରଶ୍ନ ପଚାରନ୍ତି ଏବଂ ଆମ ଉତ୍ତର ଶୁଣି ତା ଉପରେ ତାଙ୍କର ମନ୍ତବ୍ୟ କହନ୍ତି ।

ମହାତ୍ମାଙ୍କ ନିଜ ମୁହଁରୁ ଶୁଣି ନାହିଁ, କିନ୍ତୁ ପରମ୍ପରରେ ଶୁଣିଛୁ, ସେ ଦିଲ୍ଲୀରେ କ'ଣ ଗୋଟାଏ ବଡ଼ ଚାକିରି କରୁଥିଲେ । ଚାକିରିରୁ ଅବସର ନେଇ, କି ଚାକିରି ଛାଡ଼ି ସେ ଏଇ ହରିଦ୍ୱାରରେ ଜଣେ ମହାତ୍ମାଙ୍କ ଶିଷ୍ୟ ହୋଇ ରହି ରହି, ତାଙ୍କ ଦେହାନ୍ତ ପରେ ନିଜେ ସେ ଆଶ୍ରମର ଗୁରୁ ହୋଇଥାନ୍ତି । କିଏ କହନ୍ତି, ତାଙ୍କର ସ୍ତ୍ରୀ ପୁଅ ଅଛନ୍ତି, କିଏ କହନ୍ତି, ସମସ୍ତେ ମରିଯାଇଛନ୍ତି । ଥରେ ଆମେ ଉପସ୍ଥିତ ଥିବା ବେଳେ ଜଣେ ତାଙ୍କୁ ତାଙ୍କ ଅତୀତ ବିଷୟରେ ପ୍ରଶ୍ନ କରିଥିଲେ । ମହାତ୍ମା କିଛି ନ କହି ତୁନି ହୋଇ ରହିଲେ, ତା'ର ଚାରି ପାଞ୍ଚ ଦିନ ପରେ ଆଉ ଜଣଙ୍କୁ ତାଙ୍କ ଆଡ଼ୁ କହିଲେ, "ମୁଁ କିଏ, ଚିହ୍ନିବା ପାଇଁ ମୁଁ ଅତୀତରେ କ'ଣ ଥିଲି ଜାଣିବା କ'ଣ ଦରକାର ? ତୁମେ କିଏ ଚିହ୍ନିବା ପାଇଁ ତୁମ ଅତୀତ ଅଣ୍ଡାଳି ହେବା ମୋର ନିଷ୍ପ୍ରୟୋଜନ । ମଣିଷ ଯେତେବେଳେ ଯାହା, ସେ କଥା ତା' ମୁହଁରେ ଫଟୋ ଉଠିଲା ପରି ଉଠିଥାଏ । ଆମେ ଯେତେବେଳେ ଯାହା ସଙ୍ଗେ କଥାବାର୍ତ୍ତା ହେଉଥାଉଁ ସେତିକିବେଳେ ତା' ମୁହଁରେ ଯେଉଁ ଫଟୋ ଉଠୁଛି ତାକୁଇ ଦେଖିଲେ ଯଥେଷ୍ଟ ।" ଏ କଥାର ମର୍ମ ମୁଁ ଭଲକରି ବୁଝି ପାରି ନ ଥିଲି; ଭାଭୀ ଓ ଦିଦି ଏଇ କଥା ଉପରେ ପରେ ଆପଣା ଭିତରେ ଯାହା ଆଲୋଚନା କରିଥିଲେ ସେଇଥିରୁ ଏତିକି ବୁଝିଲି ଯେ, ଆଜି ଯଦି ଆମର ମନ ଭଲ ଦିଗରେ ଚାଲିଛି ତେବେ ଅତୀତର ସବୁ ଦୋଷ ଓ ଅପରାଧ ତା ମନକୁ ଧୋଇ ହୋଇଯିବ ।

ଜଗନ୍ନାଥଙ୍କ ଦେଶରୁ ଜଣେ ଯୁବକ ଆସି ସ୍ୱାମୀଙ୍କ ପାଖରେ ମାସେ ଖଣ୍ଡେ ହେଲା ପରିବ୍ରାଜକ ପରି ଥାଆନ୍ତି । ମଝିରେ ମଝିରେ ତାଙ୍କ ସଙ୍ଗେ ଆମର ଦେଖା ହୁଏ । ବାବା ତାଙ୍କୁ ପଦେ ଦି' ପଦ ପଚାରନ୍ତି । ତାଙ୍କଠାରୁ ଯାହା ଶୁଣନ୍ତି ସେଥିରେ ସେ ମୁଗ୍ଧ ହୋଇଯାନ୍ତି । କ୍ରମେ ତାଙ୍କ ସଙ୍ଗେ ପରିଚୟ ବଢ଼ିବାରେ ଦିନେ ବାବା ତାଙ୍କୁ ପଚାରିଲେ, "ମହାରାଜ ! ଆପଣଙ୍କ ଘର କେଉଁଠି ? ଆପଣ କ'ଣ ଗୃହ ସଂସାର ଛାଡ଼ି ସନ୍ନ୍ୟାସ ନେବାକୁ ଆସିଛନ୍ତି ?"

ସେ ଉତ୍ତର ଦେଲେ, "ମୁଁ କିଛି ସ୍ଥିର କରି ଏଠାକୁ ଆସି ନାହିଁ । ଘର ସଂସାର ଛାଡ଼ିଛି କି ନାହିଁ ଏ ପର୍ଯ୍ୟନ୍ତ ସ୍ଥିର କରିନାହିଁ । ସଂସାର ଛାଡ଼ିବା ଉଚିତ ନା ନୁହେଁ ସେହି କଥା ଜାଣିବାକୁ ମୋର ମନ ଘାଣ୍ଡି ହେଉଛି । ସ୍ୱାମୀଙ୍କଠାରୁ ସେ କଥା ଜାଣିବି ବୋଲି ସ୍ୱାମୀଙ୍କର ଆଶ୍ରା ନେଇଛି । ହରିଦ୍ୱାର ଓ ଋଷିକେଶରେ ବହୁ ମହାତ୍ମାଙ୍କ ପାଖେ ଅନେକ ଦିନ କଟାଇଛି । କେହି ମୋ' ମନର ସଂଶୟ ଦୂର କରିପାରିନାହାନ୍ତି ।"

ବାବା ପଚାରିଲେ, "ଏଠାରେ ଆପଣ ପ୍ରାୟ ମାସକରୁ ବେଶୀ ରହିଲେଣି । ସ୍ୱାମୀଙ୍କଠାରୁ କ'ଣ ସଂଶୟ ଦୂର ହୋଇ ନାହିଁ ?" ସେ କହିଲେ, "ସେ ତ ଅଲଗା କିସମର ସନ୍ନ୍ୟାସୀ । ଏହା କର ତା' କର ବୋଲି କହିବାବାଲା ଲୋକ୍ ସେ ନୁହନ୍ତି । ସ୍ୱାମୀଙ୍କ ସଙ୍ଗେ ମୁଁ ଯେତେ କଥା-ବାର୍ତ୍ତା କଲିଣି, ସେତେ କଥାବାର୍ତ୍ତା ଆଉ କାହା ସଙ୍ଗେ କେବେ କରିନଥିଲି । କିନ୍ତୁ ସ୍ୱାମୀଙ୍କଠାରୁ ମୁଁ ପାଇଛି ପଦେ ମାତ୍ର କଥା—ସବୁ ଶୁଣ, ବୁଝ, ବିଚାର ; ଯାହା ମନକୁ ପାଉଛି ତା' କର, ଏହା କର, ତା'କର ବୋଲି ହୁକୁମ ଜାରି କରିବା ଆମ ଧର୍ମରେ ନାହିଁ । ମୁଁ ଏ କଥାରେ ଆପତ୍ତି କରି ଆମ ଧର୍ମର କେତେକ ବିଧିନିଷେଧ କଥା ଉଠାଇଥିଲି । ସେ ମୋତେ କହିଥିଲେ, ଆମ ଧର୍ମରେ ବିଧି ଅଛି, ନିଷେଧ ଅଛି, କିନ୍ତୁ ବିଧି ବା ନିଷେଧକୁ ମାନିବା ପ୍ରତ୍ୟେକ ଲୋକର ଇଚ୍ଛା ଉପରେ ନିର୍ଭର କରେ । ଧର, ଶ୍ରାଦ୍ଧ କରିବାର ବିଧି ଅଛି, କିନ୍ତୁ ଯଦି ଜଣେ କୌଣସି କାରଣରୁ ଶ୍ରାଦ୍ଧ ନ କଲା, ତେବେ ତାକୁ ଦୋଷିବାକୁ କେହି ନାହିଁ । ଶ୍ରାଦ୍ଧ କର ବୋଲି ବ୍ରାହ୍ମଣ ଯାଇ କାହାଦ୍ୱାରେ ଅଡ଼ି ବସେ ନାହିଁ ; ନ କଲେ କେହି ଜାତିରୁ ବାସନ୍ଦ କରେ ନାହିଁ । ଗୋରୁ ମାଇଲେ ପ୍ରାୟଶ୍ଚିତ୍ତ କରିବାର ବିଧି ଅଛି, କିନ୍ତୁ କେହି ଯଦି ଗୋରୁ ମାରିବା କଥା ଲୁଚାଇ ଦେଲା, ପ୍ରାୟଶ୍ଚିତ୍ତ ନ କଲା, ତେବେ କେହି କହିବାକୁ ନାହିଁ । ପରେ ଯେତେବେଳେ ମନକୁ ପାଇଲା, ସେତେବେଳେ ଲୋକ ନିଜର ପାପକୁ ପ୍ରକାଶ କରି ପ୍ରାୟଶ୍ଚିତ୍ତ ଘେନେ । ସ୍ୱାମୀଙ୍କଠାରୁ କଥା ଶୁଣି ଆମ ଧର୍ମ ବିଷୟରେ ମନରେ ନୂଆ ଧାରଣା ହେଉଛି । ଯାହାକୁ କୁସଂସ୍କାର ବୋଲି ଆମେ ଉଡ଼ାଇ ଦେଇଥିଲୁ, ସେ ସବୁ ସଦାଚାର ବୋଲି ମନେ ହେଉଛି ।"

ସ୍ୱାମୀଙ୍କର କଥା ଶୁଣି ଭାବୀ ଓ ବାବା ମୁଗ୍ଧ ହୁଅନ୍ତି । ମୋତେ ସ୍ୱାମୀଙ୍କର ଆଚରଣ ଓ କଥାବାର୍ତ୍ତା ବଡ଼ ସୁଖ ଲାଗୁଥାଏ । ବାବାଙ୍କ ଅନୁରୋଧରେ ସେ ମଝିରେ ମଝିରେ ଆମ ଘରକୁ ଆସନ୍ତି । ସେ ଘରେ ପାଦ ଦେଲେ ଆମ ଘର ପବିତ୍ର ହୋଇଗଲା ପରି ମୋତେ ଲାଗେ । ଆମ ଧର୍ମ ବିଷୟରେ ଯେତେବେଳେ ସେ କିଛି କହି ବସନ୍ତି, ତାଙ୍କ ମୁହଁରୁ କିମିତି ଗୋଟାଏ

ତେଜ ଫୁଟି ଉଠେ । କିନ୍ତୁ ତାଙ୍କ ପୋଷାକ ଦେଖି କେହି କହିବ ନାହିଁ ଯେ, ସେ ସାଧୁ ସନ୍ନ୍ୟାସୀ—ପିନ୍ଧା—ଆଣ୍ଠୁ ତଳକୁ ପଡ଼ିଥିବା ଖଣ୍ଡେ ଲୁଗା, ଦେହରେ ହାତକଟା କାମିଜ ଖଣ୍ଡେ, ତା' ଉପରେ ଗୋଟିଆ ଲେଉଟିଆ ଚଦର— ସବୁ ଧୋବ । ପ୍ରତିଦିନ ଗଙ୍ଗାରେ ଗାଧୋଇବା ବେଳେ ଲୁଗା ସଫା କରନ୍ତି ।

ଥରେ ଦିଦି ତାଙ୍କୁ କହିଲେ, "ବର୍ତ୍ତମାନ ଆମ ଦେଶରୁ ଧର୍ମ ଧାରଣା ଉଠି ଯାଉଛି; ଆପଣଙ୍କ ଭଳି ଲୋକ ଯଦି ଲୋକଙ୍କ ଭିତରେ ବୁଲି ଧର୍ମ ପ୍ରଚାର କରନ୍ତେ, ତେବେ ଲୋକେ ପୁଣି ଧର୍ମ ମାର୍ଗକୁ ଫେରନ୍ତେ ।" ସେ କହିଲେ, "ମୁଁ ଧର୍ମ ପ୍ରଚାର କଲେ କିଛି ହେବ ନାହିଁ ଏକଥା ମୁଁ ଭଲ କରି ଜାଣେ । କିନ୍ତୁ ମୋର ମନେ ହୋଇଥିଲା, ଆମ୍ଭମାନଙ୍କ ଗୁରୁଦେବ ଧର୍ମ ପ୍ରଚାର କଲେ ଲୋକେ ପ୍ରଭାବିତ ହୁଅନ୍ତେ । ଆମେରିକାର ଜଣେ ପର୍ଯ୍ୟଟକ ତାଙ୍କ ସଙ୍ଗେ ଦୁଇ ଦିନ ଆଲୋଚନା କରି, ତାଙ୍କୁ ଡାକିଥିଲେ, ଆମେରିକା ବୁଲି ଯିବାକୁ । ଆନ୍ତର୍ଜାତିକ ଧର୍ମ ସମିତି ତାଙ୍କର ସବୁ ଖର୍ଚ୍ଚ ଦେଇଥାନ୍ତା ଓ ଆମେରିକାରେ ଠାଠା କରି ତାଙ୍କ ପାଇଁ ସଭା ଆୟୋଜନ କରିଥାନ୍ତା । କିନ୍ତୁ ଗୁରୁଦେବ କ'ଣ ଉତ୍ତର ଦେଲେ ଜାଣନ୍ତି ? ସେ କହିଲେ, 'ଧର୍ମ, ପ୍ରଚାରର ସାମଗ୍ରୀ ନୁହେଁ । ଏହା ଆଚରଣରେ ଆରମ୍ଭ ଓ ଶେଷ । ଯଦି ମୁଁ ଧର୍ମରେ ଅଛି ବୋଲି ଆପଣଙ୍କର ମନେ ହେଉଥାଏ, ତେବେ ଆପଣ ମୋତେ ଦେଖି ଆପଣଙ୍କ ନିଜ ଧର୍ମରେ ନିଷ୍ଠା ରଖିଲେ ଯଥେଷ୍ଟ । ମୁଁ ମୋ ଧର୍ମକୁ ସଜେଇ କରି ବୁଲିଲେ ମୁଁ ଧର୍ମଭ୍ରଷ୍ଟ ହେବି ଓ ମୋ' ଧର୍ମର ମଧ୍ୟ ମର୍ଯ୍ୟାଦା କ୍ଷୁଣ୍ଣ ହେବ' ।"

ଗୁରୁଦେବଙ୍କ କଥା ଆମକୁ ଭଲ କରି ବୁଝାଇ ସେ କହିଲେ, "ମୁଁ ଯେତେ ବିଚାରୁଛି ଗୁରୁଦେବଙ୍କ କଥା ମୋତେ ସେତିକି ଯୁକ୍ତିଯୁକ୍ତ ମନେ ହେଉଛି । ତାଙ୍କର ସେବା କରି ଜୀବନ କଟାଇଦେବାକୁ ମୋର ମନ । କିନ୍ତୁ ସେ ମୋତେ ଦୁ'ଥର କହିଲେଣି, ତୋ'ର ଯାହା ଜାଣିବାର କଥା ତୁ ଜାଣିଗଲୁଣି ; ଏଥର ଯା, ତୋ କର୍ମକ୍ଷେତ୍ରରେ ତୁ ରହ । ମୋର ସେବା କରିବା ଆଉ ଦରକାର ନାହିଁ । ମୁଁ ତାଙ୍କର ଏ କଥା ଅମାନ୍ୟ ହୋଇ ରହିଛି । କିନ୍ତୁ କେତେ ଦିନ ? ଯେଉଁ ଦିନ ଟାଣ କରି ଯା ବୋଲି କହିବେ, ସେଦିନ ନିଶ୍ଚୟ ଯିବାକୁ ହେବ ।"

ମହାତ୍ମାଙ୍କ ସଙ୍ଗେ ସ୍ନେହ ଆମର ଯୋଗସୂତ୍ର ହୋଇଥାନ୍ତି । ସ୍ୱାଙ୍କ ଯିବା କଥା ଶୁଣି ଦିଦି ଓ ଭାବୀ ନିରାଶ ହେଲେ ; ତୁଣ୍ଡରେ ତାହା ପ୍ରକାଶ କଲେ । ମୁଁ ବି ଦୁଃଖିତ ହୋଇଥିଲି, କିନ୍ତୁ କିଛି କହିଲି ନାହିଁ ।

ସ୍ୱାର କେତେଦିନ ପରେ । ଆମେ ନିୟମିତ ମହାତ୍ମାଙ୍କ ପାଖକୁ ଯାଉଥାଉ ଓ ତାଙ୍କ ପାଖରେ ବସି ତାଙ୍କ ମୁହଁରୁ ପଦେ କଥା ଶୁଣିବାକୁ ଚାହିଁ ଥାଉ । ଥରେ ସେ ଦିଦିଙ୍କ ଆଡ଼କୁ ଚାହିଁ ପଚାରିଲେ, "ଯାହା ପଚାରିବାକୁ ଚାହୁଁଛ, ଆଗାମୀ କୁମ୍ଭମେଳା ପରେ ଆସିଲେ ପଚାରିବ ଯେ, କହିବି ।" ପରେ ଜାଣିଲି, ଜୀବନର ଅବଶିଷ୍ଟ ସମୟତକ କ'ଣ କରି କଟାଇବେ ସେ ବିଷୟରେ ପରାମର୍ଶ ମାଗିବେ ବୋଲି ଦିଦି ଭାବୁଥିଲେ । ମହାତ୍ମା ପୁଣି କହିଲେ, "ଆଜ

ଦିନକ କିମିତି କଟିବ ମଣିଷ କେତେକ ମାତ୍ର ବିଚାରିବାକୁ ହକ୍‌ଦାର । କାଲି କଥା କାଲି ବୁଝିବ । ମଣିଷ ସ୍ୱା କରିବ, ତା' କରିବ ବୋଲି ଯେଉଁ ଯୋଜନା କରି ବସେ ତାହା ନିରର୍ଥକ । ଭଗବାନଙ୍କ କାମରେ ସେ ମିଛରେ ହାତ ପୁରାଏ ।"

ଆମର ପରିଚିତ, ତାଙ୍କ ଶିଷ୍ୟଙ୍କୁ ଡାକି କହିଲେ, "ବାବୁଜୀ ! କ'ଣ କରିବ ବୋଲି ପରି ଖୋଜି ହେଉଛ ? ଏ ସ୍ତ୍ରୀଲୋକଗୁଡ଼ିକଙ୍କର ଗୋଟିଏ ଅଭିଭାବକ ଦରକାର, ତୁମେ ସେ କାମ ତୁଲେଇଲେ କିପରି ହୁଅନ୍ତା ?" ବାବୁଜୀ ଆମ୍ଭମାନଙ୍କର ଅଭିଭାବକପରି ହୋଇ-ଯାଇଥିଲେ । ମହାତ୍ମାଙ୍କ ନିର୍ଦ୍ଦେଶରେ ତାଙ୍କର ନିଯୁକ୍ତି ପକ୍‌କା ହେଲା ।

## ( ୧୭ )

ମହାତ୍ମାଙ୍କର ଯେଉଁ ଶିଷ୍ୟ ଆମର ଅଭିଭାବକ ନିଯୁକ୍ତ ହେଲେ ତାଙ୍କୁ ମହାତ୍ମା 'ବାବୁଜୀ' ବୋଲି ଡାକନ୍ତି । ଆମେ ମଧ୍ୟ ତାଙ୍କୁ ସେଇ 'ବାବୁଜୀ' ବୋଲି ଡାକିଲୁ ଓ ଚିହ୍ନିଲୁଁ । ଆଜିଯାଏଁ ତାଙ୍କର ମୁଁ ଆଉ କୌଣସି ପରିଚୟ ଜାଣିନାହିଁ । ମୋର ସମଗ୍ର ଇତିହାସ ତାଙ୍କୁ କେତେଥର କହିଛି, କିନ୍ତୁ ତାଙ୍କର ନାମ ଧାମ କେବେ ପଚାରିବା ଦରକାର ମନେ କରି ନାହିଁ । ଆଜି ମୋତେ ତାଙ୍କ ବିଷୟ ପଚାରିଲେ ସେଇ 'ବାବୁଜୀ' ପଦକ ବ୍ୟତୀତ ଆଉ କହିବାକୁ କିଛି ନାହିଁ । ଅଧିକ ଏତିକି ମାତ୍ର ଶୁଣିଛି ଯେ, ସେ ଏଇ ଜଗନ୍ନାଥଙ୍କ ଦେଶର ଲୋକ । ଶେଷ ଦିନ ତାଙ୍କ ସଙ୍ଗେ ମୋର ଦେଖା ହୋଇଥିଲା ଖଡ଼ଗପୁରରେ । ସେଠାରେ କୋଉ ଗୋଟାଏ ଅଫିସ୍‌ରେ ସେ ଚାକିରି କରୁଥିଲେ । କେଉଁ ଅଫିସ୍, କେତେ ଦରମା ପାଉଥିଲେ, ତା' ମଧ୍ୟ କେବେ ପଚାରି ନାହିଁ । ପ୍ରତି ମାସର ପହିଲା ଦୁଇ ତାରିଖରେ ସେ ମୋ ହାତକୁ ବଡ଼ାଏ ନୋଟ୍ ବଢ଼ାଇଦିଅନ୍ତି, ମୁଁ ତାକୁ ଆମର ଏକମାତ୍ର ଟ୍ରଙ୍କ୍‌ରେ ଥୋଇଦିଏ । ସେଇଥିରୁ ଖର୍ଚ୍ଚ ଚାଲିଥାଏ । ସବୁ ସରିଲା ବେଳକୁ ମାସ ସରିବାକୁ ଥାଏ ଆଉ ଦୁଇ ଚାରି ଦିନ । ପଇସା ରହିଥିବା ଜାଗାରେ ହାତ ମାରି ସବୁ ସରିଲଣି ବୋଲି ସେ ଟିକିଏ ହସିଦିଅନ୍ତି । ବାକୀ ଦିନଟିକ କିମିତି ଚଳିବ ବୋଲି ମୁଁ ଚିନ୍ତିତ ହୋଇଗଲେ ସେ କହନ୍ତି, "ତାରି ! ମଣିଷ ଆଶାରେ ବଞ୍ଚେ । ଆଉ ମାତ୍ର ୪।୫ ଦିନ ଆମେ କ'ଣ ଆଶାରେ ବଞ୍ଚି ପାରିବା ନାହିଁ ? 'ଦେଶରେ ଚିନିଭାଗରୁ ଭାଗେ ଲୋକଙ୍କର ଆଶା କରିବାକୁ ବି କିଛି ନାହିଁ' ମନେ ପକାଇଲେ ଅଭାବ ବାଧିବ ନାହିଁ ।" ମୁଁ ହସିଦିଏ, ଆଶାକୁ କିମିତି ରାନ୍ଧିବ ବୋଲି ବିଚାରି । କିଜେ ସେ ନ ଖାଇ ହପ୍ତେ କାଳ ରହିଯାଇଥିଲେ, କ'ଣ ଗୋଟାଏ ସାଧନା କରିବାକୁ । କିନ୍ତୁ ମୋତେ ଓଳିଏ ବି ଉପାସ ରଖନ୍ତି ନାହିଁ । ଘରୁ ପଇସା ସରିଗଲେ, ପଡ଼ିଶାଘର ଦୋକାନରୁ ଚାଉଳ ଆଉ କାଠ ଆଣି ସାଇତିଦିଅନ୍ତି ; କହନ୍ତି, "ଦରମା

ମିଳିବା ପର୍ଯ୍ୟନ୍ତ ଖାଲି ଭାତ ଓ ଲୁଣ ଖାଇବା । ଦେଶରେ ବହୁତ ଲୋକ ଏତକ ବି ପା'ନ୍ତି ନାହିଁ ।” ସେ ସବୁ ବହୁତ ପରର କଥା, ଯେଉଁଠି ଛାଡ଼ିଛୁ ସେଠାରୁ କହେଁ ।

ମହାତ୍ମା ବାପୁଜୀଙ୍କୁ ଆମର ଅଭିଭାବକ ନିଯୁକ୍ତ କଲା ପରେ ସେ ନିୟମିତ ସକାଳ ଓଳି ଆମ ଘରକୁ ଆସନ୍ତି, ଓ ଆମର ସୁବିଧା ଅସୁବିଧା କଥା ପଚାରି ବୁଝନ୍ତି । ଆମର ଅସୁବିଧା ବୋଲି କିଛି ନ ଥାଏ । ପାଖରେ ଯଥେଷ୍ଟ ପଇସା ଥାଏ । ଦାଦା ଯେମିତି ଖର୍ଚ୍ଚ କରୁଥାନ୍ତି ସେଥିରେ, ଏ ଟଙ୍କା ସବୁଦିନକୁ ରହିବ ନାହିଁ ବୋଲି ସେ ଜାଣି ମଧ୍ୟ ଖର୍ଚ୍ଚରେ ସଂଯମ କରୁ ନ ଥାନ୍ତି । ଥରେ ଭାବୀ ଏ ବିଷୟରେ ତାଙ୍କୁ ସତର୍କ କରନ୍ତେ ସେ ହସି ହସି କହିଲେ, “ଭାବୀ ! ତୁମେ ବାପୁଙ୍କୁ ଅମାନ୍ୟ କରୁଛ । ସେ ପରା କହିଥିଲେ, ଆଜି ଦିନକ କିମିତି କଟିବ ମଣିଷ ସେତିକି ମାତ୍ର ବିଚାରିବାକୁ ହକଦାର ।” ବାପୁଜୀ ଏ ବଚନକାବେଳେ ଉପସ୍ଥିତ ଥିଲେ । ସେ ମଧ୍ୟ ହସି ହସି ଦାଦାଙ୍କୁ ସମର୍ଥନ କରି କହିଲେ, “କାଲି କଥା କାଲି ବୁଝିବ ।”

ଆମ ଦୁଆରକୁ ଅଧିକରୁ ଅଧିକ ଭିକାରୀ ଆସୁଥାନ୍ତି । କାହାକୁ ବାହୁଡ଼ାଉ ନଥାଉଁ, କିନ୍ତୁ ଦଉଥାଉଁ, ଭାବୀଙ୍କ କଥାରେ, ଦିନକୁ ନିର୍ଦ୍ଦିଷ୍ଟ ପରିମାଣ ଚାଉଳ ଓ ପଇସା ନେଇ ସମସ୍ତଙ୍କୁ କୌଣସିମତେ ବୋଧ ସୋଧ କରୁଥାଏ । ଦାଣ୍ଡ ଦୁଆରେ ପାଟିତୁଣ୍ଡ ହେଲେ ଦାଦା ଜଣକେ ଆଉ କିଛି ଚାଉଳ ଓ ପଇସା ଦେଇ ଆସନ୍ତି । ସ୍ୱାମୀଙ୍କ ମୃତ୍ୟୁ ପରେ, ବଡ଼ ଦାଦା ଆସି ଆମ ସଙ୍ଗେ ରହୁଥାନ୍ତି । ପ୍ରଥମେ ପ୍ରଥମେ ସେ ବଡ଼ ଉଦାସୀନ ହୋଇ ରହିଥିଲେ । ନିଜ ପିଲାଙ୍କ ଆଡ଼କୁ ବି ଦଣ୍ଡେ ଚାହୁଁନଥାନ୍ତି । ମୁଁ ସେମାନଙ୍କ ହେପାଜତ କରୁଥାଏ । କ୍ରମେ କ୍ରମେ ସେ ନିଜ ପିଲାଙ୍କ ହେପାଜତ ବ୍ୟତୀତ ଘରର ସବୁ ଭାର ହାତକୁ ନେଇଗଲେ ଓ ଦାଦାଙ୍କୁ ଆକଟ କରି ଖର୍ଚ୍ଚପତ୍ର ସୀମା ଭିତରେ ରଖିବାକୁ ବସିଲେ । ଦାଦା ତାଙ୍କ କଥାରେ ପ୍ରତିବାଦ ନ କରି କ୍ରମେ ଅଧିକ ଉଦାସୀନ ହେଲେ । ବାପୁଜୀଙ୍କ ସଙ୍ଗେ ଧର୍ମକର୍ମର ଆଲୋଚନାରେ ତାଙ୍କର ଅଧିକ ସମୟ କଟିଲା ।

ଓଳିଓଳି ନିୟମିତ ମହାତ୍ମାଙ୍କ ପାଖକୁ ଯାଉଥାଉ । ତାଙ୍କ ଆଗରେ ଯାଇ ମୁଣ୍ଡିଆ ମାରି ବସିଲେ ସେ ଆମ ଆଡ଼କୁ ଟିକଏ ପ୍ରସନ୍ନ ଦୃଷ୍ଟିରେ ଚାହିଁ ‘ବେଶ୍, ବେଶ୍’ ବୋଲି କହନ୍ତି । ତା’ପରେ ସତେ ଅବା ଆମକୁ ପାସୋରି ଦିଅନ୍ତି ; କିମ୍ବା ଉପରମୁହାଁ ହୋଇ ସେ ଏକାଥରକେ ଘଣ୍ଟେ ଦେଢ଼ ଘଣ୍ଟା ତୁନି ହୋଇ ବସିରହନ୍ତି । ଅନ୍ୟ କେହି ଆସି ମୁଣ୍ଡିଆ ମାଇଲେ କେତେବେଳେ ଟିକଏ ଚାହାନ୍ତି, ନଇଲେ ନାହିଁ । ତିନି ଚାରି ଦିନରେ ଥରେ ଅବା ଆମକୁ, ବା ଆଉ କାହାକୁ ଦି’ପଦ କ’ଣ କହୁଥିବେ । ବେଳେ ବେଳେ ମୁଁ ମନରେ ଭାବେ, ସେ ଏମିତି ବସି କ’ଣ ଭାବୁଛନ୍ତି, ନା ଖାଲି ମନରେ ବସୁଛନ୍ତି । ଏମିତି ବସି ରହିବାଦ୍ୱାରା ଲାଭ କ’ଣ ହେଉଛି ବୋଲି ଦିନେ ମୋ ମନରେ ସଂଶୟ ହେବା ମାତ୍ରେ ସେ ହଠାତ୍ ମୋରି ଆଡ଼କୁ ଚାହିଁଲେ ଓ କହିଲେ, “କିଛି ନ ଭାବି ବସିପାରିଲେ ତ ଖୁବ୍ ଭଲ ; ନ ପାରିଲେ ଭଗବାନଙ୍କ ବିଷୟରେ ଚିନ୍ତା କରିଯାଇପାରେ ।” ମୋ ମନର କଥା ସେ ଜାଣିପାରିଲେ ବୋଲି ମୋତେ ଭାରି ଡର ମାଡ଼ିଲା । ମୁଁ ତଳକୁ ମୁହଁ ପୋତି ବସିଲି ।

ଆଉ ଦିନେ ବଡ଼ ଦାଦାଙ୍କୁ ଶୁଣାଇ କହିଲେ, "ଗୁଡ଼ାଏ ଭାବି ହୋଇ ଯାଉଛି କେବଳ ନିଷ୍ଫଳ । ଯାହାଙ୍କ ପାଇଁ ଚିନ୍ତା କରୁଛ, ତାଙ୍କ ବ୍ୟବସ୍ଥା ତ ଭଗବାନ୍ କରି ସାରିଛନ୍ତି । ଏଥର ନିଜ କଥା ଚିନ୍ତା କର । ନିଜ କଥା ଚିନ୍ତା କରିବାର ସର୍ବଶ୍ରେଷ୍ଠ ଉପାୟ ନିଶ୍ଚିନ୍ତ ହୋଇ ରହିବା ।" ଦାଦା ବଡ଼ ଦାଦାଙ୍କ ପିଲାଙ୍କ ପାଇଁ ଶେଠଜୀଙ୍କ ପାଖରେ ଟଙ୍କା ରଖିଥିବା କଥା ବୋଧହୁଏ ତାଙ୍କୁ ଜଣା ଥିଲା । ଦାଦା କେବେ କହିବାର ତ ଶୁଣି ନାହିଁ ; ବାବୁଜୀ ଜାଣିଥିଲେ, ଅବା କହିଥିବେ ।

ପ୍ରାୟ ଦୁଇମାସ ପରେ ଦିନେ ଓପରଓଳି ଆମେ ଯାଇ ପହଞ୍ଚିଲା ବେଳକୁ ଆଶ୍ରମରେ ସମସ୍ତେ ଚଞ୍ଚଳ ଥିଲା ପରି ଲକ୍ଷ୍ୟ କଲୁଁ । ବାବୁଜୀ ଦାଦାଙ୍କୁ ଭୁନ୍ନି ଭୁନ୍ନି କହିଲେ, "ଆଜି ବାବା ତୀର୍ଥାଟନରେ ବାହାରିଛନ୍ତି ।" ଦାଦା ଚମକିତ ହୋଇଗଲେ । ବାବା ତାଙ୍କ ଆଡ଼କୁ ଚାହିଁ କହିଲେ, "ହଁ, ବାବୁଜୀ ଯାହା କହୁଛନ୍ତି, ଠିକ୍ । କିଛି ଦିନ ଏ ସ୍ଥାନ ଛାଡ଼ି ଯାଉଛି ।" କେତେଦିନ ବୋଲି ବୋଧହୁଏ ଦାଦାଙ୍କ ମନରେ ପ୍ରଶ୍ନ ହେଲା । ବାବା କହିଲେ, "କେତେ ଦିନ କିପରି କହିବା ? ଏଠାରେ ତୁମମାନଙ୍କଠାରେ ମାୟା ଲାଗିଗଲାଣି । ତୁମେମାନେ ଆସିବାରେ ଟିକିଏ ଡେରି ହୋଇଗଲେ କାହିଁକି ଡେରି କରୁଛ ବୋଲି ମନରେ ଚିନ୍ତା ଆସୁଛି । ଏ ସ୍ଥାନ ଛାଡ଼ିବାର ପ୍ରଧାନ କାରଣ ସେଇ । ସନ୍ନ୍ୟାସୀ ପକ୍ଷରେ ଗୋଟାଏ ସ୍ଥାନରେ ରହି ଘର ସଂସାର ପାତି ବସିବା ଅନୁଚିତ । ବୁଝୁଛ, ବୁଲି ଧାମ କରି ସାରି ମନ ହେଲେ ଏଠାକୁ ଆସିବି । ଭଗବାନ୍‌ଙ୍କର ଯଦି ଏଠାକୁ ଫେରାଇବାର ଇଚ୍ଛା ନ ଥାଏ ତେବେ ନ ଆସି ବି ପାରେ । କାଲି ରାତିରେ ଓ ଆଜି ସକାଳେ ବାବୁଜୀଙ୍କ ସମେତ ସବୁ ଆଶ୍ରମବାସୀଙ୍କୁ ଏକଥା କହିଦେଇଛି ଓ ସେମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ ନିଜ ନିଜର କର୍ତ୍ତବ୍ୟର ସୂଚନା ଦେଇ-ଦେଇଛି ।

ଟିକିଏ ସମୟ ଗଲା ପରେ ସେ ପୁଣି କହିଲେ, "ଏହା କର, ତା'କର ବୋଲି କହିବାର ଅଧିକାର ମୋର ନାହିଁ । କ'ଣ କଲେ ଭଲ ହେବ ସେତିକ ମାତ୍ର ସୂଚାଇ-ଦେଇଛି । ବାବୁଜୀଙ୍କୁ କହିଛି, ସେ ତୁମମାନଙ୍କର ହେପାଜତ ନେବେ, ଏବଂ ଏଠାରେ ରହିବା ପ୍ରୟୋଜନ ନ ହେଲେ. ଏଠାରେ ନ ରହି ଅନ୍ୟତ୍ର ରହିବେ । ତାଙ୍କର କିଛିଦିନ ପ୍ରଚାର କରିବା ଉଚିତ ହେବ ବୋଲି ମୁଁ କହିଛି । ଏ ଆଶ୍ରମ ତାଙ୍କର ସ୍ଥାନ ନୁହେଁ ।"

ଆମ ଘରର ସମସ୍ତେ ବିଚଳିତ ହୋଇଗଲୁ । ବାବୁଜୀ ପାଖରେ ଥିଲେ ଆମର କିଛି ଅସୁବିଧା ହେବ ନାହିଁ ବୋଲି ଆମ ସମସ୍ତଙ୍କର ପୂରା ବିଶ୍ୱାସ ଥିଲା । କିନ୍ତୁ ବାବା ନ ଥିଲେ ଦେହ ଭିତରେ ପ୍ରାଣ ନ ଥିଲା ପରି ଲାଗିବ । ଦାଦାଙ୍କ ଆଖିରୁ ଲୁହ ଗଡ଼ିଲା । ବାବା ବାତ୍ସଲ୍ୟରେ ତାଙ୍କ ଅଡ଼କୁ ଚାହିଁ କହିଲେ, "ଛୁ'ମା ! ବହୁତ ଭୋଗ କରିଛୁ, ବହୁତ ସହିଛୁ, ଏଥର ଏଣିକି ନିଜର ସୁଖ ଦୁଃଖ ପାଇଁ କୌଣସି ଲୋକକୁ ଦାୟୀ ନ କରି ଭଗବାନଙ୍କଠାରେ ନିର୍ଭର ରଖ । ତୋ ଭାଗ୍ୟର ସେ ନିର୍ଭର ହୋଇଗଲାଣି, ବୁଢ଼ୀମା'ଙ୍କର ହୋଇଗଲାଣି । ଆଉ ତମେ ତିନି ଜଣ—ତୁ, ତୋ ବଡ଼ ଦାଦା, ଆଉ ଏ ଟୋକା; ତୁମ ତିନିଜଣଙ୍କ ମନ ସ୍ଥିର ହୋଇ ନାହିଁ । (ମୋତେ ଦେଖାଇ) ଏହାର ତ ସାଧନା ପୂର୍ଣ୍ଣ

ହେବାକୁ ବହୁତ ଦିନ ବାକୀ ଅଛି । ସ୍ତ୍ରେ ମଝି ଦରିଆରେ ଆଉଟ୍ ପାଉଟ୍ ହୋଇ ଶେଷରେ କିନାରା ପାଇବ । ତୁମ ଝିଅଙ୍କର ମୁକ୍ତି ପାଇବାରେ ବେଶୀ ବିଳମ୍ବ ନାହିଁ । ସବୁ ଠିକ୍ ହୋଇଯିବ । ଚିନ୍ତା କରନାହିଁ ।"

ବୁଢ଼ୀ ଆଖିରୁ ଲୁହ ପୋଛି ବାବାଙ୍କୁ ମୁଣ୍ଡିଆଟିଏ ମାରିଲେ; କହିଲେ, "ବାବା, ମୁଁ ତୀର୍ଥ କରି ଯିବାକୁ କ'ଣ ଅଧିକାରୀ ନୁହେଁ ?" ବାବା କହିଲେ, "ମୋ ସଙ୍ଗେ ବର୍ତ୍ତମାନ ଯିବାକୁ ଯଦି ବିଚାରୁଛୁ, ତେବେ ନୁହେଁ । ବେଳ ଆସିଲେ, ଯିବୁ । ସେ ବେଳ ଆସିପାରେ, ନ ଆସି ବି ପାରେ । ଯେତେବେଳେ ଆଉ କାହାରିକୁ ସାଙ୍ଗ କରିବାର ପ୍ରବୃତ୍ତି ନ ରହିବ, ତୀର୍ଥାଟନ କରିବାର ବେଳ ସେତିକିବେଳେ ଆସିବ ବୋଲି ଜାଣିବୁ ।"

ପ୍ରତାପବାବୁଙ୍କ ବୋଉଙ୍କୁ ବାବା 'ବୁଢ଼ୀ ମା' ବୋଲି ଡାକନ୍ତି, ଏବଂ ତାଙ୍କ ସଙ୍ଗେ ରହସ୍ୟ ବି ବେଳେ ବେଳେ କରନ୍ତି । ବୁଢ଼ୀମା ତାଙ୍କ ସଙ୍ଗେ ନିଃସଂକୋଚରେ କଥାବାର୍ତ୍ତା ହୁଅନ୍ତି । ଏଇଠାରେ ସେ ପଚାରିଦେଲେ, "ବାବା ସେଦିନ ପରା କହୁଥିଲେ ସମସ୍ତେ ମିଶି କୁମ୍ଭମେଳାକୁ ଯିବାକୁ ! ଆଜି ତ କହିଲେଣି ଏକୁଟିଆ ତୀର୍ଥ କରି ଯିବେ ବୋଲି !" ବାବା ହସି ଉତ୍ତର ଦେଲେ, "ଓଃ, ପିଲାଙ୍କୁ ସବୁ ନେଇ ନିଜ ଘରେ ଚର୍ଚ୍ଚା କରିବାକୁ ବୁଢ଼ୀମା'ଙ୍କର ଇଚ୍ଛାରେ ବାଧା ହେଉଛି ପରା ? ପ୍ରୟାଗରେ କୁମ୍ଭମେଳା ହେବା ବେଳେ ତାକୁ ତୀର୍ଥ ନ କହି ମେଳାର ଆହ୍ୱାନ କହିଲେ ଚଳେ । ମେଳାକୁ ସମସ୍ତେ ମେଣ୍ଟ ହୋଇ ଯା'ନ୍ତି; ତୁମେ ଯିବ । କିନ୍ତୁ ମେଳାରେ ମଉଜ କରିବାକୁ ବିଚାରିଲେ ନ ହୋଇ ବି ପାରେ । ମେଳା ତ ଆଉ ଦୁଇ ମାସ ଅଛି । ସେତେବେଳେ ମନ ହେଲେ ବାବୁଜୀଙ୍କୁ ସାଙ୍ଗରେ ନେଇ ଯାଇପାର । ଆଜିଠାରୁ ସେ ଚିନ୍ତା କାହିଁକି ?"

ଅଳ୍ପ ଟିକିଏ ପରେ ମହାତ୍ମାଙ୍କ ପ୍ରଧାନ ଶିଷ୍ୟ 'ବଡ଼େ ମହାରାଜ' ଆସି ପହଞ୍ଚିଲେ । ମହାତ୍ମା ତାଙ୍କୁ ପାଖକୁ ଲାଗି ବସିବାକୁ କହନ୍ତେ ସେ ମହାତ୍ମାଙ୍କ ବାଘଛାଲ କଡ଼ରେ ବସିଲେ । ସେ ବି ଚିନ୍ତାର୍ଥୀ ଜଣା ଯାଉଥାନ୍ତି । ମହାତ୍ମା କହିଲେ, "ତୁମେ ତ ଏମିତି ମୁହଁ କରୁଛ, ଅନ୍ୟମାନଙ୍କୁ କ'ଣ କହିବ ?" ତା' ପରେ କହିଲେ, "ମୋ ସଙ୍ଗେ ଚାଲିଯିବାକୁ ତମର ମନ ମୁଁ ଜାଣୁଛି; କିନ୍ତୁ କିଛି ଦିନ ଏ ଦାୟିତ୍ୱ ତୁଲାଇବାକୁ ପଡ଼ିବ ।" ଆଉ ଟିକିଏ ପରେ ପୁଣି କହିଲେ, "କେତେ ଦିନ ବୋଲି ପଚାରୁଛ ? ତା' ଉତ୍ତର ତୁମ ନିଜଠାରୁ ମିଳିବ । ଗାଡ଼ି ଛାଡିବାକୁ ଆଉ ଘଣ୍ଟେ ଖଣ୍ଡେ ବାକୀ ଅଛି । ମୁଁ ଅଧଘଣ୍ଟା ଭିତରେ ଏ ସ୍ଥାନ ଛାଡ଼ିବି । ତା' ପରେ ସବୁ ଦାୟିତ୍ୱ ତୁମର । ଆଉ ଗାଡ଼ିକୁ ତୁମେ ବାହାରିଲେ ବି ମନା କରିବାକୁ କେହି ନ ଥିବେ ।" ବଡ଼େ ମହାରାଜ ଅଭିମାନ କଲାପରି କହିଲେ, "ଯାର ଅର୍ଥ ମନା କରିବାକୁ ମୁଁ ନିଜେ ଥିବି ।" ବାବା ପିଲାଙ୍କ ପରି ହସି ଉତ୍ତର ଦେଲେ, "ଭଗବାନଙ୍କ ଇଚ୍ଛାରେ ଏ ଭଳି ଜଣେ କିଏ ଆଖିରେ ପଡ଼ିପାରେ ଯାହା ମୁଣ୍ଡରେ ନିଜ ମୁଣ୍ଡର ବୋଝ ଥୋଇ ଦେଇ ଯାଇପାରିବ ।"

ଗପୁଁ ଗପୁଁ ଅଧଘଣ୍ଟାଏ ଚାଲିଗଲା । ବାବା ଆସନରୁ ଉଠି ଆଶ୍ରମ ଭିତରକୁ ଗଲେ ଓ ଦୁଇ ମିନିଟ ଭିତରେ ନିଜର ଗଣ୍ଠିଲିଟି କାନ୍ଧରେ ଓହଳାଇ ବାହାରିପଡ଼ିଲେ । ବଡ଼େ

ମହାରାଜ ଗୋଟିଏ ଗ୍ରେଟ ଥଳି ତାଙ୍କ ହାତକୁ ବଢ଼ାଇ ଦେଇ କହିଲେ, "ଏକାଥରକେ ରାମେଶ୍ୱର ପର୍ଯ୍ୟନ୍ତ ଟିକଟ ଖଣ୍ଡେ କରିଦେବେ ବୋଲି ପଇସା ଦେଇଛୁ।" ବାବା କହିଲେ, "କାଶୀ ଯାଏଁ ଟିକଟ ହେବ। ଅଧିକା ପଇସା କାଢ଼ିନିଅ। ଥଳିଆଟିକି ବି ରଖ। ବାଟରେ ହଜିବା ଅପେକ୍ଷା ଏଇଠାରେ ଥାଉ, ଦାତାର ଦାନ ସାର୍ଥକ ହେବ।" ଦାଦାଙ୍କ ଆଡ଼କୁ ଚାହିଁ କହିଲେ, "ତୁ ବୁଝିଥିବୁ, ବାଟ ଖର୍ଚ୍ଚ ପାଇଁ ଗୁଡ଼ାଏ ପଇସା ଦେଇଥାନ୍ତି। ଗତ ଶୀତ ଦିନରେ ତୁ ଦେଇଥିବା କମ୍ବଳଟା ନେଉଛି। ଏ ପଇସାକୁ ବି ଚ'ହ୍ନି, ତୋ'ରି। କାଶୀରେ ଓହ୍ଲାଇଲା ବେଳକୁ ଏତେ ପଇସା ମୋ ପାଖରେ ନ ଥିବା ଉଚିତ।"

ଆଶ୍ରମର ଦୁଆର ମୁହଁ ପର୍ଯ୍ୟନ୍ତ ସମସ୍ତେ ପଛେ ପଛେ ଗଲୁ। ବାବୁଜୀ ବାହାରିଲେ ଷ୍ଟେସନରେ ଗାଡ଼ିରେ ବସାଇ ଦେଇ ଆସିବାକୁ। ବାବା ମନା କଲେ; କହିଲେ, "ଗାଡ଼ିରେ ଯାଇ ବସାଇ ଦେବାକୁ ଯଦି ମଣିଷ ଦରକାର, ତେବେ ଓହ୍ଲାଇ ଦେବାକୁ କାଶୀରେ ମଣିଷ ପାଇବି କୁଆଡ଼ୁ?" ବଡ଼େ ମହାରାଜ କହିଲେ, "କାଶୀ ବିଶ୍ୱନାଥଙ୍କ ପୂଜାରୀ ପାଖକୁ ଟେଲି-ଗ୍ରାମ ଖଣ୍ଡେ କରିଦେଲେ ହୁଅନ୍ତା ଯେ, ଆପଣ ଅସନ୍ତୁଷ୍ଟ ହେବେ।" ବାବା କହିଲେ, "ବଡେ! ଏଥର ତୁମେ ନିରଙ୍କୁଶ। ସନ୍ନ୍ୟାସୀକୁ ବିବ୍ରତ କରିବାକୁ ଯଦି ମନ, ତେବେ ଟେଲିଗ୍ରାମ କରିପାର। ମୁଁ ଜାଣୁଛି, ମୁଁ ସେଠାରେ ଷ୍ଟେସନରେ ଓହ୍ଲାଇବାର ଅଳ୍ପ ସମୟ ପରେ ଗହଳି ହୋଇଯିବ। ଅଜ୍ଞାତ ଭାବେ ଗଲେ ସେଇ ଟିକିକ ଅବସର ତ ହେଲେ ପାଇଯିବି।" ସମସ୍ତଙ୍କୁ ପ୍ରସନ୍ନ ମୁହଁ ଓ ଉଜ୍ଜ୍ୱଳ ଆଖିରେ ଆଶୀର୍ବାଦ କରି ବାବା ଷ୍ଟେସନ ଆଡ଼େ ମୁହଁ ଫେରାଇଲେ। ବଡ଼େ ମହାରାଜ କହିଲେ, "ବାବା ଆଉ ଫେରିବାର ଆଶା ନାହିଁ। ଆମକୁ ଆମ କର୍ତ୍ତବ୍ୟ କରିବାକୁ ହେବ।"

ସେ ଦିନ ରାତିରେ ଆମ ଘରେ କେହି ଖାଇଲେ ନାହିଁ। ପିଲାଗୁଡ଼ାକ ବି ଆମ କଥା ଶୁଣୁ ଶୁଣୁ ଶୋଇପଡ଼ିଲେ। ବଡ଼ ଦାଦା କହିଲେ, "ତାରି! ସେଗୁଡ଼ାକୁ ଶୁଆଇ ଦେ। ଅଜ୍ଞାନରେ ବି ମହାତ୍ମାଙ୍କ ପାଇଁ ଉପାସ ରହିଲେ ପୁଣ୍ୟ ହେବ।" ଦାଦା କହିଲେ, "ମୁଁ ବୁଝୁଛି ମୋ'ରି ମନରେ ଶାନ୍ତି ଓ ସନ୍ତୋଷ ଆଣିବା ନିମନ୍ତେ ଇ ମହାତ୍ମା ଏଠି ଆବିର୍ଭୂତ ହୋଇ-ଥିଲେ।" ବଡ଼ ଦାଦା କହିଲେ, "ତାଙ୍କୁ ଯେ ଥରେ ଦେଖିଛି ତାର ପୁଣ୍ୟ ହୋଇଛି। ମୋ ଭଳି ପାପିନୀ ପ୍ରତି ତାଙ୍କର କେତେ ଅନୁଗ୍ରହ! ଆହା! ଆଉ କେତେଟା ଦିନ ତାଙ୍କ ପାଦରେ ମୁଣ୍ଡିଆ ମାରିଥାନ୍ତି କି?" ବୁଢ଼ୀମା କହିଲେ, "ଆଲୋ, ସେ ସମସ୍ତଙ୍କ ସମ୍ପତ୍ତି। ଯେଉଁଠିକି ଯିବେ ସେଠି ଶାନ୍ତି ଓ ସନ୍ତୋଷ ବିତରଣ କରିବେ। ତୁମର ପାଖେ ସବୁ କାଳେ ରହିଥାନ୍ତେ କିମିତି? ବିଦେଶରେ ଯେଉଁମାନେ ତାଙ୍କୁ ଦେଖି ପୁଣ୍ୟ ଅର୍ଜନ କରିବେ, ସେଇମାନଙ୍କ ଆନନ୍ଦ ମନେ ପକାଇ ନିଜର ଦୁଃଖ ଦୂର କର।" ଭାବୀ କିଛି ନ କହି ବଡ଼ ଦାଦାଙ୍କର ସାନ ପୁଅଟି ପାଇଁ କୁରୁତା ସିଲେଇ କରୁଥାନ୍ତି; ତାଙ୍କ ନିର୍ବେଦ ଭାବରୁ ଜଣାଯାଉଥାଏ ତାଙ୍କ ମନ ମହାତ୍ମାଙ୍କ ରେଳ ପଛରେ ଧାଇଁଛି।

ପୂର୍ବ ପରି ପ୍ରତି ଓପରଓଳି ଆମର ଆଶ୍ରମକୁ ଯିବା ଚାଲିଲା। ମହାତ୍ମା ଯେଉଁ ଦିନ ଗଲେ ତହିଁ ଆର ଦିନ ଆମେ ଯାଇ ବଡ଼େ ମହାରାଜଙ୍କୁ ମୁଣ୍ଡିଆ ମାରି ତାଙ୍କ ପାଖେ ବସିବା

ମାନେ ଚକିତ ହୋଇଗଲୁଁ । କାଲିକୁ ଚାହିଁଲେ ସ୍ୱାମୀଙ୍କର କି ପରିବର୍ତ୍ତନ ! ଗୁରୁ ପଡ଼ିଚି ଯେମିତି ସବୁଠିକ ବିଭୂତି ସ୍ୱାମୀଙ୍କୁ ଦେଇ ଯାଇଛନ୍ତି । ଆମ ମନର ଭାବନା ସେ ମଧ୍ୟ ଠଉରେଇ ପାରି ମୁରୁକି ହସିଲେ । କହିଲେ, "ଅରେ, ମୁଁ କ'ଣ ମହାତ୍ମା ହୋଇଗଲି ବୋଲି ଭାବୁଛ ପରା । ବେକରୁ ଜୁଆଳି କଢ଼ା ହୋଇଗଲେ ବଳଦକୁ କେମିତି ଲାଗେ ଜାଣିଛ କି ? ସେଇମିତି ଲାଗିବାରୁ ମନ ପ୍ରସନ୍ନ ହୋଇଛି । ପାଖରେ କେତେ ଅଛି, ଆଜି ଅତିଥି ଅଭ୍ୟାଗତ କେତେ ଜଣ ଖାଇବେ, ଦାନ ଖଇରାତ ପାଇଁ ଘଡ଼ାରେ କେତେ ପଇସା ଅଛି ଭାବି ଭାବି ଭଗବାନଙ୍କୁ ପାସୋରି ଦେଇଥିଲି । ମହାରାଜ ମୋତେ ସେ ଜଞ୍ଜାଳରୁ ମୁକ୍ତ କରିଦେଇ ଯାଇଛନ୍ତି ।" ମୁହଁର ପ୍ରସନ୍ନତା ଉପରେ, ମହାରାଜଙ୍କ ନାମ ଉଚ୍ଚାରଣ କରିବା ସଙ୍ଗେ ସଙ୍ଗେ କେମିତି ଗୋଟାଏ ଗ୍ଲାନି ଘୋଡ଼ାଇ ହୋଇଗଲା ପରି ସ୍ପଷ୍ଟ ଲକ୍ଷ୍ୟ କଲି । ବଡ଼େ ମହାରାଜ ଚୁପ୍ ହୋଇ ଉପରକୁ ଚାହିଁ ରହିଲେ । ବୁଢ଼ୀମାନଙ୍କୁ ଥରେ ମହାତ୍ମା ହସି ହସି କହିଥିଲେ, "ମୁଁ ଓପରକୁ ଚାହିଁ କାହିଁକି ବସେ ବୋଲି ଭାବୁଛ ପରା ? ଓପରକୁ ଚାହିଁଲେ ଆଖିରୁ ଲୁହ ତଳକୁ ଗଡ଼ି ନ ପାରି, ପୁଣି ଯେଉଁଠୁ ବାହାରିଥିଲା ସେଇଠିକି ଚାଲିଯାଏ ।" ସେ ଦିନ ସମସ୍ତେ ହସିଥିଲୁ । ଆଜି ବଡ଼େ ମହାରାଜ ଓପରକୁ ଚାହିଁ ବସିବାରେ, ମହାତ୍ମା ସମସ୍ତଙ୍କ ମନରେ ଆସି ପହଞ୍ଚିବାରୁ ସମସ୍ତଙ୍କ ଆଖି ଛଳ ଛଳ ହୋଇଗଲା ।

ସେତିକିବେଳେ ଆଶ୍ରମର ପରିଚାଳନା ଭାର ନେଇଥିବା ସନ୍ନ୍ୟାସୀ ଆସି ମହାରାଜଙ୍କ ଆଗରେ ଠିଆ ହେଲେ । ମହାରାଜଙ୍କର ପ୍ରଶ୍ନବାଚୀ ଦୃଷ୍ଟି ପଡ଼ିବାରେ ସେ କହିଲେ, "ମହାରାଜ ! ଅନାଥାଶ୍ରମକୁ ପାଞ୍ଚଶହ ଟଙ୍କା ଆଜି ଦେବେ ବୋଲି କହିଥିଲେ, ମେନେଜର ଆସିଛନ୍ତି । ଆଜି ଟଙ୍କା ନ ପାଇଲେ ଦୋକାନୀ ସଉଦା ଦେବନାହିଁ ।" ମହାରାଜ କହିଲେ, "ଯେ ଟଙ୍କା ଦେବ ବୋଲି କହିଥିଲା, ସେ ଆଜି ମୁଁ ନା ତମେ ? ନିଜ କଥା ନିଜେ ବୁଝ । ମୋତେ ତ ସେ ଜଞ୍ଜାଳରୁ ମୁକ୍ତ ମିଳିଛି ।" ପରିଚାଳକ କହିଲେ, "ମହାରାଜଙ୍କ ପରି କିଏ ମୁଁ ହୋଇପାରିବି ? ଆପଣ ବିଚାରିଦେଲେ ଟଙ୍କା ଆସ୍‌ମାନରୁ ଆସି ପହଞ୍ଚିଯାଉଥିଲା । ମୁଁ ତ ଘଡ଼ା ଦରିଦ୍ର ।" ମହାରାଜ କହିଲେ, "ଆଜି ଯାହା ଅଛି ଦେଇଦିଅ ।" ପୁଣି ଟିକିଏ ପରେ କହିଲେ, "ଅଚ୍ଛା, ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ମେନେଜରଙ୍କୁ ରହିବାକୁ କହ । କୁଆଡ଼ୁ କିଛି ଆସିଯାଇପାରେ । ତାଙ୍କୁ ଏଠାକୁ ଡାକ ।"

ଅନାଥାଶ୍ରମର ମେନେଜର ଆସି ପହଞ୍ଚିବାରେ କୃତ୍ରିମ ବିରକ୍ତି ପ୍ରକାଶ କରି ମହାରାଜ କହିଲେ, "କିଓ ରାମ୍‌ଜୀ ! ତୁମେ ତୁମର କାମ ସଚ୍ଚା ଭାବେ କରୁନାହଁ ବୋଧହୁଏ । ସଚ୍ଚା ଭାବେ କରୁଥିଲେ, ଦୋକାନୀ ସଉଦା ଦେବ ନାହିଁ ବୋଲି କହନ୍ତା କାହିଁକି ? ଆଜିଠାରୁ ମାସେ ପର୍ଯ୍ୟନ୍ତ ତାକୁ ପଇସା ନ ଦେଲେ ସେ ସଉଦା ଦେବ କି ନାହିଁ ?" ରାମଜୀ ଜଡ଼ସଡ଼ ହୋଇ କହିଲେ, "ମୁଁ ଆଉ ଟଙ୍କା ମାରୁନାହିଁ ବୋଲି ସନ୍ଦେହ କରି ସେ ଏପରି କହୁଛି ।" ମହାରାଜ କହିଲେ, "ସନ୍ଦେହ ଯାହା ଉପରେ ହୁଏ ସେ ଆଉ ସଚ୍ଚା ଲୋକ କ'ଣ ? ଅଚ୍ଛା ବସ ।"

ଏତିକିବେଳେ ଦାଦା କଣ କହିବାକୁ ଆରମ୍ଭ କରିବାରେ ମହାରାଜ କହିଲେ, "ତୁ ଯାଇ ପଇସା ଆଣିବୁ ବୋଲି କହୁଛୁ ତ ? ରହ, ଯାର ଯଦି ପଇସା ପାଇବାର କଥା, ତେବେ ପଇସା ଆପେ ଆସି ପହଞ୍ଚିବ । ମହାରାଜ କହି ଯାଇଛନ୍ତି, ତୁ ଏ ଆଶ୍ରମକୁ ବହୁତ ଦେଲୁଣି । ଆଉ ଯାହା ଅଛି, ନିଜ ପାଇଁ ରଖ ।"

ଅଳ୍ପ ସମୟ ଯାଇଛି, ଜଣେ ଭଦ୍ରଲୋକ ନୋଟ ବଣ୍ଡାଏ ମହାରାଜଙ୍କ ଆସନ ପାଖେ ଥୋଇ ମୁଣ୍ଡିଆ ମାରିଲେ ଓ ବସିବାକୁ ସଂକେତ ନ ପାଇ ସନ୍ତର୍ପଣରେ ପୁଣି ମୁଣ୍ଡିଆ ମାରି ବିଦାୟ ନେଲେ । ମହାରାଜ ରାମଜୀଙ୍କୁ କହିଲେ, "ନିଅ ତୁମର ଟଙ୍କା ଗଣିକରି ନିଅ ।"

ରାମ୍‌ଜୀ ଉରି ଉରି ଟଙ୍କା ଗଣିଲେ—ପାଞ୍ଚଶହ ଏକ ଟଙ୍କା । ଟଙ୍କାଟି ଆଶ୍ରମରେ ଜମା ଦେଇ ପାଞ୍ଚଶହ ଟଙ୍କା ନେଇଯିବାକୁ ହୁକୁମ ହେଲା । ଆମେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲୁ । ମହାରାଜ କିଛି ନ ଜାଣିଲା ପରି ଉପରକୁ ଚାହିଁ ରହିଲେ । ଘରକୁ ଫେରିଲା ପରେ ଦାଦା କହିଲେ, "ମହାତ୍ମା ଏ ସ୍ଥାନଟିକୁ ପବିତ୍ର କରି ଯାଇଛନ୍ତି ।" ବୂଢ଼ୀମା କହିଲେ, "ଯେଉଁ ମହାତ୍ମା ଗଲେ ସେ, ନା ତାଙ୍କ ଗୁରୁ କି ତାଙ୍କ ଗୁରୁ କିଏ କହିବ ?" ଯେ ଯାହା ହେଉ ଏ ଘଟଣା । ପରେ ଆଶ୍ରମ ପ୍ରତି ଆମର ଆକର୍ଷଣ ବଢ଼ିଲା । ବଡ଼େ ମହାରାଜ ଆମ ସଙ୍ଗେ ଦାସ୍ତ ପ୍ରତିଦିନ କଥାବାର୍ତ୍ତା କରନ୍ତି । ଦିନେ ଦାଦାଙ୍କୁ କହିଲେ, "ଆରେ ମା ! ମଣିଷର ସ୍ୱଭାବ ଜନ୍ମଜନ୍ମର ସଂସ୍କାରରେ ଗଢ଼ି ଉଠୁଥାଏ । ସେ ଦିନ ଯେଉଁ ମହାତ୍ମା ଏଠାରେ ଆମକୁ ଛାଡ଼ିଗଲେ ତାଙ୍କର ଜନ୍ମ ସଂସ୍କାର ଆମମାନଙ୍କଠାରୁ ଢେର ଉଚ୍ଚ ଦରର । ଆଉ ଜନ୍ମରେ ସେ ଯାହା ଥିଲେ ସେଇ ପର୍ଯ୍ୟନ୍ତ ପହଞ୍ଚିବାକୁ ଆମର ଆଉ କେତେ ନା କେତେ ଜନ୍ମ ବିତିଯିବ । ତାଙ୍କ ପାଖରେ ବସିଲେ ମଣିଷର ଯେତେ ଲାଭ ହୁଏ, ଆମେ ଦିନରାତି ଗପିଲେ ବି ସେତେ ଲାଭ ହେବ ନାହିଁ ।" ଆମର ପରି ଜଣେ ହୋଇ ସେ ଆମ ସଙ୍ଗେ ଚାଲିବାକୁ ଯେତେ ଚେଷ୍ଟା କରୁଥାନ୍ତି ତାଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ ଆମର ସେତିକି ବଢ଼ୁଥାଏ । କ୍ରମେ ଆଶ୍ରମରେ ଲୋକ ଗହଳି ମଧ୍ୟ ବଢ଼ୁଥାଏ । ଆଶ୍ରମ ତରଫରୁ ଗୋଟିଏ ଅନାଥାଶ୍ରମ ଚାଲୁଥିଲା । ବଡ଼େ ମହାରାଜ ଆଶ୍ରମର ମୁଖ୍ୟ ହେବାର ମାସେ ଖଣ୍ଡେ ଭିତରେ ଗୋଟିଏ ବେଦ ବିଦ୍ୟାଳୟ ଆରମ୍ଭ ହେଲା । ହୃଷି-କେଶକୁ ତୀର୍ଥ କରି ଯାଉଥିବା ସନ୍ଥମାନଙ୍କୁ କମ୍ବଳ ପ୍ରଭୃତି ଯୋଗାଇବା ଆରମ୍ଭ ହେଲା, କ୍ରମେ ଆଶ୍ରମରେ ଦାନ ଦାତାଙ୍କର ଯିବାଆସିବା ମାତ୍ରା ଖୁବ୍ ବଢ଼ିଗଲା । ଏ ଗହଳି ଭିତରେ ବଡ଼େ ମହାରାଜ ଟିକିଏ ବି ବିଚଳିତ ହେଉନଥାନ୍ତି । ସକାଳ ୯ଟା ଠାରୁ ନିତ୍ୟକର୍ମ ସାରି ସେ ଆଶ୍ରମର ଆମ୍ବଗଛ ମୂଳରେ ତାଙ୍କ ଧୂନି ପାଖେ ବସନ୍ତି ଯେ ଉଠନ୍ତି ସନ୍ଧ୍ୟା ବେଳକୁ । ବହୁ ଲୋକ ପ୍ରତ୍ୟହ ବହୁତ ଚାନ୍ଦା ଦେଉଥାନ୍ତି । ମିଳିବା ସାଙ୍ଗେ ସାଙ୍ଗେ ସେ ସବୁ ବିଚିତ୍ର ଭାବରେ ଶେଷ ହୋଇଯାଉଥାଏ । ଆଗକୁ କୌଣସି ଖର୍ଚ୍ଚର ଯୋଜନା କରି ଟଙ୍କା ସାଇତି-ବାକୁ ପରିଚାଳକ ପ୍ରସ୍ତାବ ଦେଲେ ମହାରାଜ ରହସ୍ୟ କରି କହନ୍ତି, "ଏମିତି କଲେ ତ ମାସେ ଖଣ୍ଡେ ଭିତରେ ଏଠାରେ ମହାଜନୀ କାରବାର ଆରମ୍ଭ ହୋଇଯିବ ।" ଏମିତି କହନ୍ତି ସିନା ପରିଚାଳକ ଘରତୋଳା ପ୍ରଭୃତି ଯେଉଁ ଯୋଜନା ବାଢ଼ି ବସନ୍ତି, ତାକୁ ମଞ୍ଜୁର କରି ସାଙ୍ଗେ

ସାଙ୍ଗେ କାମ ଆରମ୍ଭ କରିଦେବାକୁ ହୁକୁମ ଦେଇଦିଅନ୍ତି । ମଝିରେ ମଝିରେ କହନ୍ତି, "ବାବା ଭଲ ଜଞ୍ଜାଳରେ ପକାଇଦେଇ ଗଲେ । ସେ ସରିବ ନା ମୁଁ ଏଠାରୁ ମୁକ୍ତି ପାଇବି ।" କିନ୍ତୁ ଆଶ୍ରମର କୌଣସି ଜଞ୍ଜାଳ ତାଙ୍କ ମନ ଟିକିଏ ବି ଚଞ୍ଚଳ କଲା ପରି ମନେ ହୁଏ ନାହିଁ ! ଦିଦି କହନ୍ତି, "ସେ ଆମ ସଙ୍ଗେ ଏମିତି ମିଶୁଛନ୍ତି ସିନା, ସ୍ୱାଙ୍କ ମନ ଆମଠାରେ ନାହିଁ କି ଆଶ୍ରମର ସେ ଜଞ୍ଜାଳରେ ନାହିଁ । ଟେଳ ପରି କେମିତି ସବୁ ଚାଲିଛି ଦେଖ ।"

ସ୍ୱାଗ ଭିତରେ ଦିନେ । ଆମେ ଆଶ୍ରମରୁ ଘରକୁ ଫେରିଲା ବେଳକୁ ଦେଖିଲୁ ବିଜୟ ବାବୁ କେତେବେଳୁ ଆସି ଆମକୁ ଅପେକ୍ଷା କରୁଥାନ୍ତି । ତାଙ୍କ ମୁହଁରୁ ଗୋଟାଏ କେମିତି ଦୀପ୍ତି ଫୁଟି ଉଠୁଥାଏ । ପ୍ରତାପ ବାବୁଙ୍କ ମା'ଙ୍କ ଗୋଡ଼ତଳେ ସେ ମୁଣ୍ଡିଆ ମାରି କହିଲେ, "ମା, ମୋ କାମ ସରିଗଲା । ମୁଁ ବିଦାୟ ନେବାକୁ ଆସିଛି । ଆହ୍ଲାଦରେ ଆଉ ରହିବ ନାହିଁ । 'ଅଗ୍ରଦୂତ' କାଗଜରୁ ଆଜି ସକାଳେ ଇସ୍ତଫା ଦେଇଦେଇଛି । ଦିନେ ଦୁଇ ଦିନ ଭିତରେ ଯିବାକୁ ହେବ । ସ୍ୱର୍ଣ୍ଣ ଲଗେଇଥିଲା ମୋ ସଙ୍ଗେ ଆସି ତୁମକୁ ମୁଣ୍ଡିଆ ମାରି ଯିବ । ଏତେବେଳେ ବୁଢ଼ାଏ ଟେଁ କରିବା ଠିକ୍ ହେବ ନାହିଁ ବୋଲି ତାକୁ ନିବର୍ତ୍ତାଇ ମୁଁ କହିଲି, ତା ପାଇଁ ମୁଁ ତୁମଠୁ ବିଦାୟ ନେଇ ଯିବି । ବମ୍ବେଇ ପାଖରେ ଗୋଟିଏ ନୂଆ କାମ ତା' ମନକୁ ଆସି ଜୁଟିଛି, ସେଠାରେ ଏଇ ହପ୍ତା ଭିତରେ ଯୋଗ ଦେବାକୁ ହେବ ।"

ମା ତାଙ୍କ ମୁଣ୍ଡରେ ହାତ ବୁଲଉ ବୁଲଉ, ଦିଦି ବଡ଼ ଦିଦି ଓ ଭାଭୀଙ୍କ ସଙ୍ଗେ ପରିଚୟ କରାଇଦେଲେ । ମୁଁ କବାଟ କୋଣରେ ଠିଆ ହୋଇଥାଏ । ମୋ ଆଡ଼କୁ ଦେଖାଇ କହିଲେ, "ତୋ ବୋହୂ ହେଉଛି ସିଏ‌ଇ ତୋତେ ମୁଣ୍ଡିଆ ମାରୁଛି । ମିଛରେ ତା ପାଇଁ ତୁ କେତେ ଦହଗଞ୍ଜ ହେଲୁ ! ସବୁତକ ପଇସା ଉଡ଼ାଇଦେଲୁ । ପ୍ରତାପ ପାଇଁ ମକଦ୍ଦମା ଲଢ଼ି ଆପଣା ପିଲା ମାଇପଙ୍କୁ ଚାହିଁଲୁ ନାହିଁ । ଏବେ କ'ଣ ସେଇଥିପାଇଁ ଅଗ୍ର-ଦୂତର ମାଲିକମାନେ ତୋତେ କାଢ଼ି ଦେଉଛନ୍ତି ପରା ? ପ୍ରତାପ ତ କହେ, ତୁ ନ ରହିଲେ ଏ କାଗଜଟା ପନ୍ଦର ଦିନରେ ବନ୍ଦ ହୋଇଯିବ । କୁଆଡ଼େ ଯିବୁ, କେମିତି ଚଳିବୁ ଭଗବାନ୍ ଜାଣନ୍ତି ।"

ବିଜୟବାବୁ ମକଦ୍ଦମା ଚାଲିଲା ବେଳେ ଆମ ଘରେ ଆପଣାର ଲୋକ ପରି ଚଳୁଥିଲେ । ବଡ଼ ଦିଦି ହାକିମର ଇଜଲସରେ ସାକ୍ଷୀ ଦେଇଥିଲେ ଲଗ ଲଗ ୭ଦିନ । ସେ ୭ଦିନଯାକ ବିଜୟ ବାବୁ ତାଙ୍କୁ ଆପେ କଚେରୀକୁ ନିଅନ୍ତି ଓ ସନ୍ଧ୍ୟା ବେଳେ ଆଣି ଛାଡ଼ି ଦେଇ ଯା'ନ୍ତି । ଥରେ ଦି'ଥର ଦିଦି ମଧ୍ୟ ଶୁଣିବାକୁ କଚେରୀକୁ ତାଙ୍କ ସଙ୍ଗେ ଯାଇଛନ୍ତି । ତଥାପି ବିଜୟବାବୁ ମାଇକିନିଆଁଙ୍କ ଆଗରେ ବଡ଼ ସଙ୍କୁଚିତ ହୋଇ ଚଳନ୍ତି । ଭାରି ଲାଜକୁଳା ମଣିଷ । ଦିଦି ନିଜେ ଯାଇ ତାଙ୍କ ପାଇଁ ଜଳଖିଆ ଯିଆରି କରି ଆଣିଦେଲେ । ମା ତାଙ୍କୁ ବଳାଇ ଖୁଆଉ ଖିଆଉ ସେ ପାଟିରେ ଲୁଚି ତରକାରି ପୁରାଇ ଅନର୍ଗଳ କହି

ଚାଲିଥାନ୍ତି । ଅପିଲ ମକଦ୍ଦମାରେ ସୁପ୍ରିମ୍ କୋର୍ଟ ଓଲଟି ପଡ଼ି ପ୍ରବୀର ବାବୁଙ୍କୁ ଫାସି ହୁକୁମ କଲେ । ଏଇ କଥା କହିଲା ବେଳେ ରାଜ୍ୟ ଜିଣିଲା ପରି ସେ ହେଉଥାନ୍ତି । ବଡ଼ ଦାଦା ଭାରି ଖୁସି ହେଲା ପରି ଜଣାପଡ଼ିଲା । ଭାବୀ ସବୁବେଳେ ତୁନି ରହିବାବାଲା ; କିନ୍ତୁ ଏ ଖବର ପାଇ ସେ ଆହା ବୋଲି କହିପକାଇଲେ । ଦାଦାଙ୍କର କୌଣସି ଭାବାନ୍ତର ଦେଖିଲି ନାହିଁ । ପ୍ରବୀର ବାବୁ ଜେଲ ଯା'ନ୍ତୁ କି ଫାସି ପାନ୍ତୁ, ସେଥିରେ ମୋର ଯାଏ ଆସେ କେତେ ? ଖାଲି ବିଚାରିଲି, ଯାହା ହେଉ ତାଙ୍କର ପିଲା ମାଇପ ନାହାନ୍ତି କାନ୍ଦିବାକୁ । ମା କହିଲେ, "ବାପା ! ମୁଁ ତୋତେ କେତେ ଥର କହିଛି, ଶତ୍ରୁ ସାଙ୍ଗେ ଏତେ ସରି ହୋଇ ଲଗିବା ଧର୍ମ ନୁହେଁ । ତୋତେ ତ କେମିତି ଗୋଟାଏ ନିଶା ଲାଗିଗଲା । ଏବେ ତୋତେ 'ଅଗ୍ରଦୂତ'ରୁ କାହିଁକି କାଢ଼ିଲେ ଯେ ?"

ଏ ବିଷୟରେ ବେଶୀ କହିବାକୁ ବିଜୟ ବାବୁଙ୍କର ମନ ନ ଥାଏ ପରି । ସେ ଏ କଥା ଛାଡ଼ି, ଘୂରୁତେଇ ଘୂରୁତେଇ ଅପିଲ ବିଚାର ବେଳେ କୋଉ ଓକିଲ କ'ଣ କହିଲା, ଜଜ କ'ଣ ରାଏ ଦେଲେ, ସେଇ କଥା ବଖାଣୁଥା'ନ୍ତି । ମା ବହୁତ କେଞ୍ଚିବାରେ ଜଣା ପଡ଼ିଲା, ଏ ମକଦ୍ଦମାରେ ଅଗ୍ରଦୂତ କାଗଜର ପ୍ରାୟ ଦଶହଜାର ଟଙ୍କା ଖର୍ଚ୍ଚ ହୋଇଗଲା । ମାଲିକମାନେ ଧରି ବସିଲେ, ଏ ଟଙ୍କା ବୃଥା ଖର୍ଚ୍ଚ । ବିଜୟ ବାବୁ କହିଲେ, "ମୁଁ ଯଦି ଆଜି ଚାକିରିରୁ ଚାଲିଯାଏ, ତେବେ ୧୫ ବର୍ଷ ଚାକିରି ଉପରେ ମୋତେ ପ୍ରାୟ ୧୨ ହଜାର ଟଙ୍କା କମ୍ପାନୀକୁ ଦେବାକୁ ପଡ଼ିବ । ସେଇଥିରୁ ଦୁଇ ହଜାର ମୋତେ ଦେଇ, ବାକୀ ଦଶହଜାର ମକଦ୍ଦମା ଖର୍ଚ୍ଚ ଆଡ଼କୁ ଭରଣା କରିଦିଅ ।" ସେଇଆ ହୋଇଛି ।

କିନ୍ତୁ ବିଜୟ ବାବୁ କହିଲେ, "ମୂଳ କାରଣ ଏୟା ନୁହେଁ । ଆମ ବୋର୍ଡରେ ଦୁଇ-ଚାରିଜଣ ପ୍ରଧାନ ମନ୍ତ୍ରୀଙ୍କ ଲୋକ । ପ୍ରଧାନ ମନ୍ତ୍ରୀଙ୍କର ତ ଇଚ୍ଛା ନ ଥିଲା ପ୍ରବୀର ବିରୁଦ୍ଧରେ ମକଦ୍ଦମା ହେବାକୁ । ସେ ତାକୁ ମାନେ ମାନେ ଛାଡ଼ିଦେଇଥାନ୍ତେ । ମୁଁ ଏଥିରେ ଲାଗିବାରୁ ତାଙ୍କର ପ୍ରରୋଚନାରେ ବୋର୍ଡର ଏଇ ମେମ୍ବରମାନେ ମୋତେ ନିବର୍ତ୍ତାଇବାକୁ ବହୁତ ଚେଷ୍ଟା କରି ନ ପାରିବାରୁ ମୋତେ ତଡ଼ିଦା ଉପାୟ କଲେ । କିନ୍ତୁ ମୋର ସେଥିକୁ ଚିନ୍ତା ନାହିଁ ମା ! ତୁମ ଆଶୀର୍ବାଦରେ ମୁଁ ଯେଉଁଠିକୁ ଯାଉଛି ସେଠାରେ ନାଁ କରିବ ଓ ସ୍ତ୍ରୀ ପିଲେ ଆନନ୍ଦରେ ଚଳିପାରିବେ । ଖାଲି ତୁମମାନଙ୍କୁ ଛାଡ଼ି ଚାଲିଯିବାକୁ କଷ୍ଟ ହେଉଛି ।"

ମା ହସି ହସି କହିଲେ, "ଆମକୁ ତେବେ ସାଙ୍ଗରେ ନେଇ ଯାଉ ନାହଁ ?" ବିଜୟ ବାବୁ କହିଲେ, "ମୁଁ କହିଲେ କ'ଣ ଏମାନଙ୍କୁ ସମସ୍ତଙ୍କୁ ଧରି ମୋ ସାଙ୍ଗେ ଯିବ ?" ଦାଦା କହିଲେ, "ଆପଣଙ୍କର ବା ଏତେ ଗଲଗ୍ରହ କାହିଁକି ଦରକାର ? ଆପଣ ନ ଡାକିଲେ ବି ଆମେ ସମସ୍ତେ ଦିନେ ଯାଇ ଆପଣଙ୍କ ପାଖେ ପହଞ୍ଚିବୁ । ଚିଠି ଦେଉଥିବେ ।" ଆହା, ଖଣ୍ଡିଏ ବି ଚିଠି ପାଇବାକୁ କାଲି ସନ୍ଧିଲା ନାହିଁ ।

## ( ୧୮ )

କୁମ୍ଭମେଳା ଦିନ ପାଖେଇ ଆସୁଥାଏ । ପ୍ରତାପ ବାବୁଙ୍କ ମା' ପ୍ରତିଦିନର ପ୍ରତି ମୁହୂର୍ତ୍ତରେ ଏ ମେଳା କଥା ଦାଦାଙ୍କର ମନେ ପକାଇ ଦେଉଥାନ୍ତି । ଦାଦା ଓ ଭାଭୀଙ୍କର ତ ଆଗରୁ ମନରେ ଥାଏ, ଏଥର କୁମ୍ଭମେଳାକୁ ନିଶ୍ଚୟ ଯିବାକୁ । ଏଥର ପରା ମହାକୁମ୍ଭ ଯୋଗ ପଡ଼ିଥାଏ । କିନ୍ତୁ ମା'ଙ୍କ କଥାରୁ ମୁଁ ଜାଣିଥାଏ, ସମସ୍ତଙ୍କୁ ନିଜ ଘରକୁ ନେଇ ଚର୍ଚ୍ଚା କରିବେ, ଏଇଥିରେ ତାଙ୍କର ବେଶି ଆଗ୍ରହ । କୁମ୍ଭମେଳା ଗୋଟାଏ ଆଳ ମାତ୍ର । ଭାଭୀ ତ ପ୍ରାୟ କଥା କହନ୍ତି ନାହିଁ । ତାଙ୍କ ଢଙ୍ଗଢାଙ୍ଗରୁ ଜାଣୁଥାଏ, କୁମ୍ଭମେଳାକୁ ଯାଇ ଗଙ୍ଗା ସାଗରରେ ବୁଡ଼ ପାରିଲେ ତାଙ୍କର ମୋକ୍ଷ ହେବ । ମା' କୁମ୍ଭ ମେଳା କଥା ପକାଇଲେ ସେ ଆକାର ଇଙ୍ଗିତରେ ତାଙ୍କୁ ପୂର୍ଣ୍ଣ ସମର୍ଥନ କରୁଥାନ୍ତି । ଦାଦାଙ୍କର କେବଳ ଗୋଟିଏ ମାତ୍ର ସର୍ତ୍ତ— ଆଶ୍ରମର ନୂତନ ବାବା ବଡ଼େ ମହାରାଜ ଅନୁମତି ଦେଲେ ସେ ଯିବେ । ମା' ନିର୍ଭର ଭାବେ କହୁଥାନ୍ତି, ବଡ଼େ ମହାରାଜ କେଭେଁ ନାହିଁ କରିବେ ନାହିଁ । ଏଡ଼େ ବଡ଼ ମେଳା, ସେଥିରେ ଧର୍ମ କରିବାକୁ ଆମେ ବାହାରିଲେ ବଡ଼େ ମହାରାଜଙ୍କ ପରି ଧର୍ମାତ୍ମା ନାହିଁ କରିବେ କାହିଁକି ?

କିନ୍ତୁ ବାବୁଜୀଙ୍କଠାରୁ ଶୁଣିଥାଏଁ, ବଡ଼େ ମହାରାଜ କୁମ୍ଭମେଳାକୁ ଯିବା କଥା କେବେ କହି ନାହାନ୍ତି । ଓଲଟି, ଅନ୍ୟ କେହି ଯିବାକୁ କହିଲେ ସେ କହନ୍ତି, "ଆରେ ଏଡ଼େ ଗହଳିକୁ ଧର୍ମ ଆସିବ କୁଆଡ଼ୁ ଯେ 'ସେଠାକୁ ବାହାରିଛ ଧର୍ମ ପାଇବାକୁ ? ମନ ଅନୁସାରେ ଫଳ । ଗଙ୍ଗା ଏଠେଇ ବି ଅଛନ୍ତି । କୁମ୍ଭ ଯୋଗରେ ଗଙ୍ଗାସ୍ନାନ କଲେ ତ ପୁଣ୍ୟ ମିଳିବ, ଏତେ ଗହଳିକୁ ଯିବ କାହିଁକି ?"

ଦାଦା ଏ ବିଷୟରେ ମତ ପଚାରିବାରୁ ବାବୁଜୀ କହିଲେ, "ଅମୁକ ସ୍ଥାନକୁ ଗଲେ ଧର୍ମ ହେବ, ଅମୁକ ସ୍ଥାନରେ ରହିଲେ ଅଧର୍ମ ହେବ ଏଭଳି ବିଚାରିବା ଭୁଲ୍ ବୋଲି ମୋତେ ବାବା କେତେ ବାର କହିଛନ୍ତି । ସେ କହନ୍ତି, 'ଧର୍ମ ଅଧର୍ମ ନିଜ ମନର କଥା । ଯେଉଁଠି ରହି ପଛେ, ମନକୁ ଶୁଦ୍ଧ ରଖିଲେ ହେଲା ।' ଶୁଦ୍ଧ ବୋଇଲେ କ'ଣ ବୋଲି ମୁଁ ପଚାରିଥିଲି; ସେ କହିଲେ, 'ପଚାଶ ଜଣ ଯାହାକୁ ଖରାପ ବୋଲି କହୁଛନ୍ତି ସେ କଥା କରି ମଧ୍ୟ ମନରେ ଯଦି ଅନୁଶୋଚନା ନ ରହୁଛି ତେବେ ତୁମ ପାଇଁ ସେ ଖରାପ କାମଟା ବି ଭଲ ।' ମୁଁ ତାଙ୍କ କଥା ଏ ପର୍ଯ୍ୟନ୍ତ ଭଲ କରି ବୁଝି ପାରି ନାହିଁ । ମୁଁ ଏତିକି ବୁଝିଛି, ଯାହା ସମସ୍ତଙ୍କୁ ଭଲ ତାହା ମୋତେ ବି ଭଲ । ଅନ୍ୟମାନଙ୍କଠାରୁ ଅଲଗା କାମ କରିବାକୁ ଗଲେ ଯିନା, ମନରେ କଳୁଷ ରହୁଛି କି ନାହିଁ ଧନ୍ଦ ହେବାକୁ ହେବ ! ସମସ୍ତଙ୍କ ସଙ୍ଗେ ଗଡ୍ଡଳିକା ପ୍ରବାହରେ ଭାସି ଚାଲିଲେ କାମ ଶେଷ । ବାବା ତ ମୋତେ ହୁକୁମ ଦେଇ ଯାଇଛନ୍ତି, ତମେମାନେ ଯୁଆଡ଼େ

ମୁଁ ଯିଆଡ଼େ, ମୋ ମତ ପଚାରୁଛ କାହିଁକି ? ତୁମ ମତ ଆଗ ଠିକଣା ହୋଇ ସାରୁ । ବଡ଼େ ମହାରାଜ ତୁମକୁ ଅନୁମତି ଦେଇ ମୋତେ ତୁମ ସଙ୍ଗେ ଯିବାକୁ କହିଲେ, ଯିବି ।"

ଦିଦି ହସି ହସି ପଚାରିଲେ, ଯଦି ଆମ ସଙ୍ଗେ ନ ଯିବାକୁ କହନ୍ତି ? ବାବୁଜୀ କହିଲେ ସେ କଥା ସେ କହନ୍ତୁ ଆଗ, ତା'ପରେ ଦେଖିବା । ବର୍ତ୍ତମାନ ସେ ଆମର ମୁରବି । ସୁତରା ଅବିଚାର କରିବେ ବୋଲି ବିଚାରୁଛ କାହିଁକି ? ବାବା ଯିବା ତୁମ ଆମ ପାଇଁ ତୀର୍ଥ କରି ଯାଇଛନ୍ତି, ବଡ଼େ ମହାରାଜ ବିଚାରନ୍ତି, ସେ ଅଦ୍ୟାପି ତାଙ୍କରି ପାଖେ ପାଖେ ରହିଛନ୍ତି ଓ ଅଦୃଶ୍ୟ ରହି ପ୍ରତି କାର୍ଯ୍ୟରେ ତାଙ୍କୁ ପରାମର୍ଶ ଦେଉଛନ୍ତି । ବାବାଙ୍କ ଦେଇଥିବା ହୁକୁମ ସେ ବଦଳାଇ ଦେବେ ବୋଲି ବିଚାର ହେଉନାହିଁ ।

ସେ ଦିନ ଆଶ୍ରମରେ ଉପନୟନ ଉତ୍ସବ । ବାବୁଜୀ ଆମକୁ ବେଗାବେଗି ଆଶ୍ରମକୁ ଯିବାକୁ କହିଥାନ୍ତି । ଆମେ ଯାଇ ପହଞ୍ଚିଲୁ ସକାଳ ନ'ଟା ବେଳେ । ସେତେବେଳକୁ ବହୁତ ଲୋକ ଆସି ସାରିଥାନ୍ତି । ବହୁତ ବୋଇଲେ, ନେତାମାନେ କରୁଥିବା ସଭାମାନଙ୍କରେ ଯେତେ ଲୋକ ହୁଅନ୍ତି ସେତେ ନୁହେଁ । ଯେଉଁମାନେ ଆସିଥାନ୍ତି, ସମସ୍ତେ ଅଳ୍ପ ବହୁତେ ଆଶ୍ରମ ସହିତ ସଂପୃକ୍ତ । ସମସ୍ତେ ଆଶ୍ରମରେ ସନ୍ନ୍ୟାସୀମାନଙ୍କ ପ୍ରତି ଅନୁରକ୍ତ । ତେଣୁ ପ୍ରାୟ ହଜାରେ ଲୋକ ଏକାଠି ହୋଇଥିଲେ ମଧ୍ୟ ଟିକିଏ ପାଟିତୁଣ୍ଡ ହେଉ ନ ଥାଏ । ସମସ୍ତେ ନିଜନିଜର ମର୍ଯ୍ୟାଦା ରଖି ବୁଲି ବୁଲି କରୁଥାନ୍ତି । ସବୁଠାରୁ ବେଶି ଗହଳି ହୋଇଥାଏ ଆଶ୍ରମର ବଗିଚାରେ । ସ୍ୱା ଭିତରକୁ ଆମେ କେବେ ଆସି ନ ଥିଲୁ । ଆମେ ଆସି ବସୁ ବାବାଙ୍କ ପାଖରେ, ଏବେ ବଡ଼େ ମହାରାଜଙ୍କ ପାଖରେ—ଆଶ୍ରମର ସଦରରାସ୍ତା କଡ଼ରେ । ଭିତରେ ଏଡ଼େ ବଡ଼ ବଗିଚା ଅଛି ବୋଲି ଜାଣି ନ ଥିଲୁ । ବାବୁଜୀ ବି କେବେ କହି ନ ଥିଲେ । ପ୍ରକାଣ୍ଡ ବଗିଚା, ଉତ୍ତର ଦିଗରେ ଗଙ୍ଗାକୂଳ ପର୍ଯ୍ୟନ୍ତ ଲାଗିଛି । କେତେ ପ୍ରକାର ଗଛ ! ପିଜୁଳି ଫଳିବା ବେଳ । ଗଛଟିରେ ଏତେ ପିଜୁଳି ମୁଁ କେବେ ଦେଖି ନ ଥିଲି । ଗାଁରେ ଆମର ଗୋଟିଏ ବଗିଚା ଥିଲା; ପିଜୁଳି ଗଛ ବି ଥିଲା; କିନ୍ତୁ ଏତେ ଫଳ ଆସିବାର କେବେ ଦେଖି ନ ଥିଲି । ମୋ'ର ମନେ ହେଲା, ଏ ଆଶ୍ରମର ମହତ୍ତ୍ୱ ଯୋଗୁଁ ଏଭଳି ଫଳ ଆସିଛି ।

ଆଶ୍ରମର ଗୋଟାଏ କୁଣରେ, ଗଙ୍ଗାମାତାଙ୍କ କୂଳରେ ଗୋଶାଳା । ପଚାଶରୁ ଅଧିକ ଗାଈ ! କେଡ଼େ ସୁନ୍ଦର ଦିଶୁଥାନ୍ତି । ପ୍ରତ୍ୟେକଙ୍କ ମୁହଁରେ ସନ୍ତୋଷ । କାହାରି ଦେହରେ ଟିକିଏ ବି ମଇଳା ନାହିଁ ; କାହାରି ଗତିରେ ଚଞ୍ଚଳତା ନାହିଁ, ନିଶ୍ଚିନ୍ତ ଭାବେ ଠିଆ ହୋଇ ବା ଶୋଇ ପାକୁଳି କରୁଥାନ୍ତି । ମୋର ମନ ହେଉଥାଏ, ଏହିମିତି ଗୋଟିଏ ବଗିଚାରେ ଏହିଭଳି ଗୋରୁଙ୍କ ସେବା କରି ମୋ ଜୀବନ କଟାଇଦିଅନ୍ତି ।

ଆମେ ଆସି ପହଞ୍ଚିଲା ବେଳକୁ ବଡ଼େ ମହାରାଜ ତାଙ୍କ ନିତ୍ୟକର୍ମ ସାରି, ସବୁଦିନ ବସିବା ଜାଗାରେ ବସିଥାନ୍ତି । ବାବୁଜୀ ତାଙ୍କୁ ମୁଣ୍ଡିଆ ମାରି ତାଙ୍କ ଅନୁମତି ନେଇ ଆମକୁ ଭିତରକୁ ଆଣିଥିଲେ । ଆଶ୍ରମ ଭିତରେ, ବା ବଗିଚାରେ ଶାନ୍ତିରକ୍ଷା କରିବାକୁ ବା ଗଛରେ ଫଳଫୂଲ ଜଗିବାକୁ କେହି ନ ଥାନ୍ତି । ତଥାପି ସମସ୍ତେ ସଂଯତ ଭାବେ ଯିବା ଆସିବା

କରିବାର ଗୁରିଅଡ଼େ ଲକ୍ଷ୍ୟ କଲି । ହାତ ପଦ୍ମହରେ ଫଳ ଓହ୍ଲାଇ ଥାଏ ; ସାନ ପିଲାମାନେ ବି ଗୋଟାଏ ଚୋଳି ଧରାଇ ନଥାନ୍ତି । ଠାଏ ଜଣେ ସନ୍ନ୍ୟାସୀ ଗୁଡ଼ାଏ ପାଚିଲା ପିଜୁଳି ରଖି ସମସ୍ତଙ୍କୁ ନେବାକୁ ଯାଚୁଥାନ୍ତି । ପିଲେ ହାତ ବଢ଼ାଉଥାନ୍ତି, କିନ୍ତୁ ବଡ଼ ମଣିଷ—ସ୍ତ୍ରୀ ପୁରୁଷ ବ୍ରତ ବେଦୀରେ ଭିକ୍ଷା ଦେବାଯାଏ କିଛି ଗ୍ରହଣ କରିବାର କଥା ନୁହେଁ ବୋଲି ଶୁଣିଥିଲି । ମୋତେ ଜଣେ ସନ୍ନ୍ୟାସୀ ଗୋଟିଏ ଫଳ ଯାଚିଲେ । ମୁଁ କିଛି ନ କହି ମୁହଁ ଫେରାଇ ଚାଲିଗଲି ।

ବାବୁଜୀଙ୍କଠାରୁ ଶୁଣିଥାଉଁ ଅନାଥାଶ୍ରମର କୋଡ଼ିଏଟି ପିଲାଙ୍କର ଆଜି ବ୍ରତଘର ହେବ । ବିଦ୍ଧି ପଚାରିଥିଲେ, ଏ ସମସ୍ତେ କ'ଣ ବ୍ରାହ୍ମଣ ପିଲା ? ବାବୁଜୀ କହିଲେ, "ଅନାଥ ବାଳକ କା ପିଲା, କିଏ କହିବ ? ସେମାନଙ୍କର ଆଚରଣ ଓ ମନୋବୃତ୍ତି ଦେଖି ମହାରାଜ ସେମାନଙ୍କୁ ବ୍ରତ କରି ବ୍ରାହ୍ମଣ ପିଲା କରିବାକୁ ଆଦେଶ ଦେଇଛନ୍ତି ।" ବିଦ୍ଧି ଶୁଣି ଆଶ୍ଚର୍ଯ୍ୟ ହୋଇଥିଲେ । ବାବୁଜୀ କହିଲେ, "ମୋତେ ପ୍ରଥମେ ଏକଥା ଶୁଣି ଅପସନ୍ଦ ଲାଗିଥିଲା । ଆରବର୍ଷ ମୁଁ ଏଠାକୁ ଆସିଲା ବେଳକୁ ଏଇପରି ବ୍ରତଘରର ଆୟୋଜନ ହେଉଥାଏ । ବାବା ବୁଝାଇଦେଲେ, ଜନ୍ମ ଅନୁସାରେ ଜାତି ନିର୍ଣ୍ଣୟ କରିବା ଗତ ସିନା ପଡ଼ିଯାଇଛି, କିନ୍ତୁ ଦେଶରେ ଧର୍ମ ଯେତେବେଳେ ପ୍ରବଳ ଥିଲା ସେତେବେଳେ ପ୍ରତ୍ୟେକ ପିଲାର ଗୁଣ ବାରି ଜାତି କରାଯାଉଥିଲା । ପୁରାଣରୁ ଗୋଟିଏ ଉଦାହରଣ ଦେଇ ସେ କହିଥିଲେ, ଋଷଭ ରାଜାଙ୍କର ଶହେ ପୁଅ । ତାଙ୍କ ଭିତରୁ ଦଶଜଣ ରାଜା ହେଲେ, ନଅଜଣ ବୈରାଗୀ ହେଲେ, ଓ ବାକୀ ଏକାଅଶୀ ଜଣ ବ୍ରାହ୍ମଣ ହେଲେ ।"

ବିଦ୍ଧି କହିଲେ, ଆଜିକାଲି ସେମିତି ହେଲେ ଭଲ ହୁଅନ୍ତା । ଆଜିକାଲି ଯେଉଁମାନେ ବ୍ରାହ୍ମଣ ବୋଲାଉଛନ୍ତି, ତାଙ୍କ ଭିତରୁ ଅନେକ ଶୁଣ୍ଡୀ, ତେଲି ହେବାର ଯୋଗ୍ୟ । ସେଇମାନଙ୍କ ଯୋଗୁଁ ଲୋକଙ୍କର ଆମ ସଂସ୍କୃତି ଓ ପରମ୍ପରାରୁ ବିଶ୍ୱାସ ତୁଟିଯାଉଛି । ବାବୁଜୀ କହିଥିଲେ, "ସେ କଥା ମଧ୍ୟ ବାବାଙ୍କୁ କହିଥିଲି । ସେ ଉତ୍ତର ଦେଲେ, 'ଠିକ୍ ତ ହୁଅନ୍ତା, କିନ୍ତୁ କରାଇବ କିଏ ? ଆମ ଦେଶରେ କାହାବେକରେ ବାଉଁଶ ଧରାଇ କିଛି କରାଯାଏ ନାହିଁ । ପ୍ରତ୍ୟେକେ ନିଜର ମନ ଓ ରୁଚି ଅନୁସାରେ ଚାଲିବାକୁ ହକ୍‌ଦାର । କେହି କେହି ଲେଖିଯାଇଛନ୍ତି, ରାଜାଙ୍କ ନିର୍ଦ୍ଦେଶରେ ଆଗେ ଧର୍ମ ନିୟନ୍ତ୍ରିତ ହେଉଥିଲା । କିନ୍ତୁ ରାଜା ଯେଡ଼େ ସ୍ୱେଚ୍ଛାଚାରୀ ହେଲେ ବି ଲୋକମତକୁ ଧରି ରହିବାକୁ ବାଧ୍ୟ ହୁଅନ୍ତି । ଅବଶ୍ୟ ଲୋକ-ନେତାମାନଙ୍କ ସହଯୋଗରେ ଲୋକମତ ପ୍ରଭାବିତ କରିବାକୁ ଚେଷ୍ଟା କରନ୍ତି । ସେ ବେଳ ଯାଇଛି । ଆଜି ଯେ ରାଜା ସେ ଆମ ସଂସ୍କୃତିର ଧାର ଧରନ୍ତି ନାହିଁ କି, ଲୋକମତକୁ ଖାତିର୍ କରନ୍ତି ନାହିଁ । ଏପରି ସ୍ଥଳେ କ'ଣ ହେବା ଉଚିତ, ନ ହେବା ଉଚିତ କିଏ କହୁଛି, କିଏ ଶୁଣୁଛି ? ଆମର ଏ କ୍ଷୁଦ୍ର ପରିସରରେ ଯେତିକି ପାରିବା ସେତିକି କରିବା ।'"

ବିଦ୍ଧି ପଚାରିଥିଲେ, "କିନ୍ତୁ ଏଠାରେ ଯାହାଙ୍କୁ ବ୍ରାହ୍ମଣ କରାଯାଉଛି ତାଙ୍କୁ ଯଦି ଲୋକେ ବ୍ରାହ୍ମଣ ବୋଲି ନ ମାନିବେ ?" ବାବୁଜୀ କହିଲେ, "ଏକଥା ମୁଁ ପଚାରିବା ପୂର୍ବରୁ

ବାବା ତ ଙ୍କଆଡ଼ୁ ଉଠାଇଥିଲେ । ବ୍ରାହ୍ମଣ ବୋଲି ମାନିବାକୁ କେହି କାହା ଉପରେ ଜୋର ଜବରଦସ୍ତି କରେ ନାହିଁ । ମାନିଲେ ଦିଅଁ ନ ମାନିଲେ ପଥର । ବ୍ରାହ୍ମଣ ବୋଇଲେ ଲୋକ-ନେତା । ଆମେ ଯାହାଙ୍କୁ ବ୍ରାହ୍ମଣ କରୁଥାଉଁ ସେମାନେ ଯଦି ସୁଗୁଣ ହାସଲ କରିବେ ତେବେ ଲୋକରେ ଆଦୃତ ହେବେ ଏବଂ ବ୍ରାହ୍ମଣର ପୂର୍ବଗୌରବ ଫେରି ପାଇବେ । ନ ହେଲେ ଆଜିକାଲିର ଭ୍ରଷ୍ଟ ସମାଜରେ ଲୀନ ହୋଇଯିବେ । କେହି କାହାର ଭବିଷ୍ୟତ ନିର୍ଣ୍ଣିସ୍ତ କରିପାରିବ ନାହିଁ; ଆମକୁ ଯାହା ଭଲ ଦିଶୁଛି କରୁଥାଉଁ, ଫଳ କର୍ତ୍ତାଙ୍କ ହାତରେ ।"

ଦି'ପହରକୁ ଉପନୟନ କାର୍ଯ୍ୟ ଆରମ୍ଭ ହେଲା । ସାବିତ୍ରୀ ପ୍ରଦାନ କରିବାକୁ ମହାରାଜଙ୍କୁ ଯାଇ ଡାକିବାରେ ସେ ଆସିଲେ । ବିଧି ଶେଷରେ ସମସ୍ତଙ୍କୁ ଆଶୀର୍ବାଦ କରି ପୁଣି ତାଙ୍କ ଆସ୍ଥାନକୁ ଫେରିଗଲେ । ସେ ଦେଖିଲୁ, ନ ଦେଖିଲୁ ସବୁ କାମ ସୁରୁଖୁରୁରେ ସରିଗଲା । ବ୍ରତ ବେଦୀରେ ପିଲାଙ୍କୁ ଭିକ୍ଷା ଦେଲାବେଳେ ସମସ୍ତେ ନିଜ ନିଜ ସାମର୍ଥ୍ୟ ଅନୁସାରେ ଭିକ୍ଷା ଦେଲେ । ସମସ୍ତେ ଯେତେ ଦେଲେ ଏକୁଟିଆ ଦାଦି ଓ ଆମେ ସମସ୍ତେ ସେତିକି ଦେଲୁଁ ବୋଲି ମୋତେ ଲାଗିଲା ।

ସବୁ କାମ ସରିଲା । ସମସ୍ତେ ଫଳାହାର କରିବା ପରେ ଯେ ଯାହା ଘରକୁ ଗଲେ । ଆମେ ଆଶ୍ରମ ଭିତରୁ ବାହାରି ମହାରାଜଙ୍କ ପାଖରେ ଯାଇ ବସିଲୁଁ । ଅନାଥାଶ୍ରମର ପରିଚାଳକ ସନ୍ତର୍ପଣରେ ଆସି ବାବାଙ୍କୁ ଫଳାହାର କରିବାକୁ ନିବେଦନ କରନ୍ତେ ସେ କହିଲେ, "ରହ, ଆଉ ଡେରି ଅଛି । ସମସ୍ତଙ୍କର କାମ ସରୁ । ଅତିଥି ଅଭ୍ୟାଗତ ଆହୁରି ଆସିପାରନ୍ତି । ମୁଁ ଆଗରୁ ପେଟେ ଖାଇ ବସିଥିଲେ କ'ଣ ସୁନ୍ଦର ହେବ ? ତୁମର ଯଦି ସବୁ କାମ ସରିଲାଣି ତେବେ ତୁମେ ବସ, କାମ ଅଛି ।"

ବଡ଼ ଦାଦି ଏତିକିବେଳେ ମୁଣ୍ଡିଆ ମାରି କହିଲେ, "ମହାରାଜ ! ଆପଣ ତ ମୋ ମନ କଥା ଜାଣିପାରିଲେଣି । ମୁଁ ଆଉ କହିବି କ'ଣ ? ମୋତେ ଅନୁଗ୍ରହ ହେଉ । ଆମେ ସମସ୍ତେ ତ କୁମ୍ଭମେଳାକୁ ଯିବୁ । ପିଲାଟିମାନଙ୍କୁ ଅଶ୍ରା ଦିଅନ୍ତୁ ।" ଏହା କହି ସେ କୋଡ଼ପିଲାଟି ବାବାଙ୍କ ଗୋଡ଼ ତଳେ ପକାଇଦେଲେ ଓ ବଡ଼ ଦୁଇଟିଙ୍କୁ ବାବାଙ୍କ ପାଦତଳେ ମୁଣ୍ଡିଆ ମରାଇଲେ ।

ବାବା କହିଲେ, "ତୁ ଏହା କହିବୁ ବୋଲି ମୁଁ ସକାଳେ ତୁ ମୁଣ୍ଡିଆ ମାରିବା ବେଳୁ ଜାଣିଲିଣି । କିନ୍ତୁ ଆଉ କେତେଦିନ ତୁମମାନଙ୍କ ହେପାଜତରେ ଏଗୁଡ଼ିକ ଥିଲେ ଭଲ ହୋଇଥାନ୍ତା । ଆମେ ସିନା ଅନାଥଙ୍କୁ ନେଉଛୁଁ । ଏମାନେ ତ ଅନାଥ ନୁହନ୍ତି !"

ବଡ଼ ଦାଦି କହିଲେ, "ଏମାନଙ୍କର ଆଉ କିଏ ଅଛି ବାବା ! ଏମାନଙ୍କ ସାନ ମା' ଏମାନଙ୍କ ପାଇଁ ସିନା ପଇସା ସାଇତି ଦେଇଛି । ଭାଗ୍ୟ ଏମାନଙ୍କର କାହିଁ ? ବାପା ଏମାନଙ୍କର ଥିଲେ ଯେ, ତାଙ୍କ ଯୋଗୁଁ ଏମାନଙ୍କର ମଙ୍ଗଳ ହୋଇଥାନ୍ତା କି ନାହିଁ କେଜାଣି ? ସେ ତ ଯାଇଛନ୍ତି, ମୁଁ ଭଲ ସାଙ୍ଗେ ବନ୍ଧାହେଲିଣି । ତାକୁ ଛାଡ଼ି ମୁଁ ରହିପାରିବିନାହିଁ । (ଅନାଥାଶ୍ରମ ପରିଚାଳକଙ୍କୁ ଦେଖାଇ) ଏମାନଙ୍କର ହେପାଜତରେ ଏମାନେ ରହନ୍ତୁ ।"

ବାବା ପଚାରିଲେ, 'କଉଁ ରାମଜୀ ! ଏ ପିଲା ତିନୋଟିଙ୍କୁ ରଖିବ ?'' ରାମଜୀ କହିଲେ, ''ବାବା ହୁକୁମ କଲେ ମୋର ଆପତ୍ତି କରିବାର ପ୍ରଶ୍ନ ନାହିଁ । ସାନ ପିଲାଟି ଯୋଗୁଁ ବଡ଼-ମା ଟିକିଏ ଘାଣ୍ଟି ହେବେ ।'' ବାବା କହିଲେ, ''ସେ କହୁଛନ୍ତି ନା ତୁମେ କହୁଛ ? ଅଜି ଯେଉଁ ପିଲାଟିମାନେ ବ୍ରତ ହେଲେ ତାଙ୍କ ଭିତରେ ଯେଉଁଟି ସବୁଠାରୁ ସୁନ୍ଦର ହରିରାମ, ତାକୁ ଜାଣ ତ ? ମୁଁ ଗଙ୍ଗାକୂଳରୁ ତାକୁ ଗୋଟାଇ ଆଣିଥିଲି—ଚାରି ପାଞ୍ଚ ଦିନର ଶିଶୁ । ତାକୁ ଏଇ ବଡ଼ ମା ପାଳି ମଣିଷ କରିଛନ୍ତି ।''

ତା'ପରେ କିଛି ସମୟ ଉପରକୁ ଚାହିଁ ତୂନୀ ହୋଇ ବସି ସେ ଦାଦାଙ୍କ ଆଡ଼କୁ ଚାହିଁ କହିଲେ, ''କୁମ୍ଭମେଳାକୁ ଯିବା ସ୍ଥିର କରିସାରିଲଣି ତା'ହେଲେ ?'' ଦାଦା କହିଲେ, ''ମହାରାଜ ହୁକୁମ ଦେଲେ ଯିବୁଁ ।'' ବାବା ହସି ହସି କହିଲେ, ''ମନ ତ ଡାକୁଛି ମହାରାଜ କିମିତି ହୁକୁମ ଦିଅନ୍ତେ ହେଲେ, ଆଉ ମହାରାଜଙ୍କ ଉପରେ ନିର୍ଭର କାହିଁକି ?'' ଏଥର ଥୋଡ଼ାଏ ସମୟ ଉପରକୁ ଚାହିଁ ରହିଲେ । ତା'ପରେ କହିଲେ ''ହଉ ଯାଅ । ଭଗବାନଙ୍କ ଇଚ୍ଛା । ମୋ ହଁ ନାଇଁରେ କ'ଣ ହେବ ? ପ୍ରୟାଗ ପୁଣ୍ୟ ସ୍ଥାନ । ସେଠାକୁ ଯିବାକୁ ମୁଁ ମନା କରିବି କାହିଁକି ? ଭଗବାନଙ୍କ ଇଚ୍ଛା ପୂରଣ ହେଉ ।'' ପୁଣି ଟିକିଏ ପରେ ବଡ଼ ଦାଦାଙ୍କୁ କହିଲେ, ''ପୁଅମାନେ ତୋର ପାଖେ ଥାନ୍ତୁ । ଗଲାଦିନ ମୋତେ ଦେଇ ଯିବୁ ।'' ବଡ଼ ପୁଅଟିକୁ ପାଖକୁ ଡାକି ତା' ମୁଣ୍ଡରେ ହାତ ବୁଲାଇ କହିଲେ, ''କିରେ ଟୋକା ! ମୋ ପାଖେ ରହିବୁ ?'' ସେ ନିର୍ଭୟରେ ଉତ୍ତର ଦେଲା, ''ହଁ, ମୁଁ ବଡ଼ ବାବା ହେବି ।'' ସମସ୍ତେ ହସିଲେ, ସମସ୍ତଙ୍କ ଆଖିରୁ ଲୁହ ବହିଯାଉଥାଏ । ବାବା ମୁଗ୍ଧ ହୋଇ ପଚାରିଲେ, ''ଆରେ ! କ'ଣ ଅଜିଠାରୁ ବଡ଼ ବାବା ହେବୁ ନା ବଡ଼ ହେଲେ ?'' ପିଲା ଟିକିଏ ବିଚାରିଲା ପରି ମୁହଁ କରି କହିଲା, ''ମୁଁ ତ ବଡ଼ ।'' ଏଥର ବାବା ବି ହୋ ହୋ ହୋଇ ହସିଲେ, ବଡ଼ ଦାଦାଙ୍କୁ ଚାହିଁ କହିଲେ, ''ଭଲ ପିଲା ଜନ୍ମ କରିଛୁ ! ଅଜିଠାରୁ ମୋତେ ଏଠାରୁ ହଟାଇବାକୁ କହିଲାଣି ।''

ବଡ଼ ଦାଦା ଉତ୍ଫୁଲ୍ଲ ହୋଇ ଫେରିଲେ । ଦାଦା ଚିନ୍ତିତ ହୋଇଥାନ୍ତି । ଘରକୁ ଫେରିବା ପୂର୍ବରୁ ସମସ୍ତେ ଶେଠ୍‌ଜୀଙ୍କ ଗଦିକୁ ଗଲେ । ଶେଠ୍‌ଜୀ ପିଲାଙ୍କର ଆଶ୍ରମରେ ରହିବା ଶୁଣି ଖୁବ୍ ଖୁସି ହୋଇ କହିଲେ, ''ପିଲାଗୁଡ଼ିକର ଭାଗ୍ୟ ଭଲ । ସେଠାରେ ରହିଲେ ସେମାନଙ୍କର ଜନ୍ମ ସାର୍ଥକ ହୋଇଯିବ । ଅନାଥାଶ୍ରମରେ ରଖିବାକୁ କହିଲେ ଆପଣମାନଙ୍କୁ କେଜାଣି ବାଧିବ ବୋଲି ମୁଁ କହିନଥିଲି । ଅଜିକାଲି ଯେଉଁ ସ୍କୁଲ ସବୁ ବସିଛି ସେଥିରେ ମଣିଷ ପଶୁ ହୋଇଯାଉଛନ୍ତି, ଆଶ୍ରମରେ କିନ୍ତୁ ପଶୁ ମଣିଷ ହେବାର ଦେଖୁଛୁ ।''

ରାତିରେ ମା ଧରି ବସିଲେ, ବାବା ଅନୁମତି ଦେଇଥିବା ସ୍ଥଳେ ଆଉ ମୁହୂର୍ତ୍ତେ ବିଳମ୍ବ କରିବାର ନୁହେଁ । କାଲି ଓପରବେଳ ବାହାରିଯିବାକୁ ସେ କହିଲେ । ଦାଦା ବାବାଙ୍କ ଶେଷ କଥା ମନେ ପକାଇ କେମିତି ଚିନ୍ତିତ ରହିଥାନ୍ତି । ସେ ଅନୁମତି ଦେଇଛନ୍ତି ନା ବାରଣ କରିଛନ୍ତି ବୋଲି ସନ୍ଦେହ କରୁଥାନ୍ତି । କିନ୍ତୁ ବଡ଼ ଦାଦା ଭାଉଜ ଓ ମା'ଙ୍କୁ ଟେଚ଼ିନ-

ପାରି ସେ ଯିବାକୁ ରାଜି ହୋଇ କାଲି ପିଲଙ୍କୁ ଆଶ୍ରମରେ ମୁଣ୍ଡ ପଥର ଦିନ ଆଶୀର୍ବାଦ ଯିବାକୁ କହିଲେ । ରାମଲଗନ୍ ଆମକୁ ସେଠାରେ ଛାଡ଼ିଦେଇ ଫେରିଆସିବ ବୋଲି କଥା ହେଲା ।

ତହିଁଆରଦିନ ଦି ପହରେ ଆମେ ଆଶ୍ରମକୁ ଗଲୁଁ । ଶେଠ୍‌ଜୀ ମଧ୍ୟ ଯାଇ ପହଞ୍ଚିଥିଲେ । ପିଲାଙ୍କ ପାଇଁ ତାଙ୍କ ନାମରେ ଜମା ହୋଇଥିବା ଟଙ୍କାର କାଗଜପତ୍ର ସେ ବାବାଙ୍କ ହାତକୁ ବଢ଼ାଇ ଦେଇ କହିଲେ, "ମହାରାଜ ! ବିଦମାନେ ମୋ ମୁଣ୍ଡରେ ଯେଉଁ ଦାୟିତ୍ୱ ଲଦି-ଦେଇଥିଲେ ସେ ବୋଝ ମୋ' ମୁଣ୍ଡରୁ ଗଲେ ମୁଁ ଆଶ୍ୱସ୍ତ ହେବି । ମୋ ପାଖେ ୪୦ ହଜାର ଟଙ୍କା ଦେଇଥିଲେ । ପାଞ୍ଚ ହଜାର ସୁଧ ହୋଇଗଲାଣି । ଏ ଟଙ୍କା ଆଶ୍ରମରେ ଜମା ରହୁ ।"

ମହାରାଜ କହିଲେ, "ସମସ୍ତେ ସବୁ ଦାୟିତ୍ୱ ମୋ ମୁଣ୍ଡରେ ଲଦିଦେଲେ ମୁଁ ସମ୍ଭାଳିବି କେମିତି ? ଶେଠ୍‌ଜୀ, ତୁମର ଯେଉଁ ସାଥିମାନେ ଏ ଟଙ୍କା ନ୍ୟାସ ରୂପେ ଗ୍ରହଣ କରିଛନ୍ତି, ସେ ସମସ୍ତଙ୍କୁ ଡାକ, ଏ କଥାର ଫଇସଲା କରିବା ।"

ଶେଠ୍‌ଜୀ ଘଣ୍ଟାକ ଭିତରେ ସମସ୍ତଙ୍କୁ ଡାକି ଆଣିଲେ । ମହାରାଜ ଶେଠ୍‌ଜୀଙ୍କ ହାତକୁ ଟଙ୍କାର ଜମାଦାରୀ କାଗଜ ବଢ଼ାଇଦେଇ କହିଲେ, "ଏ ଟଙ୍କା ମୁଁ ଗ୍ରହଣ କରି ପୁଣି ଆପଣମାନଙ୍କ ଜମା କରିଦେଲି । ଏହାକୁ ସତ୍‌ବ୍ୟବସାୟରେ ଖଟାଇ ବଢ଼ାକୁଢ଼ା କରନ୍ତୁ । ଆପଣମାନେ ସ୍ୱେଚ୍ଛାରେ ଯେତେବେଳେ ଯେତିକି ପାରିବେ ଆଶ୍ରମକୁ ଦେଉଥିବେ । ମୂଳ ଟଙ୍କା ଏ ପିଲାଙ୍କର ହୋଇ ଥାଉ । କେତେବେଳେ ଦରକାର ହେଲେ ଆପଣଙ୍କଠାରୁ ଆସିବ ।" ସାଙ୍ଗେ ସାଙ୍ଗେ ସେଇ କଥା ଲେଖାପଢ଼ି ହୋଇଗଲା । ସମସ୍ତେ ଦସ୍ତଖତ କଲେ । କାଗଜ ଆଶ୍ରମର ଗନ୍ଧାଘରକୁ ଗଲାବେଳେ ଶେଠ୍‌ଜୀ କହିଲେ, "ମହାରାଜ ! ମୋ ପିଲେ ଆଜି ଆଶ୍ରମରେ ଭର୍ତ୍ତି ହେବେ । ବାଳଲୀଳା ଓ ପୂଜାବିଧି କରିବାକୁ ମୋ ନଜର ଏତିକି ଗ୍ରହଣ କରନ୍ତୁ ।" ଆଚ୍ଛା ବୋଲି କହି ମହାରାଜ ଧୂନି ପାଖରେ କାଗଜ ଓ ଟଙ୍କା ଥୋଇଦେବାକୁ ନିର୍ଦ୍ଦେଶ ଦେଲେ ।

ଶେଠ୍‌ଜୀ ବିଦାୟ ନେଲା ପରେ ବିଦି କହିଲେ, "ମହାରାଜ, ମୋର ଏତିକି ମଧ୍ୟ ଏଠି ଜମା ରହୁ । ମୋର ଦରକାର ହେଲାବେଳେ ନେବି ।" ମହାରାଜ ଶୂନ୍ୟକୁ ଦଣ୍ଡେ ଚାହିଁ କହିଲେ, "ମା ! ତୋର କୋଉ କଥାକୁ ତ ମନା କରିନାହିଁ । ଖର୍ଚ୍ଚକୁ କିଛି ପାଖରେ ରଖୁଛୁ ତ ?"

ଆଜି ସକାଳେ ବିଦି ସବୁ ପଇସା ଗଣତି କରାଇଥିଲେ । ମୋ ପଇସା ମିଶି ହେଲା ୨୨ ହଜାର । ଦୁଇ ହଜାର ଖର୍ଚ୍ଚକୁ ରଖି ମୋତେ କହିଥିଲେ, "ଏତକ ମହାରାଜଙ୍କ ପାଖେ ଥୋଇଦେଇ ଯିବା । ଏସବୁ ସବୁ ତୋର ବୋଲି ମନରେ ବିଚାରିଛୁ । ଯଦି ସୁଦିନ ଆସିବ, ତେବେ ତୋର ହାତକୁ ଦୁଇ ହାତ କରାଇ ଏଥିରେ ତୁମର ଗୃହସ୍ଥାଳୀ ସଜାଡ଼ିବ ।" ମୁଁ କିଛି ନ କହି କାନ୍ଦିଥିଲି, ମୋର ଭବିଷ୍ୟତ ଜୀବନ ଯେ ଏଇମିତି କଟିବ ଏକଥା ବିଦି ବିଶ୍ୱାସ କରୁନାହାନ୍ତି ବୋଲି ଅଭିମାନ କରି ।

## ( ୧୯ )

ଦିପହରେ ଆହ୍ଲାବାଦ ଯାତ୍ରା କରିବାକୁ ହେବ ବୋଲି କାଲି ବାବୁଜୀ ପାଞ୍ଜି ଦେଖି ସ୍ଥିର କରିଥାନ୍ତି ; ପୁଣି ବରାଦ କରିଥାନ୍ତି ଯେ, ସକାଳ ଦଶଟା ବେଳେ ଜଣେ ବ୍ରାହ୍ମଣ ଆସି ତୀର୍ଥଯାତ୍ରା ପାଇଁ ସଂକଳ୍ପ କରାଇବେ । ବରୁଣ ପୂଜା ହୋଇ ଶିଷ୍ଟଶାନ୍ତି ସକାଶେ ଟିକିଏ ହୋମ ବି ହେବ । ବ୍ରାହ୍ମଣ ଆସିବା ପୂର୍ବରୁ ଶ୍ରୀମଦ୍‌ଭଗବଦ୍‌ଗୀତା ଆମୂଳଚୂଳ ପାରାୟଣ କରିବାକୁ ହେବ । ସୂର୍ଯ୍ୟୋଦୟ ସଙ୍ଗେ ସଙ୍ଗେ ବାବୁଜୀ ଆଶ୍ରମର ଜଣେ ସନ୍ନ୍ୟାସୀଙ୍କୁ ଧରି ଆସି ପହଞ୍ଚିଲେ । ସେତେବେଳକୁ ଆମେ ସମସ୍ତେ ଗାଧୁଆ ପାଧୁଆ କରିସାରି ଯେଉଁଠାରେ ଗୀତା-ପାରାୟଣ ହେବାର କଥା ସେଠାରେ ଏକାଠି ହୋଇଥାଉ । ସନ୍ନ୍ୟାସୀ ଗୀତା-ପାରାୟଣ ଆରମ୍ଭ କଲେ । ବାବୁଜୀଙ୍କ ନିର୍ଦ୍ଦେଶରେ ଆମ ଘରେ ପ୍ରତ୍ୟହ ଗୀତାର ପାରାୟଣ ହୁଏ ଏବଂ ବଡ଼ ଦିଦି ଓ ଦିଦି ଆମ ଭିତରେ ବେଶି ପାଠ ପଢ଼ିଥିବାରୁ ବେଳେ ବେଳେ ତାହାର ଅର୍ଥ ଆଲୋଚନା କରନ୍ତି । ମୁଁ ଶୁଣି ନ ଶୁଣିଲା ପରି ଏ ସବୁରେ ଯୋଗ ଦିଏ । ଆଜି କିନ୍ତୁ ସନ୍ନ୍ୟାସୀମହାରାଜଙ୍କ ଲଳିତ ସ୍ୱର ଓ ସ୍ପଷ୍ଟ ଉଚ୍ଚାରଣ ଯୋଗୁଁ ହେଉ ବା ତାଙ୍କ ସୌମ୍ୟ ଆକୃତି ଯୋଗୁଁ ହେଉ ମୁଁ ମୂଳରୁ ତନ୍ମୟ ହୋଇ ଶୁଣିଲି । ତାଙ୍କ ଆବୃତ୍ତି ଭଙ୍ଗୀରେ ମୋତେ ଶ୍ଳୋକଗୁଡ଼ିକ ବୁଝାପଡ଼ିଯାଉଥାଏ । ମଝିରେ ମଝିରେ ସନ୍ନ୍ୟାସୀ ପାରାୟଣ ବନ୍ଦ କରି ଗୋଟିଏ ଗୋଟିଏ କୂଟ-ଶ୍ଳୋକ ଉପରେ ଦି'ଚାରିପଦ କହୁଥାନ୍ତି । ଶରୀର ଉପରେ ମମତା ନ ରଖି ନିଜର କର୍ତ୍ତବ୍ୟ ସଂପାଦନ କରିବାରେ ବ୍ରତୀ ହେବ, ଶରୀର ଜନ୍ମାନ୍ତରରେ ପୁଣି ମିଳିବ, କିନ୍ତୁ କର୍ତ୍ତବ୍ୟବିମୁଖତା ଯୋଗୁଁ ଯଦି ଜୀବାତ୍ମା ପଥଭ୍ରଷ୍ଟ ହୁଏ ତେବେ ଆସନ୍ତା ଜନ୍ମରେ ଜୀବାତ୍ମାକୁ ମନୁଷ୍ୟ ଶରୀର ନ ମିଳି ବାଘ ବିରାଡ଼ିଙ୍କର ଶରୀର ମିଳିପାରେ ବୋଲି ସେ ଯେପରି ଭାବରେ ବୁଝାଇ ଦେଲେ ତା' ଶୁଣି ମୋର ମନେ ହେଲା, ଆମ ଘରର ବିରାଡ଼ିଟି ପୂର୍ବଜନ୍ମର କୌଣସି ପଥଭ୍ରଷ୍ଟ ମଣିଷ । ସେ ସବୁବେଳେ ମୋରି ଗୋଡ଼େ ଗୋଡ଼େ ଥାଏ । ମୋରି ପାଖରେ ବସି ଆଜି ପୁରାଣ ବି ଶୁଣୁଥାଏ । ମୁଁ ତାକୁ କୋଡ଼କୁ ନେଇ ଆହୁରି ତନ୍ମୟ ହୋଇ ଶୁଣିବାକୁ ଲାଗିଲି । ସନ୍ନ୍ୟାସୀ ମୋ ଆଡ଼କୁ ଚାହିଁ ଟିକିଏ ମୁରୁକି ହସି କହିଚାଲିଲେ 'ଯୋ ଯଚ୍ଛ୍ରଦ୍ଧଃ ସ ଏବ ସଃ' । ବିରାଡ଼ି ପ୍ରତି ଅତିମମତାରେ ଆର ଜନ୍ମରେ ବିରାଡ଼ି ହେବାର ଆଶଂକା ବି ଅଛି, ଯେପରି ଭରତଙ୍କର ହୋଇଥିଲା । ମୁଁ ବିରାଡ଼ିଟିକୁ କୋଡ଼ରୁ ଆଡ଼େଇ ଦେବାର ଉପକ୍ରମ ବୋଧହୁଏ କଲି । ସେ କହିଲେ, "ବିରାଡ଼ିକୁ କୋଡ଼ରେ ପୂରାଇ ମଧ୍ୟ ତା' ପ୍ରତି ମମତାହୀନ ହୋଇ ରହିହେବ । ନିୟମିତ ଆହାର ବିହାର କରି ଶରୀରର କୁଶଳ କରି ମଧ୍ୟ ସେହିପରି ଶରୀର ପ୍ରତି ମମତାହୀନ ହୋଇ ରହିହେବ ।" ଏହିପରି ତନ୍ମୟ ପାରାୟଣ ଓ ସରସଭାବାର୍ଥ କରି କରି ସନ୍ନ୍ୟାସୀ ପାରାୟଣ କରି ଚାଲିଥାନ୍ତି । ମୋର ସନ୍ଦେହ ହେଉଥିଲା, ଦଶଟା ବେଳକୁ ବୋଧହୁଏ ପାରାୟଣ ସରିବ ନାହିଁ ।

ବ୍ରାହ୍ମଣ ଆସି ମଣ୍ଡଳ ପକାଇବାକୁ ଆରମ୍ଭ କରୁକରୁ ସନ୍ନ୍ୟାସୀ ପାରାୟଣ ସାରି ପୂଜାସ୍ଥାନକୁ ଆମମାନଙ୍କ ସଙ୍ଗେ ବାହାରିଲେ ।

ସଂକ୍ଷେପରେ ପୂଜା ଓ ହୋମ ସାରି ତୀର୍ଥଯାତ୍ରା କରିବା ପାଇଁ ଆମେମାନେ ସମସ୍ତେ ଦୀକ୍ଷିତ ହେଲୁ । ବହୁ ବ୍ରାହ୍ମଣ ଓ ଅଭ୍ୟାଗତଙ୍କୁ ଅନ୍ନ ଓ ବସ୍ତ୍ର ଦାନ କରି ଆମେ ପ୍ରସାଦ ପାଇଲୁଁ । ବାରଟା ବାଜିବା ବେଳକୁ ସମସ୍ତେ ଓହ୍ଲାଇ ମଠରରେ ଯାଇ ବସୁଛୁ, ବଡ଼ କହିଲେ, "ବଡ଼େ ମହାରାଜଙ୍କୁ ମୁଣ୍ଡିଆ ମାରି ଯିବା ।" ଆମେ ଯାଇ ପହଞ୍ଚିଲା ବେଳକୁ ମହାରାଜ ସତେ ଯେମିତି ଅପେକ୍ଷା କରି ରହିଥାନ୍ତି । ବଡ଼ ଆଗ ତାଙ୍କୁ ମୁଣ୍ଡିଆ ମାରି ଉଠି ହାତ ଯୋଡ଼ି ଠିଆ ହେଲେ । ମହାରାଜ ଆଶୀର୍ବାଦ କଲେ, "କର୍ତ୍ତାଙ୍କ ଇଚ୍ଛା ପୂର୍ଣ୍ଣ ହେଉ ।" ସମସ୍ତଙ୍କୁ ସେଇ ଏକା ଆଶୀର୍ବାଦ । ମହାରାଜଙ୍କ ମୁହଁରେ ପ୍ରଶାନ୍ତ ଅଥଚ ଗମ୍ଭୀର ଭାବ । ନଡ଼ ବଡ଼ କହିଲେ, "ବାବା ! ମୋ ଅରକ୍ଷିତ ପିଲାଗୁଡ଼ିକ ରହିଗଲେ ।" ବାବା ଗାମ୍ଭୀର୍ଯ୍ୟ ଭିତରେ ଟିକିଏ ରହସ୍ୟ କରି କହିଲେ, "ମୋର ବୋଲି ବାଗୁରୁଥିବା ଯାଏଁ ପିଲେ ଅରକ୍ଷିତ ହେଲେ କିମିତି ? କଷ୍ଟ ନ୍ତ ମନରେ ଯା । ବହୁ ଆରକ୍ଷିତଙ୍କ ଅପେକ୍ଷା ତୋ' ପିଲାଙ୍କ ପାଇଁ ଯତ୍‌ଅଷ୍ଟ ଅଧିକ ସାଇତା ହୋଇ ରହିଛୁ ।" ମୁଁ ମୁଣ୍ଡିଆ ମାରିଲା ପରେ ବାବା ବାବୁଜୀଙ୍କ ଆଡ଼କୁ ଚାହିଁ କହିଲେ, "ସ୍ତ୍ରୀକୁ ବାବା ତୋଠି ନ୍ୟାସ କରି ଯାଇଛନ୍ତି । ସ୍ତ୍ରୀ ଉପରେ ସବୁବେଳେ ନଜର ଦେଉଥିବୁ । ଆଜିକାଲିର ତୀର୍ଥ ସ୍ଥାନରେ ଧାର୍ମିକଙ୍କ ଅପେକ୍ଷା ଅଧାର୍ମିକ ବେଶି ରୁଣ୍ଡ ହେଉଛନ୍ତି ।" ମୋର ଶାଶୁ, ପ୍ରତାପ ବାବୁଙ୍କ ମା' ମୁଣ୍ଡିଆ ମାରିବାରେ ମହାରାଜ ତାଙ୍କୁ କହିଲେ, "ଯାଅ, ଶୀଘ୍ର ମେଳାରୁ ପୁଣ୍ୟ ସଞ୍ଚୟ କରି ଏଠାକୁ ଫେରି ଆସ ।" ଏକଥା ମୋତେ କେମିତି ଅଡୁଆ ଲାଗିଲା । ସମସ୍ତଙ୍କ ପାଇଁ ଗୋଟିଏ ପଦ, "ଭଗବାନଙ୍କ ଇଚ୍ଛା ପୂର୍ଣ୍ଣ ହେଉ", ଆଉ ମା'ଙ୍କ ପାଇଁ ଫେରି ଆସିବାର ନିର୍ଦ୍ଦେଶ ! ତେବେ କ'ଣ ଆମେ, ବଡ଼ ବଡ଼, ବଡ଼, ଭାବୀ ଓ ମୁଁ—ମୋ କଥା ଅଲଗା ବାଗୁରିବାର ନୁହେଁ, ମୁଁ ତ ବଡ଼ ଓ ଭାବୀଙ୍କ ଗୋଡ଼ରେ ବନ୍ଧା—କୁମ୍ଭମେଳା ପରେ ଏଠାକୁ ନ ଫେରି ଆଉ କୁଆଡ଼େ ତୀର୍ଥ କରିବାକୁ ଯିବୁ ? କେଜାଣି ଆଉ କେଉଁଠାରୁ ଆଉ କୌଣସି ସନ୍ନ୍ୟାସୀ ଆସିଥାଇପାରନ୍ତି, ଯାହାଙ୍କର ପ୍ରଭାବ ଆମ ଉପରେ ଆହୁରି ଅଧିକ ଭାବେ ପଡ଼ିଯିବ ! ମୋତେ ଆଶ୍ଚର୍ଯ୍ୟ ଲାଗିଲା । କିନ୍ତୁ ଆଉ କେହି ମହାରାଜଙ୍କ କଥାକୁ ଲକ୍ଷ୍ୟ କରିଥିଲା ପରି ଜଣା ନ ପଡ଼ିବାରୁ ମୁଁ ତୁନି ହୋଇଗଲି ।

ଦୀପ ଲଗିଲା ବେଳକୁ ଆମେ ଆହ୍ଲାବାଦରେ ମା'ଙ୍କ ଘର ପାଖେ ଯାଇ ପହଞ୍ଚିଲୁଁ । ବଡ଼ ଓ ଭାବୀ ଘର ଭିତରକୁ ଯିବାକୁ ନାହିଁ କଲେ । ଦୁହେଁ ଯାକ ଏକ ସ୍ୱରରେ କହିଲେ, "ଆମେ ତ ତୀର୍ଥ କରିଯିବାକୁ ସଂକଳ୍ପ କରି ସାରିଥାଇଁ, ଘରେ କିମିତି ରହିବା ।" ବାବୁଜୀ ଯୁକ୍ତି କଲେ ଯେ, ନିଜ ଘରେ ରହିଲେ ଯିନା ଦୋଷ, ଅନ୍ୟର ଘରେ ରହିବାରେ କ'ଣ ଅଛି ? ଯୁକ୍ତିତର୍କ ପରେ ସ୍ଥିର ହେଲା, କାଲି ମେଳାପଡ଼ିଆରେ ରହିବାର ବନ୍ଦୋବସ୍ତ ହେବ, ଆଜି ରାତିରେ ମା'ଙ୍କ ଘରେ ନାମକୁ ମାତ୍ର ଭଡ଼ା ଦେଇ ରହିବା । ଏ ଘରର ଯେଉଁ କୋଠରୀଟି ମୁଁ ଆରଥର ସଜାଇଥିଲି ସେଇଥିରେ ସମସ୍ତେ ରହିଲୁଁ ।

ତହିଁ ଆରଦିନ ରାମଲଗନ୍‌କୁ ହରଦ୍ୱାର ଯିବାକୁ ବିଦାୟ ଦେଇ ଆମେ ସମସ୍ତେ ଗଲୁଁ କୁମ୍ଭମେଳାର ବିରାଟ ପଡ଼ିଆକୁ ; ମା’ ରହିଲେ ଘରେ । ତିନି ଦିନ ପରେ ‘ବୁଢ଼’ । ସେ ଦିନ ସକାଳୁ ଆସି ମା’ଙ୍କୁ ନେଇଯିବେ ବୋଲି ବାବୁଜୀ ଜବାବ୍ ଦେବାରୁ ମା’ କୁହୁ କୁହୁ ହୋଇ ରହିଲେ । ତାଙ୍କର ଇଚ୍ଛା ଥିଲା ଆମେ ଯେଉଁଠି ରହିବୁଁ ସେଇଠାରେ ସାଙ୍ଗ ହୋଇ ରହିଥାନ୍ତେ ।

କୁମ୍ଭମେଳା ଯେଉଁ ପଡ଼ିଆରେ ହୁଏ ତାହାର ଆୟତନ କଳନା କରିପାରିଲି ନାହିଁ । ଆମେ ଯାଇ ପହଞ୍ଚିଲା ବେଳକୁ ଟିକିଏ ସୂଚୀ ଜାଗା ଖାଲି ନ ଥାଏ । ଯେଉଁ ଆଡ଼େ ଚାହିଁବ ଲୋକ । କେତେ ଲକ୍ଷ ଲୋକ ଜମିଥାନ୍ତି କେଜାଣି ? ଏତେ ହାତୀ ଘୋଡ଼ା ମୁଁ ଏକାଠି କେବେଁ ଦେଖି ନ ଥିଲି । ଦିନ ତମାମ ବୁଲିଆନ୍ତେ ବୁଲି ଦେଖିଲୁଁ । ହାଲିଆ ଲାଗିଲେ କୌଣସି ଗୋଟାଏ ଛୋଟି ଦୋକାନର ଛାଇରେ ବସିଯାଉଥାଉଁ । ଭୋକ ହେଲାରୁ ଖଣ୍ଡେ ଖଣ୍ଡେ ଶୁଖିଲା ରୋଟି ଚୋବାଇ ଦେଇ ଗଙ୍ଗାଜଳ ମୁନ୍ଦାଏ ମୁନ୍ଦାଏ ପିଇଲୁଁ ।

ମେଳାରେ ସାଧୁ ସନ୍ନ୍ୟାସୀଙ୍କର ସଂଖ୍ୟା ସବୁଠାରୁ ବେଶି । ଆମେ ସେଇମାନଙ୍କ ଶ୍ରୀମୁଖରୁ ପଦେ ଶୁଣି କୃତାର୍ଥ ହେଉଥାଉଁ । ଠାଏ ବହୁତ ଲୋକ ଜମା ହୋଇ ବସି ଜଣେ ସାଧୁ ତୁଳସୀ ରାମାୟଣ ଅର୍ଥ କରିବାର ଶୁଣୁଥାନ୍ତି । ଆମେ ସେଇଠାରେ ବହୁତ ବେଳ ବସିଗଲୁଁ । ଛାଇ ଲେଉଟିଲା ବେଳକୁ ବାବୁଜୀ କହିଲେ, ରାତିରେ ରହିବାକୁ ବାସ ଠିକଣା ନ କଲେ ଘୋର ହଇରାଣ ହେବ । ରାତିରେ କାକର ପଡ଼ିବ ; ସନ୍ଧ୍ୟା ପହରେ ପବନରେ ନାକକାନ ଧୂଳିରେ ଚୂର୍ଣ୍ଣ ହୋଇଯିବ । କେଉଁଠି ଜାଗା ପାଇବୁ ଖୋଜି ଖୋଜି ନାଗା ସନ୍ନ୍ୟାସୀମାନେ ବଧା କରିଥିବା ସ୍ଥାନକୁ ଗଲୁଁ । ଏମାନଙ୍କୁ ଦେଖି ମୋ ଆଖି ଖୋସି ହୋଇଗଲା । ସମସ୍ତେ ପଞ୍ଝହତା ମରଦ ; କୁସ୍ତିକସରତ କରି ଦଳ ଦେଲାପରି ହୋଇଥାନ୍ତି । ତାଙ୍କ ଆଡ୍‌ଡାର ଗୋଟାଏ କଣକୁ ୩୦ ଘର ହାତୀ ଓ ଶହେ ଖଣ୍ଡେ ଘୋଡ଼ା ରହିଥାନ୍ତି । ଏମାନଙ୍କର ଯଉସ ସେଇ ନାଗା ସନ୍ନ୍ୟାସୀ କେତେଜଣ । ମହନ୍ତଙ୍କ ଆଶ୍ରମର ନିକଟବର୍ତ୍ତୀ ହେବାରେ ଜଣେ ସନ୍ନ୍ୟାସୀ-ଜନୁଆଲ ଆସି ଆମକୁ ବାରଣ କଲେ, “ଏ ସ୍ଥାନର ସୀମାରେ କୌଣସି ସ୍ତ୍ରୀଲୋକ ପଶିବାର ନୁହେଁ ।” ବାବୁଜୀ କହିଲେ, “ମହନ୍ତ ମହାରାଜଙ୍କ ପାଖକୁ ମୁଁ ଗୋଟାଏ ବାର୍ତ୍ତା ଆଣିଛି । ଆପଣ ଏମାନଙ୍କ ଉପରେ ଟିକିଏ ଦୃଷ୍ଟି ରଖିଲେ ମୁଁ ତାଙ୍କ ସଙ୍ଗେ ଦେଖା କରି ଆସିବି ।” ସାଙ୍ଗେ ସାଙ୍ଗେ ଜଣେ ସନ୍ନ୍ୟାସୀ ବାବୁଜୀଙ୍କୁ ଭିତରକୁ ନେଇ-ଗଲେ ।

ପ୍ରାୟ ଅଧଘଣ୍ଟେ ପରେ ବାବୁଜୀ ଆସି କହିଲେ, “ମହନ୍ତଙ୍କ ଟଙ୍ଗୀର ଖଣ୍ଡେ ଦୂରରେ ଆମ ପାଇଁ ଜାଗା ଠିକଣା ହେଲା । ତାଟି ଘେରାଇବାକୁ ଲୋକ ବରାଦ ହୋଇ ଗଲେଣି । କିନ୍ତୁ ମହନ୍ତ ମହାରାଜଙ୍କଠାରୁ ଗୋଟାଏ ଦୁଃସମ୍ବାଦ ଶୁଣି କରି ଆସିଲି । କ’ଣ କରିବା କହ ।”

ଦାଦା ଟିକିଏ ବି ବିଚଳିତ ନ ହୋଇ, ଘଟଣା କ'ଣ ବୋଲି ପଚାରିଲେ । ବାବୁଜୀ କହିଲେ, "କୁମ୍ଭମେଳାରେ ସବୁଥର ନାଗା ସନ୍ନ୍ୟାସୀମାନେ ଶାନ୍ତି ଶୃଙ୍ଖଳା ରକ୍ଷା କରନ୍ତି । ସେଥିପାଇଁ ପୁଲିସବାଲାଙ୍କର ପ୍ରୟୋଜନ ହୁଏ ନାହିଁ । କେତେଜଣ ସିପାହୀ ଓ ସବ୍‌ଇନ୍‌ସ୍‌ପେକ୍ଟର କେବଳ ବିଧି ରକ୍ଷା କରିବାକୁ ଏଠି ସେଠି ଟହଲ ମାରୁଥାନ୍ତି । ଏ ବର୍ଷ ସେ ପରଂପରା ଭାଙ୍ଗିବାକୁ ସରକାର ବିଚାର କରୁଛନ୍ତି । ମହନ୍ତ ମହାରାଜଙ୍କଠାରୁ ଶୁଣିଲି, ଏ ବର୍ଷ ପ୍ରଧାନମନ୍ତ୍ରୀ କୁଆଡ଼େ ବୁଡ଼ ପକାଇବାକୁ ଆସିବେ । ତାଙ୍କୁ ନିରାପଦ ରଖିବାକୁ ପ୍ରାୟ ହଜାରେ ବନ୍ଧୁକଧାରୀ ପୁଲିସ ଫୌଜ କୁମ୍ଭମେଳା ପଡ଼ିଆରେ ପହରା ଦେବେ ବୋଲି ବ୍ୟବସ୍ଥା ହେଉଛି । ଆଜି ଜିଲା ମାଜିଷ୍ଟ୍ରେଟ୍ ଏଇକଥା ଜଣାଇବା ପାଇଁ ମହନ୍ତ ମହାରାଜଙ୍କ ପାଖକୁ ଆସିଥିଲେ ।"

ଦାଦା କହିଲେ, "ଯେ ଆଉ ଦୁଃସମ୍ବାଦ କ'ଣ ? ଅଧିକ ସଂଖ୍ୟାରେ ପୁଲିସ ଫୌଜ ରହିଲେ ତ ମେଳାରେ କୌଣସି ପ୍ରକାର ଅଶାନ୍ତି ଅଶୃଙ୍ଖଳା ହେବା ସମ୍ଭାବନା ରହିବ ନାହିଁ ।" ବାବୁଜୀ କହିଲେ, "ମୁଁ ତ ବିଚାରୁଛି, ପୁଲିସ ଅଳ୍ପ ରହନ୍ତୁ, ବେଶି ରହନ୍ତୁ, ସେଥିରେ କିଛି ଯାଏ ଆସେ ନାହିଁ । କିନ୍ତୁ ମହନ୍ତ ମହାରାଜ ସେପରି ବିଚାରୁନାହାନ୍ତି । ସେ କହୁଛନ୍ତି, ପୁଲିସ ଗୁଡ଼ାଏ ଆସି ପହଞ୍ଚିଲେ ଗଣ୍ଡଗୋଳ ଲଗାଇବେ । ସେ କହୁଛନ୍ତି, କୁମ୍ଭମେଳାକୁ ଯେଉଁମାନେ ଆସନ୍ତି ସେମାନେ ଧର୍ମ କରିବାକୁ ଆସନ୍ତି । ସେମାନଙ୍କ ପକ୍ଷରୁ କୌଣସି ଅପରାଧ ହେବାର ଆଶଂକା ଖୁବ୍ କମ୍ । ପ୍ରତ୍ୟେକେ ନିଜ ନିଜର ସୁବିଧାରେ ରହି ନିଜ ସୁବିଧାରେ ବୁଡ଼ ପକାଇ ସବୁଥର ଯା'ନ୍ତି । ଏଥର ବି ଯା'ନ୍ତେ । ପୁଲିସ ଯେ ଆସିବେ ସେମାନେ ତ ଧର୍ମ କରିବାକୁ ଆସିବେ ନାହିଁ । ସେମାନେ ଆସିବେ ପ୍ରଧାନମନ୍ତ୍ରୀଙ୍କୁ ଜଗିବାକୁ ଓ ଅପରାଧୀଙ୍କୁ ଜବତ୍ କରିବାକୁ । ପ୍ରଧାନମନ୍ତ୍ରୀଙ୍କୁ ନିରାପଦ ରଖିବା ନାମରେ ସେ ନାନା ପ୍ରକାର କଟକଣା ଜାରି କରିବେ ଏବଂ ଅପରାଧୀଙ୍କୁ ଧରିବା ନାମରେ ଗୁଡ଼ାଏ ହଟ୍ଟଗୋଳ ଲଗାଇବେ । ଲୋକମାନଙ୍କର ଦୃଷ୍ଟି ସବୁବେଳେ ପୁଲିସଙ୍କ ଉପରେ ରହିବ । ଲୋକଙ୍କ ଗତିବିଧିରେ କଟକଣା ହେଲେ ଗଣ୍ଡଗୋଳ ହେବ—ଏ ଆଶଂକା ଅକାରଣ ବୋଲି ମୋର ମନେ ହେଉଛି । କିନ୍ତୁ ମହନ୍ତ ମହାରାଜ ବିଚାରୁଛନ୍ତି ଯେ, ଅକାରଣ ହେଲେ ବି, ଏଭଳି ଆଶଂକା ପାଇଁ ବାଟ ରଖିବା ଉଚିତ ନୁହେଁ । ତେଣୁ ସେ ଆଜି ଜିଲା ମାଜିଷ୍ଟ୍ରେଟଙ୍କୁ ଜଣାଇଦେଇଛନ୍ତି, ପୁଲିସ ବା ହାକିମ ଶାନ୍ତି ରକ୍ଷା କରିବା ପାଇଁ ଯଦି ଆସନ୍ତି ତେବେ ସେ ଓ ତାଙ୍କ ନାଗାମାନେ ବିରୋଧ କରିବେ ।"

ବାବୁଜୀ ପୁଣି କହିଲେ, "ମହନ୍ତ ମହାରାଜଙ୍କର ପ୍ରଧାନ ଆପତ୍ତି, ପ୍ରଧାନମନ୍ତ୍ରୀ ବୁଡ଼ ପକାଇବାକୁ ଆସିବାରେ । ତାଙ୍କ କାନକୁ ଆସିଛି ଯେ, ପ୍ରଧାନମନ୍ତ୍ରୀ ଏବେ ଗୋଟାଏ ସଭାରେ କହିଛନ୍ତି—ମହାକୁମ୍ଭ ଯୋଗରେ ବୁଡ଼ ପକାଇଲେ ପୁଣ୍ୟ ହୁଏ ବୋଲି ବିଚାରିବା କୁସଂସ୍କାର । ଗଙ୍ଗାର ଜଳ ଆଜି ଯେତିକି ପବିତ୍ର ମହାକୁମ୍ଭ ଯୋଗରେ ତହିଁରୁ ଅଧିକ ପବିତ୍ର ହୋଇ ନ ପାରେ—ଏଇ କଥା ଶୁଣି ମହନ୍ତ ମହାରାଜ ଚଟି ଯାଇଛନ୍ତି । ସେ କହୁଛନ୍ତି, ଯାହାର

ଏଭଳି ଅବିଶ୍ୱାସ ସେ କୁମ୍ଭମେଳାକୁ ଆସିବ କାହିଁକି ? ଯଦି ଆସିବ, ଏତେ ସଙ୍କଟରେ ଆସିବ କାହିଁକି ? ଏ କ୍ଷେତ୍ରରେ ସବୁ ମଣିଷ ସମାନ—ରାଜା ପ୍ରଜା ଏକ ହୋଇ ବୁଡ଼ ପକାଇବେ ।"

ଦାଦା କହିଲେ, "ସେ ଯଦି ସମସ୍ତଙ୍କ ସଙ୍ଗେ ସମାନ ହୋଇ ନ ଆସନ୍ତି ତେବେ ଦୋଷ ତାଙ୍କର । ତାଙ୍କ ପାପ ତାଙ୍କୁ ଖାଇବ । ମହାରାଜ କାହିଁକି ବିରୋଧ କରିବେ ?"

ବାବୁଜୀ କହିଲେ, "ସେ କଥା ମୁଁ ଟିକିଏ ବୁଝାଇଲି । ମହନ୍ତ ମହାରାଜ କିନ୍ତୁ ଶୁଣିବାକୁ ନାରାଜ । ସେ କହୁଛନ୍ତି, 'ମୋର ଗୁରୁଙ୍କ ସମୟରୁ, ତାଙ୍କ ଗୁରୁଙ୍କ ସମୟରୁ, ମୁଁ ଦେଖି ଆସିଛି ଏଠାରେ ସମସ୍ତେ ସମାନ ଓ ସମସ୍ତଙ୍କ ତତ୍ତ୍ୱାବଧାନ ଆମେ ନାଗାମାନେ କରୁଁ । ଆମର ସେ ଅଧିକାରରେ ଆଞ୍ଚ ଆସିଲେ ଆମେ ବିରୋଧ କରିବୁଁ । ଅନ୍ୟତଃ ଏ ସ୍ଥାନ ଛାଡ଼ି ଆମେ ଚାଲିଯିବୁଁ ।' ମହାକୁମ୍ଭଯୋଗ ପଅର ଦିନ ପାହାନ୍ତିଆରୁ ଆରମ୍ଭ ହେବ । ମୋର ଆଶଙ୍କା, ନାଗାମାନେ ପଅର ଦିନ ପାହାନ୍ତିଆରେ ବୁଡ଼ ପାରି ବାହାରି ଯିବେ । ସେମାନେ ବାହାରି ଗଲେ ମେଳାରେ ଶୃଙ୍ଖଳା ରହିବ ନାହିଁ । ନାଗାମାନେ ଗଲାବେଳେ ସଦଳବଳେ ଯିବେ, ଭିଡ଼ ଚକଟି ଦେଇ ଯାଇ ପାରନ୍ତି, ସେମାନେ ପୁଲିସଙ୍କ ଯୋଗୁଁ ଚାଲି ଯାଉଛନ୍ତି ବୋଲି ଜନତା ଜାଣିଲେ, ସରକାର ଧର୍ମରେ ହସ୍ତକ୍ଷେପ କରୁଛି ବୋଲି ଉତ୍ତ୍ୟକ୍ତ ହୋଇପାରନ୍ତି । ଚାରି ପାଞ୍ଚ ଲକ୍ଷ ଲୋକଙ୍କ ଗହଳିରେ ଟିକିଏ ଗଣ୍ଡଗୋଳ ହୋଇଗଲେ ଅସମ୍ଭାଳ ହୋଇଯିବ । ସମସ୍ତେ ନିଜ ଦେହକୁ ଜଗି, ଧର୍ମକୁ ମାନି ରହିଲେ ସିନା, ପୁଲିସ ମିଛରେ ପଇଁତରା ମାରି ଶାନ୍ତି ରକ୍ଷା କଲେ ବୋଲି ବାହାଦୁରୀ ନିଅନ୍ତି । ପାଞ୍ଚ ଲକ୍ଷ ଲୋକଙ୍କୁ ହଜାରେ ପୁଲିସ କରିବେ କ'ଣ ?"

ଦାଦା କହିଲେ, "ଆଜି କାଲି ତ ଟିକିକ କଥାରେ ପୁଲିସ ଗୁଳି ଫାଏର କରୁଛନ୍ତି, ଲୁହବୁହା ଗ୍ୟାସ ଛାଡ଼ିଦେଉଛନ୍ତି, ନ ପାରିବେ କାହିଁକି ?" ବାବୁଜୀ କହିଲେ, "ସେ ତ ସବୁଠାରୁ ବଡ଼ ବିପଦ । ଲୋକେ ଉତ୍ତେଜିତ ନ ହୋଇ ଯଦି ଆତଙ୍କିତ ହୋଇଯାନ୍ତି ତେବେ ତ ଭିଡ଼ ଚକଟି ହୋଇ କେତେ ଲୋକ ମରିଯିବେ ।"

ଏଭଳି ଆଲୋଚନା କରୁକରୁ ଆମେ ସମସ୍ତେ ଆମ ପାଇଁ ପ୍ରସ୍ତୁତ ହୋଇଥିବା କୁଡ଼ିଆ ଆଡ଼କୁ ଗଲୁ । କୁଡ଼ିଆ ଭିତରେ ମଶିଣା ଦ'ଚାରିଖଣ୍ଡ ପଡ଼ିଥାଏ । ଗୋଟିଏ କୋଣରେ ପିଇବା ପାଣି ମାଠିଆ ଓ ଗୋଟିଏ ମାଟି ଗ୍ଲାସ ରଖାହୋଇଥାଏ । ଆମେ ସେ କୁଡ଼ିଆରେ ପଶନ୍ତେ ଜଣେ ନାଗା ସନ୍ନ୍ୟାସୀ ଆସି ବାବୁଜୀଙ୍କୁ କହିଲେ, "ଆଉ ଯଦି ଆପଣଙ୍କର କଣ ଦରକାର ମୋତେ କହିବେ । ଆପଣମାନଙ୍କର ହେପାଜତ ବୁଝିବାକୁ ମହନ୍ତ ମହାରାଜ ମୋତେ ନିଯୁକ୍ତ କରିଛନ୍ତି ।" ବାବୁଜୀଙ୍କ ମନରୁ ମଧ୍ୟ ଚିନ୍ତା ଦୂର ହେଲା ପରି ମୋତେ ଲାଗିଲା । ସେ ଦାଦାଙ୍କୁ କହିଲେ, "ବଡ଼େ ମହାରାଜଙ୍କୁ ମହନ୍ତ ଖୁବ୍ ଖାତିର କରନ୍ତି । ମୁଁ ତାଙ୍କ ନାମ କହିବା ମାତ୍ରେ ସେ ଆମର ସବୁ ସୁବିଧା କରିଦେଇଛନ୍ତି ।" ନାଗାମାନଙ୍କର ନେତା ଆମର ରକ୍ଷକ ଥିବା ସ୍ଥଳେ ଆଉ ଚିନ୍ତା କ'ଣ ? ଆମେ ସମସ୍ତେ ଖୁବ୍ ହାଲିଆ ହୋଇଥିଲୁଁ । କୁଡ଼ିଆ ଭିତରେ

ପଶିବା ମାତ୍ରେ ଚଟେଇ ପାରି ଶୋଇପଡ଼ିଲୁଁ । ବାବୁଜୀ କୁଡ଼ିଆରେ ଖଣ୍ଡେ ଚଟେଇ ପକାଇ ବିଶ୍ରାମ ନେଲେ ।

ରାତଟି କେମିତି କଟିଗଲା କେହି ଜାଣିପାରିଲୁ ନାହିଁ । ଭୋରରୁ ଉଠି ଗଙ୍ଗା ତୀରରେ ପ୍ରାୟ ଦୁଇ ମାଇଲ ଚାଲିକି ଯାଇ ଗାଧୁଆ ପାଧୁଆ ସାରି ଫେରିଲୁଁ । ଜଳଖିଆ କରି ମେଳା ପଡ଼ିଆରେ ବୁଲି ବୁଲି ବିଭିନ୍ନ ପ୍ରାନ୍ତରୁ ଆସିଥିବା ସାଧୁ ସନ୍ନ୍ୟାସୀମାନଙ୍କର ଦର୍ଶନ କରିବାରେ ଲାଗିଲୁଁ । ସମଗ୍ର ଭାରତର ଲୋକେ ଏଠାରେ ଜମା ହେଲାପରି ଲାଗୁଥାଏ । କାଲିଠାରୁ ଆଜି ବେଶୀ ଲୋକ । ବାବୁଜୀ କହିଲେ, "ଆଜି ସଂଧ୍ୟାକୁ ଆହୁରି ବେଶି ଲୋକ ହେବେ । ଭୋରରେ ବୁଡ଼ ପାରି ସାରିଲା ପରେ କଣା ବକା ଲାଗିବ । ତା'ପରେ କ୍ରମେ କ୍ରମେ ଲୋକ ପତଳା ହେବେ ।" ହରେକ ରକମର ପସରା ମେଲା ହେଉଥାଏ । ହାତୀ, ଘୋଡ଼ା, ଗାଈ ଗୋରୁ, ବାସନବର୍ତ୍ତନ, ପନିପରିବା—ସବୁ ଭିନ୍ନ ଭିନ୍ନ ଜାଗାରେ ହାଟରେ ସଜଡ଼ା ହୋଇ ପଡ଼ି ରହିଥାନ୍ତି । ଯାତ୍ରୀମାନେ ବୁଲି ବୁଲି ସବୁ ଦେଖୁଥାନ୍ତି କିନ୍ତୁ କଣା ବକା ଆଦୌ ହେଉନଥାଏ । ଗହଳି ହୋଇଥାଏ ବିଭିନ୍ନ ସ୍ଥାନରେ ଆସ୍ଥାନ ଜମାଇ ଧର୍ମ ଚର୍ଚ୍ଚା କରୁଥିବା ସାଧୁ ସନ୍ନ୍ୟାସୀଙ୍କ ଗୁରପଟେ ଓ ଭଜନ କୀର୍ତ୍ତନ ଲାଗିଥିବା ସ୍ଥାନରେ । ତୁଳସୀ ରାମାୟଣ ଅର୍ଥ କରୁଥିବା ସାଧୁଙ୍କ ଆସରରେ ଆମେ ଓପରଓଲା ଯାଏଁ ବସିଗଲୁଁ । ସାଧୁ ପାରାୟଣ ବନ୍ଦ କରି ଉଠିବାରେ ଆମେ ଉଠିଲୁ ଆମ କୁଡ଼ିଆକୁ ଫିବାକୁ । ସେଠାରେ ଯାଇ ଦେଖିଲୁଁ, ଆମ କୁଡ଼ିଆ ପଛପଟେ ଅନେକ ଲୋକ ଆସି ଆସ୍ଥାନ ପକାଇଲେଣି । ଆଉ କେତୋଟି କୁଡ଼ିଆ ଗଢ଼ି ଉଠିଥାଏ । ଅଧିକାଂଶ ଲୋକ କିନ୍ତୁ ବସିଥାନ୍ତି, ଶୋଇଥାନ୍ତି ବାଲି ଉପରେ ।

ଆମେ କୁଡ଼ିଆରେ ବିଶ୍ରାମ କରୁଛୁ, ଦୁଇ ଚାରି ଜଣ ପୁଲିସବାଲା ଆସି ଗୋଡ଼ରୁ ଜୋତା ନ କାଢ଼ି ମହନ୍ତ ମହାରାଜ ଯେଉଁ କୁଡ଼ିଆରେ ଥିଲେ ତା' ମୁହଁରେ ଯାଇ ଠିଆ ହୋଇ ରୁକ୍ଷ ସ୍ୱରରେ ମହନ୍ତ ମହାରାଜଙ୍କୁ ଡାକିଲେ । ମହନ୍ତ ବାହାରକୁ ନ ଆସି ଭିତରୁ ନିର୍ଦ୍ଦେଶ ଦେଲେ, "ଏମାନଙ୍କୁ ହଟାଅ ।" ସାଙ୍ଗେ ସାଙ୍ଗେ ଆଠ ଦଶଜଣ ପଞ୍ଚହତା ନାଗା ଆସି ପୁଲିସବାଲାଙ୍କୁ ବାହାରିଯିବାକୁ ହୁକୁମ ଦେଲେ, କହିଲେ, "ଯଦି ମହନ୍ତ ମହାରାଜଙ୍କ ସଙ୍ଗେ କଥାବାର୍ତ୍ତା କରିବାକୁ ଆସିଛନ୍ତି ତେବେ ଗୋଡ଼ରୁ ଯୋତା ଓ କାନ୍ଧରୁ ଚମଡ଼ା ପଟି କାଢ଼ି ଆସନ୍ତୁ । ନ ହେଲେ ହତା ବାହାରକୁ ଯାଇ କ'ଣ କହିବାକୁ ଆସିଛନ୍ତି କହନ୍ତୁ ।" କ'ଣ ଗୋଟାଏ ଗଣ୍ଡଗୋଳ ହୋଇଯିବ ହୋଇଯିବ ବୋଲି ଆମେ, ଓ ପାଖ ଆଖରେ ଥିବା ସମସ୍ତେ ଆତଙ୍କିତ ହୋଇ ରହି ରହିଲୁଁ । ଯାହା ହେଉ, କିଛି ହେଲା ନାହିଁ, ପୁଲିସବାଲା ମାନେ ମାନେ ଅପସରିଗଲେ । ମନରୁ ଆଶଂକା ଛାଡ଼ି ଆମେ ଆରାମରେ ଶୋଇଲୁଁ ।

ଭୋର ଚାରିଟା ବେଳକୁ ବୁଡ଼ ବେଳ । ରାତି ଥିବାରେ ଥାଇ ସମସ୍ତେ ଉଠି ପଡ଼ି କାଲି ଯୁଆଡ଼େ ଯାଇଥିଲୁ ସେଠାରେ ଯାଇ ନିତ୍ୟକର୍ମ ସାରି ସମସ୍ତେ ଯେଉଁ ତଡ଼ଫରେ ବୁଡ଼ ପାରୁଥିଲେ ସେଠାରେ ବୁଡ଼ ପକାଇଲୁଁ । କୁଡ଼ିଆକୁ ଫେରିଲା ବେଳକୁ ସୂର୍ଯ୍ୟ ବାହାରୁଥାନ୍ତି । ଆମ କୁଡ଼ିଆ ଆଗରେ ପୁଲିସଙ୍କର ବିରାଟ ସକ୍ଷା ! ମଝିରେ ପାଞ୍ଚହାତ ଜାଗା ଛାଡ଼ି ଲମ୍ବହୋଇ

ଦୁଇଧାଡ଼ିରେ କେତେ ନା କେତେ ପୁଲିସ ଠିଆ ହୋଇଛନ୍ତି । ସମସ୍ତଙ୍କ କାନ୍ଧରେ ବନ୍ଧୁକ ; ସଙ୍ଗୀନ୍ ସୂର୍ଯ୍ୟକିରଣରେ ସୁନାପରି ଦିଶୁଥାଏ । ପୁଲିସଙ୍କ ଧାଡ଼ି ମଝିରେ ଘୋଡ଼ା ଚଢ଼ି ଦୁଇ ଜଣ ଅଫିସର ଯିବା ଆସିବା କରୁଥାନ୍ତି ; ପୁଲିସଙ୍କ ଧାଡ଼ିଠାରୁ ଦୂରରେ ରହିବାକୁ ଲୋକଙ୍କୁ ସତର୍କ କରୁଥାନ୍ତି । ବାବୁଜୀ ପରସ୍ପରରେ ଶୁଣିଲେ, ପ୍ରଧାନମନ୍ତ୍ରୀ ସାତଟା ବେଳେ ଆସିବେ ବୋଲି ହୁକୁମ ଦେଇଛନ୍ତି । ତାଙ୍କର ପାଇଁ ଏ ଆୟୋଜନ ।

ନାଗାମାନଙ୍କ ଗୁଡ଼ଣୀର ଠିକ୍ ସାମନାରେ ପୁଲିସଙ୍କ ଧାଡ଼ି । ତା'ଭିତରୁ ବାହାରି-ବାର ବାଟ ନ ଥାଏ । ଜଣେ ନାଗା ମହନ୍ତଙ୍କ କୁଡ଼ିଆ ସାମନାରୁ ଆସି ପୁଲିସ ଲାଇନ ଭିତରେ ପଶି ବାହାରକୁ ଆସିଲା ବେଳକୁ ଘୋଡ଼ାରେ ଚଢ଼ିଥିବା ପୁଲିସ ସାହେବ ତାଙ୍କ ଉପରେ କୋରଡ଼ାରେ ଧାଡ଼ାରେ ଦେଇ କହିଲେ, "ହଟିଯାଅ, ସାଢ଼େ ସାତ ପର୍ଯ୍ୟନ୍ତ ଏ ବାଟରେ କେହି ଆସି ପାରିବେ ନାହିଁ ।" ନାଗା ଜଣକେ କିଛି ନ କହି ମହନ୍ତଙ୍କ କୁଡ଼ିଆ ଭିତରକୁ ପଶିଗଲେ । ଆଉ ଦ' ଗୃରିଜଣ ଡକା ହୋଇ ସେଇ କୁଡ଼ିଆକୁ ଗଲେ । ପାଞ୍ଚ ମିନଟ୍ ପରେ ବମ୍ଭୋଲା ବୋଲି ଗୋଟାଏ ରଡ଼ି ଶୁଭିଲା । ଶହ ଶହେ କଣ୍ଠରୁ ଧାଳି ଧରି ବାହାରିଲା ସେଇ ନାଦ 'ବମ୍ଭୋଲା' । କୁଡ଼ିଆ ମୁହଁକୁ ବାହାରିପଡ଼ିଲେ ମହନ୍ତ ମହାରାଜ । ଏପର୍ଯ୍ୟନ୍ତ ତାଙ୍କୁ ଦେଖିନଥିଲି । ବାପରେ, କି ଚେହେରା ! ଅନ୍ୟ ସବୁ ନାଗାଙ୍କଠାରୁ ସ୍ୱେ ଗୃରି ଛ' ଆଙ୍ଗୁଳି ଉଚ୍ଚ, ଦେହ ବଳ ଦେଲାପରି, ମୁହଁରେ ସିଂହର ଠାଣି । କପାଳରେ ଓ କଣ୍ଠରେ ସିନ୍ଦୂର ବୋଳା ହୋଇଥାଏ, ଆଖି ସିନ୍ଦୂର ପରି ଲାଲ । ତାଙ୍କ ପାଖରେ ଥିବା ପରିଗୃରକ ଗୋଟାଏ ଚୁଙ୍ଗାରେ ମୁହଁ ଦେଇ ଘୋଷଣା କଲେ, "କୁମ୍ଭମେଳାରେ ସରକାର ଅବୈଧ ଆରମ୍ଭ କରିଛନ୍ତି । ସାଧୁ ସନ୍ନ୍ୟାସୀଙ୍କୁ ମାଡ଼ ହୋଇଛି । ନାଗାମାନେ ଆଉ ଏ ସ୍ଥାନରେ ରହିବେ ନାହିଁ । ସମସ୍ତେ ଆଡ଼େଇ ହୁଅ । ମହାରାଜ ମେଳା ପଡ଼ିଆର ପଶ୍ଚିମ ତରଫରେ ଯାଇ ଆସ୍ଥାନ ଜମାଇବେ ।" ଏହା କହି ସେ 'ବଂ ବଂ ଭୋଲା' ବୋଲି ତିନିଥର ରଡ଼ି କଲେ ।

ମହନ୍ତ ମହାରାଜ ଆଗକୁ ପାଦ ବଢ଼ାଇବା ମାତ୍ରେ ନାଗା ସନ୍ନ୍ୟାସୀ ସମସ୍ତେ ଆଗେଇଲେ । ସମସ୍ତଙ୍କ ହାତରେ ଗୋଟାଏ ଗୋଟାଏ ମସ୍ତବଡ଼ ଚିମୁଟା । ସେମାନଙ୍କ ପଛେ ପଛେ ତାଙ୍କ ଦଳର ହାତୀ ଓ ଘୋଡ଼ା ମଧ୍ୟ ପଲଟଣରେ ବାହାରିଲେ ନାଗାମାନଙ୍କ ଆଖି ଆଗକୁ । ଏପାଖ ସେପାଖକୁ କାହାରି ଦୃଷ୍ଟି ନ ଥାଏ । ମୁହଁରେ ରାଗ, ଆନନ୍ଦ ବା ଘୃଣା କିଛି ଜଣାପଡ଼ୁନଥାଏ । ସେମାନଙ୍କ ଆଗରୁ ପୁଲିସବାଲା ଛତ୍ରଭଙ୍ଗ ଦେଲା ପରି ଆଡ଼େଇ ହୋଇଗଲେ ଏବଂ ଲଠି ଓ ବନ୍ଧୁକ କୁନ୍ଦାରେ ଲୋକଙ୍କୁ ପଛକୁ ଠେଲିବାକୁ ଲାଗିଲେ ।

ନାଗା ଦଳର ଶେଷ ଓଟ 'ଆମ ଆଗରେ ଆଗେଇଯିବା ପରେ ହଠାତ୍ 'ହୋ' କରି ଗୋଟାଏ ଶବ୍ଦ ପଛରୁ ଶୁଭିଗଲା । ଅନୁଭବ କଲି ମୋ ଉପରେ ମୁଡ଼ାଏ ଲୋକ କୁଦି ଚାଳିଟି ପକାଉଛନ୍ତି ଓ ମୋତେ ଜଣେ କିଏ ଟେକିନେଇ କୁଆଡ଼େ ଧାଇଁଯାଉଛି ।

ମୋର ଯେତେବେଳେ ହୋସ୍ ଆସିଲା ସେତେବେଳକୁ ସନ୍ଧ୍ୟା ମାଡ଼ିଆସୁଥାଏ । ଚାରିଆଡ଼େ ଆଖି ବୁଲାଇ ଚାହିଁ ଆଶ୍ଚର୍ଯ୍ୟ ହେଲି । ମୁଁ ଡାକ୍ତରଖାନାର ଗୋଟାଏ ଖଟିଆରେ ପଡ଼ିଥାଏ । ଚାରି ପାଖେ ଖଟିଆମାନଙ୍କରେ ଧାଡ଼ି ଧାଡ଼ି ରୋଗୀ ପଡ଼ିଥାନ୍ତି । ସମସ୍ତେ ସ୍ତ୍ରୀ ଲୋକ । ମୁଁ କେଉଁ ରୋଗରେ ପଡ଼ି ଏଠାରେ ଆସି ପହଞ୍ଚିଛି ଜାଣିପାରୁନଥାଏ । କୁମ୍ଭ-ମେଳାର ଗୋଳମାଳ କଥା ମୋର ଝାପ୍‌ସା ଭାବେ ମନେ ପଡ଼ୁଥାଏ । ଚହ୍ଲା ଲୋକ ଜଣେ ଦେଖିଲେ ମୁଁ କଥାବାର୍ତ୍ତା ହେବ ବୋଲି ଆଖି ବୁଲାଉଥାଏ ।

ଟିକକ ପରେ ଜଣେ ନର୍ସ ଆସି ମୋ ପାଖରେ ଠିଆ ହେଲେ । ଆନନ୍ଦରେ ତାଙ୍କ ମୁହଁ ଫାଟି ପଡ଼ୁଥାଏ । ଦୂରରୁ ତାଙ୍କୁ ଦେଖି ବିଚାରିଥିଲି, ସେ ମୋର ଚହ୍ଲା ଲୋକ, ଦିଲ୍ଲୀ ଡାକ୍ତରଖାନାରୁ ଏଠାକୁ ବଦଳି ହୋଇ ଆସିଛନ୍ତି । ପାଖରୁ ଚାହିଁବାରେ ଜାଣିଲି, ସେ ସେ ନୁହନ୍ତି । ପୋଷାକ ସମାନ ଥିବାରୁ ଏକା ଲୋକ ବୋଲି ଜଣାପଡ଼ୁଥିଲା । ସେ ମୋ ମୁଣ୍ଡରେ ହାତ ବୁଲାଇ କହିଲେ, "ଝିଅ ! ତୁ ଆଜି ଆଖି ମେଲାଇ ଚାହିଁବାରୁ ଆମ ସମସ୍ତଙ୍କର ଗୋଟାଏ ବଡ଼ ଚିନ୍ତା ଗଲା । ଡାକ୍ତର ବାବୁ ତ ୪ ଦିନ ହେଲା କହୁଛନ୍ତି, ଖୁବ୍ ଶୀଘ୍ର ତୋର ଚେତା ଫେରିବ । ତୋ ବାବୁଜୀ ତ ଏଇ ଅଧଘଣ୍ଟା ପୂର୍ବେ ଡାକ୍ତରଙ୍କୁ କହୁ-ଥିଲେ, ଆଉ କିଛି ଔଷଧ ଦେବାକୁ । ଡାକ୍ତର ବାବୁ କହିଲେ, 'ଔଷଧ ଆଉ ଦରକାର ନାହିଁ । ମସ୍ତିଷ୍କରେ କୌଣସି ଚୋଟ ଲାଗି ନାହିଁ । ଭୟାବହ ଘଟଣା ଦେଖି ମସ୍ତିଷ୍କ ଚହଲି ଯାଇଥିଲା । ବିଶ୍ରାମ ପାଇଲେ ତା' ମନକୁ ମସ୍ତିଷ୍କର ଯନ୍ତ୍ର ସଜାଡ଼ି ହୋଇଯିବ ।' ସେଇଆ ତ ହେଲା । ପ୍ରଭୁ ଯୀଶୁଙ୍କ ଇଚ୍ଛା ପୂର୍ଣ୍ଣ ହେଉ ।"

ବାବୁଜୀ ମୋ ପାଖରେ ଅଛନ୍ତି । ତାଙ୍କର କିଛି ହୋଇନାହିଁ, ସେ ଭଲ ଅଛନ୍ତି ; ମୋର ହେପାଜତ ବୁଝୁଛନ୍ତି ଶୁଣି ମନ ଭାରି ଆନନ୍ଦ ହେଲା । କିନ୍ତୁ ନର୍ସଙ୍କୁ କିଛି ପଚାରିଲି ନାହିଁ । ସେ ନୂଆ ଲୋକ, କେଜାଣି କ'ଣ ବିଚାରିବେ ? ସେ ମୁରୁକି ମୁରୁକି ମୋ ଆଡ଼କୁ ଚାହିଁ କହିଲେ, "ତୋ ବାବୁଜୀ ବର୍ତ୍ତମାନ ଆସି ପହଞ୍ଚିବେ । ବିଚରା ଖାଇବା ଶୋଇବା ପାସୋରି ତୋ'ରି ପାଖରେ ବସିଛନ୍ତି । ଆଜି ତୁ ଆଖି ଖୋଲିବୁ ବୋଲି ଡାକ୍ତରବାବୁ ସକାଳେ ତୋର ଦେହ ପରୀକ୍ଷା କରି କହିଥିବାରୁ ଏତେବେଳଯାଏ ନ ଖାଇ ନ ପିଇ ଚାହିଁକରି ବସିଥିଲେ । ଚାହିଁବେ ନାହିଁ ? ଏଭଳି ମାଇପିଟିଏ ଯାହାକୁ ମିଳିଛି ତା' ମନ କ'ଣ ହେଉଥିବ ସେ ଜାଣେ । ମୋତେ କହିକରି ଗଲେ, ମୁଁ ନ ଥିବା ବେଳେ ଯଦି ଆଖି ଖୋଲିବ, କହିବେ 'ବାବୁଜୀ' ଏଇଲାଗେ ଆସିବେ । ତୁ ତାଙ୍କୁ ବାବୁଜୀ ବୋଲି ଡାକୁ, ନାଇଁ ? ତମ ହିନ୍ଦୁମାନେ ପରା ଗେରସ୍ତ ନାଁ ଧରନ୍ତି ନାଇଁ !"

ଏ ଗପୁଡ଼ି ମଣିଷକୁ କିଛି ଉତ୍ତର ଦେବାକୁ ମନ ହେଲା ନାଇଁ ; ହାଲିଆ ବି ଲାଗୁଥାଏ । ନର୍ସ ପଚାରିଲେ, ଭୋକ ହେଉଛି ? ମୁଁ ମୁଣ୍ଡ ହଲାଇଦେଲି । ସେ କହିଲେ,

ଡାକ୍ତରବାବୁ କହୁଛନ୍ତି ପେଟ ଯେତେ ଖାଲି ରହିବ ସେତେ ଭଲ । ଖାଇବାକୁ ଖୋଜିଲେ ଦେବ । ବର୍ତ୍ତମାନ ଝିଅ, ତୋର ପୁଣି ଶୋଇବା ଦରକାର ବୋଲି ସେ କହୁଛନ୍ତି । ନ ଶୋଇ [illegible] ଗୁଡ଼ାଏ ଭାବୁଥିଲେ, ମୁଣ୍ଡ ପୁଣି ବିଗିଡ଼ିଯିବ । ସାଙ୍ଗେ ସାଙ୍ଗେ ସେ ଗୋଟିଏ ଷ୍ଟିଲ ଗ୍ଲାସରେ ନାଲି ପାଣି ଟିକିଏ ଦେଲେ । ପାଞ୍ଚ ମିନିଟ ଭିତରେ ନିଦ ଘୋଟି ଆସିଲା । ବାବୁଜୀ ଆସି ମୋ ପାଖେ ବସିଲେ ଜାଣିଲି, କିନ୍ତୁ କିଛି କହିବା ପୂର୍ବରୁ ମୁଁ ପୁଣି ଶୋଇଗଲି ।

ନିଦ ଭାଙ୍ଗିଲା ବେଳକୁ ବୋଧହୁଏ ରାତି ଥାଏ । ଇଲେକ୍ଟ୍ରିକ୍ ଆଲୁଅ ଯୋଗୁଁ ଅନ୍ଧାର ନ ଥାଏ କିନ୍ତୁ ସବୁ ଆଡ଼ ନିଃଶବ୍ଦ ଜଣାପଡ଼ିବାରୁ ରାତି ବୋଲି ଜାଣିଲି । ମୋ ଖଟିଆ ପାଖରେ ଗୋଟିଏ ଷ୍ଟୁଲ୍ ଉପରେ ବାବୁଜୀ ମୋ ଆଡ଼କୁ ଚାହିଁ ବସିଥାନ୍ତି । ମୁଁ ତାଙ୍କ ଆଡ଼କୁ ଚାହିଁ ପଚାରିଲି, ଦାଦା, ଭାବି ଏଇଠାରେ ଅଛନ୍ତି ? ବାବୁଜୀ ଅନ୍ୟମନସ୍କ ଭାବେ ହୁଁ ବୋଲି କହିଲେ, ତା' ପରେ ପଚାରିଲେ, "ତୁମର କିଛି ଖାଇବାକୁ ମନ ହେଉଛି ? ନର୍ସ କହୁଛି, ଭୋକ ହେଲେ ଟିକିଏ କମଳାରସ ପିଇ ପୁଣି ନିଦ ଔଷଧ ଖାଇବ । ପୂରା ୨୪ ଘଣ୍ଟା ଶୋଇରହିବା ଦରକାର । ତା'ପରେ ସବୁ ଠିକ ହୋଇଯିବ ।" ମୁଁ ପଚାରିଲି, ମୋର ହୋଇଛି କ'ଣ ? ସେ ବିରକ୍ତ ହେଲା ପରି କହିଲେ, "କିଛି ନ ହୋଇଥିଲେ ଏଠି ଆଣନ୍ତି କାହିଁକି ? ଆଗ ଭୋକ ହେଉଛି ନା ନାହିଁ କହ ।" ତାଙ୍କ ବିରକ୍ତି ଦେଖି ମୋତେ ହସ ମାଡ଼ିଲା । ଆଜିଯାଏ ସେ କାହା ଉପରେ ବିରକ୍ତ ହେବାର ଦେଖିନଥିଲି । ହସକୁ ଚାପି-ରଖି ଭୋକ ହେଉଛି ବୋଲି ମୁଣ୍ଡ ହଲାଇଲି । ମୋର ଖଟିଆ ପାଖ ଷ୍ଟିଲ ଆଲମାରିରେ କମଳାରସ ରଖାହୋଇଥିଲା । ସେଥିରୁ ୨।୩ ଚାମଚ ଖାଇଲା ପରେ ଆଉ ମନ ହେଲା ନାହିଁ । ତା'ପରେ ସେ ମୋ ମୁହଁରେ ପାଣି କନା ମାରି ରଖାହୋଇଥିବା ନିଦ ଔଷଧ ଖୁଆଇଦେଲେ । ଆଖିକୁ ଅନ୍ୟ ଆଡ଼କୁ କରି ଟେର୍ଛେଇ ତାଙ୍କ ଆଡକୁ ଚାହୁଁ ଚାହୁଁ ନିଦ ହୋଇଗଲି ।

ତା' ପରେ ଯେତେବେଳେ ଉଠିଲି, ଆଉ ନିଦ ଔଷଧ ଖାଇବି ନାହିଁ ବୋଲି ଜିଦ୍ କଲି । ଡାକ୍ତରବାବୁ ଆସି ଟିକିଏ ଦେଖାଚାହିଁ କରି କହିଲେ, ଆଉ କୌଣସି ବିପଦର ଆଶଂକା ନାହିଁ । ଆପଣ ଇଚ୍ଛାକଲେ ୟାଙ୍କୁ ଆଜି ଏଠାରୁ ନେଇଯାଇପାରନ୍ତି । କିନ୍ତୁ ଆଉ ୨୪ ଘଣ୍ଟା ରହିଲେ ଭଲ । ଏଥର ଯାହା ଚାହିଁବେ, ଖାଇଲେ ଆପତ୍ତି ନାହିଁ । ଡାକ୍ତରବାବୁ ଯିବା ସାଙ୍ଗେ ସାଙ୍ଗେ ନର୍ସ୍ ଆସି ପହଞ୍ଚି ମୋ' ଖଟିଆର ଚାଦରକୁ ଟିକିଏ ସଜାଡ଼ିଦେଇ କହିଲେ, 'ଏଥର ବାବୁଜୀ ! ଆମର ବକ୍ସିସ୍ ଦେଇ ଆପଣ ଘରକୁ ଫେରନ୍ତୁ ।' ବାବୁଜୀ ଚିନ୍ତିତ ଭାବେ ହୁଁ ବୋଲି କହିଲେ ।

ତାଙ୍କର ଚିନ୍ତାକୁଳ ମୁହଁ ଦେଖି ମୁଁ ଚିନ୍ତିତ ହୋଇପଡ଼ିଲି । ୟାଙ୍କ ଭଳି ନିଶ୍ଚିନ୍ତମନା ଲୋକଙ୍କର ପୁଣି ଚିନ୍ତା କୋଉଥିକି ? ମୋର ପାଇଁ ନିଶ୍ଚୟ ବୋଲି ଭାବି କେଜାଣି କେମିତି ଗୋଟାଏ ଆନନ୍ଦ ଲାଗିଲା । ସଙ୍ଗେ ସଙ୍ଗେ କିନ୍ତୁ ସେ ଆନନ୍ଦ ଆଡ଼େଇ

ହୋଇଗଲା, ବାବା, ଭାଇ, ବଡ଼ ବାବା ଓ ବୁଢ଼ୀମା'ଙ୍କୁ ମନେ ପକାଇ । ଏମାନେ ଗଲେ କୁଆଡ଼େ ? ଭଲ ହେଲଣି ଯେତେବେଳେ, ଏମାନଙ୍କ ପାଖକୁ ଯିବାରେ ଆଉ ବିଳମ୍ବ କରିବାର ନୁହେଁ । ବାବୁଜୀଙ୍କୁ ପଚାରିବାକୁ ତାଙ୍କ ମୁହଁକୁ ଚାହିଁଲି, କିନ୍ତୁ ତାଙ୍କର ଚିନ୍ତିତ ମୁହଁକୁ ଦେଖି ଆଖି ଫେରାଇନେଲି । ସ୍ବାଙ୍କର ମନ ଠିକ୍ ହେଉ, ଯଦି ତାଙ୍କ ଆଡ଼ୁ ମୋତେ କିଛି ନ କହିବେ, ତେବେ ପଚାରିବି ।

ପରେ ଜାଣିଲି ସବୁ କଥା ମୋତେ କେମିତି କହିବେ ସେଇଥିପାଇଁ ସେ ଚିନ୍ତିତ ଥିଲେ । ମୁଁ ସକାଳ ଓଳିର ଖିଆ ସାରି ଟିକିଏ ବିଶ୍ରାମ କଲି ପରେ ସେ ମୋତେ କହିଲେ, "ତାରା ଦେବୀ ! କାଲି ସକାଳୁ ଆମକୁ ଏ ଡାକ୍ତରଖାନା ଛାଡ଼ିବାକୁ ପଡ଼ିବ ।" ମୁଁ ଟିକିଏ ଉଷତ ହେବା ସ୍ୱାଭାବିକ, ପଚାରିଲି, "ବୁଢ଼ୀ ମା'ଙ୍କ ବସାରେ ଦିନେ ଖଣ୍ଡେ ରହି ହରିଦ୍ୱାର ଫେରିଗଲେ ଭଲ ହୁଅନ୍ତା ପରା ?" ସେ ହୁଁ କହି ଟିକିଏ ଚୁପ୍ ରହିଲେ । ତା'ପରେ କହିଲେ, "ତୁମକୁ ଦେଖିବା ନିମନ୍ତେ ବଡ଼େ ମହାରାଜ ଏଠାକୁ ଆସିଥିଲେ ; ଫେରିଲା ବେଳେ ସେ ବୁଢ଼ୀମା'ଙ୍କୁ ଆଶ୍ରମକୁ ନେଇଯାଇଛନ୍ତି, ତାଙ୍କ ଘରଟି ଇତିମଧ୍ୟରେ ତାଙ୍କର ବଡ଼ ପୁଅ ଗୋଟିଏ ସରକାରୀ ଅଫିସ୍‌କୁ ଭଡ଼ା ଲଗାଇଦେଲେଣି ।"

ଆପଣା ଛାଏଁ ଗୋଟାଏ ଦୀର୍ଘନିଃଶ୍ୱାସ ବାହାରିପଡ଼ିଲା । ପ୍ରତାପବାବୁଙ୍କ ଫଟୋଟି ଯେଉଁ ଘରେ ସଜାଇ କରି ରଖିଥିଲି ସେଠାକୁ ଯିବାକୁ ସକାଳୁ ମନ ହୋଇଥିଲା । ସେ ବାଟ ବନ୍ଦ । ମୋର ମନର ଆଶା ସବୁ ମୂଳରୁ ମରିଯାଉଥିବାରୁ ନିଃଶ୍ୱାସ ପକାଇଥିଲି । କିନ୍ତୁ ପଛରେ ଯାହା ଶୁଣିବାକୁ ଥିଲା, ତାହା ଜାଣିଥିଲେ ବୁଢ଼ୀମା'ଙ୍କ ଘରକୁ ଯାଇନ-ପାରିବାଟା ସେତେ ବଡ଼ ଲାଗିନଥାନ୍ତା ।

ମୋର ଦୀର୍ଘ ନିଃଶ୍ୱାସ ବାବୁଜୀ ତ ଶୁଣିଥିବେ ନିଶ୍ଚୟ । କିନ୍ତୁ ପ୍ରତାପବାବୁ ବା ତାଙ୍କ ମା'ଙ୍କ ସଙ୍ଗେ ମୋର ସଂପର୍କ କଥା ତାଙ୍କୁ ଜଣାଥିଲା ବୋଲି ମୁଁ ମନେକରୁନଥିଲି । ତେଣୁ ତାଙ୍କ ମନରେ ସ୍ଥାୟୀ ବିରସ ଭାବ ଦେଖି ମୋତେ କେମିତି କେମିତି ଲାଗୁଥାଏ । ମୋ'ର ବ୍ୟବହାରରେ ତାଙ୍କ ମନରେ କୌଣସି ଆଘାତ ହୋଇନାହିଁ ତ ? ମୋ' ପାଇଁ ସେ ଏତେ ଦିନ ଏଠାରେ ପଡ଼ିଆ ହୋଇ ବସି ରହିବାରୁ ଅଶାନ୍ତି ଅନୁଭବ କରୁନାହାନ୍ତି ତ ? ଏହିପରି ଗୁଡ଼ାଏ ବିଚାରି ମୁଁ ସଂକୋଚ ଛାଡ଼ି ତାଙ୍କୁ ପଚାରିଲି, "ବାବୁଜୀ ! ମୋ'ର ଚେତା ଆସିଲା ବେଳୁଁ ଆପଣଙ୍କ ମୁହଁରେ ବିରସଭାବ ଦେଖୁଛି । ସେଥିପାଇଁ ମୋତେ ଭାରି ଖରାପ ଲାଗୁଛି ।"

ବାବୁଜୀ ଈଷତ୍ ହସିଲେ ; କହିଲେ, "ତାରା ଦେବୀ ! ସଂସାରର ଦୁଃଖ ସୁଖରେ ବିଚଳିତ ନ ହେବା ପାଇଁ ମୋର ଗୁରୁଦେବ ମୋତେ ବହୁ ଉପଦେଶ ଦେଇଛନ୍ତି । ମୋର ବିଶ୍ୱାସ, ମୁଁ ମୋ ପାଇଁ ଚିନ୍ତିତ ହେବା ଛାଡ଼ିଛି । ମୁଁ ବୁଝିଛି, ସଂସାରରେ ଯାହା ଘଟୁଛି, ଏପରିକି ଆମ ଜୀବନରେ ଯାହା ଘଟୁଛି, ତାକୁ ଏପଟ ସେପଟ କରିବାର କ୍ଷମତା ଆମର ନାହିଁ । ଗୋଟାଏ ବଡ଼ ଶକ୍ତିର କ୍ରୀଡ଼ାପୁତ୍ତଳିକା ହୋଇ ଆମେ ନାଚୁଥାଉଁ । ତୁମର

ସେଇ ଖବର ଆସିଲଣି କି ନାହିଁ ସନ୍ଦେହ ହେବାରୁ ମୁଁ ଚିନ୍ତିତ ।···ମୁଁ ତୁମ ଜୀବନର ଇତିହାସ ଅଳ୍ପ ବହୁତେ ଜାଣେ । ତୁମେ ସେଇ ସବୁ ମନେ ପକେଇ ଜାଣିଥିବ, ତୁମେ ଯେ ଆଜି ପର୍ଯ୍ୟନ୍ତ ବଞ୍ଚିରହିଛ ସେଥିରେ ତୁମ ନିଜର କର୍ତ୍ତୃତ୍ୱ ନ ଥିଲା । ସେହି ଉପରବାଲାର ଅନୁଗ୍ରହ ବା ନିଗ୍ରହରେ ତୁମର ଭଲ ମନ୍ଦ ଯାହା ହୋଇଛି । ତୁମେ ଏହା ଭଲ କରି ହୃଦୟଙ୍ଗମ କରିଛ ବୋଲି ଜାଣିଲେ ମୋର ଦୁଶ୍ଚିନ୍ତା ଦୂର ହୁଅନ୍ତା ।''

ମୁଁ ତୂନୀ ରହି ତାଙ୍କ ଆଡ଼କୁ ଚାହିଁ ରହିଲି, କିନ୍ତୁ ମନେ ମନେ ମୋର ପିତାମାତାଙ୍କ ମରଣ ଦିନଠୁଁ ଆଜି ପର୍ଯ୍ୟନ୍ତରେ—ନା, କୁମ୍ଭମେଳା ଦିନ ପର୍ଯ୍ୟନ୍ତର ସବୁ ଘଟଣା ସ୍ମରଣ କରିବାରେ ଲାଗିଲି । ସେ ଜିଜ୍ଞାସୁ ହୋଇ ମୋ' ଆଡ଼କୁ ଚାହିଁ ରହିଲେ । ମୁଁ କିଛି ନ କହିବାରୁ ସେ ପୁଣି କହିବାକୁ ଲାଗିଲେ, ''ତୁମେ ଚେତା ପାଇବା ବେଳୁଁ ଖାଲି ସେତିକି ବିଚାରୁଛି—ତୁମକୁ ଭଗବାନ୍ ଏ ପର୍ଯ୍ୟନ୍ତ ଯେତେ ଦୁଃଖ କଷ୍ଟ ଓ ବିପଦ ଆପଦରେ ତାଲିମ୍ ଦେଲେଣି ତାହାର ପୂର୍ଣ୍ଣ ଫଳ ତୁମଠାରେ ପ୍ରକାଶ ହୋଇଛି ନା ନାହିଁ । ପୁଣି ତୁମ ମସ୍ତିଷ୍କର ବର୍ତ୍ତମାନ ଯାହା ଅବସ୍ଥା ସେଥିରେ ତୁମ ପକ୍ଷେ ସବୁକଥା ସହିପାରିବା ସମ୍ଭବ ନା ନୁହେଁ ? ସେ ଦିନ ପୁଲିସଙ୍କର ଟିକିଏ ମୂର୍ଖାମି ବା ଅଧୀରତା ଯୋଗୁ ଯେଉଁ ଘଟଣା ଘଟିଗଲା ତା ଫଳରେ ହଜାର ହଜାର ବର୍ଷ ହେଲା ଏ ମେଳାରେ ପୁଲିସ କାମ କରି ଆସୁଥିବା ନାଗା ସନ୍ନ୍ୟାସୀମାନେ ଅସହଯୋଗ କରି ଆଡ଼େଇ ହୋଇଗଲେ । ଏତେ ଲୋକଙ୍କୁ ସମ୍ଭାଳିବା ପାଇଁ ପୁଲିସଙ୍କ ବଳ, କୌଶଳ ବା ଅଭିଜ୍ଞତା ନ ଥିଲା । ସେମାନଙ୍କ ଅଯୋଗ୍ୟତା ଯୋଗୁଁ ଗୁଣ୍ଡାମାନଙ୍କର ବଳ ବଢ଼ିଗଲା । କୁମ୍ଭମେଳାକୁ କୌଣସି ବର୍ଷ ଏତେ ଦୁର୍ବୃତ୍ତ ଆସିନଥିଲେ ବୋଲି ସମସ୍ତେ କହୁଛନ୍ତି । ଲୋକଙ୍କ ଭିତରେ ଆତଙ୍କ ଉପସ୍ଥିତ ହେବାମାତ୍ରେ ସେମାନେ ଅବଳାମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ କରିଦେଲେ । ଏ ଡାକ୍ତରଖାନାରେ ଅନ୍ତତଃ ଶହେ ମହିଳା ବର୍ତ୍ତମାନ ଚିକିତ୍ସିତ ହେଉଛନ୍ତି । ଆମେ ଯେଉଁଠାରେ ଠିଆହୋଇଥିଲେ ଆଖି ପିଛୁଳାକେ ୫।୭ ଛତରା ଟୋକା ଆସି ଜୁଟିଗଲେ ଓ ମୁଁ ଦିଦିଙ୍କୁ ଉଠାଇ ନିରାପଦ ସ୍ଥାନରେ ବସାଇବାକୁ ବ୍ୟସ୍ତ ଥାଇ ପଛକୁ ଚାହିଁଦେବାବେଳକୁ ଦେଖିଲି ସେମାନଙ୍କ ଭିତରୁ ୪।୫ ଜଣ ତୁମକୁ ଟେକି ନେଇଯାଉଛନ୍ତି । ମୁଁ ଦିଦି ପ୍ରଭୃତିଙ୍କୁ ଛାଡ଼ି ତୁମକୁ ରକ୍ଷା କରିବାକୁ ଧାଇଁଲି । ଛତରା ଟୋକାଗୁଡ଼ାକଙ୍କ ଦେହରେ ବଳ ନ ଥିଲା ବୋଲି ତୁମେ ରକ୍ଷା ପାଇଲ । ସେମାନେ ମୋ ସଙ୍ଗେ ଲଢ଼ିବାକୁ ଲାଗିଲେ, କିନ୍ତୁ ଅଳ୍ପ ସମୟ ଭିତରେ ଯେ ଯୁଆଡ଼େ ଛିନ୍ନଛିନ୍ନ ହୋଇ ପଳାଇଲେ । ତାଙ୍କ ଭିତରୁ କେତେଜଣ ଧରା ପଡ଼ିଛନ୍ତି କି ନାହିଁ ମୁଁ ଜାଣେ ନାହିଁ । ତୁମକୁ ହସ୍ତଗତ କଲାବେଳକୁ ତୁମେ ସଂଜ୍ଞାହୀନା ; ଡାକ୍ତର କହୁଛନ୍ତି, ସେମାନେ ତୁମ ଦେହରେ ହାତ ଦେବା ସଙ୍ଗେ ସଙ୍ଗେ ତୁମର ସମ୍ଭବତଃ ସଂଜ୍ଞା ଲୋପ ହୋଇଥିଲା ।''

ମୋର ମନେ ପଡ଼ିଲା, ସେଦିନ ମୋତେ ଦଳେ ଲୋକ କୁଦିଚକଟି ପକାଉଥାନ୍ତି ଓ ଜଣେ କିଏ ମୋତେ ଟେକି କୁଆଡ଼େ ନେଇଯାଉଥାନ୍ତି । ସେତିକିବେଳେ ମୁଁ ବେହୋସ

ହୋଇଥିଲି । ବାବୁଜୀ ମୋତେ ଟେକି ଆଣୁଥିବାର ମନେ ଥିଲା, ନା ଗୁଣ୍ଡାମାନେ ମୋତେ ଟେକି ନେବାବେଳେ ମନେ ଥିଲା, ଠିକ୍ କରି ଜାଣି ପାରୁନଥାଏ । ମୁଁ ତାଟକା ହୋଇ ବାବୁଜୀଙ୍କ ଆଡ଼କୁ ଚାହିଁ ରହିଲି ; ଭାବିଲି, ତାଙ୍କର କେତେ ସାହସ, କେତେ ବଳ ! ଛାର ମୋ ପାଇଁ ଏତେଗୁଡ଼ାଏ ଲୋକଙ୍କ ସଙ୍ଗେ ଲଢ଼ି ନିଜ ଜୀବନକୁ କାହିଁକି ବିପନ୍ନ କଲେ ? ମନ କୃତଜ୍ଞତା ନା ଆଉ କୋଉ ଭାବରେ ପୂରିଗଲା କହିପାରୁନାହିଁ । ସେ ଯାହା ହେଉ, ଏ ଭାବ ରହିଲା ମୁହୂର୍ତ୍ତେ ମାତ୍ର । ସାଙ୍ଗେ ସାଙ୍ଗେ ବିଚାରିଲି, ମୋତେ ରକ୍ଷା କରିବାକୁ ଯାଇ ଦାଦା, ଭାବୀ ପ୍ରଭୃତିଙ୍କୁ ବିପଦ ମୁହଁରେ ଛାଡ଼ିଦେଇ ଯିବା ତାଙ୍କର ଉଚିତ ହେଲା ନାହିଁ ପରା ! ସେମାନଙ୍କର ଅବସ୍ଥା କ'ଣ ହେଲା ?

ବାବୁଜୀ ମୋ' ମନର କଥା ଠଉରେଇ ନେଇ କହିଲେ, "ତାରା ! ସେ ବିଷୟ ମୁଁ ବହୁତ ଭାବିଛି । ଆଗ ନିଜକୁ ଦୋଷ ଦେଉଥିଲି । କିନ୍ତୁ ବଡ଼େ ମହାରାଜ ସବୁ ଶୁଣି କହିଲେ, ତୁମେ ଯାହା କରିଛ ଠିକ୍ କରିଛ । ତିନିଜଣ ସ୍ତ୍ରୀ ଲୋକଙ୍କୁ ମରଣ ମୁହଁକୁ ଠେଲି-ଦେଇ ମଧ୍ୟ ଜଣେ ସ୍ତ୍ରୀଲୋକର ଇଜ୍ଜତ ରକ୍ଷା କରିବା କର୍ତ୍ତବ୍ୟ । ସମସ୍ତେ ଦିନେ ନା ଦିନେ ମରିବେ । ବିଧବା ସ୍ତ୍ରୀ ଲୋକ ପକ୍ଷରେ ମୃତ୍ୟୁ ଅପେକ୍ଷା ଅଧିକ ଶ୍ରେୟସ୍କର କ'ଣ ହୋଇପାରେ, ପୁଣି କୁମ୍ଭ କ୍ଷେତ୍ରରେ !" ମୁଁ ଏକଥାରେ ସନ୍ତୁଷ୍ଟ ନ ହେବାର ଲକ୍ଷ୍ୟ କରି ସେ କହିଲେ, "ପୁଣି, ଯେତେବେଳେ ତୁମେ ଏ ଝୋଟୀକୁ ବିପଦରୁ ରକ୍ଷା କରିବାକୁ ଗଲି, ସେତେବେଳେ ତ ଜାଣିନଥିଲି ସେମାନଙ୍କର କ'ଣ ହେବ ବୋଲି । ଜଣେ ଲୋକ ଗୁଡ଼ାଏ ଦାୟିତ୍ୱ ମୁଣ୍ଡକୁ ନେଇ ବୃଥାକୁ ଆତ୍ମ ପୀଡ଼ା ସହିବା ନିରର୍ଥକ ।"

ମୁଁ ତଟସ୍ଥ ହୋଇଗଲି । ତେବେ ତ ଦାଦା ଓ ଭାବୀ ହେରିକା ଆଉ ନାହାନ୍ତି ? ନିଃଶ୍ୱାସ ପେଟ ଭିତରକୁ ଟାଣି ହୋଇଗଲା ପରି ଲାଗିଲା । ବାବୁଜୀ ଉଠି ପଡ଼ି ଆଉ ଗୋଟିଏ ଖଟିଆ ପାଖରେ ଠିଆ ହୋଇଥିବା ଡାକ୍ତରଙ୍କ ପାଖକୁ ଧାଇଁଗଲେ । ଡାକ୍ତର ଆସି ପହଞ୍ଚିଲା ବେଳକୁ ମୋ'ର ଦୁଇ ଆଖିରୁ ଅଜସ୍ର ଲୁହଧାର ଗଳୁଥାଏ । ନର୍ସ ମୋ ମୁହଁ ଗୋଟିଏ ଓଦା ତଉଲିଆରେ ପୋଛିପକାଇଲେ ; ଡାକ୍ତର ବାବୁ ଯେଉଁଠାରୁ ଆସିଥିଲେ ସେଠାକୁ ଯାଉ ଯାଉ ବାବୁଜୀଙ୍କୁ କହିଲେ, "ମୁଁ ତ ଆପଣଙ୍କୁ ଆଗରୁ କହି ରଖିଥିଲି, ଯଦି କାନ୍ଦି ନ ହୁଏ ତେବେ ବିପଦ । କାନ୍ଦିପକାଇଲେ ମନର ବେଦନା ଅନେକ ଲଘୁ ହୋଇଯାଏ ।"

ଡାକ୍ତର ଓ ନର୍ସ ଚାଲିଯିବା ପରେ ବାବୁଜୀ କହିଲେ, "ସମସ୍ତ ବୃତ୍ତାନ୍ତ ତୁମକୁ କିପରି କହିବି ସେ ବିଷୟରେ ଡାକ୍ତରଙ୍କୁ ଓ ବଡ଼େ ମହାରାଜଙ୍କୁ ପଚାରିଥିଲି । ମହାରାଜ କାଲି ସକାଳେ କହି କରି ଗଲେ, "ଯେତେବେଳେ ଦେଖିବ ଯେ କଥା ଛପାଇ ରଖିନ-ହେଉଛି, ସେତେବେଳେ ସ୍ୱଚ୍ଛନ୍ଦରେ କହିଦେବ । ସେ ମା'ଟି ଆମର ବହୁତ ସହିଛି, ଆଗକୁ ବହୁତ ସହିବ, ସହଜେ ତାଟକା ହେବ ନାହିଁ । କଥା ଲୁଚାଇ ରଖିଲେ ବରଂ ତାର ଅଧିକ କଷ୍ଟ ହେବ ।"

ଏତକ କହି ବାବୁଜୀ ତୁନି ହୋଇଗଲେ । ତାଙ୍କ ନିଜ ମନର ଉଦ୍‌ବେଗ ଘୁଞ୍ଚିବାକୁ ତାଙ୍କୁ ଭାରି କଷ୍ଟ ହେଉଥାଏ । ମନେ ମନେ ଭଗବାନ୍‌ଙ୍କୁ ଦୋଷିକି, ମଣିଷକୁ ଏତେ ଯାଣ୍ଟିବାରେ ତାଙ୍କର କେଉଁ ଉଦ୍ଦେଶ୍ୟ ସିଦ୍ଧ ହେଉଛି ? ବଡ଼େ ମହାରାଜଙ୍କ ଉପରେ ବି ଅଭିମାନ ହେଲା । ଆମେ କୁମ୍ଭମେଳାକୁ ଆସିବା ପୂର୍ବରୁ ସେ ଆମକୁ ଯାହା ସବୁ କହିଥିଲେ, ତାହା ଆଜି ମନେପକାଇବାରେ ପରିଷ୍କାର ବୁଝାପଡ଼ିଲା, ଆମର ଏଠାରେ ଦୁର୍ଗତି ହେବ ବୋଲି ତାଙ୍କୁ ଆଗରୁ ଜଣାପଡ଼ିଥିଲା । ସେ ସେତେବେଳେ ଆମକୁ ଟାଣ କରି ପଦେ ମନା କରିଦେଇଥିଲେ ତ ଆମ ଆସିବା ବନ୍ଦ ହୋଇଯାଇଥାନ୍ତା ? ସେତେବେଳେ ଉଦାସୀ ହୋଇ ସେ ରହିଯିବା ଯୋଗୁଁ ତାଙ୍କୁ କ'ଣ ପାପ ଲାଗିବ ନାହିଁ । ଟିକିକ ପରେ ନିଜକୁ କାଇଲି କଲି, ମହାତ୍ମାଙ୍କଠାରେ ମୁଁ ଦ୍ରୋହୀ ହେଉଛି କାହିଁକି ?

ସନ୍ଧ୍ୟାବେଳଯାଏଁ ବାବୁଜୀ ଏ ବିଷୟରେ କିଛି ନ କହି ମୋତେ ଟିକିଏ କ'ଣ ଖାଇବାକୁ, ପାଣି ପଣା ଟିକିଏ ପିଇବାକୁ ଖାଲି ବଳାଉଥାନ୍ତି । ସନ୍ଧ୍ୟାବେଳେ ସେ ଘଣ୍ଟେ ଖଣ୍ଡେ ଡାକ୍ତରଖାନାର ଅନ୍ୟ ଖଟିଆମାନଙ୍କ ପାଖେ ବୁଲି ଆସି ଅନ୍ୟମାନଙ୍କର ଭଲ ମନ୍ଦ ବୁଝି ଓ ଆମେ କାଲି ସକାଳୁ ଯିବୁ ଭାରି ବୋଲି ବିଦାୟ ନେଇ ଫେରିଲା ପରେ ମୋତେ କହିଲେ, "ଏତେର ଦିନ କାଲି ଏ ଡାକ୍ତରଖାନାରେ ରହିବା ଫଳରେ ସମସ୍ତଙ୍କଠାରେ ମାୟା ଲାଗି-ଯାଉଛି । ଦିଦିଙ୍କର ତ ସେଇଠାରେ ପ୍ରାଣ ଯାଇଥିଲା ; ବଡ଼ ଦିଦି ଓ ଭାବୀଙ୍କୁ ଏଇ ଡାକ୍ତର-ଖାନାକୁ ଆଣିଥିଲି । ଦିନକ ପରେ ଭାବୀଙ୍କର ପ୍ରାଣବାୟୁ ଉଡ଼ିଗଲା ; ବଡ଼ ଦିଦି ୧୦ ଦିନ ବଞ୍ଚିଲେ । ସେଇଦିନ ତାଙ୍କ ଖଟିଆ ପାଖରେ ବଡ଼େ ମହାରାଜ ଠିଆ ହେବା ମାତ୍ରେ ତାଙ୍କର ଚେତା ଆସିଲା । ମହାରାଜଙ୍କୁ ଛଳଛଳ ଆଖିରେ ଚାହିଁ ସେ କହିଦେଲେ, "ବାବା ! ମୋ ପିଲେ ଲଗିଲେ ।" ବଡ଼େ ମହାରାଜ କହିଲେ, "ସେମାନଙ୍କୁ ଭଗବାନଙ୍କଠାରେ ସମର୍ପି ଦିଅ ।" ବଡ଼ ଦିଦି କହିଲେ, "ଆପଣ ଭଗବାନ୍ !" ପାଗଳୀ ବୋଲି କହି ବଡ଼େ ମହାରାଜ ତାଙ୍କ ମୁଣ୍ଡରେ ହାତ ଦେଇଛନ୍ତି, ତାଙ୍କର ପ୍ରାଣ ଗଲା । ସେ ଦୁଇଜଣଙ୍କ ସମେତ ସାତଜଣ ଭଉଣୀଙ୍କୁ ଶ୍ମଶାନକୁ ନେଇଛି । ତୁମକୁ ନେବାରୁ ଭଗବାନ୍ ରକ୍ଷା କଲେ, ସେ ବଡ଼ ଲୋକ । ଆଉ ଯେଉଁମାନେ ଅଛନ୍ତି ସେମାନଙ୍କର ପ୍ରାଣସଂଶୟ ନାହିଁ ବୋଲି ଡାକ୍ତରମାନଙ୍କର ଦୃଢ଼ ବିଶ୍ୱାସ । ଆଜି ତ ଡାକ୍ତରବାବୁ କହୁଥିଲେ, "ତୁମ ବଡ଼େ ମହାରାଜ ଏ ଡାକ୍ତରଖାନାରେ ପାଦ ଦେବାବେଳୁଁ ସମସ୍ତଙ୍କର ଶିଷ୍ଟ କଟିଛି ।" ମୁଁ ବିଶ୍ୱରିଲି ମୋ ଦୁଃଖିନୀ ବଡ଼ଦିଦିଙ୍କ ମୁଣ୍ଡରେ ସମସ୍ତଙ୍କ ଶିଷ୍ଟ ଥୋଇଦେଇ ମହାରାଜ ତାଙ୍କୁ ବିଦା କରିଦେଲେ ।

ଶୋଇବାକୁ ଯିବାପୂର୍ବରୁ ବାବୁଜୀ କହିଲେ, "ବଡ଼ଦିଦିଙ୍କ ପିଲାଙ୍କର କିଛି ଅସୁବିଧା ହେବ ନାହିଁ ବୋଲି ତୁମକୁ କହିଦେବାକୁ ବାବା ଆଦେଶ ଦେଇଯାଇଛନ୍ତି ।" ମୁଁ କହିଲି, "କାଲି ତ ଆମେ ସିଧା ଆଶ୍ରମକୁ ଯିବା ।" ବାବୁଜୀ କହିଲେ, "ସେ ବିଷୟରେ ବାବାଙ୍କ ନିର୍ଦ୍ଦେଶ ଅଲଗା । ସେ ହୁକୁମ ଦେଇଛନ୍ତି, ତାର ସଂସାରର ଅଭିଜ୍ଞତା ପାଇସାରିବା ପରେ ପ୍ରୌଢ଼ ବୟସରେ ଆଶ୍ରମକୁ ଫେରିବ । ଅନ୍ତତଃ ପାଞ୍ଚ ବର୍ଷ ପର୍ଯ୍ୟନ୍ତ ସେ ଆହ୍ଲାବାଦ

ବା ହରଦ୍ୱାରକୁ ଫେରିବ ନାହିଁ । ତା' ସାଙ୍ଗେ ମୋତେ ବି ଦଣ୍ଡ ହୋଇଛି । ତୁମର କନାସ୍ତ ନ ହେବା ପର୍ଯ୍ୟନ୍ତ ମୁଁ ତୁମ ପାଖେ ପାଖେ ରହିବି ।"

ମୁଁ କିଛି ନ କହି ଆଖି ମୁଜି ମୋର ଭବିଷ୍ୟତ ଜୀବନ ବିଷୟ ଚିନ୍ତାକରି ବସିଲି । ମନେ ହେଲା, ସେଇଦିନ ସମସ୍ତଙ୍କ ସଙ୍ଗେ ହେଲେ ପ୍ରାଣ ଯାଇଥାନ୍ତା । ମହାରାଜ ତ ଭବିଷ୍ୟତ ବାଣୀ ଶୁଣାଇ ଯାଇଛନ୍ତି ଯେ ଭବିଷ୍ୟତରେ ଆଉ କେତେ ଦୁଃଖ ସହିବାକୁ ହେବ । ସେ ଦିନ ମରିଥିଲେ ଏ ଦୁଃଖରୁ ତ ରିହାଇ ମିଳିଥାନ୍ତା । ଏଇପରି ଗୁଡ଼ାଏ ବିଚାର ଆଖି ଫିଟାଇଲି ବେଳକୁ ଦେଖିଲି, ବାବୁଜୀ ମୋରି ଆଡ଼କୁ ଚାହିଁଛନ୍ତି । ବଡ଼ ଲାଜ ମାଡ଼ିଲା, ମନରେ ଦୁଃଖ ହେଲା, ଏ ମହାତ୍ମା ମଧ୍ୟ ମୋ ଯୋଗୁଁ କେତେ କ୍ଳେଶ ସହିବେ !

ବାବୁଜୀ କିନ୍ତୁ ମୋତେ କହିଲେ, "ମୋର ଦାୟିତ୍ୱରେ ତୁମେ ରହିବାକୁ ଚାହିବ କି ନାହିଁ ସେ ବିଷୟରେ ସନ୍ଦେହ ହେବାରୁ ବଡ଼େ ମହାରାଜଙ୍କୁ ପଚାରିଥିଲି । ଧେତ୍ ବୋଲି କହି ସେ ଆଗ ମୋର ସଂଶୟକୁ ଉଡ଼ାଇଦେଲେ । ତା'ପରେ କହିଲେ, ତାରି ଯଦି ଆପତ୍ତି କରିବ ତେବେ ତାକୁ ଡାକ୍ତରଖାନାରେ ଦିନଟାଏ ଅଧିକା ରଖି ମୋ ସଙ୍ଗେ ପରାମର୍ଶ କରିବାକୁ ଆସିବ ।"

ଅତି ନିର୍ବାହ ଭାବେ ଏକଥା କହି ମୋତେ ସେ ବଲବଲ ହୋଇ ଚାହିଁ ରହିବାରୁ ସମସ୍ତ ଦୁଃଖ ସତ୍ତ୍ୱେ ତାଙ୍କୁ ପଦେ କହିଦେବାର ଦୁଷ୍ଟାମି ଦମନ କରିପାରିଲି ନାହିଁ ; କହି ପକାଇଲି, "ମଣିଷର ମନ କଥା ଆପଣ ଖୁବ୍ ଠଉରେଇପାରନ୍ତି, ଜଣା ପଡ଼ିଲା ।" ଏ କଥା ବି ତାଙ୍କ ଦେହରେ ପଶିଲା ନାହିଁ ; ପଚାରିଲି, "ରାତିରେ ଆପଣ କୋଉଠି ଶୋଉଛନ୍ତି ?" ସେ କହିଲେ, "ପାଖ ବାରଣ୍ଡାରେ ଠାଏ ଶୋଇପଡ଼େ । ମାଇକିନିଆ ୱାର୍ଡରେ ପୁରୁଷ ଲୋକ ରହିବାକୁ ମନା । ସୁପରିଂଟେଣ୍ଡେଣ୍ଟ୍ ମୋତେ ଟିକିଏ ଅନୁଗ୍ରହ ଦେଖାଇଛନ୍ତି ।" ମୁଁ କହିଲି, "ବହୁତ ଡେରି ହେଲାଣି ଯା'ନ୍ତୁ ଶୋଇବେ ।"

( ୬୧ )

ରେଳ ଆଗକୁ ଚାଲିଥାଏ, ମୋର ମନ ଚାଲିଥାଏ ପଛକୁ । ବାପା ମା'ଙ୍କୁ ହରାଇବା ଦିନୁଁ ମୁଁ ପୂର୍ବମୁହାଁ ହୋଇ ଚାଲିଛି । ଏଥର ଯାଉଥାଏ ଏକାଥରକେ ଆମ ଦେଶର ସବା ଶେଷ ପୂର୍ବ ମୁଣ୍ଡକୁ । ଆହ୍ଲାବାଦ ଷ୍ଟେସନରେ ଟିକଟ କାଟିଲାବେଳେ ବାବୁଜୀ ମୋତେ କହିଲେ, "ପୁରୀ ଜଗନ୍ନାଥଙ୍କ ପାଖକୁ ଟିକଟ କରୁଛି ।" ମୋର ସମ୍ମତି ସେ କାହିଁକି ପଚାରୁଛନ୍ତି ବୋଲି କହିଲି, କିନ୍ତୁ ମନେ ମନେ ସମ୍ମତ ହେଲି । ବାପା, ମା ଥରେ କଥାବାର୍ତ୍ତା ହେଉ-ଥିଲେ, ପୁରୀ ଯାଇ ଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରିବାକୁ । ଆମ ଢ଼ି·ରେ ଯେଉଁ ବର୍ଷ

ବିପତ୍ତି ପଡ଼ିଲା ତା'ର ବୋଧହୁଏ ଦୁଇ ତିନିବର୍ଷ ପୂର୍ବର କଥା । ପୁରୀର ଜଣେ ପଣ୍ଡା ମହାରାଜ ଆମ ଗାଁକୁ ଆସି ପୁରୀ ଯିବାକୁ ଆମକୁ ଡାକିଥିଲେ । ସବୁ ଠିକ୍ ହୋଇଯାଇଥିଲା । ଆମ ଗାଁରୁ ପ୍ରାୟ ୪୦ ଜଣ ବାହାରିଥିଲେ । ଯିବାକୁ ଯୋଡ଼ିଏ କି ତିନୋଟି ଦିନ ଅଛି ପଣ୍ଡା ମହାରାଜଙ୍କୁ ହେଲା ଜର । ତାଙ୍କର ଗୋଡ଼ ଦୁଇଟା ଫୁଲି କାଠ ଗଡ଼ ପରି ହୋଇଗଲା । ପୁରୀ ଆଉ ଏଇମିତି ଜର ହୁଏ ବୋଲି ବାପା କହିଲେ । ପଣ୍ଡା ମହାରାଜ ଆମରି ଘରେ ଅଚେତା ହୋଇ ତିନି ଦିନ ପଡ଼ିଲେ । ପାଣି ଟିକିଏ ବି ପିଇଲେ ନାହିଁ । ତିନି ଦିନ ପରେ ଉଠି କଥାବାର୍ତ୍ତା ହେଲେ, ଉଷୁମ ପାଣିରେ ଗାଧୋଇ ନିର୍ମାଲ୍ୟ ଟିକିଏ ଖାଇ ମିଶ୍ରୀ ପଣା ମୁନ୍ଦିଏ ପିଇଲେ । ଭାରି ଦୁର୍ବଳ ହୋଇଥାନ୍ତି । ପନ୍ଦରଦିନ ବିଶ୍ରାମନେଲା ପରେ ଯିବାବୋଲି କହିଲେ । ସେଇ ପନ୍ଦର ଦିନ ଭିତରେ ବର୍ଷା ଦିନ ଆରମ୍ଭ ହୋଇଗଲା, କ୍ଷେତ ବାଡ଼ିର କାମ ଆରମ୍ଭ ହୋଇଗଲା । ସମସ୍ତେ ବିଲ ବାଡ଼ି କାମରେ ଲାଗିଗଲେ, ପଣ୍ଡା ମହାରାଜଙ୍କୁ କହିଲେ, ଏବର୍ଷ ଆଉ ଯାଇହେବନାହିଁ । ପଣ୍ଡା ମହାରାଜ ଆମ ଗାଁରୁ ବିଦାକି ନେଇ ପୁରୀ ଫେରିଗଲେ, ଆର ବର୍ଷ ଆସିବେ ବୋଲି ସେ ଆଉ ଆସିଲେ ନାହିଁ ପରେ ଶୁଣିଲୁ, ତାଙ୍କର ପୁଣି ଆଉ ଥରେ ସେଇ ବାତଜର ହେଲା, ସେଇଥିରେ ତାଙ୍କ ଦେହାନ୍ତ ହୋଇଗଲା । ତା'ପରେ ଆମର ବିପତ୍ତି । ସେ ବର୍ଷ ଯେଉଁମାନେ ଜଗନ୍ନାଥ ଦର୍ଶନକୁ ବାହାରିଥିଲେ, ସେମାନେ ସମସ୍ତେ ପଠାଣଙ୍କ ଛୁରିରେ ପ୍ରାଣ ହରାଇଲେ । ମୋ ଜାଣିବାରେ ଆମ ଗାଁରୁ ମୁଁ ଏକମାତ୍ର ଜୀବନ ଧରି ରହିଲି ।

ରେଳ ପୁରୀ ଆଡ଼କୁ ଚାଲିଥିଲାବେଳେ ମୋର ମୁସଲମାନଙ୍କ ଦୌରାତ୍ମ୍ୟ ପୂର୍ବର କଥା ମନେ ପଡ଼ି ପେଟଭିତରୁ କୋହ ଉଠୁଥାଏ । ପିଲା ଦିନେ ଆମର କେଡ଼େ ସୁଖର ସଂସାର ନ ଥିଲା ସତେ ? ଗାଁର ସମସ୍ତେ ହିନ୍ଦୁ ମୁସଲମାନ ଓ ଶିଙ୍ଗ୍ କେଡ଼େ ସୁଖରେ ମାଟିକୁ ଆଶ୍ରା କରି ପଡ଼ିଥାନ୍ତି । ମାଟିରୁ ଅନାଜ ଉତ୍ପନ୍ନ ହୁଏ, ଗାଈ ଓ ମଇଁଷି ପ୍ରଚୁର ଦୁଧ ଦେଉଥାନ୍ତି, ଆମେ ପିଲାମାନେ ଖାଇ ପିଇ କେଡ଼େ ସୁଖରେ ଥାଉଁ, ସାଙ୍ଗ ପିଲାଙ୍କ ସଙ୍ଗେ ମନ ଆନନ୍ଦରେ ଖେଳି ବୁଲି ସମୟ କଟାଉଥାଉ । ମୋର ସବୁଠାରୁ ବେଶି ଆନନ୍ଦର ଜାଗା ଥାଏ ଅବ୍ଦୁଲ ଚାଚାଙ୍କ ଘର । ଚାଚା ତାଙ୍କ ଝିଅ ଓ ମୋ ଭିତରେ ଆଦୌ ପାତର ଅନ୍ତର କରନ୍ତି ନାହିଁ । ତାଙ୍କ ଝିଅ ସଙ୍ଗେ ମୁଁ ସଙ୍ଗାତ ବସିଥାଏ । ଦୁହେଁଯାକ ତାଙ୍କ ଘରେ ଓ ଆମ ଘରେ ଏକା ସଙ୍ଗେ ଖାଉ, ଏକାଠି ବସାଉଠା କରୁ । ଥରେ ମା' ବାପାଙ୍କୁ କହିଥିଲେ, ''ପିଲାଟା ପଠାଣ ହୋଇଯାଉଛି, ଟିକିଏ ଆକଟ କରୁନାହଁ ତ ?'' ବାପା କହିଲେ, ''ଏ ସ୍ଥିତି ଆମ ଗାଁରେ କୋଉ କାଳରୁ ଚାଲୁଛି । ପିଲାଦିନେ ଅବ୍ଦୁଲାର ମୋର ଏଇପରି ସାଙ୍ଗ ହୋଇଥିଲି । ମୋର ବାପା, ଜେଠା ପ୍ରଭୃତି କେହି ଆମକୁ ରୋକି ନ ଥିଲେ । ମୁଁ ଆଜି ରୋକିବି କମିତି ? ତମେ ସିନା ଆସିଛ ହିନ୍ଦୁ ଗାଁରୁ, ଆମ ଗାଁ ତ ହିନ୍ଦୁ ମୁସଲମାନଙ୍କ ଗାଁ । ଆମ ବାପା କହୁ-ଥିଲେ, 'ଯେ ଆଲ୍ଲା, ସେଇ ଜଗନ୍ନାଥ ।' ଆମ ଗାଁ ମୁସଲମାନଙ୍କର ଚଳଣି ଆମଠାରୁ କୌଣସି ସ୍ଥଳରେ ଅଲଗା ନୁହେଁ ।'' ମା ତୁନି ହେଲେ । ଗାଁର ଆଉ କେହି ଆମମାନଙ୍କ ଢଙ୍ଗ ରଙ୍ଗରେ କିଛି ବାଇଚ ଦାଚନ୍ତି ନାହିଁ ।

ଯେଉଁଠି ଆଲ୍ଲା ଓ ଜଗନ୍ନାଥ ଏତେକାଳ ଏକା ହୋଇ ରହୁଥିଲେ, ହଠାତ୍ କ'ଣ ହେଲା ଯେ, ସେଠାରେ ହତ୍ୟାର ବିଭୀଷିକା ଲଗିଲା ! ପଶୁଙ୍କ ତ ହେଲେ ମୁସଲମାନ ଆଦର କରନ୍ତି, ମଣିଷକୁ ଦୁସ୍‌ମନ୍ ବୋଲି ବଗୁଣ ନିର୍ବିଗ୍ନରେ ହାଣି ଦେଇଗଲେ ! ଧରି ବସିଲେ, ତାଙ୍କ ରାଜ୍ୟରେ ହିନ୍ଦୁ ବା ଶିଖ୍‌ଙ୍କୁ ରଖି ଦେବେ ନାହିଁ । ଥରେ ଏକଥା ବାବାଙ୍କୁ ପଚାରିଥିଲି । ସେତକ ବେଳେ ଦୈବାତ୍ ବାବୁଜୀ ଆସି ପହଞ୍ଚିଥିଲେ । ବାବା ମୋ ମନରେ ହେଉଥିବା ସଂଶୟ ବାବୁଜୀଙ୍କୁ ପଚାରିଲେ । ବାବୁଜୀ କହିଥିଲେ, "ମୋର ମନେ ହୁଏ, ଆମ ଦେଶର ନେତାମାନଙ୍କ କ୍ଷମତାଲୋଭ ଯୋଗୁଁ ଏ ହାଣକାଟ ହେଲା । ଜିନ୍ନା ମନେ ମନେ ଚାହୁଁଲେ, ଭାରତର ପ୍ରଧାନମନ୍ତ୍ରୀ ହୁଅନ୍ତେ, ଜବାହାରଲାଲ ସେ ଅଧିକାର ଛାଡ଼ିବାକୁ ନାରାଜ । ଗାନ୍ଧୀ ମଧ୍ୟସ୍ଥତା କରି କହିଲେ, 'ପ୍ରଧାନମନ୍ତ୍ରୀ ପଦ ବ୍ୟତୀତ ଅନ୍ୟ ଯେ କୌଣସି ବଡ଼ ପାହିଆ ଜିନ୍ନାଙ୍କୁ ଦିଆଯିବ ।' ଏଇଥିରୁ ସବୁ ଗୋଳମାଳ, ଏଇଥିରୁ ଭାରତ ହେଲା ଦୁଇ ଭାଗ—ଦୁଇ-ଜଣଯାକ କ୍ଷମତାଲାଳସୀ ନେତା ନିଜ ନିଜ ରାଜ୍ୟରେ ସର୍ବେସର୍ବା ହେବେ ବୋଲି । ମଣିଷ ଜୀବନ ପାଣିଫୋଟକା । ଯୋଡ଼ାଏ ପାଣି-ଫୋଟକାର ସଂଘର୍ଷରୁ ଏତେ ରକ୍ତପାତ ହୋଇଗଲା ! ଜିନ୍ନା ଗଲେଣି, ଜବାହାରଲାଲ ଯିବେ, କିନ୍ତୁ ଭାରତର ହିନ୍ଦୁ ମୁସଲମାନ କାଳ-କାଳକୁ ପରସ୍ପରର ଶତ୍ରୁ ହୋଇ ରହିଯିବେ ।"

ରେଲରେ ମୋର ସେଇ କଥା ମନେ ପଡ଼ିଲା, ବାବୁଜୀଙ୍କୁ ସଙ୍କୋଚରେ ପଚାରିଲି, "କିନ୍ତୁ ଗାନ୍ଧୀ ତ ହିନ୍ଦୁ ମୁସଲମାନଙ୍କ ଏକତା ପାଇଁ ଏତେ ଚେଷ୍ଟା କରିଥିଲେ, ଫଳ ନ ହେଲା କାହିଁକି ?" ବାବୁଜୀ କହିଲେ, "ଏ କଥାଗୁଡ଼ାକ ମନେପକାଇ ମନକୁ କଷ୍ଟ ଦେଉଛ କାହିଁକି ? ଗାନ୍ଧୀ ଗଛର ମୂଳରେ ପାଣି ନ ଦେଇ, ଡାଳରେ ପାଣି ଦେଲେ । ନିଜର ଅନୁ-ଚରମାନଙ୍କ କ୍ଷମତାଲାଳସା ରୋକି ପାରିଲେ ନାହିଁ । ମୁସଲମାନମାନଙ୍କ ସଙ୍ଗେ ସିଧା ସଳଖ ମୁକାବିଲା ନ କରି ସେମାନଙ୍କୁ ଯାହା ଉତ୍ତ୍ୟକ୍ତ କରିବ ସେଇଆ କରିବସିଲେ । ସାଧାରଣ ସଭାରେ ଆପେ କୋରାନ୍ ପଢ଼ିଲେ, ଦଳେ ଗୋଡ଼ାଣିଆ ମୁସଲମାନଙ୍କୁ ହାତ କରି ସେଇ-ମାନେ ଭାରତର ମୁସଲମାନଙ୍କ ମୁଖପାତ୍ର ବୋଲି ଦେଖାଇଦେଲେ । ପ୍ରଥମେ କେତେବର୍ଷ ମୁସଲମାନଙ୍କୁ ଏ ଦେଶର ପ୍ରଧାନମନ୍ତ୍ରୀତ୍ୱ ଦେଇପକାଇଥିଲେ ଭାରତ ଆରବ ବା ପାରସ୍ୟ ହୋଇଯାଇନଥାନ୍ତା । ଆକବର ବାଦଶାହା ମୁସଲମାନଙ୍କ ଅପେକ୍ଷା ହିନ୍ଦୁଙ୍କୁ ଅଧିକ ଆଦର କଲାପରି, ଏ ଦେଶର ମୁସଲମାନ ପ୍ରଧାନମନ୍ତ୍ରୀ ହିନ୍ଦୁ ଜନତାଙ୍କ ମନ ନେବାକୁ ଅଧିକ ଚେଷ୍ଟା କରିଥାନ୍ତେ । ସେ କଥାସବୁଡ଼ାକ ମନରୁ ପୋଛିପକାଅ । ଜଗନ୍ନାଥ ମହାପ୍ରଭୁଙ୍କଠାରେ ଧ୍ୟାନ ରଖ । ରାଜନୀତିକଙ୍କ ବହୁ ଉତ୍ପାତ ସତ୍ତ୍ୱେ ଭାରତ ଭାରତ ହୋଇଛି । ବର୍ତ୍ତମାନ ଜବାହାର-ଲାଲ ନେହେରୁ ଧର୍ମନିରପେକ୍ଷ ବୋଲି ଦେଖାଇହେବାକୁ ହିନ୍ଦୁ ଧର୍ମ ଉପରେ ଯେଉଁ ଅତ୍ୟାଚାର ଆରମ୍ଭ କରିଛନ୍ତି, ତା ସତ୍ତ୍ୱେ ଏ ଦେଶ ରହିବ, ହିନ୍ଦୁ ଧର୍ମ ରହିବ । ଏହା ଲୋପ ହେବ ସେଇ ଦିନ, ଯେଉଁ ଦିନ ଏ ଦେଶର ଲୋକେ ଜଗନ୍ନାଥଙ୍କୁ ନ ମାନି ରାଜନୈତିକ ନେତାଙ୍କୁ ଜଗନ୍ନାଥ ବୋଲି ମାନିବେ ।"

ଆମେ ଦୁହେଁ ଗୋଟିଏ ଫାଷ୍ଟକ୍ଲାସ ଡବାରେ ବସିଥାଉ । ବାବୁଜୀଙ୍କ ଇଚ୍ଛା, ଥାର୍ଡ଼ କ୍ଲାସରେ ଯାଇଥାନ୍ତେ । ସବୁବେଳେ ସେ ଥାର୍ଡ଼ କ୍ଲାସରେ ଯା'ଆସ କରନ୍ତି । ମୋର ଅସୁବିଧା ହେବ ବୋଲି ଫାଷ୍ଟକ୍ଲାସ ଟିକଟ କରିଥାନ୍ତି । ମୋର କିଛି ଅସୁବିଧା ହେବ ନାହିଁ ବୋଲି ମୁଁ ମୁହଁରେ ସିନା କହିଥିଲି; ପ୍ରକୃତରେ ଦାଦାଙ୍କ ସଙ୍ଗେ ରହିବା ଦିନୁଁ ମୋର କମିତି ଗୋଟାଏ ମଣିଷଡରା ପ୍ରକୃତି ହୋଇଯାଇଥାଏ ; ଅପରିଚିତ ଲୋକଙ୍କ ପାଖରେ ବସିଲେ ମୋର ମନ ଲସିଯାଏ । ବାବୁଜୀ ଏକଥା ବାରିଥିଲେ । ସେ କହିଲେ, "ପାଖରେ ଯେଉଁ ପଇସାତକ ଅଛି, ସେ ବଡ଼ ଲୋକଙ୍କ ପଇସା । ତାକୁ ବଡ଼ଲୋକରେ ଉଡ଼ାଇଦେଲେ ଯାଇ ସ୍ୱାଭାବିକ ଜୀବନଯାତ୍ରା ସମ୍ଭବ ହେବ ।" ତାଙ୍କଠାରୁ ଶୁଣିଲି, ଡାକ୍ତରଖାନାରେ ମୋ ଅଣ୍ଟାରୁ ବାହାରିଥିବା ତିନି ହଜାର ଟଙ୍କା ଏବେ ଆମର ସମ୍ବଳ । ମୋ ପାଖରେ ଅବଦୁଲ୍ଲ ଗୁରୁଙ୍କର ଓ ଦାଦାଙ୍କର ହୋଇ ପ୍ରାୟ ୪୦ ହଜାର ଟଙ୍କା ଥିଲା । ୩୭ ହଜାର ଟଙ୍କା ବଡ଼େ ମହାରାଜଙ୍କ ପାଖେ ଜମା ଦେଇ ତିନି ହଜାର ପାଖରେ ରଖିଥିଲି ଅଣ୍ଟାରେ ଗୋଟେ ପଟିରେ ଗୁଡ଼ାଇ । ସେଇଥିରୁ ଆମର ଆହ୍ଲାବାଦରେ ଯାହା କିଛି ଖର୍ଚ୍ଚ ହୋଇଥିଲା । ବଡ଼େ ମହାରାଜ ବାକୀ ଟଙ୍କାତକ ପାଖରେ ରଖିବା ପାଇଁ ବାବୁଜୀଙ୍କୁ ଲଗାଇଥିଲେ । ବାବୁଜୀ କହିଲେ, ଦରକାର ହେଲେ ମଗାଇ ନେବେ; ମୋତେ କହିଲେ, "ବଡ଼େ ମହାରାଜଙ୍କୁ କହିଛି, ତାର ପାଇଁ ସତ୍ପାତ୍ରଟିଏ ଠିକ କରି ପାରିଲେ ଟଙ୍କା ଆସି ନେଇଯିବି ।"

ବାବୁଜୀଙ୍କଠାରୁ ଏକଥା ଶୁଣି ମୋ ମନରେ ବିରକ୍ତି ହେଲା । ସେତେବେଳେ କିଛି କହିଲି ନାହିଁ । ପରେ ଦିନେ ରେଲଗାଡ଼ିରେ ପଚାରିଲି, "ପୁରୁଷମାନେ ଯେପରି ଆଜନ୍ମ ସନ୍ନ୍ୟାସୀ ହୋଇ ରହିଯାଉଛନ୍ତି, ସ୍ତ୍ରୀର କ'ଣ ସେପରି ରହିବାର ଅଧିକାର ନାହିଁ ?" ବାବୁଜୀ କହିଲେ, "ଏ ବିଷୟ ବଡ଼େ ମହାରାଜଙ୍କୁ ପଚାରିଥିଲି । ମୋର ତ ଇଚ୍ଛା ଥିଲା ତୁମେ ଡାକ୍ତରଖାନାରୁ ଯାଇ ସାଙ୍ଗେ ସାଙ୍ଗେ ଆଶ୍ରମରେ ରହିଥାନ୍ତ । କିନ୍ତୁ ବଡ଼େ ମହାରାଜ ଆପତ୍ତି କଲେ, ସେ କହିଲେ, "ଅନୂଢ଼ା ଯୁବତୀ ସନ୍ନ୍ୟାସିନୀ ହେବାର ନୁହେଁ । ବିବାହ ହେଲେ ଯାଇ ନାରୀର ଶୁଦ୍ଧି ହୁଏ ।" ବଡ଼େ ମହାରାଜଙ୍କର ଏ ମତ ଶୁଣି ମନରୁ ସ୍ୱତଃ ଜାତ ହେଉଥିବା ବିରୋଧକୁ ଚାପି ରଖିଲି । ବିଚାରିଲି, କେବେ ପୁଣି ତାଙ୍କ ସଙ୍ଗେ ଦେଖା ହେଲେ ନାରୀପ୍ରତି ଏଭଳି ପକ୍ଷପାତର କାରଣ କ'ଣ ପଚାରିବି । ଆହା, ସେ ଦିନ କ'ଣ ସତେ ଆସିବ ? ଆଉ କ'ଣ ଜୀବନରେ ତାଙ୍କ ସଙ୍ଗେ ଦେଖା ହେବ !

ଆହ୍ଲାବାଦଠାରେ ଆମେ ଫାଷ୍ଟ କ୍ଲାସ୍ ଗାଡ଼ିରେ ବସିବାର ଆଉ ଗୋଟିଏ ଗୁରୁତର କାରଣ ଥିଲା । ଡାକ୍ତରଖାନାରୁ ଆମେ ଆସି ଆହ୍ଲାବାଦ ଷ୍ଟେସନର ପ୍ଲାଟ୍‌ଫର୍ମରେ ଅପେକ୍ଷା କଲାବେଳେ ବାବୁଜୀ ଲକ୍ଷ୍ୟ କଲେ, ଚାରିଜଣ ଟୋକା ଆମର ପିଛା ଧରିଛନ୍ତି । ସେମାନେ ଆମେ ବସିଥିବା ଜାଗାକୁ ବାରମ୍ବାର ଆସି ଆମକୁ ଚାହିଁଥାନ୍ତି । ବାବୁଜୀ ମୋତେ ଏମାନଙ୍କୁ ଦେଖାଇଦେଲେ, କହିଲେ, "କୁମ୍ଭମେଳାରେ ଏମାନେ ତୁମକୁ ନେଇଗଲା ପରି ମୋତେ ଅସ୍ପଷ୍ଟ ଭାବେ ଜଣାପଡ଼ୁଛି ।" ମୋ ଦେହ ଶୀତେଇଗଲା । ମୋର ମଧ୍ୟ ଅସ୍ପଷ୍ଟ ଭାବେ ମନେ

ପଡ଼ିଲ, ସେମାନଙ୍କର ଭିତରୁ ଜଣକୁ ମୁଁ, ପ୍ରଭାତ ବାବୁଙ୍କ ସାଙ୍ଗେ ଆମ ହରିଦ୍ୱାର ବସାର ସାମନାରେ ଲଢ଼ବଢ଼ ହେବାର ଦେଖିଥିଲି । ସେ କଥା ବାବୁଜୀଙ୍କୁ ନ କହି ଜଡ଼ସଡ଼ ହୋଇ ରହିଲି । ମନରେ ଭାରି ଡର ମାଡ଼ିଲା, ଏମାନେ ଯଦି ବାବୁଜୀଙ୍କଠାରୁ ମୋତେ ଛଡ଼ାଇ ନିଅନ୍ତି ? ବାବୁଜୀ ଏମାନଙ୍କ ଗତିବିଧି ଓ୍ୱେଲ ଏ କାଳ ଲକ୍ଷ୍ୟ କରି ମୋତେ ନେଇ ଫାଷ୍ଟ କ୍ଲାସ୍ ବିଶ୍ରାମାଗାରକୁ ଚଳେ । ସେଠାରେ ଜଣେ ଭଦ୍ରଲୋକ ସସ୍ତ୍ରୀକ ଅପେକ୍ଷା କରୁଥାନ୍ତି, ତୁଫାନ୍ ମେଲରେ କଲିକତା ଯିବାକୁ । ତାଙ୍କ ସଙ୍ଗେ ବାବୁଜୀଙ୍କର ଆଳାପ ହେଲା । ମୁଁ ଭଦ୍ର ମହିଳାଙ୍କ ସଙ୍ଗେ କଥାବାର୍ତ୍ତା ଆରମ୍ଭ କରିଦେଲି । ବାବୁଜୀ ୧୫ ମିନିଟ ଏମାନଙ୍କ ପାଖେ ମୋତେ ଛାଡ଼ି ଷ୍ଟେସନ୍ ମାଷ୍ଟରଙ୍କ ପାଖକୁ ଗଲେ ଓ ତାଙ୍କୁ ଏ ଗୃହଜଣ ଗୁଣ୍ଡାଙ୍କ ବିଷୟ କହିଲେ । ଷ୍ଟେସନ ମାଷ୍ଟର ସାଙ୍ଗେ ସାଙ୍ଗେ ପୁଲିସକୁ ଖବର ଦେଲେ । ପ୍ରାୟ ଘଣ୍ଟାକ ପରେ ଷ୍ଟେସନ ମାଷ୍ଟର ଜଣେ ଧଳା ପୋଷାକ ପିନ୍ଧା ଭଦ୍ରଲୋକଙ୍କୁ ସାଙ୍ଗରେ ଧରି ଆମ ବିଶ୍ରାମାଗାରକୁ ଆସିଲେ ଏବଂ ବାବୁଜୀଙ୍କୁ ଡାକି ନେଇ ତାଙ୍କ ସଙ୍ଗେ ବାବୁଜୀଙ୍କ ପରିଚୟ କରାଇଦେଲେ । ଆମ ସହଯାତ୍ରୀ ଭଦ୍ରଲୋକ ଏକଥା ଜାଣିଲେ ନାହିଁ, ମୁଁ ବି ଜାଣିନଥିଲି । ପରେ ହାବଡ଼ା ଷ୍ଟେସନର ବିଶ୍ରାମାଗାରରେ ଜାଣିଲି, ସେ ଜଣେ ଗୁପ୍ତ ପୁଲିସ ଅଫିସର, ଗୁଣ୍ଡାଙ୍କ ପିଛା ଧରି ଆମ ସଙ୍ଗେ ରେଲଯାତ୍ରୀ ହୋଇଥିଲେ ।

ମୁଁ ଏତିକିମାତ୍ର ଲକ୍ଷ୍ୟ କରୁଥାଏ ଯେ, ଗୃହଜଣଯାକ ଟୋକା, ମଝିରେ ମଝିରେ ଗାଡ଼ି ରହିଲେ, ଆମ କୋଠରୀ ପାଖେ ପଇଁତରା ମାରୁଥାନ୍ତି । ଆମ ସହଯାତ୍ରୀ ସସ୍ତ୍ରୀକ ଭଦ୍ରଲୋକ ମୋଠାରୁ ଅଧିକ ତୀକ୍ଷ୍ଣ ଭାବେ ଏମାନଙ୍କ ଗତିବିଧି ଲକ୍ଷ୍ୟ କରୁଥାନ୍ତି । ତାଙ୍କ ସ୍ତ୍ରୀଙ୍କ ଦେହରେ ବହୁତ ଗହଣା ଥାଏ । ମୋ ଦେହରେ ମଧ୍ୟ ପ୍ରାୟ ଦଶ ଭରି ସୁନା ଥାଏ ; କିନ୍ତୁ ତାଙ୍କ ଦେହରେ ୩୦ ଭରିରୁ ବେଶି । ତାଙ୍କ ବେକରେ ତ ଗୋଟାଏ ସୁନାମାଳି ଥାଏ, ତାକୁ ଅଟକଳ କଲି, ଏକୁଟିଆ ଦଶଭରି ହେବ । ଭଦ୍ରଲୋକଙ୍କର ସନ୍ଦେହ ହେଉଥାଏ, ଏଇ ସୁନା ଲୋଭରେ ଗୁଣ୍ଡାମାନେ ତାଙ୍କ ପିଛା ଧରିଛନ୍ତି । ସେ ବାରମ୍ବାର ତାଙ୍କ ସ୍ତ୍ରୀଙ୍କୁ ସାବଧାନ କରି-ଦେଉଥାନ୍ତି । ଆମ କାମରାରେ ବସିଥିବା ସାଧା ପୋଷାକ-ପିନ୍ଧା ପୁଲିସ ଅଫିସର ଖୁବ୍ ମନ ଦେଇ ଗୋଟାଏ ବହି ପଢ଼ୁଥାନ୍ତି । ତାଙ୍କର କୁଆଡ଼କୁ ଦୃଷ୍ଟି ଥିବାର ଜଣାପଡ଼ୁନଥାଏ । କିନ୍ତୁ ପରେ ଜାଣିଲି, ବହି ଆଢ଼ୁଆଳରେ ସେ ଗୁଣ୍ଡାମାନଙ୍କ ଉପରେ ଓ ଆମ ଗୃହଜଣଙ୍କ ଗତିବିଧି ପ୍ରତି ତୀକ୍ଷଣ ଦୃଷ୍ଟି ରଖି ନିର୍ଲିପ୍ତ ଭାବେ ବସିଥାନ୍ତି ।

ଦେହରି ଜଙ୍କସନ୍‌ଠାରେ ଗାଡ଼ି ବହୁତ ବେଳ ରହିଲା । ଏଠାରେ ଆମ ସହଯାତ୍ରୀ ଭଦ୍ରଲୋକ ଏକାବେଳକେ ଉତ୍‌କ୍ଷିପ୍ତ ହୋଇ ରେଲବାଇ ପୁଲିସ ଅଫିସକୁ ଯାଇ ଗୁଣ୍ଡାଙ୍କ ଉପଦ୍ରବ ବିଷୟରେ ଇତଲା ଦେଲେ ଓ ସେମାନଙ୍କୁ ଅଟକାଇ ରଖିବାକୁ ନିବେଦନ କଲେ । ଜଣେ ପୁଲିସ ଅଫିସର ଆମ ଡବାକୁ ଆସିଲେ ଏବଂ ଆମମାନଙ୍କ ପରିଚୟ ପଚାରିଲେ । ବାବୁଜୀ ମୋତେ ତାଙ୍କ ଭଉଣୀ ବୋଲି ପରିଚୟ ଦେଲେ । ଆମ ସହଯାତ୍ରୀ ଭଦ୍ରଲୋକଙ୍କର ତ ନାମଧାମ ଆଗରୁ ଲେଖି ନେଇଥିଲେ । ସେ ବଙ୍ଗସରକାରଙ୍କର ଜଣେ ବଡ଼ ଅଫିସର ।

ସରକାରୀ କାର୍ଯ୍ୟରେ ଦିଲ୍ଲୀ ଯାଇଥିଲେ । ଗୁପ୍ତ ପୁଲିସଙ୍କ ସଙ୍ଗେ ପଦେ ଦ୍'ପଦ କଥାବାର୍ତ୍ତା ହୋଇ ତାଙ୍କର ବୋଧହୁଏ ପରିଚୟ ବୁଝିନେଲେ । ଗାଡ଼ି ଛାଡ଼ିଲା ପରେ ଅଫିସର ଭଦ୍ର-ଲୋକ ନିଜର ଖୁବ୍ ପ୍ରୌଢ଼ି ଦେଖାଇ ଘୋଷଣା କଲେ ଯେ, ତାଙ୍କର ପରିଚୟ ପାଇବାରୁ ରେଲବାଇ ପୁଲିସ ଜଣେ ବଡ଼ ଅଫିସରଙ୍କୁ ଏହି ଗାଡ଼ିରେ କଲିକତା ଯାଏଁ ପଠାଉଛନ୍ତି ।

ବାବୁଜୀ ମନେ କରିଥିଲେ, ଏ ଜଣକ ଆମର ସାଙ୍ଗରେ ଆହ୍ଲାବାଦରୁ ଆସୁଥିବା ଗୁପ୍ତ ପୁଲିସ । କିନ୍ତୁ ପର ଷ୍ଟେସନରେ ଜଣାପଡ଼ିଲା ଯେ, ବାସ୍ତବିକ ଆଉ ଜଣେ ପୁଲିସ ପୋଷାକ ପିନ୍ଧା ଅଫିସର ଦେହରିଠାରୁ ଚଢ଼ିଲେ । ସେ ମଝିରେ ମଝିରେ ଆମ କାମରାକୁ ଆସୁଥାନ୍ତି ଓ ଭଦ୍ରଲୋକ, ବାବୁଜୀ ଓ ଗୁପ୍ତ ପୁଲିସ ଅଫିସରଙ୍କ ସଙ୍ଗେ ଏଣୁ ତେଣୁ ଦ୍'ପଦ କଥାବାର୍ତ୍ତା ହୋଇ ଅନ୍ୟ କାମରାକୁ ଚାଲିଯାଉଥାନ୍ତି । ସେ ଜଣଙ୍କ ଆସିବାର ଦେଖି ଆମ ପିସ୍ତଲ ଧରିଥିବା ଗୁଣ୍ଡା ଚାରିଜଣ ଆମ କାମରା ପାଖେ ପଛଁଚରା ମାଇଲେ ନାହିଁ କିନ୍ତୁ ମୁଁ ଲକ୍ଷ୍ୟ କରୁଥାଏଁ, ସେମାନେ ପ୍ଲାଟଫର୍ମରେ ବୁଲୁଥାନ୍ତି ଓ ଆମ ଉପରେ ଆଖି ରଖିଥାନ୍ତି ।

ଧାନବାଦ ଷ୍ଟେସନରେ ଗାଡ଼ି ଯାଇ ପହଞ୍ଚିଲା ବେଳକୁ ବଡ଼ି ସକାଳ । ହଠାତ୍ ସେଠାରେ ହୋ କିନ୍ତୁ ଭୂମ୍ନିଲ ଶବ୍ଦ ଶୁଣାଗଲା । ପରେ ଶୁଣିଲି, କୌଣସି କାରଖାନାର ଶ୍ରମିକମାନେ ଧର୍ମଘଟ କରିଥାନ୍ତି, ଅଧିକ ମଜୁରି ଦାବି କରି । ସେଇ ଦାବିକୁ ଟାଣ କରିବା ସକାଶେ ସେମାନେ ଧାନବାଦ ଷ୍ଟେସନକୁ ଆଜି ପାହାନ୍ତିଆରୁ ଘେରାଉ କରିଥାନ୍ତି । ବହୁତ ଲୋକ ରେଲ ଲାଇନର ଏପାଖେ ସେପାଖେ ଲାଇନ ଉପରେ ବସି ରହିଥାନ୍ତି । ଆହୁରି କୋଡ଼ିଏ ଲୋକ ଷ୍ଟେସନ ପ୍ଲାଟଫର୍ମରେ ଦଳ ବାନ୍ଧି ବୁଲି 'ଆମର ଦାବି ପୂରଣ ହେଉ' ବୋଲି ଧ୍ୱନି ଦେଉଥାନ୍ତି । କ'ଣ ହେଲା କେଜାଣି ଆମ ଗାଡ଼ି ଆସି ପହଞ୍ଚିବା ସଙ୍ଗେସଙ୍ଗେ ହାଉକିନା ଗୋଟାଏ ଶବ୍ଦରେ କାନ ଫାଟିଗଲା ଓ ହଠାତ୍ ଷ୍ଟେସନ ଘରୁ ନିଆଁ ବାହାରିଲା । ସଶସ୍ତ୍ର ପୁଲିସ୍ ଆସି ପହଞ୍ଚିଯାଇଥାନ୍ତି । ଥରେ ଦୁଇଥର ଗୁଳି ଫୁଟିବାର ଶବ୍ଦ ହେଲା । ଲୁହବୁହା ଗ୍ୟାସ ବୋମା ମଧ୍ୟ ଚାରି ପାଞ୍ଚଟା ଫୁଟିଲା ।

ସେତେବେଳକୁ ଆମ କାମରାର ଛଦ୍ମ ପୁଲିସ୍ ଅଫିସର ଆମ ଦୁଇଟା ଯାକ ଦୁଆର ଭିତରପଟୁ କିଲିଦେଇ ଅନାଶକ୍ତ ଭାବେ ତାଙ୍କ ବହି ପଢ଼ାରେ ଲାଗିଥାନ୍ତି । ଝରକାର କାଠ କଳଣି ବନ୍ଦ କରିଦେଇଥାନ୍ତି । ତଥାପି ଲୁହବୁହା ଗ୍ୟାସ ଆମ ବଖରାରେ ପଶିବାରୁ ମୋର ଓ ସଙ୍ଗିମାନଙ୍କ ଆଖିରୁ ଲୁହ ବୋହୁଥାଏ । ମୋତେ ଜଣାଯାଉଥାଏ, ମୁଁ ଅନ୍ଧ ହୋଇ-ଯାଇଛି । ମୁଁ ଗୋଟିଏ କୁଣରେ ଜାକିଜୁକି ହୋଇ ବସି ଆଖି ପୋଛୁଥାଏ । ଏହି ସମୟରେ ଆମ କାମରାର ପଛ ପଟ ଦୁଆରରେ ଘୋର ଶବ୍ଦ ହେଲା । ଜଣେ ପାଟି କରୁଥାଏ, ମୋତେ ରକ୍ଷାକର, ମୋତେ ରକ୍ଷା କର । ଛଦ୍ମ ପୁଲିସ ସାବଧାନ ହୋଇ ରହିବାକୁ ଆମକୁ ଇସାରା ଦେଇ ଦୁଆର ଫିଟାଇଦେଇ ଦୁଆରେ ଆଗୁଳି ଠିଆ ହେଲେ ଏବଂ ପାଟି କରୁଥିବା ଲୋକଙ୍କ ସଙ୍ଗେ କଥାବାର୍ତ୍ତା ହେଲେ । ସେମାନେ କଲିକତା ଯିବାକୁ ଫାଷ୍ଟକ୍ଲାସ ଟିକଟ

କରଥାନ୍ତି ବୋଲି କହିଲେ । ଷ୍ଟେସନ ପଣ୍ଟୁ ପଶି ନ ପାରି ପଛଦବାଟେ ଆସିଛନ୍ତି । ଅନୁଗ୍ରହ କରି ବସିବାକୁ ଟିକିଏ ଜାଗା ଦେବାକୁ ସେମାନେ କାକୁତି ମିନତି କରୁଥାନ୍ତି । ଛଦ୍ମ ପୁଲିସ ଆପତ୍ତି ନ କରି ସେମାନଙ୍କୁ ଆସିବାକୁ ଦେଲେ । ବାବୁଜୀ ଯେଉଁ ଚାରିଜଣ ଗୁଣ୍ଡାଙ୍କ ଉପରେ ଆହ୍ଲାବାଦଠାରେ ସନ୍ଦେହ କରିଥିଲେ ଓ ଯେଉଁ ଚାରିଜଣଙ୍କ ନାମରେ ବଙ୍ଗ ସରକାରଙ୍କ ଅଫିସର ଏତଲା ଦେଇଥିଲେ, ଏମାନେ ସେଇ ଚାରିଜଣ । ବାବୁଜୀ ନିର୍ଲିପ୍ତ ଭାବେ ସେମାନଙ୍କ ଉପରେ ଦୃଷ୍ଟି ରଖି ବସିଥାନ୍ତି । ବାବୁଜୀ ଛ' ଫୁଟ ଉଚ୍ଚ ମର୍ଦ୍ଦ । ତାଙ୍କର କୃଷ୍ଣ ଶ୍ମଶ୍ରୁମଣ୍ଡିତ ମୁଖରୁ ଗୋଟାଏ କମିତ ତେଜ ସବୁବେଳେ ବାହାରେ ଯେ, ମଣିଷ ତାଙ୍କୁ ଦେଖିଲେ ଶଙ୍କିଯାଏ । ତାଙ୍କ ମାଂସପେଶୀପୁଷ୍ଟ ବାହୁ ଦୁଇଟିରେ ସିଂହର ବଳ ବୋଲି ମୋର ଧାରଣା ହୋଇଥିଲା ; ଏହାର ପ୍ରମାଣ ମୁଁ ତାଙ୍କର ମୁହଁରୁ ପାଇଥିଲି କୁମ୍ଭମେଳାରେ ସେ ମୋତେ ଉଦ୍ଧାର କରିଥିବା ଘଟଣାର ବିବରଣୀରୁ । ତାଙ୍କ ପ୍ରଶସ୍ତ ଲଲାଟରେ କୌଣସି ଭୟର ଛାପ କେବେହେଲେ ପଡ଼ିବାର ନୁହେଁ । ତାଙ୍କ ଆଖିରେ ଘୃଣା ବା ବିରକ୍ତିର ସଙ୍କେତ ବି ଦିଶୁନଥାଏ । କିନ୍ତୁ ବଙ୍ଗ ସରକାରଙ୍କ ଉଚ୍ଚ ଅଫିସରଙ୍କ ମୁହଁରେ ଘୃଣା, ଅସୂୟା, ଆଶଙ୍କା ଓ ଭୟ ଯୁଗପତ୍ ଖେଳିଯାଉଥାଏ । ସେ ଭୟ ଓ ଆତଙ୍କରେ 'ଓଃ' ବୋଲି ଚିତ୍କାର କରି ବେହୋସ ହେଲା ପରି ତାଙ୍କ ବସିବା ସିଟ୍‌ରେ ଢଳିପଡ଼ିଲେ । ବାବୁଜୀ ତାଙ୍କ ପାଖକୁ ଘୁଞ୍ଚିଯାଇ ତାଙ୍କୁ ଧରି ବସାଇଲେ ଓ ନିଶ୍ଚିନ୍ତ ହୋଇ ରହିବାକୁ କହିଲେ । ସେ ଆଶ୍ୱାସନା ଦେଲେ ଯେ, ଏମାନେ ଯଦି ପ୍ରକୃତରେ ଗୁଣ୍ଡା ହୋଇଥାନ୍ତି, ତେବେ ତାଙ୍କର ଚାରିଜଣଙ୍କୁ ଆମେ ତିନିଜଣ ଥାଇଁ । ଗୁଣ୍ଡାମାନେ କିଛି କରିପାରିବେ ନାହିଁ । ଅଫିସରଙ୍କ ସ୍ତ୍ରୀ ମୋତେ ଜାବୁଡ଼ି ଧରି ବସିଲେ, କିନ୍ତୁ ସେ ନିଜ ସ୍ୱାମୀଙ୍କ ପରି ଏକାବେଳେକେ ଭାଙ୍ଗି ପଡ଼ି ନ ଥାନ୍ତି । ଛଦ୍ମ ପୁଲିସ ଅଫିସର ଆମ ଆଡ଼େ ଆଦୌ ଦୃଷ୍ଟି ନ ଦେଇ ଧରି ରହି ଚାରିଜଣ ଯାକ ଆଗନ୍ତୁକଙ୍କୁ ପଚାରିଲେ, "ଆପଣମାନେ କ'ଣ ଏଇ ଧାନବାଦଠାରୁ ଗାଡ଼ିରେ ଚଢ଼ିଲେ ?"

ଆଗନ୍ତୁକଙ୍କ ଭିତରୁ ଜଣେ କହିପକାଇଲେ, ହଁ ; ଆଉ ଜଣେ ପ୍ରତିବାଦ କଲେ "ନା, ଆମେ ଦିଲ୍ଲୀରୁ ଆସୁଛୁ ।" ପୁଲିସ ଅଫିସର ଟିକିଏ ମୁରୁକି ହସି କହିଲେ, "ମୁଁ ଜାଣେ, ଆପଣମାନେ ଆହ୍ଲାବାଦରୁ ଆସୁଛନ୍ତି । ଏ ଗାଡ଼ି ଆହ୍ଲାବାଦ ଷ୍ଟେସନରେ ପହଞ୍ଚିବା ପୂର୍ବରୁ ମୁଁ ଆପଣମାନଙ୍କୁ ଆହ୍ଲାବାଦ ଷ୍ଟେସନର ୫ ନମ୍ବର ପ୍ଲାଟଫର୍ମରେ ଦେଖିଛି । ଆଚ୍ଛା, ଆପଣଙ୍କ ଟିକେଟ୍ ମୋତେ ଦେଖାଇପାରିବେ କି ?" ଆଗନ୍ତୁକଙ୍କ ଭିତରୁ ଆଉ ଜଣେ ବାହାରିପଡ଼ିଲେ, "ଆପଣ କ'ଣ ରେଲବାଇ ଅଫିସର ? ଆମ ଟିକେଟ୍ ଦେଖିବାକୁ ଆପଣଙ୍କର କି ଅଧିକାର ?" ପୁଲିସ ଅଫିସର କହିଲେ, 'ଆଚ୍ଛା, ସେ କଥା ତ ପରେ ବୁଝାଯିବ । ବର୍ତ୍ତମାନ ଆପଣମାନେ ପାଖରେ କିଛି ଅସ୍ତ୍ର ଶସ୍ତ୍ର ରଖିଛନ୍ତି କି ନାହିଁ, ଦେଖାଯାଉ ।' ଏହା କହି ସେ ସାଙ୍ଗେ ସାଙ୍ଗେ ଜଣକର ପ୍ୟାଣ୍ଟ ପକେଟରେ ହାତ ଦେବା ମାତ୍ରେ, ଆଉ ତିନିଜଣ ଉଠିପଡ଼ି ପୁଲିସ ଅଫିସରଙ୍କୁ ଆକ୍ରମଣ କରିବାକୁ ବସନ୍ତେ, ଆଖି ପିଛୁଳାକେ

ବାବୁଜୀ ଉଠି ପଡ଼ି ତିନିଜଣ ଯାକଙ୍କୁ ଗୋଟାଏ ହାତରେ ସିଟ୍ ଉପରେ ବସାଇଦେଲେ । ବାବୁଜୀଙ୍କ ହାତର ବଳ କଷିନେଇ ବୋଧହୁଏ ଆଗନ୍ତୁକମାନେ ଦବିଗଲେ । ତନ୍ମଧ୍ୟ ଜଣଙ୍କ ପ୍ୟାଣ୍ଟ ପକେଟ୍‌ରୁ ଖୋଲରେ ଥିବା ଗୋଟିଏ ଗୁପ୍ତ ଛୁରି ବାହାରିଲା । ତିନିଜଣ-ଯାକଙ୍କ ଖାନତାଲସି ପରେ ପୁଲିସ ଅଫିସର ଛୁରିଟି ଫିଟାଇ ଦେଖି କହିଲେ, 'ବେଶ୍ ଅସ୍ତ୍ରଟିଏ ତ ! ଏହାକୁ କେତେଜଣଙ୍କ ଉପରେ ପରୀକ୍ଷା କଲେଣି ? ବୋଧହୁଏ ଏହାର ପରୀକ୍ଷା ହୋଇନାହିଁ ; ହୋଇଥିଲେ ତ ସାଙ୍ଗେ ସାଙ୍ଗେ ମୋ ଉପରେ ପରୀକ୍ଷା କରିଦେଇଥାନ୍ତେ । ଆଚ୍ଛା, ଆପଣମାନେ ନିଶ୍ଚିନ୍ତ ହୋଇ ବସନ୍ତୁ । ମୋ ପାଖରେ ଯାହା ଅଛି ଦେଖିଲେ ବୋଧ ହୁଏ ଅଧିକ ପ୍ରକୃତିସ୍ଥ ହେବେ ।" ଏହା କହି ସେ ଛୁରିଟି ପକେଟରେ ପୂରାଇଲେ ଓ ନିଜ ପ୍ୟାଣ୍ଟ ପକେଟରୁ ଗୋଟିଏ ପିସ୍ତଲ କାଢ଼ି ଦେଖାଇ କହିଲେ, "ଟିକିଏ ଗୋଳମାଳ କଲେ ଏଇଟା ଚାଲିବ ; ଛ'ଟା ଗୁଳି ଅଛି । ଆପଣମାନେ ମୋଟେ ତିନିଜଣ ।" ତିନିଜଣଯାକ ଯୁବକ ଯେଉଁ ପରିମାଣରେ ଦବିଗଲେ, ବଙ୍ଗ ସରକାରଙ୍କ ଉଚ୍ଚ ଅଫିସର ସେହି ପରିମାଣରେ ତେଜି ଗଲେ ଓ ପୂର୍ବ ପରି ବଡ଼ଲୋକ ଦେଖାଇ ଛଦ୍ମ ପୁଲିସ ଅଫିସରଙ୍କୁ କହିଲେ, "ଆପଣଙ୍କୁ ଧନ୍ୟବାଦ । ମୁଁ ଆପଣଙ୍କ ସାହାଯ୍ୟ ନିମନ୍ତେ ପୁରସ୍କାର ଦେବାକୁ ଚାହେଁ ।" ପୁଲିସ ଅଫିସର କହିଲେ, "ଧନ୍ୟବାଦ, ତାହା ପଛକୁ ରହୁ ।" ଏହା କହି ସେ ବାବୁଜୀଙ୍କ ଆଡ଼କୁ ଚାହିଁ ଟିକିଏ ମୁରୁକି ହସିଲେ ।

ଏତେବେଳକୁ ଷ୍ଟେସନର ଗୋଳମାଳ ଅଣ୍ଡା ପଡ଼ିଯାଇଥାଏ । ଧର୍ମଘଟକାରୀମାନେ ପୁଲିସ ପ୍ରତାପରେ ଛତ୍ରଭଙ୍ଗ ଦେଇଥାନ୍ତି । ତାଙ୍କ ଭିତରୁ କେତେଜଣ ଗିରଫ ବି ହୋଇ-ଥାନ୍ତି । ରେଲ୍ ଲାଇନ୍‌ର ପ୍ରତିବନ୍ଧକ ଦୂର ହେବା ପରେ ଆମ ଗାଡ଼ି ଛାଡ଼ିବାକୁ ଆରମ୍ଭ କଲା । ସାଙ୍ଗେ ସାଙ୍ଗେ ଚାରି ଜଣଯାକ ଗୁଣ୍ଡା ଠିଆ ହୋଇପଡ଼ିଲେ ଏବଂ ଚଳନ୍ତା ଗାଡ଼ିରୁ ଓହ୍ଲାଇ ପଡ଼ିବାକୁ ଉଦ୍ୟତ ହେଲେ । ସି· ଆଇ· ଡି· ଅଫିସର ତାଙ୍କୁ ଚେତାଇ ଦେଲେ ଯେ, ସେମାନେ ଜବରଦସ୍ତି ଯିବାକୁ ବାହାରିଲେ ସେ ବାଧ୍ୟ ହୋଇ ଗୁଳି କରି ସେମାନଙ୍କୁ ଅକର୍ମଣ୍ୟ କରିଦେବେ । ଏହା ପରେ କେଉଁ ଷ୍ଟେସନରେ ଗାଡ଼ି ରହିବ ସେଇଠାରେ ସେମାନଙ୍କର ଟିକଟ୍ ଚେକ କରାଯିବ ଏବଂ ସେମାନେ ଆହ୍ଲାବାଦରୁ ଏ ପର୍ଯ୍ୟନ୍ତ କାହାର ପିଚ୍ଛୁ ଧରିଛନ୍ତି ଅନୁସନ୍ଧାନ ହେବ । ଚାରିଜଣଯାକ ଚୁପ ହୋଇ ବସିଲେ ।

ଏହା ପରେ ଯେଉଁ ଷ୍ଟେସନରେ ଗାଡ଼ି ଅଟକିଲା ସେଠାରେ ରେଲବାଇ ଅଫିସରଙ୍କୁ ଡକା ହେଲା । ରେଲବାଇ ଅଫିସର ଟିକଟ ମାଗିଲେ । ଅନଧିକାର ପ୍ରବେଶକାରୀ ଚାରିଜଣ ଯାକ ଜବାବ ଦେଲେ ଯେ, ସେମାନେ ଆହ୍ଲାବାଦରୁ ଫାଷ୍ଟକ୍ଲାସ ଟିକଟ କରି କଲିକତା ଯାଉଥିଲେ । ଧାନବାଦ ଷ୍ଟେସନରେ ଗୋଳମାଳରେ ସେମାନଙ୍କ ଟଙ୍କା ପଇସା ଓ ଟିକଟ୍ ଲୁଟ୍ ହୋଇଯାଇଛି । କଲିକତାରେ ସେମାନଙ୍କର ଜରୁରି କାମ ; ଯଦି ତାଙ୍କୁ ବାଟରେ ଅଟକାଇଦିଆଯାଏ ତେବେ ସେମାନେ କ୍ଷତିପୂରଣ ଦାବି କରିବେ । ସାଦା ପୋଷାକ ପିନ୍ଧି-ଥିବା ଆମ ସଙ୍ଗୀ, ପୁଲିସ ଅଫିସରଙ୍କୁ ନିଜର ଇଜାହାର ଦେଲେ ଏବଂ ଅନୁରୋଧ କଲେ ଯେ

ତାଙ୍କ ସଙ୍ଗେ ଚାରିଜଣ ଯାକକୁ କଲିକତା ଯିବାକୁ ଦିଆଯାଉ । ସେଇଠାରେ ଏମାନଙ୍କର ବିନା ଟିକେଟ୍‌ରେ ଯାତ୍ରା କରିବା ଅଭିଯୋଗ ଓ ଏମାନେ ମାରାତ୍ମକ ଅସ୍ତ୍ର ଧରି ଯାଉଥିବା ଅଭିଯୋଗ ମଧ୍ୟ କରାଯିବ । ସେଇଆ ହେଲା ।

ପ୍ରାୟ ଦିନ ବାରଟା ବେଳେ ଆମ ଗାଡ଼ି ହାଵଡ଼ା ଷ୍ଟେସନରେ ପଶିଲା । ବଙ୍ଗ ସରକାରଙ୍କ ଅଫିସରଙ୍କୁ ଷ୍ଟେସନ ଥାନାରେ ଟିକିଏ ଅପେକ୍ଷା କରିବାକୁ କୁହାଯିବାରେ ତାଙ୍କର ଅଫିସରେ ଜରୁର କାମ ଅଛି ବୋଲି ସେ ବାହାରୁଥିଲେ । ଦେହରିଠାରୁ ଆସିଥିବା ପୁଲିସ ଅଫିସରଙ୍କ ଯୋଗୁ ସେ ରହିଲେ । ସମସ୍ତଙ୍କଠାରୁ ଇଜାହାର ନିଆଗଲା । ସେତେବେଳକୁ ଆହ୍ଲାବାଦ ଷ୍ଟେସନରୁ ଟେଲିଫୋନ ଆସିଥାଏ ଯେ, ଆମ ଚାରିଜଣଙ୍କର ଚାରିଖଣ୍ଡ ଫାଷ୍ଟକ୍ଲାସ ଟିକେଟ୍ ବ୍ୟତୀତ ଅନ୍ୟ କୌଣସି ଫାଷ୍ଟକ୍ଲାସ ଟିକେଟ୍ ଏ ଗାଡ଼ି ପାଇଁ କଟା ହୋଇନାହିଁ । ଆମ ସାଥିରେ ଆସିଥିବା ପୁଲିସ ଅଫିସର ଛୁରିଟି ଥାନାରେ ଜମା ଦେଲେ । ଚାରିଜଣଯାକଙ୍କୁ ହାଜତରେ ରଖାଗଲା । ବାବୁଜୀ ଆମର ପୁରୀ ଯିବା କଥା କହିବାରେ, ପୁରୀରେ ପହଞ୍ଚି ଆମର ଠିକଣା କଲିକତା ପୁଲିସ ପାଖକୁ ପଠାଇ ଦେବା ନିମନ୍ତେ ତାଙ୍କଠାରୁ ଲିଖିତ ପ୍ରତିଶ୍ରୁତି ନେଇ, ଆମକୁ ଛାଡ଼ିଦିଆଗଲା ।

କଲିକତାର ପୁଲିସ ଷ୍ଟେସନରୁ ବାବୁଜୀ ଓ ମୁଁ ଆସି ହାଵଡ଼ା ଷ୍ଟେସନରେ ପହଞ୍ଚିଲା ବେଳକୁ ବେଳ ଗଡ଼ିଯାଇଥାଏ । ସାମାନ୍ୟ ଫଳାହାର କରିବା ପରେ ସେ ମୋତେ କହିଲେ, 'ତାରା ! ବର୍ତ୍ତମାନ ଗୋଟାଏ ପାସେଞ୍ଜର ଗାଡ଼ି ପୁରୀ ଆଡ଼କୁ ଯିବ । ଚାଲ, ଆମେ ସେଇଥିରେ ବସିପଡ଼ିବା । ଏଠାରେ ଅପେକ୍ଷା କରି ରହିବା ଅକାରଣ । ସଂଧ୍ୟାବେଳର ଗାଡ଼ିରେ ଗଲେ ସକାଳ ୯ଟାରେ ପୁରୀରେ ପହଞ୍ଚିବା । ବର୍ତ୍ତମାନର ପାସେଞ୍ଜର ଗାଡ଼ିରେ ଗଲେ କାଲି ଓପରଓଳି ପହଞ୍ଚିବା ।' ମୁଁ ମୁଣ୍ଡ ଟୁଙ୍ଗାରି ହଁ କଲି । ମୋର ବା ଉଚ୍ଛୁର ସଅଳରେ ଯାଏ ଆସେ କେତେ ? ତେବେ ଶୀଘ୍ର ହାଵଡ଼ା ଷ୍ଟେସନ ବିଶ୍ରାମାଗାରର ଗହଳିରୁ ଉଦ୍ଧାର ପାଇ ରେଳ ଡବାରେ ବିଶ୍ରାମ କରିବାକୁ ମନ ହେଉଥାଏ ।

ଆମକୁ ଭଲ ଡବାଟିଏ ମିଳିଗଲା । ଖୁବ୍ ଶ୍ରେଷ୍ଠ ଡବା, ଓପରେ ଗୋଟିଏ ବେଞ୍ଚ, ତଳେ ଗୋଟିଏ ବେଞ୍ଚ୍ । ମୁଁ ଗୋଟିଏ ପାଖକୁ ବସିଲି, ବାବୁଜୀ ମୋ' ଠାରୁ ଦୂରରେ ଆର ପାଖେ ବସି ବାହାରକୁ ଚାହିଁ ରହିଥାନ୍ତି । ମୋ ସଙ୍ଗେ କଥାବାର୍ତ୍ତା କରିବାକୁ ଆଦୌ ଆଗ୍ରହୀ ହେଉନଥାନ୍ତି । ମୋର କିନ୍ତୁ ମନ ହେଉଥାଏ, ତାଙ୍କ ସଙ୍ଗେ କଥାବାର୍ତ୍ତା ହେବାକୁ । କ'ଣ କେଜାଣି ବିଗିଡ଼ିବେ ବୋଲି ଶଂକା ରହୁଥାଏ । ପାସେଞ୍ଜର ଗାଡ଼ି ୧୦ ମିନିଟ୍‌ରେ ଗୋଟାଏ ଗୋଟାଏ ଷ୍ଟେସନ୍‌ରେ ଅଟକୁଥାଏ । ଦୁଇଟା ଷ୍ଟେସନରେ ଗାଡ଼ି ଅଟକି ଛାଡ଼ିବା ପରେ ମୁଁ ତୁନି ହୋଇ ରହି ନ ପାରି କଳି କଳି ପରି ପଚାରିଲି, "ମୁଁ ଆପଣଙ୍କର ଭଉଣୀ ବୋଲି ପୁଲିସ ଥାନାରେ କାହିଁକି ପରିଚୟ ଦେଲେ ?" ସେ ବିବ୍ରତ ହୋଇ ମୋ ଆଡ଼କୁ ଯେପରି ଚାହିଁଲେ ତାହା ଦେଖି ମୁଁ ମନେ ମନେ ହସିଲି । ସେ ଦୋଷ କଲା ପରି କହିଲେ, "ତୁମେ କ'ଣ ସେଥିଯୋଗୁଁ ଦୁଃଖ କଲ ତାରା ? ମୁଁ ଜାଣେ, ତୁମେ ଛତ୍ରୀ, ମୋର ଜାତି ତୁମ

ତୁଳନାରେ ଶ୍ରେଷ୍ଠ । କିନ୍ତୁ ଜାତିଭେଦକୁ ମୁଁ ମାନେ ନାହିଁ . ମଣିଷ ଜାତିର ସମସ୍ତେ ସମାନ ବୋଲି ମୁଁ ମନେ କରେ । ସେଇଥିପାଇଁ ଭଉଣୀ ବୋଲି କହିଦେଲି । ଏଥିରେ ଯଦି ତୁମର ଆପତ୍ତି, ତେବେ ଆଉ କ'ଣ ବୋଲି ପରିଚୟ ଦେବ ? ଏକ ଗୁରୁଙ୍କୁ ମାନୁଥିବା ସ୍ଥଳେ ଆମେ କ'ଣ ଗୁରୁଭାଇ ଗୁରୁଭଉଣୀ ନୁହେଁ ।"

ସ୍ୱାମୀଙ୍କର ଏଭଳି ବୁଝାମଣା ଶୁଣି ମୁଁ ଲଜ୍ଜିତ ହେଲି ଯେତିକି, ମନେ ମନେ ଆମୋଦିତ ହେଲି ସେତିକି ? ଅତି ସରଳ ଲୋକ । ମୁଁ କହିଲି କ'ଣ ସେ ବୁଝିଲେ କ'ଣ ? କ'ଣ ଉତ୍ତର ଦେବି, ଚିନ୍ତାକରୁଛି, ସେ ତାଙ୍କ ଆଡ଼ୁ ପୁଣି ଆରମ୍ଭ କଲେ, "ଯାହା ହେଉ, ତୁମର ଏ କଥା ଶୁଣି ମୋର ଗୋଟାଏ ବଡ଼ ଲାଭ ହେଲା । ଜାତି ଭେଦକୁ ତୁମେ ମାନ—ମାନିବାର କଥା—ସୁତରାଂ ଦେଖିବାକୁ ହେବ ତୁମର ନିଜ ଜାତିର ଗୋଟିଏ ଉପଯୁକ୍ତ ପାତ୍ର ଯେପରି ମିଳେ ।"

ଏଥର ମୁଁ କହିଲି, "ମୁଁ ଦେଖୁଛି ଆପଣ ସବୁବେଳେ ମୋର ବିବାହ ବିଷୟରେ ଭାବି ହେଉଛନ୍ତି । କିନ୍ତୁ ଏ ବିଷୟରେ ମୋର ନିଜ ମନକୁ ତ ବିଗୁରିବାକୁ ନିଆଯିବା ଉଚିତ ।" ଏହା କହି ମୁଁ ନ ଜାଣିଲି ପରି ତାଙ୍କ ଆଡ଼କୁ ଟିକିଏ ଘୁଞ୍ଚିଗଲି, ତଥାପି ଆମ ଦୁହିଙ୍କ ଭିତରେ ଦୁଇ ହାତରୁ ଅଧିକ ବ୍ୟବଧାନ ଥାଏ । ସେ ଯେପରି ଇତସ୍ତତ ହୋଇଗଲେ, ଆଉ ଜାଗା ଥିଲେ, ସେ ଆଉ ଟିକିଏ ଦୂରକୁ ଘୁଞ୍ଚିଯାଇଥାନ୍ତେ । ଜାଗା ତ ନ ଥିଲା, ମୋତେ ଘୁଞ୍ଚିକରି ବସ ବୋଲି କହିବାର ବି ସାହସ ନ ଥାଏ । ସେ ସନ୍ତର୍ପଣରେ କହିଲେ, "ନିଶ୍ଚୟ ନିଶ୍ଚୟ, ଆଗ ଗୋଟିଏ ଯୋଡ଼ିଏ ପାତ୍ରଙ୍କ ଉପରେ ଆଖି ପକାଏ । ସେମାନଙ୍କର ପରିଚୟ ପାଇ ତୁମର ପସନ୍ଦ ଅନୁସାରେ ଜଣଙ୍କୁ ଠିକ୍ କରିବା । ମୁଁ ତରତର ହେଉନାହିଁ । କିନ୍ତୁ ଗୁରୁଦେବଙ୍କ ଆଜ୍ଞା, ତୁମକୁ ସତ୍ପାତ୍ରସ୍ଥ କରିବାକୁ ହେବ ।"

ମୁଁ ତୁନି ହେଲି । ସେତେବେଳକୁ ଆଉ ଗୋଟାଏ ଷ୍ଟେସନ ବି ହୋଇଯାଇଥାଏ । ହଠାତ୍ ଜଣେ ଲୋକ ଆମ ସେ ଡବାର ଦୁଆର ଫିଟାଇ ଭିତରକୁ ପଶିଲେ ଓ ବଙ୍ଗଳାରେ କହିଲେ, "ଆପଣଙ୍କର ରିଜର୍ଭ ଅଛି ବୋଧହୁଏ । ଯାହାହେଉ ଆପଣଙ୍କର ଆପତ୍ତି ନ ଥିଲେ, ମୁଁ ଟିକିଏ ବସିପାରେ । ସଂଧ୍ୟା ପୂର୍ବରୁ ମୁଁ ଓହ୍ଲାଇଯିବି । ରିଜର୍ଭେସନ୍ ତ ରାତି ପାଇଁ ।" ଏହା କହି ସେ ସଂକୋଚରେ ମୋର ପାଖରେ ଠିଆ ହୋଇ ରହିଲେ । ମୁଁ ଜାଣିଲି, ସେ ବୁଝିଛନ୍ତି, ମୁଁ ଟିକିଏ ଘୁଞ୍ଚିଗଲେ ସେ ବସିବେ । ବାବୁଜୀ ମଧ୍ୟ ସେଇ ଅନୁମାନ କରି ମୋତେ କହିଲେ, "ତାରା ! ଏ ଆଡ଼କୁ ଟିକିଏ ଘୁଞ୍ଚି ଆସ, ଭଦ୍ରଲୋକ ବସିବେ ।" ଆଗନ୍ତୁକ ବାସ୍ତବିକ ଭଦ୍ରଲୋକ, ଆମ ଆଡ଼କୁ ଟିକିଏ ଗୁହିଁ 'ସେ ସିଟ୍ କଡ଼ରେ ଟିକିଏ ଲେସି ହେଲା ପରି ବସିଲେ । ମୁଁ ଲାଗିଗଲି ଏକାବେଳକେ ବାବୁଜୀଙ୍କ ପାଖକୁ ବାଜିନବାଜ ହୋଇ । ବାବୁଜୀ ଠିଆ ହୋଇ ପଡ଼ି ମୋତେ କଡ଼କୁ ବସିବାକୁ କହିଲେ ଓ ମୋର ଓ ଆଗନ୍ତୁକଙ୍କ ମଝିରେ ନିଜେ ବସି ତାଙ୍କ ସଙ୍ଗେ ଆଳାପ ଆରମ୍ଭ କରିଦେଲେ । ସେ ଏତେ ପ୍ରାଞ୍ଜଳ ଭାବେ ବଙ୍ଗଳା କହିପାରନ୍ତି ବୋଲି ମୁଁ ଜାଣିନଥିଲି । ଉଭୟଙ୍କର ଆଳାପ ଖୁବ ଘନିଷ୍ଠଭାବେ

ଗୃହିଲି । ଆମ ଦେଶର ସଂସ୍କୃତି ବର୍ତ୍ତମାନର ରାଜନୀତିକ ଅବସ୍ଥା, କଲିକତାରେ ଲୋକଙ୍କର ସୁଖଦୁଃଖ ସବୁ ପଡ଼ୁଥାଏ । ମୁଁ ଭଲକରି ବୁଝିପାରୁନଥାଏ ; କେବଳ ମଝିରେ ମଝିରେ ବାବୁଜୀଙ୍କ ଆଡ଼କୁ ତାଙ୍କ ଅଜାଣତରେ ଗୃହିଁ ମନେ ମନେ ଆନନ୍ଦ ଅନୁଭବ କରୁଥାଏ । ଆଗନ୍ତୁକ ଉଚ୍ଚ-ଶିକ୍ଷିତ ବୋଲି ପରିଷ୍କାର ଜଣାପଡ଼ୁଥାଏ, ଅଥଚ ସେ କେତେ ସହଜରେ ତାଙ୍କୁ ପ୍ରଭାବିତ କରିପାରୁଛନ୍ତି । ତାଙ୍କର ବ୍ୟକ୍ତିତ୍ୱରେ ଯେତେ ଯେପରି ମୋର ଅଂଶ ଅଛି ବୋଲି ମୋର ମନେ ହେଉଥାଏ ।

ପ୍ରାୟ ଅଧଘଣ୍ଟାଏ ସମୟ ସେ ଆମ ଗାଡ଼ିରେ ରହି ଓହ୍ଲାଇଗଲେ । ତାଙ୍କର ଯେଉଁ ଷ୍ଟେସନରେ ଓହ୍ଲାଇବାର କଥା, ସେ ଷ୍ଟେସନ ନିକଟ ହୋଇଯିବାରୁ ସେ କହିଲେ, "ଆପଣଙ୍କ ସଙ୍ଗେ ଦୁଇପଦ କଥା ହେବା ବେଳୁ ତ ମୁଁ ଆପଣଙ୍କୁ ଚହ୍ନିନେଇଛି । ଆପଣ ଆମରି ପରି ସଂସାରୀ ହେଲେହେଁ ଆମଠାରୁ ଖୁବ ଉଚ୍ଚରେ । ଏତେ ଅଳ୍ପବୟସ ଅଥଚ ଆପଣଙ୍କ ମୁହଁରୁ ସାତ୍ତ୍ୱିକତାର ଯେଉଁ ତେଜ ଦେଖୁଛି ତାହା ମୋତେ ମୁଗ୍‌ଧ କରୁଛି । ମୁଁ ଆପଣଙ୍କଠାରୁ ବୟସରେ ବଡ଼ ଓ ବ୍ରାହ୍ମଣ । ମୁଁ ଆଶୀର୍ବାଦ କରୁଛି ଆପଣ ଦୁହିଙ୍କର ଜୀବନ ସଦାନନ୍ଦମୟ ହେଉ । ଆପଣଙ୍କ ପତ୍ନୀଙ୍କ ବୟସର ଗୋଟିଏ ଝିଅ ମୋର ଘରେ ଅଛି । ମୁଁ ସ୍ତ୍ରୀଙ୍କୁ ସେଇ ଦୃଷ୍ଟିରେ ଦେଖି ଆଶୀର୍ବାଦ କରୁଛି; ସେ ପୁତ୍ରବତୀ ଓ ସୌଭାଗ୍ୟବତୀ ହୁଅନ୍ତୁ ।" ଗାଡ଼ି ଷ୍ଟେସନରେ ଠିଆ ହେଉ ନ ହେଉ ସେ ଓହ୍ଲାଇଗଲେ; ଘରକୁ ଯିବାକୁ ତାଙ୍କୁ କୋଶେ ବାଟ ଗୃଲିବାକୁ ହେବ । ତାଙ୍କ କଥା ଶୁଣି ବାବୁଜୀଙ୍କ ମୁହଁରେ ଯେଉଁ ଭାବ ଖେଳି-ଗଲା ତାହା ସେ ଲକ୍ଷ୍ୟ କରିବାକୁ ସମୟ ପାଇଲେ ନାହିଁ । ମୁଁ କିନ୍ତୁ ପାଇଲି ଓ ଭିତରେ ଭିତରେ ଖୁବ୍ ଆମୋଦିତ ହେଲି । ମନେ ମନେ ବିଗୃରିଲି, ଆଉ ସହଜରେ ମୋତେ ଭଉଣୀ ବୋଲି ଚହ୍ଲାଇବେ ନାହିଁ । ଆମେ ଏକୁଟିଆ ହେଲା ପରେ ସେ ପୁଣି ବେଞ୍ଚର ଗୋଟିଏ କୂଣକୁ ଘୁଞ୍ଚି ବସିଲେ, ମୁହଁ ଲଜ୍ଜା ଓ ସଂକୋଚରେ ରଙ୍ଗ ହୋଇଯାଇଥାଏ । ଇଲେକ୍‌ଟ୍ରିକ ଆଲୁଅରେ ଖୁବ ସୁନ୍ଦର ବି ଦିଶୁଥାଏ । ତାଙ୍କ ମୁହଁକୁ ଦେଖି ମୋର ଅତୀତ କୁଆଡ଼େ ଆଡ଼େଇ ହୋଇଗଲା ଓ ଭବିଷ୍ୟତର ଯେଉଁ ଗୃରିଟି ବଙ୍ଗାଳୀ ଭଦ୍ରଲୋକ ମୋର ହୃଦୟରେ ପୋତି ଦେଇଗଲେ ତାହା ନିମିଷମାତ୍ରେ ମଞ୍ଜରି ଉଠିଲା । ମୋର ସେ ଭାବ ମୁଁ ଲୁଚ୍ଛାଇବାକୁ ଯଥାସମ୍ଭବ ଚେଷ୍ଟା କରି ମୁହଁକୁ ତଳକୁ ପୋତି ବସିଥାଏ ।

ଆଉ ଦୁଇ ଗୃରିଟା ଷ୍ଟେସନ ପରେ ଖଡ଼ଗପୁର ପଡ଼ିଲା । ସେ ପର୍ଯ୍ୟନ୍ତ ବାବୁଜୀ ଅନ୍ୟମନସ୍କ ହୋଇ ବସିଥାନ୍ତି । ମନେ ମନେ କ'ଣ ଭାବୁଥାନ୍ତି କେଜାଣି ? ମୁଁ ଭାବୁଥାଏ ତାଙ୍କରି କଥା । ଲଜ୍ଜାର କଥା, ସ୍ୱୀକାର କରୁଛି ଯେ ତାଙ୍କ କଥା ଭାବୁ ଭାବୁ ମୁଁ ମୋର ବାପ ମା ଓ ମାଙ୍କ ଠାରୁ ଅଧିକ ହିତାକାଂକ୍ଷୀ ଦାଦାଙ୍କୁ ପାସୋରିଦେଲି । ପ୍ରତାପବାବୁ ଓ ତାଙ୍କ ମାଙ୍କ ସ୍ମୃତି ତ ଏହ୍ଲାବାଦ ଛାଡ଼ିବାବେଳୁ ଯାଇଥାଏ । ଆଜି ମନେ ପକାଇ ସେମାନଙ୍କ କଥା ଉଲ୍ଲେଖ କରୁଛି । ତାହା ବି ସମ୍ଭବ ହେଉଛି ବାବୁଜୀଙ୍କଠାରୁ ବିଚ୍ଛିନ୍ନ ହେବାରୁ । ତାଙ୍କ ସଙ୍ଗେ ଭଗବାନଙ୍କ ଅନୁଗ୍ରହରୁ ଯେଉଁ ବର୍ଷ ଗୃରୋଟି କଟିଛି; ସେ ମଧ୍ୟରେ ମୁଁ କ୍ଷଣିଏ ଅନ୍ଧାରିଆ

ମାଟିଘରେ ଆଉ ମଧ୍ୟ ସ୍ୱର୍ଗରେ ଥିଲା ପରି ମନେ କରୁଥିଲି ଓ ସେ ସ୍ୱର୍ଗସୁଖରେ ମୋର ଦୁଃଖ ଶୋକ ସବୁ ପାସୋର ହୋଇଯାଇଥିଲା । ଆଜି ସେ ନାହାନ୍ତି; ବହୁତ ଦୁଃଖ କଷ୍ଟ ନୂଆ କରି ପୁଣି ଭୋଗିବାକୁ ପଡ଼ୁଛି କିନ୍ତୁ ଦୁଃଖରେ ଭାଜି ପଡ଼ିଲା ବେଳେ ସେ ଆସି ଆଗରେ ଠିଆ ହୋଇଯାଉଛନ୍ତି, ଦୁଃଖ ଦୁଃଖ ପରି ଲାଗୁନାହିଁ । ଛାଡ଼ ସେ କଥା । ବେଳେବେଳେ ବାଉଳି ହୋଇ କ'ଣ ସବୁଡ଼ାଏ ଲେଖିହୋଇଯାଉଛି ।...

ଖଡ଼ଗପୁରରେ ଆମେ ପହଞ୍ଚିଲାବେଳକୁ ରାତି ପ୍ରାୟ ଦ'ଘଡ଼ି । ପୂର୍ଣ୍ଣିମୀ ଜହ୍ନ ସଙ୍ଗେ ଷ୍ଟେସନର ଇଲେକ୍‌ଟ୍ରିକ ଆଲୁଅ ମିଶିଯାଇ ଚାରିଆଡ଼କୁ ଖୁବ୍ ସୁନ୍ଦର କରିଦେଇଥାଏ । ଗାଡ଼ି ଅଟକିବାରେ ବାବୁଜୀ ମୋ ଆଡ଼କୁ ଚାହିଁ—ବୋଧହୁଏ ବଙ୍ଗାଳୀ ଭଦ୍ରଲୋକଙ୍କ କଥାକୁ ଧାଖୁଲ କରୁଥିବାରୁ ସିଧା ମୋ ମୁହଁକୁ ଚାହିଁ ପାରୁନଥାନ୍ତି—ପଚାରିଲେ, "ତୁମକୁ ଭୋକ ହେବଣି । ଏଇଠାରେ କ'ଣ ଖାଇଦେବା । ମୁଁ ଯାଇ ଆଣନ୍ତି ଯେ, ତୁମକୁ ଏକୁଟିଆ ଛାଡ଼ି ଯିବାକୁ ମନ ହେଉନାହିଁ ।" ମୁଁ ମଧ୍ୟ ତାଙ୍କ ମୁହଁକୁ ସିଧା ନ ଚାହିଁ ଦୁଷ୍ଟାମି କରି ଜବାବ୍ ଦେଲି, "ମୋତେ କୁଆଡ଼େ ଚିରକାଳ ପାଇଁ ଛାଡ଼ିଦେଲେ ରକ୍ଷା ପାଆନ୍ତେ ବୋଲି ଭାବୁଛନ୍ତି; ୧୦।୧୫ ମିନଟ୍ କ'ଣ ମୁଁ ଏକୁଟିଆ ଏଠାରେ ରହିପାରିବି ନାହିଁ । ' ସେ ବୋଧହୁଏ ଟିକିଏ ବିରକ୍ତ ହୋଇ ଚାହିଁ ଦୁଆର ପାଖେ ଠିଆ ହେଲେ ଓ 'ହଉ ଯାଏଁ' ବୋଲି କହି ଗଲେ ମାତ୍ର ଦୁଇ ତିନ ମିନଟ୍ ପାଇଁ । ଖାଲି ହାତରେ ଫେରି ଆସିଲେ । ମୁଁ ପଚାରିଲି, "ପାଖରେ କ'ଣ ଦୋକାନ ପତ୍ର ନାହିଁ ?" ସେ କହିଲେ, "ଖୁବ୍ ପାଖରେ ଗୋଟିଏ ହିନ୍ଦୁସ୍ଥାନୀ ବ୍ରାହ୍ମଣଙ୍କର ଜଳଖିଆ ଦୋକାନ ଦେଖିଲି, ବରାଦ କରିଦେଇ ଆସିଲି ।"

ଗାଡ଼ି ଛାଡ଼ିବା ପୂର୍ବରୁ ଗୋଟିଏ ପତ୍ର ଠୁଙ୍ଗାରେ ଗୁଡ଼ାଏ ପୁରି, ମିଠା କେତୋଟି, ଓ ଆଳୁଭଜା ଦୋକାନୀ ଦେଇଗଲା । ମୁଁ ଠୁଙ୍ଗା ଫିଟାଇ ତାଙ୍କ ଆଗରେ ଥୋଇଲି ଓ ଯେ ଜଳଖିଆ ଆଣିଥିଲା ତାଙ୍କ ହାତକୁ ଆମ ଗିଲାସ ବଢ଼ାଇଦେଲି, ପିଇବା ପାଣି ପାଇଁ । ବାବୁଜୀ କହିଲେ, ଦୁଇଭାଗ କରିଦିଅ । ମୁଁ କହିଲି, "ଆପଣ ଆଗେ ବସନ୍ତୁ ମୁଁ ପରେ ସେଇଥିରୁ ଖାଇବି ।" ସେ କହିଲେ, "ନାଁ ନାଁ, ଏତେ ଗୁଡ଼ାଏ ଜିନିଷ ଉଚ୍ଛିଷ୍ଟ କରିଦେବା ଠିକ୍ ହେବ ନାହିଁ ।" ମୁଁ କିଛି ନ କହି ଆଡ଼େଇ ହୋଇ ବସିଲି ଓ ଖୁବ ତୁନି ତୁନି ମନକୁ ମନ କହିଦେଲା ପରି କହିପକାଇଲି, "ଭଉଣୀ ହେବାକୁ ବି ଦେବେ ନାହିଁ ।" ଶୁଭିଗଲା ନା କ'ଣ ! ସେ କିଛି ନ କହି ଗାଧୁଆ ଘରକୁ ଯାଇ ମୁହଁହାତ ଧୋଇଲେ ଓ ଦୁଇଚାରି ଖଣ୍ଡି ପୁରି କେତୋଟି ମିଠା ଓ ଆଳୁଭଜା ବାହାର କରି ଖାଇ ବସିଲେ । ତାଙ୍କର ସରିବା ପରେ ମୁଁ ସେହି ପତ୍ରକୁ କିଛି ଖାଦ୍ୟ ସାମଗ୍ରୀ ବାହାର କରି ଖାଇଲି । ଆଉ ଓଳିକର ସାମଗ୍ରୀ ବଳିଲା । ସେତକ ଭଲ କରି ବାନ୍ଧିବାନ୍ଧି ସାଇତିଦେଲି । ବାବୁଜୀ କହିଲେ, "ଚାରୋଟି ଟଙ୍କାରେ, ଦେଖୁଛ ଆମର ଦୁଇଦିନ ଚଳିଯିବ ।"

ଖାଇ ପିଇ ସାରିବା ପରେ ସେ ଗୋଟିଏ ଗ୍ରେଟ ସତରଂଜି ଓ ଖଣ୍ଡିଏ ତକିଆ ଉପର ସିଟ୍‌କୁ ପକାଇଦେଇ କହିଲେ, "ମୁଁ ଉପରକୁ ଯାଉଛି, ଶୋଇବି, ତୁମେ ବିଛଣା

ବସ୍ଥିର ଶୁଅ। ମୁଁ କହିଲି, "ରେଲ ବୋଲି କ'ଣ ସନ୍ଧ୍ୟାବେଳକୁ ନିଦ ମାଡ଼ିବ।" ସେ ପ୍ରତିବାଦ ନକରି ପୂର୍ବପରି ବେଞ୍ଚରେ ବସିଲେ। ଟିକିଏ ବସିବା ପରେ ସେ କହିଲେ, "ତାପ୍ତି! ସେ ବଙ୍ଗାଳୀ ଭଦ୍ରଲୋକଙ୍କ କଥା ଶୁଣିଲ ତ? ଏଇଥିପାଇଁ ମୁଁ ସବୁବେଳେ ଚିନ୍ତିତ ହେଉଛି, କିପରି ତୁମକୁ ସତ୍ପାତ୍ରସ୍ଥା କରିଦେଲେ, ନିଶ୍ଚିନ୍ତ ହେବି। ତୁମେ ବସ୍ଥିରୁଛ, ତୁମଠାରୁ ମୁକ୍ତି ପାଇବାକୁ ମୁଁ ଖୁବ୍ ବ୍ୟସ୍ତ। ମୋର ତ ଜୀବନରେ କୌଣସି ସଂକଳ୍ପ ନାହିଁ। ତୁମର ଦାଣ୍ଡଘରେ କିଛି ଦିନ କଟାଇଲେ ବି ମୋର କିଛି ଅସୁବିଧା ହେବନାହିଁ। ତୁମର ସଂସାରରେ ଚେର ଲାଗିଯିବା ପରେ ମୁଁ ମୋର ରାସ୍ତା ଧରିବି।" ମୁଁ କିଛି ଉତ୍ତର ଦେଲିନାହିଁ। ଆଜି ଭାବୁଛି, ସେଇ ତା କଲେ! ମୋ ସଂସାରରେ କୋଉ ଚେର ଲାଗିଗଲା ବୋଲି ଜାଣିଲେ ଯେ, ନିଃସଙ୍କୋଚରେ କୁଆଡ଼େ ଚାଲିଗଲେ। ଆଜି ଯେଉଁଠି ମୁଁ ଆଶ୍ରୟପାଇଛି, ଏଇ ସ୍ଥାନଟି ହେଲେ ଦେଖି ଯାଇଥାନ୍ତେ। ମୋ ବାପ ମାଙ୍କ ପାଖେ ମୁଁ ଅଳିଅଳି ଭାବେ ଚଳିବାର ଦେଖି ଯାଇଥାନ୍ତେ କି, ମୋ ପାଇଁ ମନରେ ଚିନ୍ତା ରହିନଥାନ୍ତା, ନିଜର ସାଧନାରେ ନିଶ୍ଚିନ୍ତ ମନରେ ଲାଗିଥାନ୍ତେ। ମୁଁ ଜଞ୍ଜାଳ ବଢ଼ାଇଲି ବୋଲି ସିନା ଚାଲିଗଲେ, କିନ୍ତୁ ମନରୁ ତ ମୁକ୍ତି ପାଉ-ନଥିବେ।

ମୁଁ କିଛି ଜବାବ ନ ଦେବାରୁ ସେ ପୁଣି କହିଲେ, "ତାପ୍ତି! ତୁମେ ତ କହୁଛ, ଏ ବିଷୟରେ ତୁମ ନିଜର ମତ ବୁଝିବାକୁ ହେବ, ବୁଝିବା ବି ଉଚିତ। ମୁଁ ଜଗନ୍ନାଥ ମହା-ପ୍ରଭୁଙ୍କ ପାଖେ ତୁମ ପାଇଁ ଜଣାଇବା ପୂର୍ବରୁ ତୁମକୁ ପଚାରୁଛି, କହ। ପୁରୀ ଓ ଭୁବନେଶ୍ୱରରେ ତୁମ ଦେଶରୁ ବହୁ ଲୋକ ଆସି ରହିଲେଣି। ତାଙ୍କରି ଭିତରୁ ସଚ୍ଚରିତ୍ର ଯୁବକ ଜଣେ ବାଛି ତାଙ୍କର ହାତରେ ତୁମକୁ ସମର୍ପିଦେବା ମୋର କାମନା। ବୁଢ଼ାଏ ଧନ୍ତୁଣ୍ଡି ହେବା ଉଚିତ ନୁହେଁ। ସର୍ବମଙ୍ଗଳ ଜଗନ୍ନାଥ ବୋଲି ଯାହାକୁ ଆଶ୍ରାକରିବା ସେ ନିଶ୍ଚୟ ଭଲହେବ ବୋଲି ମୋର ବିଶ୍ୱାସ। ମୁଁ ସ୍ପଷ୍ଟ ବି ଜାଣିପାରୁଛି, ତୁମ ପରି ସ୍ତ୍ରୀ-ରତ୍ନ ଯାହା ହାତ ଧରିବ ସେ ଅଯୋଗ୍ୟ ହୋଇଥିଲେ ବି ଯୋଗ୍ୟ ହୋଇଯିବ। ତୁମେ ସଂକୋଚ ନ କରି ତୁମ ମନର କଥା କହ, ମୋର ବୁଢ଼ାଏ ଦୁଶ୍ଚିନ୍ତା ହେଉଛି ସେଥିରୁ ମୁଁ ଉଦ୍ଧାର ପାଇବି।"

ମୁଁ ଆଉ ସମ୍ଭାଳି ପାରିଲିନାହିଁ। ତାଙ୍କର ପାଦମୂଳେ ମୁଣ୍ଡିଆଟିଏ ମାରି ଠିଆହେଲି ଓ ଭିକ୍ଷା ମାଗିଲା ପରି ହାତ ଓ ମୁହଁ କରି କହିଲି—ଲାଜ କୁଆଡ଼େ ଚାଲିଯାଇଥାଏ, "ମୁଁ ସତ୍ପାତ୍ରସ୍ଥା ହୋଇସାରିଛି। ଆପଣ ଆଉ ଧନ୍ଦୁଣ୍ଡି ହେବା ଦରକାର ନାହିଁ। ମୁଁ ଯାହାଙ୍କୁ ଆଶ୍ରା କରିଛି, ସେ ମୋର ଜଗନ୍ନାଥ। ମୋ ପାଇଁ ଜଗନ୍ନାଥଙ୍କୁ କିଛି ମାଗିବା ଦରକାର ନାହିଁ। ଆପଣ ନିଜ ପାଇଁ ତାଙ୍କୁ ଜଣାନ୍ତୁ।"

ସେ ଆକାଶରୁ ଖସିପଡ଼ିଲା ପରି ତଟସ୍ଥ ହୋଇଗଲେ, କହିଲେ, "ଏଁ, ତୁମେ ସତ୍ପାତ୍ରସ୍ଥା ହୋଇସାରିଛ! ଏକଥା ମୋତେ ଆଗରୁ କହିଲନାହିଁ କାହିଁକି? ମୁଁ ତୁମକୁ ସେଇଠାକୁ ନ ନେଇ, ପୁରୀ ଆସିଥାନ୍ତି କାହିଁକି? ଯଦି ଆସିଥାନ୍ତି, ତାଙ୍କୁ ତ ସାଙ୍ଗରେ ଧରି

ଆସିଥାନ୍ତେ । ଭଦ୍ରଲୋକ ସରଳ ଭାବରେ ଯେଉଁ ଲଜ୍ଜାଦେଇ ଚାଲିଗଲେ ସେଥିରୁ ତ ଆଗ ରକ୍ଷା ମିଳିଥାନ୍ତା ।'' ଆଉ ଟିକିଏ ରହି ସେ କହିଲେ, ''ହଁ, ସେ ଯେଉଁ ପ୍ରତାପ ବାବୁଙ୍କ ପାଇଁ ତୁମେ ପିଲାମି କରୁଥିଲ, ତାହା ଦାଦାଙ୍କଠାରୁ ଶୁଣିଛୁ । ବଡ଼େ ମହାରାଜଙ୍କଠାରୁ ଶୁଣିଛୁ । ତାଙ୍କ କଥା ମନେପକାଇ ମୋତେ ଭୁଆଁ ବୁଲାଉନାହଁ ତ ?''

ମୁଁ ମୁରୁକି ମୁରୁକି ହସିଲି । ପ୍ରତାପ ବାବୁଙ୍କ ପାଇଁ ମୋ ମନରେ ଯେଉଁ ଭାବ ହୋଇ-ଥିଲା ତାହା ଏତେବେଳକୁ ମୋର ନଜର ବି ଉପହାସର ସାମଗ୍ରୀ ହୋଇଥାଏ । ମୁଁ ଲଜ୍ଜାକୁ ଚାପିରଖି କହିଲି, ''ମୋର ଜଗନ୍ନାଥ ଯେଉଁଠି ମୁଁ ସେଇଠି ଅଛି । ଆପଣଙ୍କୁ ପଥଶ୍ରାନ୍ତ ହେବାକୁ ପଡ଼ିବନାହିଁ । ଆପଣଙ୍କର ଯୁଆଡ଼େ ମନ ନିଃସଙ୍କୋଚରେ ଯା'ନ୍ତୁ । ପୁରୀ ଗଲେ ମୋତେ ଯେତିକି, ନ ଗଲେ ବି ସେତିକି ?''

ବାବୁଜୀ ମୋ ଆଡ଼କୁ ଚମକିତହୋଇ ଚାହିଁ କହିଲେ, ''ଏ ତ ପ୍ରଳାପ ! ମୁଁ କିଛି ବୁଝିପାରୁନାହିଁ । ତାପ ! ତୁମର ଦେହ କିଛି ଖରାପ ଲାଗୁନାହିଁ ତ ? ତୁମକୁ ଡାକ୍ତର-ଖାନାରୁ ସାଙ୍ଗେ ସାଙ୍ଗେ ଏତେ ଲମ୍ବା ରେଳଯାତ୍ରାରେ ଆଣିବା ବୋଧହୁଏ ଭଲ ହେଲାନାହିଁ । ହଉ, ତୁମେ ଧୀରହୋଇ ଶୁଅ । ପୁରୀରେ ପହଞ୍ଚି ଜଗନ୍ନାଥଙ୍କୁ ମୁଣ୍ଡିଆଟେ ମାରିବା ସଙ୍ଗେ ସଙ୍ଗେ ଜଣେ ଭଲ ଡାକ୍ତରଙ୍କ ପାଖକୁ ନେବାକୁ ହେବ । ତୁମ ମସ୍ତିଷ୍କରେ ଯେଉଁ ବିକୃତ କୁମ୍ଭମେଳାର ଗଣ୍ଡଗୋଳ ଯୋଗୁଁ ଦେଖାଦେଇଥିଲା, ତାହା ବୋଧହୁଏ ଲେଉଟିନି । ନ ହେଲେ ତୁମର କଥା ଏଭଳି ଅବୁଝା ହେଉଛି କାହିଁକି ?''

ଶୁଖିଲା କାଠ ବୋଲି ସ୍ୱାମୀଙ୍କୁ ହରଦ୍ୱାରଠାରୁ ଜାଣିଥିଲି । କିନ୍ତୁ ଏତେ ଶୁଖିଲା ବୋଲି ଆଜଯାଏ ଜଣା ପଡ଼ିନଥିଲା । ସ୍ୱାମୀଙ୍କୁ ଆଉ କହିବି କଣ ? ମାଇକିନିଆ ମୁହଁରୁ ଆଉ କେତେ ବା କଥା ବାହାରିପାରନ୍ତା ? ମନ ଭିତରର ସବୁ କଥା କହି ସାରିଲା ପରେ ବି ସ୍ୱେ ଯେଇ ସେଇ । ତାଙ୍କ ମୁହଁକୁ ଚାହିଁ ଦୟାହେଲା; ଲାଜ ମନରୁ ଚାଲିଯାଇ ଦୁଷ୍ଟାମି ଉଙ୍କିମାରିଲା । ସିଧାସଳଖ ତାଙ୍କ ଆଖି ଯୋଡ଼ିକରେ ଆଖି ରଖି କହିଲି, ''କଥା ଯାହାକୁ ବୁଝା ନ ପଡ଼େ ସେ ଚିକିତ୍ସା ହେବାକୁ ଡାକ୍ତରଖାନାକୁ ଯାଆନ୍ତି, ଯେ କଥା କହୁଥାଏ ସେ ଯିବ କାହିଁକି ?''

ତଥାପି ଉତ୍ତର ମିଳିଲା, ''ଏଁ, ପୁଣି ତ ପ୍ରଳାପ କହୁଛ ତାପ ? ମୁଁ କିଛି ବୁଝି ପାରୁନାହିଁ ।'' ମୁଁ କାହିଁକି କେଜାଣି କାନ୍ଦି ପକାଇଲି ଓ କାନ୍ଦପକାଇ କହିଲି, ''ମୋର ସନ୍ନ୍ୟାସୀ ମୋ ଆଗରେ ବସିଛନ୍ତି, ଅଇଁଠାପତ୍ରରେ ଖାଇ ସାରିଲା ପରେ ତ ବୁଝାପଡ଼ୁନାହିଁ, ବୁଝାଇବ କେମିତି ? ଆଉ କିଏ ଯଦି ଶୁଣିବ, ଲାଜର ମୁଣ୍ଡ ଖାଇଛ ବୋଲି କହିବ । ଆପଣଙ୍କ ପାଖେ ବଳେ ପଶୁଛି ବୋଲି ଯଦି ବିଚାରୁଛନ୍ତି, ତେବେ ତଡ଼ିଦିଅନ୍ତୁ, ଏଇଠାରେ ଓହ୍ଲାଇଯିବ ।

ସେତିକିବେଳକୁ ଗାଡ଼ି ଯାଇ ଗୋଟାଏ ଷ୍ଟେସନରେ ଲାଗୁଥାଏ । ରାତି ୧୦ଟା ହୋଇଯାଇଥିଲେ ବି ପ୍ଲାଟଫର୍ମରେ ଲୋକ ଯିବା ଆସିବା କରୁଥାନ୍ତି । ବାବୁଜୀଙ୍କ ମୁହଁରେ

ବାବୁଜୀଙ୍କ ମୁହଁରେ ଗୋଟାଏ ଅପୂର୍ବ ଦିବ୍ୟ ତେଜ ଦେଖାଗଲା । ମୋତେ 'ବସ' ବୋଲି କହି ସେ ନିର୍ନିମେଷ ନୟନରେ ମୋତେ ଗୁହିଁରହିଲେ । ଗାଡ଼ି ପ୍ଲାଟ୍‌ଫର୍ମରୁ ବାହାରି ଚନ୍ଦ୍ରକିରଣ ଭେଦି ଗଭୀରରେ ଧାଇଁବାକୁ ଆରମ୍ଭ କରିବାରେ ସେ ମୋତେ କହିଲେ, "ତାରା ! ତଥାପି ମନେକରୁଛି ତୁମର ମସ୍ତିଷ୍କରେ ବିକୃତି ହୋଇଛି । ତୁମେ ମୋତେ ଚିହ୍ନୁନାହିଁ, ଜାଣନାହିଁ, ଏଭଳି ଅନ୍ଧାରକୁ ଡେଇଁଲ କାହିଁକି ? ମୁଁ ସଂସାର କରିଥିଲି । ସେଥିକୁ ଅଯୋଗ୍ୟ ହେବାରୁ ନୂଆହୋଇ ଘରକୁ ଆସିଥିବା ସ୍ତ୍ରୀକୁ ଛାଡ଼ିଲି, ଘର ବି ଛାଡ଼ି ବୈରାଗୀ ହେଲି । ଗାଁରେ ମୋତେ କହନ୍ତି ଅମନୁଷ୍ୟ । ସେଇ ଅମନୁଷ୍ୟଠାରେ ମନ ଦେଲ କାହିଁକି ? ସ୍ତ୍ରୀର କାମନା ପ୍ରତ୍ୟାଖ୍ୟାନ କରିବା ଅଧର୍ମ । କିନ୍ତୁ ଜୀବନଯାକ କଷ୍ଟ ପାଇବ । ଯୁବକ ସଙ୍ଗେ ଯୁବତୀ ଏକ ଆସନରେ ବସିଲେ ଏଭଳି ବିକୃତି ହୁଏ । ସ୍ୱାମୀକୁ ଛାଡ଼ । ମୋତେ ବଡ଼ଭାଇ ବୋଲି ବିଚାରିବାକୁ ଚେଷ୍ଟାକର ।"

ମୋତେ ସେ ଦୂରକୁ ଠେଲିଦେଲା ପରି ମନେହେବାରୁ କୋହ ଉଠିଲା । ମୁଁ କାନ୍ଦି କାନ୍ଦି ହୋଇ କହିଲି, "ଯାହା ନ ପାରିବି ସେଥିପାଇଁ ପ୍ରବର୍ତ୍ତାନ୍ତୁ ନାହିଁ । ମୋତେ ପାଦରେ ସ୍ଥାନ ଦିଅନ୍ତୁ । ଶ୍ରୀ ରାମକୃଷ୍ଣ ତ ପୁଣି ସାରଦା ଦେବୀଙ୍କୁ ସ୍ଥାନ ଦେଇଥିଲେ ?" ବାବୁଜୀ ହସି-ପକାଇଲେ ଓ ମୋ ଆଡ଼କୁ ହାତ ବଢ଼ାଇ ପୁଣି ଫେରାଇ ନେଇ କହିଲେ, "ତାରା ! ତୁମେ ଶାରଦା ଦେବୀ ହୋଇପାରିବ, କିନ୍ତୁ ମୁଁ କିଏ, ରାମକୃଷ୍ଣ କିଏ ? ଅପାତ୍ରରେ ଏତେ ଅନୁଗ୍ରହ ! ହଉ, ଶୁଅ । ମୋର ମନ ଦୁର୍ବଳ ହୋଇଯାଇଥିଲା, ତୁମ ଦେହରେ ହାତ ଦେଇପକାଉ-ଥିଲି । ଚାଲ, ଜଗନ୍ନାଥ ଆମର ଭାଗ୍ୟ ନିର୍ଣ୍ଣୟ କରିବେ ।" ଏତିକି କହି ସେ ଉପର ଓପର ସିଟ୍‌କୁ ଉଠିଗଲେ ।

( ୨୩ )

ବାଲେଶ୍ୱର ଷ୍ଟେସନ୍ ପାଖଆଖରେ ରାତିପାଇଲା । ବାବୁଜୀ ପ୍ରାତଃକୃତ୍ୟ ସାରି, ଗାଧୋଇ ଧାଧୋଇ, ନିଜର ନିତ୍ୟକର୍ମ ସଂକ୍ଷେପରେ ସାରିଦେଇ ପୁଣି ତଳ ବେଞ୍ଚରେ ଆସି ବସିଲେ । ତାଙ୍କ ପଛେ ପଛେ ମୁଁ ବି ସେଇ ରେଲ ଭିତରେ ମୋ କାମ ସାରିଦେଇଥାଏ । କାଲି ରାତିରେ ମୋର ଏକାବେଳକେ ନିଦ ହୋଇନଥାଏ କହିଲେ ଚଳେ । ମୁଁ ତାଙ୍କ ପାଖରେ ଯଚେଇ ହେଲି ବୋଲି ପ୍ରଥମେ ମୋ ମନ ଗୋଳିଆ ହୋଇଥିଲା । ପୁଣି ବିଚାରିଲି, ଯାହାଙ୍କୁ ମନ ଦେଇସାରିଛି ତାଙ୍କ ଆଗରେ ମନର କଥା ପ୍ରକାଶ କରିଦେବାରେ ଦୋଷ କ'ଣ ? ଡର ମାଡ଼ିଲା, ଯଦି ମୋ କଥା ଶୁଣି ସେ ମୋତେ ଚପଳମତି ବୋଲି ବିଚାରନ୍ତି ! ମନକୁ ବୁଝାଇଲି, ମୋ ବିଚାରରେ ଯେ ସବୁ ମଣିଷଠାରୁ ବଡ଼ ତାଙ୍କର ଭୁଲ ହେବ କାହିଁକି ? ଆଜି ସକାଳେ ସେ ମୋତେ କ'ଣ କହିବେ କି ନାହିଁ ବୋଲି ଉଦ୍‌ବିଗ୍ନ ହୋଇଥାଏ ।

ସେ ବୋଧହୁଏ ମୋ ମନର କଥା ଠଉରେଇଲେ ; ଗୁରୁ ଶିଷ୍ୟକୁ ଉପଦେଶ ଦେବା ସ୍ୱରରେ କହିଲେ, "ତାରା ! ମୁଁ ମଧ୍ୟ ଏ ବିଷୟରେ କାଲି ରାତିରେ ଗୁଡ଼ାଏ ଚିନ୍ତା କରିଛି । ତୁମେ ଗୃହି ବିବାହ ; ମୁଁ ତ ତୁମକୁ ଆଗରୁ କହିସାରିଛି, ତୁମ ପରି ସ୍ତ୍ରୀରତ୍ନର ଯେ ହାତ ଧରିବ, ସେ ଅଧମ ହେଲେ ବି ପ୍ରତିଷ୍ଠା ପାଇପାରିବ । କିନ୍ତୁ ସେଥିକରେ କ'ଣ ସମସ୍ୟା ଛୁଟିଗଲା ?"

ମୁଁ ଏଥିରୁ କିଛି ବୁଝିନପାରି ତାଙ୍କ ଆଡ଼କୁ ବାଲ୍ ବାଲ୍ କରି ଚାହିଁଲି । ମୋ ମନର ଲାଜ କୁଆଡ଼େ ଉଭେଇ ଗଲା । ସେ କହିଲେ, "ସବୁ ଦେଶରେ କହନ୍ତି ଯୁବକ ଯୁବତୀଙ୍କର ଯଦି ମନ ମାନିଗଲା ତେବେ ବିବାହରେ ଅନ୍ୟ ଅନ୍ତରାୟ ରହିବା ଉଚିତ ନୁହେଁ । କିନ୍ତୁ ଆମ ଦେଶର କଥା ଅଲଗା । ବର କନ୍ୟାଙ୍କର ମନର ମିଳନ ଗୋଟିଏ ସମସ୍ୟାର ଅଙ୍ଗ ମାତ୍ର । ବରପିତା ଓ କନ୍ୟାପିତା ଏଥିରେ ରାଜିହେଲେ ଯାଇ ବିବାହପ୍ରସଙ୍ଗ ଠିକ ହେବ । ସେଇ ଅଭିଭାବକମାନଙ୍କର ସମ୍ମତି ମିଳିଲେ ଯାଇ ସମାଜ ବିବାହକୁ ସ୍ୱୀକାର କରିବ । ଆଜିକାଲି ସରକାରଙ୍କ ସ୍ୱୀକୃତିରେ ସମାଜର ସ୍ୱୀକୃତି ବୋଲି ଧରିନିଆଯାଉଛି । କିନ୍ତୁ ଆମ ଦେଶର ସରକାର ଓ ସମାଜ ମଧ୍ୟରେ ଫାଙ୍କ ସବୁବେଳେ ଥାଏ, ଏବେ ତାହା ବଢ଼ୁଛି ପଛେ କମି ନାହିଁ ।"

ତଥାପି ମୁଁ ଭଲ୍‌ଭୁଲା ପରି ଚାହିଁ ରହିଲି । ଆମର ପୁଣି ପିତା ମାତା କିଏ ? ବାବୁଜୀ କଣ ତାଙ୍କ ପିତାଙ୍କ ସଙ୍ଗେ ସମ୍ପର୍କ ରଖିଛନ୍ତି ? ସେ କି ପ୍ରକାର ମଣିଷ ? ମୋତେ ହୁଏତ ବୋହୂ ବୋଲି ସ୍ୱୀକାର କରିବାକୁ ରାଜି ନ ହୋଇପାରନ୍ତି । ସ୍ୱାଙ୍କର ପରି ସୁଜନ ତ ଏଭଳି କଥାରେ ବାପଙ୍କୁ ଡେରିବେ ନାହିଁ । ସେ ପୁଣି କହିଲେ, "ମୋର ଜନ୍ମକଲା ବାପ ଅଛନ୍ତି, କିନ୍ତୁ ତାଙ୍କ କଥା ବିଚାରକୁ ନେଉନାହିଁ । ନିଜ ଘରକୁ ଫେରିବାର କଳ୍ପନା ମୋର ନାହିଁ । ମୋର ବାପା ଆଗତଭବିଷ୍ୟତ କଥା ଜାଣିପାରନ୍ତି ; ସେ ମୋତେ ସଫା କହିଛନ୍ତି, ତାଙ୍କ ସଙ୍ଗେ ମୋର ଆଉ ଦେଖା ହେବନାହିଁ । କିନ୍ତୁ ବର୍ତ୍ତମାନ ବଡ଼େ ମହାରାଜଙ୍କୁ ବାପା ବୋଲି ମାନେ ; ଅବଶ୍ୟ ବାବାଙ୍କୁ ବି ସେତିକି ମାନେ, କିନ୍ତୁ ବାବା ପ୍ରବ୍ରଜ୍ୟା କରିଛନ୍ତି, ତାଙ୍କ ସଙ୍ଗେ ଦେଖାହେବାର ଭାଗ୍ୟ ମିଳିବ ବୋଲି ଆଶା ହେଉନାହିଁ । ଅବସ୍ଥାଚକ୍ରରେ ତୁମର ବି ସେଇ ବାବା ଓ ବଡ଼େ ମହାରାଜ ଅଭିଭାବକ । ତୁମର ମନର କଥା ସେ ଜାଣିବା ଉଚିତ, ତା' ଉପରେ ତାଙ୍କର ରାଏ ମିଳିବା ଦରକାର ।"

ନିରାଟ କଥା । କିନ୍ତୁ ମୋର ବିବାହ ବିଷୟରେ ବଡ଼େ ମହାରାଜ ତ ବାବୁଜୀଙ୍କୁ ଭାର ଦେଇସାରିଛନ୍ତି । ଅବଶ୍ୟ ସ୍ୱାଙ୍କ ମନରେ ସଙ୍କୋଚ ହେବାର କଥା । ମୋତେ ସତ୍ପାତ୍ରସ୍ଥ କରିବାକୁ ହୁକୁମ ପାଇ ନିଜେ ହିଁ ସତ୍ପାତ୍ର ହୋଇଯିବାକୁ ବାବୁଜୀଙ୍କ ମନରେ ଦୋ ଦୋ ପାଞ୍ଚ ହେଉଥିବ । ଏ କଥାରେ ପ୍ରତିବାଦ କରିବାର କୌଣସି କାରଣ ପାଇଲିନାହିଁ । ବଡ଼େ ମହାରାଜଙ୍କ ଆଶୀର୍ବାଦ ମିଳି ସାରିଲା ପରେ ବିବାହ ହେଲେ ଆମର ମଙ୍ଗଳ ବୋଲି ଦୃଢ଼ ବିଶ୍ୱାସ ଥାଏ ; ଅନ୍ତରର ମଧ୍ୟ ବିଶ୍ୱାସ ଥାଏ ଯେ, ଏ ପ୍ରସ୍ତାବ ଶୁଣିବା ମାତ୍ରେ ସେ ରାଜି

ହେବେ । ଭାଭୀ ଓ ଦାଦା ଥିଲେ ମଧ୍ୟ ରାଜି ହୋଇଥାନ୍ତେ ବୋଲି ମୁଁ ସଙ୍କେତ ପାଇପାରୁଥାଏ । କାଲି ରାତିରେ ମୋତେ ଭାରି ନିଦ ଲାଗିଗଲା ; ଦେଖିଲି, ମୋ ସିଟ୍ ପାଖରେ, ଡବାର ଗାଧୁଆ ଘର ପଟେ ଦାଦା ଓ ଭାଭୀ ଆସି ଠିଆହେଲେ । ଦୁହେଁଯାକ ହସ ହସ ହୋଇ ମୋତେ ଆଶୀର୍ବାଦ କଲେ । କିନ୍ତୁ ମନରେ ଗୋଟାଏ ଆଘାତ ଲାଗିଲା ; ବାବୁଜୀ କହିଲେ, ମୋ ମନର କଥା ବଡ଼େ ମହାରାଜ ଜାଣିବା ଉଚିତ । ଆମ ମନର କଥା କହିଥିଲେ ମୋତେ ସୁଖ ଲାଗିଥାନ୍ତା । ତେବେ କ'ଣ ମୋର ଇଚ୍ଛା ଯୋଗୁଁ ସେ ମୋତେ ଗ୍ରହଣ କରିବାକୁ ବାଧ୍ୟ ହେଉଛନ୍ତି ? ମୋ ମାଇପି ମନରେ ଗୋଟାଏ ବଡ଼ ଆଘାତ ହେଲା । କିଛି ନ କହି ତାଙ୍କର ଢଙ୍ଗରଙ୍ଗ ଓ କଥାବାର୍ତ୍ତାକୁ ଲକ୍ଷ୍ୟ ରଖି, ତୁନି ଥାଏ ।

ଟିକକ ପରେ ବାବୁଜୀ ପଚାରିଲେ, "କାଲିରୁ ଯାହା ବଳିଛି ସେଇଥିରେ ଚଳିଯିବ, ନା ଆଉ କ'ଣ ଆଣିବା ?" ଗୃହକର୍ତ୍ତ୍ରୀ ପରି ମୁଁ ଉତ୍ତର ଦେଲି, "ଆଜି ଭଜା ହୋଇଥିବା ପୁରି ହେଉକା ମିଳିଲେ ଭଲ ହୁଅନ୍ତା ।" ସେ ଭଦ୍ରକ ଷ୍ଟେସନରୁ ଗରମ ପୁରି, ଆଳୁସିଝା ଓ ମିଠା ଆଣିଲେ । ସେତକ ତାଙ୍କୁ ବାଢ଼ି ଦେବାରେ ସେ କହିଲେ, "ତୁମପାଇଁ ଦି'ଟା ରଖ, ଖାଲି ବାସି ପୁରିରେ ତୁମର ଚଳିଯିବ ବୋଲି ବିଚାରୁଛ ପରା ?"

ମୁଁ ନ ଶୁଣିଲା ପରି ରହିଗଲି । ସେ ମଧ୍ୟ ଆଉ କିଛି ନ କହି ଖଣ୍ଡେ ଦି'ଖଣ୍ଡ ପତ୍ରରେ ଗୁଡ଼ି ଉଠିଗଲେ । ମୁଁ ତାଙ୍କ ଅଇଣ୍ଠାପତ୍ରରେ ବାସି ଜିନିଷରୁ କିଛି ପକାଇ ମୁହଁପୋଛି ଖାଇବସିଲି । ସେ ମୋ ଆଡ଼କୁ ଚାହିଁ ପରୋକ୍ଷ ଭାବେ କହିଲେ, 'କାହାରି ଅଇଁଠାରେ କେହି ଖାଇବାକୁ ଆଜିକାଲିର ଲୋକେ ପସନ୍ଦ କରନ୍ତିନାହିଁ ।' ଆହ୍ଲାବାଦ୍ ଷ୍ଟେସନ୍‌ର ବିଶ୍ରାମାଗାର —ନାଁ, ଆହ୍ଲାବାଦ ଡାକ୍ତରଖାନାର ଖଟିଆ ପାଖେ ସ୍ବାମୀଙ୍କୁ ଚାହିଁଲା ବେଳୁ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ମୋ ବିଚାରରେ ଗୋଳିଆ ଘୋଳିଆ ହୋଇଯାଇଥାଏ ।

ପୁରି ଷ୍ଟେସନ୍‌ରେ ଓହ୍ଲାଇ ଆମେ ଜଣେ ପଣ୍ଡାଲୁମାହାନ୍ତିଙ୍କର ହେପାଜତରେ ଯାଇ ଦର୍ଶନ କଲୁଁ ଓ ରାତିରେ ଗୋଟିଏ ଧର୍ମଶାଳାରେ ରହିଲୁଁ । ଧର୍ମଶାଳାର ଖାତାରେ ସେ କ'ଣ ଲେଖାଇଲେ କେଜାଣି, କିନ୍ତୁ ଧର୍ମଶାଳାର ଲୋକେ ବାବୁଜୀଙ୍କୁ ବାବୁଜୀ ଓ ମୋତେ ମା'ଜୀ ବୋଲି ଡାକିବାକୁ ଲାଗିଲେ । ବାବୁଜୀ ଏଥିରେ ଆପତ୍ତି କରୁନଥାନ୍ତି କି ବିବ୍ରତ ହେଉ-ନଥାନ୍ତି ।

ଧର୍ମଶାଳାରେ ରହିବାର ଦୁଇତିନିଦିନ ଭିତରେ ଧର୍ମଶାଳା ମେନେଜର ବାବୁଜୀଙ୍କର ଭକ୍ତ ହୋଇଗଲେ । ପ୍ରତିଦିନ ସଂଧ୍ୟାରେ ବାବୁଜୀ ଶ୍ରୀମଦ୍ ଭାଗବତ ବ୍ୟାଖ୍ୟା କରିବାକୁ ଆରମ୍ଭ କଲେ ; ଦିନକୁ ଦିନ ଶ୍ରୋତାମାନଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା । ଧର୍ମଶାଳାରେ ସାତଦିନରୁ ବେଶୀ ରହିବାର ନିୟମ ନଥିଲେ ବି, ମେନେଜର କହୁଥାନ୍ତି, "ଆପଣ ଏଠାରେ ଶ୍ରୀମଦ୍ ଭାଗବତ ଶେଷ ହେବାଯାଏଁ ରହନ୍ତୁ ।" ବାବୁଜୀଙ୍କ ସମ୍ପର୍କରେ ଯେଉଁମାନେ ଆସୁଥାନ୍ତି ସେମାନେ ତାଙ୍କର ଅତି ପ୍ରିୟ ହୋଇଯାଉଥାନ୍ତି । ମୋତେ ଭାରି ସୁଖ ଲାଗୁଥାଏ । ପ୍ରତିଦିନ ତାଙ୍କ ସଙ୍ଗେ ମୁଁ ବଡ଼ ଦେଉଳକୁ ଦର୍ଶନକୁ ଯାଏ, ପ୍ରତିଦିନ ସେ ନିଜ ବନ୍ଧୁମାନଙ୍କର ସଂଖ୍ୟା

ବଢ଼ାଇବାରେ ଲଗିଥାନ୍ତି । ସେ ସମସ୍ତଙ୍କ ସଙ୍ଗେ ଖୁବ୍ ମେଳାପୀ ବ୍ୟବହାର କରୁଥିଲେ ହେଁ ବନ୍ଧୁମାନେ ତାଙ୍କୁ ଶଙ୍କି ରହିଲା ପରି ବ୍ୟବହାର କରୁଁଥାନ୍ତି । ମୁଁ ମଧ୍ୟ କ୍ରମେ କ୍ରମେ ତାଙ୍କ ସଙ୍ଗେ ଅଧିକରୁ ଅଧିକ ସଂକୋଚରେ ଚଳୁଥାଏ । ଧର୍ମଶାଳା କୋଠରୀର ଖଟ ଖଣ୍ଡିକରେ ସେ ଶୁଅନ୍ତି, ମୁଁ ଖଟପାଖେ ତଳେ ଖଣ୍ଡିଏ ସତରଞ୍ଜି ପାରି ଶୁଏ ; କିନ୍ତୁ ଭୁଲ୍‌ରେ ବି ସେ ମୋତେ ଥରେ ଛୁଉଁନଥାନ୍ତି ।

ବଡ଼େ ମହାରାଜଙ୍କ ପାଖକୁ ଚଠି ଯାଇଥାଏ ; ଉତ୍ତରକୁ ତାଙ୍କ ଅପେକ୍ଷା ମୁଁ ଅଧିକ ଅପେକ୍ଷା କରୁଥାଏ, ଏଇ ସମୟରେ ଧର୍ମଶାଳାର ମେନେଜର ବାବୁ ଆସି କହିଲେ, "ବାବୁଜୀ ! ପୁରୀକୁ ଜଣେ ମହାତ୍ମା ଆସିଛନ୍ତି । ସେ ସୋନାର ଗୌରାଙ୍ଗଙ୍କ ପାଖେ ରହୁଛନ୍ତି । ଆପଣ ଆଜି ଭାଗବତ ପାଠ ଟିକିଏ ସଂକ୍ଷିପ୍ତ କଲେ, ତାଙ୍କୁ ଯାଇ ଦର୍ଶନ କରିଆସନ୍ତେ ।" ବାବୁଜୀ ହଁ କଲେ ଓ ମୋତେ ସାଙ୍ଗରେ ନେଇଗଲେ ।

ମହାତ୍ମାଙ୍କ ପାଖରେ ଯାଇ ମୁଣ୍ଡିଆ ମାରିବା ପୂର୍ବରୁ ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ସେ ତ ଆମରି ବାବା । ଯାଙ୍କ ବିଷୟରେ ଆମେ ମଝିରେ ମଝିରେ କଥାବାର୍ତ୍ତା ହୋଇଥାଉ । ବାବୁଜୀ ସବୁବେଳେ କହନ୍ତି, ଭାଗ୍ୟରେ ଥିଲେ ତାଙ୍କ ସଙ୍ଗେ ଦେଖାହେବ । ବାବା ବାବୁଜୀଙ୍କୁ ଦେଖିଲା ମାତ୍ରେ ଆସି ପାଖରେ ବସିବାକୁ କହିଲେ ଓ ଟିକିଏ ଗୁଞ୍ଜିକରି ବସିବାକୁ ମୋତେ ସଙ୍କେତ ଦେଲେ । ରାତି ପ୍ରାୟ ଦଶଟା ପର୍ଯ୍ୟନ୍ତ ଆମେ ତାଙ୍କ ପାଖେ ରହିଲୁଁ । ଯେ ଯାହା ପଚାରୁଥାନ୍ତି ବାବା ତା'ର ଉତ୍ତର ଦେଉଥାନ୍ତି, ତାଙ୍କ କଥା ଶୁଣି ସମସ୍ତଙ୍କ ସନ୍ତୋଷ ହେଉଥିବାର ଲକ୍ଷ୍ୟ କରୁଥାଏ । ବାବୁଜୀ କିଛି ନ କହି ମୂକହୋଇ ବସିଥାନ୍ତି । ଶେଷକୁ ରହିଲୁଁ ଆମେ ଦୁହେଁ ଓ ଆମ ମେନେଜରବାବୁ । ବାବା ତାଙ୍କୁ କହିଲେ, "ଆପଣ ଯାଇପାରନ୍ତି । ଯାଙ୍କ ସାଙ୍ଗେ ମୋର ଟିକିଏ କଥାବାର୍ତ୍ତା ଅଛି ।" ମେନେଜର ବାବୁ ବାବୁଜୀଙ୍କଠାରୁ ବିଦାୟନେଇ ଚାଲିଗଲେ । ବାବା ମୋତେ ପାଖକୁ ଡାକିଲେ ଓ ପଚାରିଲେ, "ଆଚ୍ଛା, ତାରା, ତୋ'ର କଥା ଏଥର କହ ।" ମୁଁ ଆଚ୍ଛୁରିଥରେ ମୁଣ୍ଡିଆ ମାରି କହିଲି, 'ବାବା କ'ଣ ନ ଜାଣନ୍ତି ଯେ ମୁଁ କହିବି ।' ସେ ବାବୁଜୀଙ୍କ ଆଡ଼କୁ ଚାହିଁଲେ, ପଦେ ଅଧେ କ'ଣ ପଚାରିଲେ ଓ ତା ପରେ କହିଲେ, "ବଡ଼େଠାରୁ କାଲି ଚଠି ଆସିବ । ୩ଟା ଠାରୁ ୫ଟା ଭିତରେ ବେଶ୍ ଫୁରସତ୍ ମିଳୁଛି । ଏଠାରେ ଲୋକେ ଯେପରି ଭିଡ଼ ଆରମ୍ଭ କଲେଣି, ଶୀଘ୍ର ସ୍ଥାନ ତ୍ୟାଗକଲେ ଯାଇ ରକ୍ଷା । କିନ୍ତୁ ତୁମ ଦୁହିଙ୍କର କାର୍ଯ୍ୟ ନିର୍ବାହ କରିବାକୁ ପଡ଼ିଗଲାଣି ଦେଖୁଛି ।"

•

ଫେରିବା ବେଳେ ଆମେ ଦୁହେଁ ଗୋଟାଏ ରିକ୍‌ସାରେ ବସି ଆସିଲୁଁ । ଆଜି ଆଉ ବାବୁଜୀ ମୋ ଠାରୁ ଘୁଞ୍ଚିକରି ବସିବାକୁ ବିଶେଷ ଚେଷ୍ଟାକଲେନାହିଁ । ମୁଁ କିନ୍ତୁ ଯଥାସମ୍ଭବ ଅଡ଼େଇ ହୋଇ ବସିବାକୁ ଚେଷ୍ଟା କରୁଥାଏ । ବାଟରେ ପଚାରିଲି, "ଦଦି ହେରିକାଙ୍କ କଥା କହିଥିଲେ ଭଲ ହୋଇଥାନ୍ତା ।" ବାବୁଜୀ ହସିଦେଇ କହିଲେ, "ମୁଁ କହିବା କ'ଣ ଦରକାର ଥିଲା ? ବାବାଙ୍କ କଥାରୁ ମୁଁ ଆଗରୁ ଜାଣିଥିଲି ଯେ, କୁମ୍ଭମେଳାରୁ

ହବ ଓ ଘରୀ ଆଉ ଫେରିବେନାହିଁ । ତଥାପି ଖୁବ୍ ନିରାପଦ ସ୍ଥାନ ବାଛି ନାଗାମାନଙ୍କ ଗୁରୁଣୀ ପାଖରେ ଯାଇ ବସା ବାନ୍ଧିଥିଲେ । ଅଳ୍ପିତ ତାଙ୍କଆଡ଼୍ ସେ କହିଲେ, ତାଙ୍କୁ ବଞ୍ଚାଇବାକୁ ଖୁବ୍ ପରିଶ୍ରମ କଲ୍ । ପୁଣି କହିଲେ, ଦ୍ୱନ୍ଦରେ ନ ପଡ଼ି ତାଙ୍କୁ ଗ୍ରହଣ କର । ତୁମକୁ ଶୁଣାଇ ତ କହିଲେ, କାଲି ବଡ଼େ ମହାରାଜଙ୍କଠାରୁ ଚିଠି ଆସିବ । ମୁଁ ଆଶ୍ଚର୍ଯ୍ୟ ହୁଏ, ସବୁକଥା ତାଙ୍କୁ ଜଣିଯାଉଛି କିପରି ?"

ମୁଁ ପଚାରିଦେଲି, "ତୁମ ମନରେ ଦ୍ୱନ୍ଦ ଥିଲା ତା ହେଲେ ?" ସଙ୍ଗେ ସଙ୍ଗେ ଜିଭ କାମୁଡ଼ିପକାଇଲି । ବାବୁଜୀଙ୍କୁ ଆଗରୁ କେବେ ତୁମେ ବୋଲି ଡାକିନଥିଲି ସେ ହସି ହସି ମୋ ଆଡ଼କୁ ଚାହିଁ କହିଲେ, "ଆପଣ ନ କହି ତୁମେ କହିଲେ ତ ବେଶ୍ ଚଳିବ ।" ମୋତେ ସ୍ୱର୍ଗର ଚାନ୍ଦ ପାଇଲା ପରି ଲାଗିଲା ।

ପୁଣି ପଚାରିଲି, "ବାବାଙ୍କୁ ସବୁ କଥା ଜଣା ପଡ଼ୁଛି କେମିତି ?" ବାବୁଜୀ ଗମ୍ଭୀର ହୋଇ ଉତ୍ତର ଦେଲେ, "ଯେଉଁ ପନ୍ଥା ଧରିଲେ ମଣିଷକୁ ସେ ଶକ୍ତି ମିଳେ, ଆମେ ତାର ବିପରୀତ ଆଚରଣ କରିବାକୁ ଯାଉଛେଁ ।" ଏ କଥା ଶୁଣି ମୁଁ ବାବୁଜୀଙ୍କ ପାଖରୁ ଟିକିଏ ଘୁଞ୍ଚିଯାଇ ଚୌକ୍ସାରେ ଲସିଗଲି । ତାଙ୍କ କଥାରେ ମୋ ମନ ଖରାପ ହେଲା । ସ୍ୱାଙ୍କୁ ମୁଁ ଟାଣି ଓଟାରି ମୋର କରିବାକୁ ଲାଗିଛି କାହିଁକି ? ସବୁ ତ ହରାଇ ସାରିଛି, ସ୍ୱାଙ୍କୁ ଧରି ରଖିବାକୁ ଏବେ ମନରେ ଏମିତି ମୋହଟାଏ ଆସିଛି କାହିଁକି ? ବିଚାରିଲି, ଆଜି ରାତିରେ ଧର୍ମଶାଳାରେ ଏକଥା ପକାଇବି ଏବଂ ତାଙ୍କୁ ତାଙ୍କ ବାଟରେ ଯିବାକୁ ଛାଡ଼ି-ଦେବି । ମୋର ବାଟ ତ ଏକରକମ ବନ୍ଦ । ବାବୁଜୀ ଗୃହୀ, ବଡ଼େ ମହାରାଜଙ୍କର ତ ନିର୍ଦେଶ ଅଛି, ମୋତେ ବିଭା ହେବାକୁ ପଡ଼ିବ । ମୋର ମନ ଥିଲା, ବିଭା ନ ହୋଇ ମୁଁ ହରିଦ୍ୱାରର ଆଶ୍ରମରେ ରହନ୍ତି । ବାବୁଜୀଙ୍କ ବ୍ୟତୀତ ଆଉ କାହାର ହାତ ନ ଧରିବାକୁ ସଂକଳ୍ପ କରିଥାଏ । ସେ ଯଦି ଆଡ଼େଇ ଦିଅନ୍ତି, ତେବେ କ'ଣ କରିବି ? ବାବାଙ୍କୁ ଦେଖିବା ପରେ ଆଶା ହୋଇଥାଏ, ସେ ମୋର ଜନାଗ କରିବେ । ଆଜି ତ ସେ ପରିଷ୍କାର କହି ଦେଇଛନ୍ତି, ଆମ କାମ ନିର୍ଭର ହେଲା ଯାଏଁ ସେ ପୁରୀରେ ରହିବେ । କାମ ନିର୍ଭର ମୁଁ ଯାହା ଅର୍ଥ ବୁଝିଥିଲି, ସେ ବିଷୟରେ ତ ବାବୁଜୀ ଏତେ ମୋଡ଼ି ଭଡ଼ି ହେଉଛନ୍ତି । ଯାହା ହେବାର ଥିବ ହେବ ବୋଲି ବିଚାରି ମନକୁ ନିଶ୍ଚିନ୍ତ କଲି ।

ଧର୍ମଶାଳାକୁ ଆସି ମହାପ୍ରସାଦ ସେବା କଲୁ । ଏଠାକୁ ଆସିବା ଦିନଠାରୁ ମହା-ପ୍ରସାଦ ବ୍ୟତୀତ ଆଉ କିଛି ଖାଉନଥାଉଁ । ମୁଁ ଶୋଇବାକୁ ତଳେ ସତରଞ୍ଜି ପକାଉଛି, ବାବୁଜୀ ମୋତେ କହିଲେ, "ତାରା ! ସିଦ୍ଧିର ବିପରୀତ ମାର୍ଗ ଆମେ ଧରିବାକୁ ଯାଉଛେଁ ବୋଲି, ମୁଁ କହିବା ବେଳୁଁ ତୁମେ ତ ଘୁଞ୍ଚାଏ କ'ଣ ବିଚାରିବାରେ ଲଗିଛ । ଅନୁକୂଳ ହେଉ ବା ପ୍ରତିକୂଳ ହେଉ, ଯେଉଁ ମାର୍ଗ ଧରିବା ତାହା ତ ସ୍ଥିର ହୋଇ ସାରିଲଣି । ଅଜି ବାବା ଯାହା କହିଲେ, ତା ତ ଶୁଣିଲ । ଆଉ ଚିନ୍ତା କାହିଁକି ? ମୁଁ ତ ମନେ କରୁଛି, ଆଜି ଆମର ବିବାହର ଗୁରୁଆଦେଶରେ ହୋଇଗଲା । ଆଉ କେବଳ ବାକି ବୈଦିକ କର୍ମ ।"

ଏହା କହି ସେ ସତରଞ୍ଜିକୁ ଆସି ମୋ ପାଖେ ବସିଲେ ଓ ମୋର ମୁଣ୍ଡରେ ହାତ ବୁଲାଇ କହିଲେ, "ସଂସାର କରି ସିଦ୍ଧିମାର୍ଗରେ ଗତି କରିବା ବଡ଼ କଠିନ । ତୁମେ ସାହାଯ୍ୟ କଲେ ସଂସାର କରି ମଧ୍ୟ ଆମେ ବାଟ ଛାଡ଼ିବା ନାହିଁ । ଗୁରୁଙ୍କର ତ ଆଶୀର୍ବାଦ ରହିଛି ।" ମୁଁ ତାଙ୍କ ଛାତିରେ ମୁଣ୍ଡ ଗୁଞ୍ଜି ଗୁଡ଼ାଏ କାନ୍ଦିଲି । ଲୁହ ସାଙ୍ଗେ ମନର ସବୁ କଲ୍‌ମଷ ଧୋଇ ହୋଇଗଲା ।

ସତକୁ ସତ ତହିଁଆରଦିନ ବଡ଼େ ମହାରାଜଙ୍କଠାରୁ ଚିଠି ଆସିଲା । ଆମର ପ୍ରସ୍ତାବରେ ସେ ରାଜି ହୋଇ ଲେଖିଥାନ୍ତି, ଏଇଆ ହେବ ବୋଲି ସେ ଆଗରୁ କଳ୍ପନା କରିଥିଲେ, କେବଳ ଆଗରୁ କହିଲେ, ବାଧା ବାଧକତା ହେବ ବୋଲି କହିନଥିଲେ । ବାବୁଜୀଙ୍କ ଆଡ଼ୁ କଥା ଉଠୁ ନ ହୋଇ ମୋ ଆଡ଼ୁ ହୋଇଥିବାରୁ ସେ ସନ୍ତୁଷ୍ଟ ହୋଇଥାନ୍ତି ଓ ବିଭାଘରର ତାରିଖ ମଧ୍ୟ କରିଦେଇଥାନ୍ତି । ଆଉ ମାତ୍ର ଛଅଦିନ ବାକି । ଆମ ପାଖରେ ଟଙ୍କା ଥିବାର ସେ ଜାଣିଥିଲେ ; ଆଉ ଦରକାର ହେଲେ ଲେଖିବାକୁ କହିଥାନ୍ତି ଓ କିଭଳି ସୁଗୃହିଣୀ ହେବାକୁ ହେବ ସେ ବିଷୟରେ ମୋ ପାଖକୁ ମଧ୍ୟ ଲମ୍ବା ପରାମର୍ଶ ଦେଇଥାନ୍ତି । ଚିଠି ଖଣ୍ଡି ପଢ଼ି ନିଜକୁ ଭାଗ୍ୟବତୀ ବୋଲି ମନେ କଲି । ଓପରଓଳି ସ୍ୱାକୁ ଧରି ବାବାଙ୍କ ପାଖକୁ ଯିବାକୁ ହେବ, ଲାଜ ମାଡ଼ୁଥାଏ । ସେଦିନ ସକାଳ ଯାକ ମୋ ଆଡ଼େ କେହି ଚାହିଁଲେ ମୋତେ ଭାରି ସଂକୋଚ ଲାଗୁଥାଏ । ବାବୁଜୀ କିନ୍ତୁ ନିର୍ବିକାର । ସବୁଦିନ ପରି ଆମେ ମନ୍ଦିରକୁ ଗଲୁଁ ; ସେଠାରେ ବହୁତ ସମୟ ରହିଲୁଁ । ବାବୁଜୀ ମୋତେ ରତ୍ନ ସିଂହାସନ ପାଖକୁ ନେଲେ ଓ ମୋ ସଙ୍ଗେ ମହାପ୍ରଭୁଙ୍କୁ ମୁଣ୍ଡିଆ ମାଇଲେ ।

ଓପରଓଳି ବାବାଙ୍କ ପାଖକୁ ଯାଇ ମୁଣ୍ଡିଆ ମାରି ବାବୁଜୀ ଚିଠି ଖଣ୍ଡିକ ତାଙ୍କ ପାଦ ପାଖେ ଥୋଇଦେଲେ । ବାବା ଚିଠିକୁ ନ ଫିଟାଇ କହିଲେ, "ବେଶ୍, ଚିଠି ତ ଆସିଗଲା । ବିଭାଘର ଛଅ ଦିନରେ । ସାତମଙ୍ଗଳା ଏଇଠାରେ ସାରି, ଦଶମଙ୍ଗଳା ଦିନଠାରୁ ନିଜର କାର୍ଯ୍ୟକ୍ଷେତ୍ରକୁ ଯିବାକୁ ହେବ ।" ବାବୁଜୀ ବିସ୍ମିତ ହୋଇ ଚାହାନ୍ତେ ସେ କହିଲେ, "ଆଜି ସକାଳେ ଦୈବାତ୍ କଲିକତାରୁ ଜଣେ ଭକ୍ତ ଆସି ପହଞ୍ଚିଛନ୍ତି । ତାଙ୍କର କଲିକତା ପାଖରେ ଗୋଟାଏ ଚଟକଲ । ପ୍ରାୟ ୩ ହଜାର ଶ୍ରମିକ କାମ କରୁଛନ୍ତି । ତାଙ୍କୁ ସେ ସମ୍ଭାଳି ପାରୁ-ନାହାନ୍ତି । ତୁମେ ସେଠାରେ ଶ୍ରମିକତତ୍ତ୍ୱାବଧାରକ ହୋଇ କାମ କରିବ । ହାବଡ଼ାଠାରୁ ଚାରି ପାଞ୍ଚଟା ଷ୍ଟେସନ୍ ଏପଟକୁ ବାଗନାନ୍ ବୋଲି ଗୋଟାଏ ଜାଗାରେ ତାଙ୍କର ଖଣ୍ଡେ ଘର ଅଛି । ସେଇଠାରେ ତୁମେ ରହି ପ୍ରତିଦିନ ଯିବା ଆସିବା କରିବ । ଦିନ ତମାମ ତାଗିର ଭଲ ମନ୍ଦ ବୁଝିବାକୁ ଭଲ ସାଇପଡ଼ିଶା ମିଳିବେ ବୋଲି ଦିଶୁଛି । ଆଜି ସକାଳେ ତାଙ୍କ ସଙ୍ଗେ ସବୁ କଥାବାର୍ତ୍ତା ପକ୍‌କା ହୋଇଯାଇଛି । ତାଙ୍କର ଶୀଘ୍ର କଲିକତା ଫେରିବାର କଥା । ମୁଁ କହିବାରୁ ସେ ବିଭାଘରକୁ ରହିବେ ଓ ତୁମକୁ ବାଗନାନ୍ ବାଡ଼ିକୁ ନେବାପାଇଁ ତାଙ୍କର ଜଣେ କର୍ମଚାରୀଙ୍କୁ ଡକାଇ ସାରିଲେଣି । ସେ ବି ସେଇ ବାଗନାନ୍‌ରେ ରହନ୍ତି, ତୁମେ ଯେଉଁ ଘରେ ରହିବ ତା'ରି ପଡ଼ିଶାରେ ।" ମୁଁ ଏସବୁ ଶୁଣି ତାଜୁବ୍ ହେଉଥାଏ। କୋଉ ବାପ ଝିଅ

ପାଇଁ ଆଉ ଅଧିକ ଯତ୍ନ କରୁଥାନ୍ତେ ? ଲାଜରେ ମୁଁ ଭୂଇଁରେ ମୁହଁ ପୋତି ବସିଥାଏ । ଏବେ ବେଳେ ବେଳେ ଭାବୁଛି, ବାବା କ'ଣ ଆଉ ମୋ ଆଡ଼େ କୃପାଦୃଷ୍ଟି ଦେଉନାହାନ୍ତି ? ମନକୁ ବୋଧ ଦେଉଛି, ଯଦି ନ ଦେଉଥାନ୍ତେ, ତେବେ ମୋତେ ଏମିତି ଆଶ୍ରା ମିଳିଲା କେମିତି ?

ଆମେ ବାବାଙ୍କ ପାଖରେ ବସିଛୁ, ଚଟକଲ ମାଲିକ ଆସି ବାବାଙ୍କୁ ମୁଣ୍ଡିଆ ମାଇଲେ । ବାବା ପଚାରିଲାପରେ ତାଙ୍କ ଆଡ଼କୁ ଚାହିଁବାରେ ସେ କହିଲେ, "ମହାରାଜ ! ହେଇଟି ଆମର ସ୍ୱେ ପଣ୍ଡା । ସ୍ୱାଙ୍କର ଲିଙ୍କଂହାଉସ୍‌ରେ ସ୍ୱେ ଆୟୋଜନ ଆରମ୍ଭ କରି-ଦେଲେଣି । ମୁଁ ମୋର ମୁନିମ୍‌ଙ୍କୁ ଟେଲିଫୋନ କରିଦେଲିଣି । ସେ କାଲି ସକାଳ ଏକ୍‌ସପ୍ରେସ୍‌ରେ ଆସି ପହଞ୍ଚିବେ ।" ବାବା ବାବୁଜୀଙ୍କୁ ଦେଖାଇ କହିଲେ "ଏଇ ତମର ସହକର୍ମୀ । ମୋ' ପକ୍ଷରୁ ସ୍ୱେ ତୁମ ପାଖରେ ରହିଲେ ବୋଲି ଜାଣିବ । ମୋର ଆଶା, ସ୍ୱେ ତୁମ ପାଖେ ଥିବା ପର୍ଯ୍ୟନ୍ତ ତୁମ ଚଟକଲରେ କୌଣସି ଗୋଳମାଳ ହେବ ନାହିଁ, ସ୍ୱାଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ଦେବ ଏବଂ ସ୍ୱେ ଯାହା ପରାମର୍ଶ ଦେବେ ନିର୍ବିଚାରରେ ଗ୍ରହଣ କରିବ । ପଇସାକୁ ମୋଡ଼ ଭିଡ଼ ହେବ ନାହିଁ । ପଚାଶ ଷାଠିଏ ବର୍ଷ ତୁମେମାନେ ଲୋକଙ୍କୁ ଚିପୁଡ଼ିଲ, ଏଥର ଏଣିକି ଶ୍ରମିକ ତୁମକୁ ଚିପୁଡ଼ିବେ । ଯେତିକି ମୋଡ଼ ଭିଡ଼ ହେବ ଚିପୁଡ଼ା ସେତିକି କାଟିବ । ମା'ର ସ୍ତନରୁ କ୍ଷୀର ବାହାରିଲା ପରି ତୁମର ଧନ ଶ୍ରମିକଙ୍କ ପାଖକୁ ଯିବା ଦରକାର । ତା' ନକରି ଛେଳି ପରି ଯଦି ଚେରେଇବ, ତେବେ ଝୁଡ଼ାଏ ମୁଥ ଖାଇବାକୁ ପଡ଼ିବ ।" ଚଟକଲ ମାଲିକ ଜଣେ ପ୍ରୌଢ଼ ମାରୁଆଡ଼ି ବାବାଙ୍କ ପାଖେ ପିଲାଟି ପରି ବସି ସବୁ ଶୁଣୁଥାନ୍ତି । ପରେ ବାବୁଜୀଙ୍କଠାରୁ ଶୁଣିଲି, ବାବା ଦିଲ୍ଲୀରେ ଚାକିରି କଲାବେଳୁ ସ୍ୱେ ତାଙ୍କୁ ଚିହ୍ନିଥିଲେ । ଆଜି ସକାଳେ ଦୈବାତ୍ ବଡ଼ ଦେଉଳ ବେଢ଼ାରେ ବାବାଙ୍କୁ ଦେଖିଲେ, ବର୍ଷେ ଖଣ୍ଡେ ପରେ । ଚଟକଲରେ ଧର୍ମଘଟ ଓ ଘେରାଉ ଲାଗି ରହିବାରୁ ସେ ବ୍ୟତିବ୍ୟସ୍ତ ହୋଇ ଜଗନ୍ନାଥ ମହାପ୍ରଭୁଙ୍କ ପାଖକୁ ଚାଲିଆସିଥିଲେ । ବେଢ଼ାରେ ବାବାଙ୍କୁ ଦେଖି ଜଗନ୍ନାଥଙ୍କ ଚଳନ୍ତି ପ୍ରତିମା ଦେଖିଲେ ବୋଲି କହି ନିଜର ସବୁ ସମସ୍ୟା ପାସୋରି ବାବାଙ୍କ ପିଛା ଧରିଛନ୍ତି । ତାଙ୍କର ଅଳି, ବାବା ଟିକିଏ କଲିକତା ଯା'ନ୍ତେ । ବାବା ଜବାବ୍ ଦେଇଥିଲେ, "ମୋତେ କୌଣସି ଜଞ୍ଜାଳକୁ ଟାଣେ ନା । ମୁଁ ମୋର ପ୍ରତିନିଧି ଜଣେ ତୋତେ ଦେବି । ଆଉ ଚାରିଦିନ ପରେ ମୋତେ ଏଠା ଛାଡ଼ି ଅଜ୍ଞାତ ବାସ କରିବାକୁ ହେବ ।" ତା'ପରେ ଚାରିବର୍ଷ ଚାଲିଗଲାଣି । ମୁଁ ବାବୁଜୀଙ୍କୁ ହରାଇବାର ହୋଇଗଲାଣି ସାତମାସ । ଯେ ପର୍ଯ୍ୟନ୍ତ ବାବାଙ୍କର କୌଣସି ସନ୍ଧାନ ଚଟକଲମାଲିକ ପାଇନଥାନ୍ତି । ସେ ପ୍ରତିବର୍ଷ ଆମ ଦେଶର ପ୍ରାୟ ପ୍ରତ୍ୟେକ ତୀର୍ଥକୁ ଯା'ନ୍ତି ଓ ତାଙ୍କର ଲୋକଙ୍କୁ ବି ବାବାଙ୍କୁ ଖୋଜିବାକୁ ଚାରିଆଡ଼େ ବୁଲାନ୍ତି । ସେ ଥରେ ବାବୁଜୀଙ୍କୁ କହୁଥିଲେ, ବାବା ବୋଧହୁଏ କୌଣସି ଅଜ୍ଞାତ ପାହାଡ଼ ପର୍ବତରେ ଚିହ୍ନା ନ ଦେଇ ରହିଛନ୍ତି ।

ତହିଁ ଆରଦିନ ଦି'ପହରେ ଚଟକଲ ମାଲିକଙ୍କର ଯେଉଁ କର୍ମଗୃହୀ ଜଣକ ଆମ ପାଖେ ଆସି ପହଞ୍ଚିଲେ ତାଙ୍କୁ ଦେଖି ବାବୁଜୀ ଓ ମୁଁ ଦୁହେଁ ଯାକ ଆଶ୍ଚର୍ଯ୍ୟ ହୋଇଗଲୁଁ । ସେ ସେଇ ବଙ୍ଗାଳୀ ଭଦ୍ରଲୋକ, ଯାହାଙ୍କୁ ଆମେ ପୁରୀ ଆସିବା ବେଳେ ରେଲରେ ଦେଖିଥିଲୁଁ । ସେ ଆମକୁ ଦେଖି ଯେତିକି ବିସ୍ମିତ ହେଲେ ତହିଁରୁ ଅଧିକ ଆନନ୍ଦିତ ହେଲେ । ମୋ ମୁଣ୍ଡରେ ହାତ ରଖି ସେ କହିଲେ, "ମା, ସୁଲକ୍ଷଣୀ ହୋଇଥାଆ । ବାବା ମୋତେ ହୁକୁମ କରି ସାରିଲେଣି ମୁଁ କନ୍ୟାଦାନ କରିବି । ବଡ଼ ଆନନ୍ଦ ଲାଗୁଛି । ତୋରି ବୟସର ଝିଅଟିଏ ମୋର ଅଛି । ଆଉ ମାସକରେ ତା'ର ବାହାଘର । ସେଠାଯା ଯଦି ଏକଥା ଆଗରୁ କହିଥାନ୍ତେ, ତେବେ ତାକୁ ଏଇଠିକୁ ଆଣି ତୋରି ସାଙ୍ଗେ ବାହା ଦେଇଦେଇଥାନ୍ତି । ହଉ, ହଉ, ହୁକୁମ ତ ହେଲାଣି ତୁମେ ଦୁହେଁ ଯାଇ ମୋର ବସା ପାଖ କୋଠାରେ ରହିବ । ଘର ପରିଷ୍କାର କରି ପ୍ରସ୍ତୁତ ରଖିବାକୁ ହୁକୁମ ପଠାହୋଇଗଲାଣି ।" ଟିକିଏ ରହି ବଡ଼ ପାଟିରେ ହସି ସେ କହିଲେ, "ଶୁଣିଲଣିଟି ? ମୁଁ ହେବି ବାବାଙ୍କ ସମ୍ବନ୍ଧୀ । ସେ ହେବେ ବରପିତା । ଯୋଗ୍ୟଂ ଯୋଗ୍ୟେନ ଯୋଜୟେତ୍ । ଏଭଳି ବରର ପିତା ବାବା ନହୋଇ କିଏ ହେବ ? ମୁଁ କହିଲି, ମୋ କନ୍ୟାକୁ ମୁଁ ବ୍ରାହ୍ମଣ ହାତରେ ଦେବି । ବାବା ହୁକୁମ କଲେ, କିଛି ଚିନ୍ତା ନାହିଁ । ବିବାହ ପୂର୍ବରୁ ଆମେ ପୁଅକୁ ଯଜ୍ଞୋପବୀତ ଦେଇ ଦେବା । ସଂସ୍କାରାତ୍ ଦ୍ୱିଜମୁଚ୍ୟତେ । ବାବୁଜୀର ସଂସ୍କାର ହୋଇସାରିଛି । ଖାଲି ପଇତାଟାଏ ଦେଇଦେବାର କଥା । ମୁଁ ଟିକିଏ ମୋଡ଼ି ଭଡ଼ି ହେଉଥିଲି । ତାଙ୍କ ଆଗରେ ମୁଁ କିଏ ? ଦି'ପଦ କଥାରେ ମନ ବୁଝିଗଲା । ମା ! ସେ ହେଉଛନ୍ତି ସାକ୍ଷାତ ଭଗବାନଙ୍କର ଅବତାର ।"

ବାହାଘର ଆଡ଼ମ୍ବରରେ ହେଲା । ବାବୁଜୀଙ୍କର ଇଚ୍ଛା ଖୁବ୍ ସାମାନ୍ୟରେ ହୁଅନ୍ତା । ବାବା କହିଲେ, "ସାମାନ୍ୟରେ ତ ହେବ । ଲୁଗାପଟା ଅଲଙ୍କାର ନାଁ ଧରିବା ନାହିଁ । ଖାଲି ପୁଞ୍ଜିଏ ପୁଞ୍ଜିଏ ମହାପ୍ରସାଦ ସେବା କରାଇବାକୁ ତ ପଡ଼ିବ ।" ପ୍ରାୟ ପାଞ୍ଚହଜାର ଲୋକ— ଆବ୍ରାହ୍ମଣଚଣ୍ଡାଳ ମହାପ୍ରସାଦ ସେବା କଲେ ଏବଂ ପ୍ରତ୍ୟେକେ ଖଣ୍ଡିଏ ଖଣ୍ଡିଏ ଲୁଗା ଓ ଗାମୁଛା ପାଇଲେ । ବାବୁଜୀ ଆମ ପାଖରେ ଥିବା ଟଙ୍କା କଥା ବାବାଙ୍କୁ କହିବାରେ ସେ କହିଲେ, କନ୍ୟାପକ୍ଷରୁ ସବୁ ଖର୍ଚ୍ଚ ହେବ । ତୋ'ପାଖରେ ଯାହା ଅଛି ତାକୁ ରଖିଥା । ତାଙ୍କ ପାଖରେ ଯାହା ଅଛି ସେ ତ ସେଇ ତାରାର ବୋଲି ବାବୁଜୀ କହିବାରେ ବାବା ପଦେ କଥାରେ ଉଡ଼ାଇଦେଲେ, 'ସ୍ତ୍ରୀ ଧନ' ।

ଚଉଠି କର୍ମ ସରିଲା ରାତି ୧୨ ଟା ବେଳକୁ । ଅତିଥି ଅଭ୍ୟାଗତ ବିଦା ହେଲା ପରେ ଆମ ଶୋଇବାଘରେ ମୋର ସତରଞ୍ଜିଟି ମୁଁ ତାଙ୍କ ଖଟତଳେ ପକାଉଛି, ବାବୁଜୀ କହିଲେ, "ଏ ଖଟକୁ ଆସ । ଆଜି ପୃଥକ୍‌ଶଯ୍ୟା ବିଧିସମ୍ମତ ନୁହେଁ । ମୁଁ ସନ୍ତର୍ପଣରେ ତାଙ୍କ ଖଟର କୋଣିଏ କୁଣରେ ବସିବାରେ ସେ ମୋତେ ପାଖକୁ ଟାଣି ନେଇ ପ୍ରେମାର୍ଦ୍ର ସ୍ୱରରେ କହିଲେ, "ତାରା, ଆମେ ଦୁହେଁ ବର୍ତ୍ତମାନ ବିଷମ ପରୀକ୍ଷାର ସମ୍ମୁଖୀନ ହେବା । ତୁମର ସାହାଯ୍ୟ ପାଇଲେ ମୋର ବ୍ରତ ମୁଁ ପାଳନ କରିବି । ଆମ ପରମ୍ପରାରେ ସ୍ୱାମୀ ସ୍ତ୍ରୀର ଆଚରଣ

ଯେପରି ପ୍ରତିଷ୍ଠିତ ହୋଇଛୁ, ତୁମେ ସାଙ୍ଗ ହେଲେ ଆମେ ସେହିପରି ଚଳିବା । ସ୍ତ୍ରୀର ଇଚ୍ଛା ପୂରଣ କରିବା ସ୍ୱାମୀର ଧର୍ମ, କିନ୍ତୁ ପୁତ୍ରପ୍ରାପ୍ତି ଉଦ୍ଦେଶ୍ୟରେ ମାତ୍ର ସ୍ତ୍ରୀ ପତିସଙ୍ଗମ କାମନା କରେ । ଏତିକ ସବୁବେଳେ ମନେ ରଖିଥିବ ।" ତାଙ୍କ ସଙ୍ଗ ପାଇଲି, ତାଙ୍କ ଗୋଡ଼ରେ ହାତ ମାରିବାର ଅଧିକାର ପାଇଲି, ତାଙ୍କୁ ମୋର ବୋଲି କହିବାର ସୌଭାଗ୍ୟ ପାଇଲି, ଏହାଠାରୁ ଅଧିକ ମୋର କୌଣସି କାମନା ନ ଥିଲା । ତାଙ୍କର ଗୋଡ଼ରେ ହାତ ବୁଲାଉ ବୁଲାଉ ତାଙ୍କର ଗୋଡ଼ତଳେ ମୋତେ ନିଦ ହୋଇଗଲା । ପାହାନ୍ତିଆରେ ନିଦ ଭାଙ୍ଗିଲା ବେଳକୁ ଦେଖିଲି, ମୁଁ ତାଙ୍କ କୋଡ଼ରେ ସ୍ଥାନ ପାଇଛୁ ।

ଦାଣମଙ୍ଗଳା ଦିନ ଠାକୁର ଦର୍ଶନ କରି ବ୍ରାହ୍ମଣ, ଅତିଥି ଓ ଦୀନ ଦୁଃଖୀଙ୍କୁ ଭୋଜନ ଓ ଦକ୍ଷିଣା ଦେଇ ଆମେ ବାନୁର୍ଜି ବାବୁଙ୍କ ସଙ୍ଗେ ବାଗନାନ୍ ଗଲୁଁ । ତା' ଆରଦିନ ସକାଳେ ଆମପାଇଁ ନିର୍ଦ୍ଦିଷ୍ଟ ଘରେ ପଶିଲା ବେଳେ ବାନୁର୍ଜି ବାବୁଙ୍କ ସ୍ତ୍ରୀ ଓ ଝିଅ ଦୁଇଟା ଶଙ୍ଖ ଫୁଙ୍କି ମୋତେ ସ୍ୱାଗତ କଲେ । ବାନୁର୍ଜି ବାବୁ ମୋର ପିତା ହେବାର ଖବର ପାଇ ତାଙ୍କ ଧର୍ମ-ପତ୍ନୀ ମୋର ମା' ହୋଇ ସାରିଥିଲେ । ତାଙ୍କ ଝିଅଟି ତ ମୋର ଗୁଡ଼ି ପରି ସାଙ୍ଗେ ସାଙ୍ଗେ ଥାଏ । ବିଭାହୋଇ ସାରିଲା ପରେ ମଧ୍ୟ ୧୦।୧୫ ଦିନରେ ବାପଘରକୁ ପଳାଇ ଆସେ, 'ଦିଦି' ସାଙ୍ଗେ ରହିବ ବୋଲି । ତା'ର ସ୍ୱାମୀ ମୁଖାର୍ଜିବାବୁ ମଧ୍ୟ ମୋତେ ଦେଢ଼ଶାଶୂ ମାନ୍ୟ କରୁଥାନ୍ତି । ଏମାନଙ୍କ ସଙ୍ଗେ ମୁଁ ପ୍ରାୟ ଚାରିବର୍ଷ ରହିଲି । ସମସ୍ତେ ସେମାନଙ୍କ ସ୍ନେହକୁ ଦ୍ୱିଗୁଣ କରିବା ପରିବର୍ତ୍ତେ, ବଢ଼ାଉଥାଏ ।

ଶେଠଜୀ ମଧ୍ୟ ବାବୁଜୀଙ୍କଠାରେ ଖୁବ୍ ବିଶ୍ୱାସ ରଖିଥାନ୍ତି । ବାବୁଜୀ ସକାଳ ୮ଟାରେ ଖାଇ କାମକୁ ଯାନ୍ତି ରେଲରେ, ରାତି ୧୨ଟାରେ ମଟରରେ ଘରକୁ ଫେରନ୍ତି । ଶେଠଜୀଙ୍କର ମନ, ମଟରଟା ଆମ ପାଖେ ରହନ୍ତା । ବାବୁଜୀ ନାହିଁକରନ୍ତି । ମଟର ରାତିରେ ଯାଇ ମିଲ ଭିତରେ ରହିବା ଉଚିତ । ରାତିରେ କାମ ଥିବାରୁ ସିନା ମଟର ଦରକାର ; ସକାଳେ ଲୋକାଲ ଗାଡ଼ିରେ ଗଲେ ତ ଅଧଘଣ୍ଟାରେ ମିଲ୍‌ରେ ପହଞ୍ଚିବେ । ବାନୁର୍ଜିବାବା କହନ୍ତି, "ବାବୁଜୀ ନିଜ ଇଚ୍ଛାରେ ରାତି ଅଧଯାଏଁ ରହୁଛନ୍ତି । ୬ଟା ବେଳେ ସମସ୍ତେ କାମରୁ ଛୁଟି ପାଉଛନ୍ତି । ଯାଙ୍କ କାମ ପୂର୍ବେ ଯେ କରୁଥିଲେ ସେ ଏ ଓଳି ଘଣ୍ଟେ ସେ ଓଳି ଘଣ୍ଟେ ମୁହଁ ଦେଖାଇ ଛୁ ମାରନ୍ତି ।

ବାବୁଜୀଙ୍କୁ ମୁଁ ଏକଥା ଥରେ କହିଥିଲି । ସେ କହିଲେ, "ବାନୁଜି ମହାଶୟ ହିସାବରକ୍ଷକ । ଛୁଟି ବାଜିଲେ ତାଙ୍କ କାମ ଶେଷ । ରାତି କାମରେ ଅଫିସବାଲା ପ୍ରାୟ ରହନ୍ତି-ନାହିଁ । କିନ୍ତୁ ମୋର କାମ ଅଲଗା । ଶ୍ରମିକମାନେ ଯେଉଁଠି ବସା କରି ରହନ୍ତି ମୋର ସେଠାକୁ ଯିବା ଦରକାର । ଓଡ଼ିଆ ଶ୍ରମିକମାନେ ଯେଉଁଠି ରହନ୍ତି ସେଠାରେ ଓଡ଼ିଆ ଭାଗବତ ଲଗାଇଛୁ ; ମୁସଲମାନ ଶ୍ରମିକମାନଙ୍କୁ କୋରାଣ ପଢ଼ାଇବାର ବ୍ୟବସ୍ଥା କରିଛୁ; ବିହାରୀମାନେ ତୁଳସୀ ରାମାୟଣ ଲଗାଇଛନ୍ତି ; ବଙ୍ଗାଳୀମାନେ କାଶିରାମଙ୍କ ମହାଭାରତ ।

ସେମାନଙ୍କ ପରିବାରବର୍ଗଙ୍କ ଦେଖି ଯା କଥା ବୁଝିବାକୁ ପଡ଼େ । ଯେଉଁମାନେ କାବୁଲିଙ୍କ ହାତୁଡ଼େ ପଡ଼ିଛନ୍ତି ସେମାନଙ୍କୁ ତାଙ୍କଠାରୁ ଉଦ୍ଧାର କରିବାକୁ ପଡ଼େ ।''

ମୁଁ ପଚାରିଲି, ''ବହୁତ ଖର୍ଚ୍ଚ ହେଉଥିବ ?'' ସେ କହିଲେ, ''କିଛି ଖର୍ଚ୍ଚ ତ ହେବାର କଥା । ଶେଠ୍‌ଜୀ ଏ ବିଷୟରେ ମୁକ୍ତହସ୍ତ । ସେ ଦେଖୁଛନ୍ତି, ଯାହା ଫଳରେ ଶ୍ରମିକ-ମାନେ ମନ ଦେଇ କାମ କରୁଛନ୍ତି । ଜଣେ ଶ୍ରମିକ ଘଣ୍ଟେ ମନ ଦେଇ କାମ କଲେ ଶେଠ୍‌ଜୀଙ୍କର ଯେତେ ଲାଭ, ମାସକୁ ସେତିକ ଦେଲେ ମୋର କାର୍ଯ୍ୟକ୍ରମ ସବୁ ସୁରୁଖୁରୁରେ ଚାଲିବ । ମୋତେ ସେ ମାସକୁ ୬ଶହ ଟଙ୍କା ଦେବାକୁ କହୁଥିଲେ । ମୁଁ କହିଲି, ଚାରିଶହ ଟଙ୍କା ମୋର ଯଥେଷ୍ଟ । ମୋର ଇଚ୍ଛା, ଯେବେ ଦୁଇଶହ ଶ୍ରମିକଙ୍କ ପିଛା ଖର୍ଚ୍ଚ ହେଉ । କିନ୍ତୁ ଶେଠଜୀଙ୍କର ଏକା ଜିଦ୍, ତାହା ତୁମନାମରେ ଭବିଷ୍ୟତ୍ ପାଇଁ ପୋଷ୍ଟ୍ ଅଫିସରେ ଜମା ରହିବ । ମୋତେ ତିନି ଚାରିଥର କହିଲେଣି, ତୁମର ଗୋଟାଏ ଦସ୍ତଖତ ନେବାକୁ ।''

ସମସ୍ତ ବଡ଼ ଆନନ୍ଦରେ କହୁଥିଲି । କିନ୍ତୁ ମୋ ପରି ଅଭାଗିନୀ ଏତେ ସୁଖ ଓ ସନ୍ତୋଷର ଅଧିକାରିଣୀ ହୁଅନ୍ତା କିପରି ?'

( ୨୪ )

ଅପରାହ୍ଣ ୪ଟା ବେଳକୁ ପଣ୍ଡିତ ମକବାଟେ ଆସିଲା ବେଳକୁ ଦାସେ ଦାଣ୍ଡ ଘରେ ବୁଢ଼ୀମାନଙ୍କୁ ବାହାରିଥାନ୍ତି । କେ'କେ ହୋଇ ପଣ୍ଡିତମକବାଟେ କହିଲେ, ''କାଲି ଆପଣଙ୍କ ପାଖୁ ରାତି ଏଗାରଟାରେ ଯିବା ବେଳୁଁ ଭାବୁଛି ସେଇ ତାରା କଥା । ଏଡ଼େ ଆଡ଼ମ୍ବରରେ ବିଭାଘର ହେଲା, ଏଡ଼େ ସୁଖରେ ଯାଇ ବର ସାଙ୍ଗେ ବାଗନାରେ ରହିଲା, ପୁଣି କ'ଣ ହେଲା ଯେ, ନିରକ୍ଷ ହୋଇ ଆମ ଏଠାରେ ଆସି ପହଞ୍ଚିଛି ! —ଏଇକଥା ଶୁଣିବାକୁ ଉତ୍କଣ୍ଠା ହେବାରୁ ଦୁ'ପହରୁ ବସିରହିଛି କମିତ ଆସିବ । ବେଗେ ଆସିଗଲି ପରା ? କାହିଁ କେହି ତ ନାହାନ୍ତି !''

ଦାସେ କହିଲେ, ''ସମସ୍ତେ ଅଛନ୍ତି, ଏଇଲାଗେ ମୋତେ ଦାଣ୍ଡଦୁଆରେ ଦେଖି ଅସି ପହଞ୍ଚିବେ । ନାହାନ୍ତି କେବଳ ବାରିବାବୁ । ତାରାକୁ ନେଇ ତା' ବୋଉ ଯାଇଛି ଡାକ୍ତର-ଖାନାକୁ ; ବାରିବାବୁ ସାଙ୍ଗରେ ଯାଇଛନ୍ତି । ଏତେବେଳକୁ ତ ଫେରିବାର କଥା, କାହିଁକି ଡେରି ହେଉଛି କେଜାଣି ?''

ଦୁହେଁ ବସି କଥାବାର୍ତ୍ତା ହେଉଛନ୍ତି, ମହାପାତ୍ରେ, ନାୟକେ ଓ ବାହ୍ମଣପତି ପ୍ରମୁଖ ଜଣ ଜଣ ହୋଇ ଆସି ପହଞ୍ଚିଲେ । ମହାପାତ୍ରେ କହିଲେ, ''ଜାଣିଲ ଦାସେ, ଏଇ ତାରାର ବୃତ୍ତାନ୍ତ ଶୁଣିବାବୋଲି ଗୁଡ଼ାଏ ଦିନ ଅଲସୁଆ ହୋଇ ବସିଲେଣି । ମୁଁ ବରିଚୁଛି ଥରେ ପୁରୀ ଯାଇ ଧର୍ମଶାଳାରୁ ତାରା ବରର ନାମଟା ଜାଣି ଆସନ୍ତି । ବାଗନାନ୍ ଗଲେ, ଦାନକେ-ବାବୁଙ୍କଠାରୁ ଓ ଚଟକଳମାଲିକଙ୍କଠାରୁ ଗୁଡ଼ାଏ ଖବର ମିଳନ୍ତା ।''

ଦାସେ କହିଲେ, "ମୁଁ ବି ସେଇ କଥା ଭାବୁଛି ଯେ, ତାର ନିରାପଦରେ ଖଲାସ ହେବାର ଜାଣିଗଲେ ଶାନ୍ତିରେ ଯିବି । ଏକାଥରକେ ପୁରୀ ଓ କଲିକତା ହୋଇ ଫେରିବି । ତା'ପରେ ଆଉ ଯାତ୍ରା । ବାଣବାବୁ ଏତେବେଳଯାଏଁ ଡାକ୍ତରଖାନାରୁ ନ ଫେରିଲେ କିଆଁ ? ସକାଳ ୯ଟାଠାରୁ ଗଲେଣି !"

ତାଙ୍କ ତୁଣ୍ଡରୁ କଥା ସରିନାହିଁ ବାଣବାବୁ ଅଡ଼ଙ୍ଗ କଡ଼ରେ ସାଇକଲ ଡେରିଲେ ଓ ଗୃହିଣୀଙ୍କୁ ଉଠୁ ଉଠୁ କହିଲେ, "ଏମାନେ ଶିକ୍ଷାରେ ଅସୁଛନ୍ତି ।" ଡାକ୍ତରାଣୀ କହିଲେ, କୌଣସି ଭୟ ନାହିଁ । ପିଲାଟି ଭଲ ଅଛି, ମା'ର ବି ସ୍ୱାସ୍ଥ୍ୟ ଭଲ । କିନ୍ତୁ ଆଉ ୧୫।୨୦ ଦିନ ଯିବ । ଏଇଠାରେ ପ୍ରସୂତ ହେବ ; ଖବର ଦେଲା ମାତ୍ରେ ଡାକ୍ତରାଣୀ ଆସି ଦେଖିଯିବେ ଏବଂ ଜଣେ ଧାଈ ମୁକରର କରିଦେବେ ।" ଘଣ୍ଟିମଙ୍କବାଟଙ୍କୁ ଗୃହିଁ ବାଣବାବୁ କହିଲେ, "ଆପଣ ଆସି କେତେବେଳୁ ଅପେକ୍ଷା କରି ବସିଲେଣି ! ମୁଁ ଗୋଡ଼ ଧୋଇ କରି ଆସେ, ତାପରେ ବୃତ୍ତାନ୍ତ ସାରିଦେବା । ଆଉ ଅଳ୍ପ ଟିକିଏ ଅଛି ।"

ଟିକିକ ପରେ ବାଣବାବୁ ଗୃହିଣୀଙ୍କୁ ଆସିଲେ ଓ ତାପରେ ବୃତ୍ତାନ୍ତ ପଢ଼ିବାକୁ ଆରମ୍ଭ କଲେ :

ବାଗବାଜାର୍‌ରେ ମୋର ଦିନଟିମାନ ବଡ଼ ଆନନ୍ଦରେ କଟିଯାଉଥାଏ । ବାବୁଜୀ ସକାଳ ୯ଟା, ସାଢ଼େ ୯ଟାରେ ଯାନ୍ତି ଯେ ଫେରନ୍ତି ରାତି ଅଧିକୁ । ବାନୁର୍ଜିବାବୁ ସଂଧ୍ୟାରେ ଆସିଲା ପରେ ମୋତେ ଇଂରେଜି ପଢ଼ାନ୍ତି । ଏକୁଟିଆ ବେଳେ ମୁଁ ଓଡ଼ିଆ ଓ ବଙ୍ଗଳା ବହି ପଢ଼େ । ବାନୁର୍ଜିବାବୁଆଣୀ କହନ୍ତି, "ତୋ' ହାତରେ କେଡ଼େ ବେଗେ ପାଠ ହେଉଛି ମ ତାରି ? ତୁ କେଡ଼େ ସୁନ୍ଦର ବଙ୍ଗଳା କହିପାରୁଛୁ । ଗଡ଼ ଗଡ଼ କରି ରବୀନ୍ଦ୍ରନାଥଙ୍କ ଗୀତା-ଞ୍ଜଳି ପଢ଼ିଦେଉଛୁ ।" ଟିକିଏ ଫୁରସତ୍ ପାଇଲେ ସେ ମୋ ପାଖେ ଆସି ବସନ୍ତି ; ମୁଁ ଶରତଚନ୍ଦ୍ରଙ୍କର ଉପନ୍ୟାସ ପଢ଼ି ଶୁଣାଏ । ଓଡ଼ିଆରେ ଫକୀରମୋହନଙ୍କର ଛ'ମାଣ ଆଠଗୁଣ୍ଠ, ଲଛମା ଓ ମାମୁଁ ପଢ଼ି ବୁଝାଇଦିଏ । ଦୁଇବର୍ଷରେ ମୁଁ ବେଶ୍ ଇଂରେଜି ପଢ଼ିପାରିଲି । ବାନୁର୍ଜିବାବୁ ଖୁସିହୋଇ କହନ୍ତି, "ତୁମେ ଘରୋଇ ଛାତ୍ରୀ ଭାବେ ମାଟ୍ରିକୁଲେଶନଟା ପାସ୍ କରିଦେଲେ, ବେଥୁନ୍ କଲେଜରେ ତୁମର ନାମ ଲେଖାଇଦେବା । ଶେଠ୍‌ଙ୍କୁ କହିଲେ ସେ ଆଗ୍ରହରେ ଯିବା ଆସିବାକୁ ମଟର ଯୋଗାଇଦେବେ ।" ବାବୁଜୀ ଏ କଥା ଶୁଣି କହନ୍ତି, "ଏମାନଙ୍କର ପାଠ ବିଷୟରେ ବିଚିତ୍ର ଧାରଣା ! ମୁଁ ମନେକରେ, ତୁମେ ବେଥୁନ୍ କଲେଜରେ ବି. ଏ. ପାସ କରିବା ଅପେକ୍ଷା ଢେର ଅଧିକ ଜାଣିଲଣି । ସ୍ତ୍ରୀମାନଙ୍କର କଲେଜ ଗୃହସ୍ଥାଳୀ ।"

କଲେଜରେ ଯାଇ ପାଠ ପଢ଼ିବାର ଆକାଂକ୍ଷା ମୋର ନ ଥାଏ । ବେଳେବେଳେ ମନେ ହୁଏ, କୋଡ଼ରେ ପିଲାଟିଏ ଥିଲେ, ମୋର ସୁଖ ସଂପୂର୍ଣ୍ଣ ହୁଅନ୍ତା । କୋଡ଼ରେ ପିଲାର ଅଭାବ ପୂରଣ କରିବାକୁ ମୁଁ ସାଇ ପଡ଼ିଶାର ପିଲାଙ୍କୁ ଆଦର କରି ଘରକୁ ଆଣେ । ବାବୁଜୀ ତାଙ୍କ ପାଇଁ ମିଠେଇ ଓ ଖେଳଣା ଆଣିଦିଅନ୍ତି । ତାଙ୍କୁ ପଢ଼ାଇବା ପାଇଁ ଗ୍ରେଟ

ଷ୍ଟେଟ୍ ବଙ୍ଗଳା ବନ୍ଦ ମଧ୍ୟ ଆଣନ୍ତି । ତାଙ୍କର ଅସଲ ଉଦ୍ଦେଶ୍ୟ, ମୋ ମନରେ କିମିତି ସବୁ-ବେଳେ ଶାନ୍ତି ଓ ତୃପ୍ତି ରହିବ ।

ସେ ଜନ୍ମ ସମସ୍ତ ଅଶାନ୍ତି ଭିତରେ ଶାନ୍ତ ଓ ନିରୁଦ୍‌ବିଗ୍ନ ହୋଇ ରହିଥାନ୍ତି । ସେ ଚଟକଲରେ ରହିବାର ବର୍ଷେ ଖଣ୍ଡେ ପରେ କଲିକତାର ଆଖପାଖ ସବୁ ଚଟକଲରେ ଶ୍ରମିକମାନେ ଧର୍ମଘଟ କଲେ । ଆମ ଚଟକଲର ଶ୍ରମିକଙ୍କ ପ୍ରତିନିଧି ବାବୁଜୀଙ୍କ ପରାମର୍ଶ ଲୋଡ଼ିଲେ, ଏ ପରିସ୍ଥିତିରେ କ'ଣ କରିବେ । ଅନ୍ୟ ଚଟକଲର ଶ୍ରମିକମାନେ ଯେଉଁ ସୁବିଧା ଓ ସୁଯୋଗ ଦାବି କରୁଥାନ୍ତି ଆମ ଚଟକଲରେ ଶ୍ରମିକମାନଙ୍କୁ ସେ ସବୁ ମିଳିଥାଏ । ତଥାପି ବାବୁଜୀ କହିଲେ, ତୁମେମାନେ ଗୋଠଖଣ୍ଡିଆ ହୋଇ ରହ ବୋଲି ମୁଁ କହିବିନାହିଁ । ଅନ୍ୟ ଚଟକଲ ମାଲିକମାନେ ହାତବାନ୍ଧି ବସିଥିବା ବେଳେ ଆମେ କଲ ଚାଲୁ କରି ଗୁଡ଼ାଏ ମାଲ ବଜାରକୁ ଯୋଗାଇ ଅଧିକା ସୁବିଧା ମାରିନେବା ମଧ୍ୟ ଅନ୍ୟାୟ । ଅନ୍ୟମାନଙ୍କୁ ସହାନୁଭୂତି ଦେଖାଇ ତୁମେମାନେ ହପ୍ତେ ଖଣ୍ଡେ ଷ୍ଟ୍ରାଇକ୍ କର । ତା'ପରେ ଟିକିଏ ମନ ଲଗାଇ କାମ କରିଦେଲେ ଆମର କ୍ଷତି ଭରଣା ହୋଇଯିବ । ତାହାର ଆଶା ଦେଖିଲେ, ଶେଠଜୀ ମଧ୍ୟ ଧର୍ମଘଟ ସମୟର ଦରମା ଦେବାକୁ ରାଜି ହେବେ ।" ଶ୍ରମିକ ପ୍ରତିନିଧି ଏକଥା ଶୁଣି ବିସ୍ମିତ ହେଲେ ।

ବାବୁଜୀ ଆହୁରି କହିଲେ, "ତୁମେମାନେ ଏ ଧର୍ମଘଟରେ ଯୋଗ ଦେଇ ଶ୍ରମିକ-ମାନଙ୍କର ଗୋଟିଏ ସାମୂହିକ କଲ୍ୟାଣ କରିବ ବୋଲି ମୋର ଆଶା । ତୁମେ ଶ୍ରମିକ ଭାଇ-ମାନଙ୍କୁ ବୁଝାଇବ ଯେ ଗୁଡ଼ାଏ ଦିନ କାମ ବନ୍ଦ କରି ରଖିଲେ ତୁମର କ୍ଷତି, ମାଲିକର କ୍ଷତି ଓ ଦେଶର କ୍ଷତି । ଝୋଟ ଆସୁଛି ପାକିସ୍ଥାନରୁ, ଏଠାରେ ବୁଣି ତିଆରି ହୋଇ ବିଦେଶକୁ ରପ୍ତାନି ହେଉଛି । ତୁମେମାନେ ଘନ ଘନ ଦୀର୍ଘ ଧର୍ମଘଟ କଲେ ପାକିସ୍ଥାନରେ ଅଧିକ ସଂଖ୍ୟାରେ ଚଟକଲ ବସି ଆମ ହାତରୁ ରପ୍ତାନି ବାଣିଜ୍ୟ ଚାଲିଯିବ । ବିନା ଧର୍ମ-ଘଟରେ ଆମ ଚଟକଲ ଯେପରି ତୁମମାନଙ୍କର ଦାବି ପୂରଣ କରୁଛି, ଅନ୍ୟ ଚଟକଲମାନେ ସେଇପରି କରିବା ଦିଗରେ ଚେଷ୍ଟା କରିବା । ତୁମ ଶ୍ରମିକ ସଂସ୍ଥା ସହଯୋଗ କଲେ ଆମ ଶେଠ୍‌ଜୀ ଓ ମୁଁ ସେ ଦିଗରେ ଉଦ୍ୟମ କରିବୁଁ ।"

ସେଇକଥା ହେଲା । ମୋଟେ ପାଞ୍ଚଦିନ ହେବା ପରେ ଧର୍ମଘଟ ବନ୍ଦ ହେଲା । ଶ୍ରମିକ ଓ ମାଲିକ ବସି ସାଲିସ କରିଦେଲେ । ଅନ୍ୟ ଚଟକଲର ଶ୍ରମିକତତ୍ତ୍ୱାବଧାରକମାନେ ବାବୁଜୀଙ୍କ ପାଖକୁ ଆସି ଶ୍ରମିକମାନଙ୍କୁ ସନ୍ତୁଷ୍ଟ ରଖିବାର ଉପାୟ ଶିଖିଲେ । ଏ କାର୍ଯ୍ୟ ପାଇଁ ବାବୁଜୀଙ୍କୁ ଅଧିକ ସମୟ ଦେବା ନିମନ୍ତେ, ଶେଠ୍‌ଜୀ ବାବୁଜୀଙ୍କୁ ଜଣେ ସହକାରୀ ତତ୍ତ୍ୱାବ-ଧାରକ ଦେଲେ । ଆଗେ ଆଗେ ସେ ବାବୁଜୀଙ୍କର ଭାରି ଅନୁଗତ ହୋଇଥିଲେ । ଚାରି ଛ'ମାସରେ କିନ୍ତୁ ସେ ଭିତରେ ଭିତରେ ବାବୁଜୀଙ୍କର ଅନିଷ୍ଟ କରିବାକୁ ଉଦ୍ୟମ କରିବାକୁ ଆରମ୍ଭ କଲେ ।

ବାନୁର୍ଜିବାବୁଙ୍କଠାରୁ ଏହା ଶୁଣି ମୁଁ ବାବୁଜୀଙ୍କୁ ସାବଧାନ କଲି । ସେ ହସି ହସି କହିଲେ, "ମଣିଷ ମଣିଷର ଅନିଷ୍ଟ ବା ଇଷ୍ଟ କରିପାରେ ବୋଲି କାହିଁକି ଭାବୁଛ ? ଯାହା କରିବେ ଭଗବାନ୍ । ଦୋଷ ଦେଖିଲେ ଯାଇ ଭଗବାନ୍ ଦଣ୍ଡ ଦିଅନ୍ତି । ଆମେ ଦୋଷ କରିବାକୁ ନାହିଁ କି ଦଣ୍ଡ ପାଇବାକୁ ନାହିଁ ।" ମୁଁ ପଚାରିଲି, "ନିର୍ଦ୍ଦୋଷକୁ କ'ଣ ଦଣ୍ଡ ହୁଏ ନାହିଁ ?" ସେ କହିଲେ "ଦଣ୍ଡ ହୁଏ ନାହିଁ ଯେ, ଟେଷ୍ଟିଂ ଦିଆଯାଏ । ଭଗବାନଙ୍କର ଯଦି ଇଚ୍ଛା ଥିବ ଆମକୁ ଆଉ କୌଣସି ବଡ଼ କାମରେ ଲଗାଇବାକୁ, ତେବେ ଏଠାରୁ ବାହାରିଯିବାର ଉପାୟ ସେ କରିଦେବେ । ଏଠାରୁ ବାହାରିଗଲାବେଳେ ମନେ ହେବ, ବିନା ଦୋଷରେ ଭଗବାନ୍ ଦଣ୍ଡ ଦେଲେ । ପରେ ଯେତେବେଳେ ବଡ଼ କାମ ମିଳିବ, ସେତିକିବେଳେ ଜଣାପଡ଼ିବ, ଯେଉଁ ଆଘାତ ଦଣ୍ଡ ହୋଇଥିଲା, ତାହା ଥିଲା ଉପରକୁ ଉଠିବାର ଶିଡ଼ି ।"

ଏହିପରି ମୋତେ ଶିକ୍ଷାଦେବା ସଙ୍ଗେ ସଙ୍ଗେ ସେ କଠିଣ ସାଧନାରେ ଲାଗିଥାନ୍ତି । ବାଗନାନ୍‌ଠାରୁ ହାବଡ଼ା ଭିତରେ ଯା ଆସ କରୁଥିବା ସବୁ ଶ୍ରମିକ ତାଙ୍କୁ ଚିହ୍ନି ଥାନ୍ତି ଓ ନେତା ବୋଲି ମାନୁଥାନ୍ତି । ଅନ୍ୟ ଚଟକଲ ମାଲିକଙ୍କଠାରୁ ମଧ୍ୟ ଅଧିକ ଦରମାର ପ୍ରଲୋଭନ ମିଳୁଥାଏ । କିନ୍ତୁ ବାବୁଜୀ କହୁଥାନ୍ତି, "ମୋ ଗୁରୁଦେବ ମୋତେ ଏଠାରେ ରଖିଦେଇ ଯାଇଛନ୍ତି, ତାଙ୍କର ବିନା ଆଦେଶରେ ମୁଁ ଏଠା ଛାଡ଼ି ଯାଇପାରିବି ନାହିଁ ।" ଏପରି ସ୍ଥଳେ ସେ ଅପ୍ରତ୍ୟାଶିତ ଭାବେ କୁଆଡ଼େ ଉଭାନ ହୋଇଗଲେ, ମୋତେ ତାଜୁବ ଲାଗୁଛି । ଏତେ ଆଦର କରୁଥିଲେ, ଏତେ ଆପଣାର କରିଥିଲେ, ଗଲେ ଯେ ମୋତେ ଟିକିଏ ଖବର ବି ଦେଲେନାହିଁ ; ଜୀବନ ତମାମ ହନ୍ତସନ୍ତ ହେବାକୁ ମୋତେ ଯେଉଁ ଦଣ୍ଡ ଦେଇଗଲେ, ତାହା କ'ଣ ନିର୍ଦ୍ଦୋଷର ଦଣ୍ଡ ନୁହେଁ ? ତାଙ୍କଠାରୁ ଅଲଗା ହୋଇ ମୋର କେଉଁ ଉନ୍ନତିଟା ହୋଇଯିବ ବୋଲି ମୋତେ ଘୃଣା କଲେ !

ଯେଉଁ ଦିନ ସକାଳେ ସେ ମୋତେ ଚିରକାଳ ପାଇଁ ଛାଡ଼ି ଚାଲିଗଲେ ତାର ପୂର୍ବ ରାତିରେ ମୋର ମନଃକାମନା ପୂରଣ ହୋଇଥିଲା । ରାତି ଦଶଟାରେ ଘରକୁ ଫେରି, ବେଗେବେଗେ ଖିଆପିଆ ସାରି ସେ ମୋତେ ତାଙ୍କ ଶେଯକୁ ଡାକିଲେ ଓ ମୋତେ ଆଦରରେ ପାଖରେ ବସାଇ କହିଲେ, "ତାରା ! ମୁଁ ବହୁତ ଦିନ ହେଲା ଲକ୍ଷ୍ୟ କଲିଣି, ତୁମ ମନରେ ପୁତ୍ର କାମନା ହୋଇଛି । ଅନ୍ୟର ପିଲାମାନଙ୍କୁ ତୁମେ ଯେଉଁ ଆଦର କରୁଛ, ତାହା ତା'ରି ପ୍ରତିକ୍ରିୟା । ସନ୍ତାନ-ହୀନ ଦମ୍ପତି ସାଧାରଣତଃ ପାଳିତପୁତ୍ରଦ୍ୱାରା ପୁତ୍ରାଭାବ ପୂରଣ କରନ୍ତି । କିନ୍ତୁ ମୁଁ ଜାଣେ, ତୁମେ ଚାହୁଁଛ ମୋ'ରି ପୁତ୍ର । ମୋର ନିଜ ଉପରେ ସନ୍ଦେହ, ପୁଣି ପୁତ୍ର ହେବା ନ ହେବା ଭଗବାନଙ୍କ ହାତରେ । ତୁମର କାମନା ପୂରଣ କରିବାକୁ ମୁଁ ଲକ୍ଷେ ପୁତ୍ରେଷ୍ଟି ମନ୍ତ୍ର ପୁରଶ୍ଚରଣ କରିବାକୁ ସଂକଳ୍ପ କରିଥିଲି । ଆଜି କାଳୀ ମନ୍ଦିରରେ ତାହା ପୂରଣ ହେଲା । ନିଅ କାଳୀଙ୍କ ପ୍ରସାଦ ଗ୍ରହଣ କର । ସକାଳେ ମନେପଡ଼ିଲା ନାହିଁ, ନହେଲେ ଆଜି ଉପବାସ ରହିବାକୁ କହିଯାଇଥାନ୍ତି ।"

ମୁଁ ହସି ହସି କହିଲି, "ମୁଁ ତ ଆଜି ଉପବାସ କରିଛି । ଆଜି ଖାଲି ପୁରି ଓ ଖିରି ହୋଇଛି ଦେଖିଲ ନାହିଁ କି ? ଆମ ଏଠାରି କାଳୀ ମା'ଙ୍କର ଭୋଗ । ଆଜି ସକାଳୁ କାହିଁକି କେଜାଣି ମନେହେଲା, ଦିନଯାକ ଉପବାସ ରହି ତୁମେ ଫେରିଲେ କାଳୀଙ୍କ ଭୋଗ ଖାଇ-ବାକୁ ।" କାହିଁକି କେଜାଣି ନୁହେଁ, ଆଜି ସକାଳୁ ମୋର ପୂର୍ବକାମନା ପ୍ରବଳ ହୋଇଥିଲି, କିନ୍ତୁ ବାବୁଜୀଙ୍କୁ ଏହାର ସୂଚନା ଦେବାକୁ ଭାରି ଲାଜ ମାଡ଼ିବାରୁ କାଳୀମା'ଙ୍କଠାରେ ଗୁହାରି କରିଥିଲି । ସେଇ ରାତିରେ ଏ ପୋଡ଼ା ପେଟରେ ପିଲା ରହିଲା । ବାବୁଜୀ କହୁଥିଲେ, "ଜାଣିଲ ତାରା ! ପୂର୍ବାଚାର୍ଯ୍ୟମାନେ କହିଯାଇଛନ୍ତି, ପିଲା ନ ହେବା ପର୍ଯ୍ୟନ୍ତ ସ୍ତ୍ରୀ, ପୁରୁଷର । କିନ୍ତୁ ପିଲାଟିଏ ହେଲା ପରେ ସେ ପତିଠାରୁ ଦୃଷ୍ଟି ଫେରାଇନିଏ ପିଲା ଉପରକୁ । ମୋତେ ସେଇ ଦଶା ନ ହେଉ ।" ମନର ଆନନ୍ଦରେ ତାଙ୍କ ଛାତିରେ ମୁହଁ ରଖି କାନ୍ଦିଥିଲି । ଆଜି କିଏ କାହାଠାରୁ ଦୃଷ୍ଟି ଫେରାଇଲା ସେ ଜାଣୁଥିବେ ।

ସେ ଦିନ ସକାଳୁ ସେ ଗଲେ ଯେ ଆଉ ଫେରିଲେ ନାହିଁ । ରାତିତମାମ ଚେଇଁ ରହିଲି, ଦାଣ୍ଡ ଦୁଆର ଠକ୍ ଠକ୍ ହେଲାନାହିଁ । ସକାଳେ ବାନୁର୍ଜିବାବୁଙ୍କୁ ପଚାରିଲି । ସେ କହିଲେ, "ଆଲୋ ମା ! କାଲି ବାବୁଜୀଙ୍କୁ ଅଫିସରେ ନ ଦେଖି କୁଆଡ଼େ ଗଲେ ବୋଲି ମୁଁ ସନ୍ଧାନ ହୋଇଛି । ଆଜି ଭଲକରି ବୁଝି ଆସି କହିବି । ସେ କ'ଣ ଶେଠଜୀଙ୍କ ସଙ୍ଗେ କୁଆଡ଼େ ଯାଇଛନ୍ତି ! ତୁମକୁ ତ ଖବର ଦେଇଥାନ୍ତେ ! ସେ କାଲି ଆଗ ଟ୍ରେନରେ ଗଲେ ମୁଁ ଗଲି ପଛ ଟ୍ରେନରେ । ଶୁଣିଲି ରାମରାଜତାଲାଠାରେ ଯାତ୍ରୀମାନେ ଲାଇନ୍ ଉପରେ ବସି ଗାଡ଼ି ଅଟକାଇଦେଇଥିଲେ । ମୁଁ ଗଲାବେଳକୁ କିନ୍ତୁ ଅଟକ ଉଠିଯାଇଥିଲା । ୧୯୧୫ ଜଣ ଗିରଫ ହୋଇଛନ୍ତି, କିନ୍ତୁ ସେ ତ ତା' ଭିତରେ ରହିବା ସମ୍ଭବ ନୁହେଁ । କଲିକତାର ସବୁ ବଡ଼ ବଡ଼ ସମ୍ବାଦଦାତା ସେଙ୍କୁ ଚହ୍ନନ୍ତି, ସେ ଗିରଫ ହୋଇଥିଲେ ସଞ୍ଜ-କାଗଜରେ ବାହାରି ଯାଇଥାନ୍ତା । ତୁମେ ଥିରହୋଇ ରହ, ମୁଁ ସବୁ ଖବର ବୁଝି ଆସିବି ।"

ସେ ଦିନ ଗଲା, ଆଉ ୩-୪ ଦିନ ବି ଗଲା, କିଛି ଖବର ପାଇଲିନାହିଁ । ବାନୁର୍ଜି ବାବୁଙ୍କୁ ଖୁବ୍ କୋହରି ମୋହରି ହୋଇ ପଚାରିବାରେ ସେ କହିଲେ, "ଆଲୋ ମା ! ଏକଥା ତୋତେ ମୁଁ କିମିତି କହିବି ବୋଲି ଲୁଚାଇଥିଲି । ସହକାରୀ ଶ୍ରମ ଅଫିସର ଶେଠ୍‌ଜୀଙ୍କୁ ରିପୋର୍ଟ ଦେଇଛନ୍ତି ଯେ, ଶ୍ରମିକ ମଙ୍ଗଳ ପାଇଁ ଦିଆହୋଇଥିବା ଦଶହଜାର ଟଙ୍କା ନେଇ ବାବୁଜୀ କୁଆଡ଼େ ଫେରାର ହୋଇଯାଇଛନ୍ତି । ଦିନେ ଦୁଇ ଦିନ ଭିତରେ ପୁଲିସ୍ ଆସି ତୁମର ଘର ଖାନତଲାସ କରିବାର ସନ୍ଦେହ ହେଉଛି । ତୋ ପାଖରେ ଯଦି କିଛି କାଗଜପତ୍ର ଅଛି ତେବେ ମୋତେ ଦେ, ମୁଁ ରଖିଥିବି । ପୁଲିସ୍ ଗଲା ପରେ ତୋତେ ଦେଇ-ଦେବି ।"

ତାଙ୍କ ପାଖରୁ ଘରକୁ ଚାଲିଆସିଲି । ସେଙ୍କୁ ପୁଣି ମୁଁ ବାପ ବୋଲି ମାନୁଥିଲି । ବେଆଇନ କାମ କରିବାକୁ ସେ ମୋତେ ପ୍ରବର୍ତ୍ତାଇବାରୁ ସେଙ୍କ ଉପରେ ମନ ଛୋଟ ହୋଇଗଲା । ଆଉ ଘରୁ ବାହାରିଲି ନାହିଁ କି ବାବୁଜୀଙ୍କ କାଗଜପତ୍ରରେ ହାତ ଦେଲିନାହିଁ । ପୁଲିସ୍

ଆସିବେ ଯଦି ଆସନ୍ତୁ, ସବୁ କାଗଜପତ୍ର ଦେଖନ୍ତୁ । ମୋ ମନରେ ଆଦୌ ସନ୍ଦେହ ହେଉ ନ ଥାଏ ଯେ, ବାବୁଜୀ ଦଶହଜାର ମାତ୍ର ଟଙ୍କା ନେଇ କୁଆଡ଼େ ଫେରାର ହୋଇଛନ୍ତି । ମୋର ହୋଇ ୨୨ ହଜାର ଟଙ୍କା ବଡ଼େମହାରାଜଙ୍କ ପାଖେ ଅଛି । ସେ ଦୁ'ଥର ଲେଖିଲେଣି, ଟଙ୍କା ଯଦି ଦରକାର ଲେଖ, ନହେଲେ ଛୁଟିନେଇ ଆସି ନେଇଯାଅ । ବାବୁଜୀ ଉତ୍ତର ଦେଇ-ଥାନ୍ତି, ମୋର ଟଙ୍କା ଦରକାର ନାହିଁ । ଆସନ୍ତା ଦଶହରା ଛୁଟିରେ ମୁଁ ତାରି ସହିତ ଯାଇ ଆପଣଙ୍କ ଶ୍ରୀଚରଣରେ ମୁଣ୍ଡିଆମାରି ଆସିବି । ବର୍ଷକତଳେ ଆମେ ଦୁହେଁ ଥରେ ଯାଇ ବଡ଼େମହାରାଜା ବଡ଼ ମା ଓ ବଡ଼ ଦାଦାଙ୍କ ପିଲାମାନଙ୍କୁ ଦେଖି ଆସିଥିଲୁ । ପ୍ରତିବର୍ଷ ଥରେ ଯିବାକୁ ବାବୁଜୀ ଜବାବ କରି ଆସିଥାନ୍ତି । ଆମ ପାଖରେ ମଧ୍ୟ ଟଙ୍କାର ଅଭାବ ନ ଥାଏ । ମୋ ଟଙ୍କାରେ ହାତ ବାଜନଥାଏ ; ବାବୁଜୀଙ୍କର ଦରମାରୁ ବଳାଇ ମୁଁ ଆଉ ପ୍ରାୟ ପାଞ୍ଚ ହଜାର ଟଙ୍କା ସେଥିରେ ମିଶାଇଥାଏ । ପାଖରେ ଟଙ୍କା ନ ଥିଲେ ବି ବାବୁଜୀ ଟଙ୍କା ଲୋଭରେ ଅନ୍ୟାୟ କରିବା ଅସମ୍ଭବ । ଖାନତଲାସ ହେବାକୁ ଅପେକ୍ଷା କରି ରହିଲି ।

ପୁଲିସ ଆସିଲେ ନାହିଁ । କିନ୍ତୁ ଦୁଇ ଚାରି ଦିନ ପରେ ଚଟକଲର ବଡ଼ ମେନେଜର ଜଣେ ବଙ୍ଗାଳୀବାବୁଙ୍କୁ ସାଙ୍ଗରେ ଧରି ଆସିଲେ । ଶେଠ୍‌ଜୀଙ୍କୁ ମୁଁ ଚହ୍ନେ, ତାଙ୍କ ବ୍ୟତୀତ ଆଉ କାହାକୁ କାଗଜପତ୍ର ଦେବିନାହିଁ ବୋଲି ଆଗ କହିଲି । ମେନେଜର ବାବୁ କହିଲେ, "ବାବୁଜୀ ନିରୁଦ୍ଦେଶ୍ୟ ହୋଇଛନ୍ତି ଶୁଣିଲା ମାତ୍ରେ ଶେଠ୍‌ଜୀ ଆପଣଙ୍କୁ ସନ୍ତୋଳିବାକୁ ଆସିଥାନ୍ତେ । କିନ୍ତୁ ସେ ମାସେ ଦୁଇମାସ ପୂର୍ବରୁ ଆସିବାର ସମ୍ଭାବନା ନାହିଁ । ସେ ତୀର୍ଥ କରିବେ ଏବଂ ଜନ୍ମସ୍ଥାନରେ ପିତୃଶ୍ରାଦ୍ଧ କରିବା ପରେ ଆଶ୍ୱିନ ମାସ ଶେଷରେ ଆସିବେ ; ଆଉ ପ୍ରାୟ ଦୁଇମାସ ପରେ । କର୍ମଚାରୀ ଦଣ୍ଡହଜାର ଟଙ୍କାର ହିସାବ ବାବୁଜୀଙ୍କ ପାଖରେ ଅଛି । ତାଙ୍କ ସହକାରୀ କହନ୍ତି, ସେ ଟଙ୍କା ଖର୍ଚ୍ଚ ହୋଇନାହିଁ । ମୋର ଏ କଥାରେ ବିଶ୍ୱାସ ହେଉନାହିଁ । ତେଣୁ ମୁଁ ନିଜେ ବାବୁଜୀଙ୍କ କାଗଜପତ୍ର ଦେଖିବାକୁ ଆସିଛି । ବାବୁଜୀଙ୍କ ସହକାରୀ ଅଫିସରଙ୍କ ସାଧୁତା ବିଷୟରେ ମୋର ସନ୍ଦେହ ; ମୁଁ ଜାଣେ ସେ ଆପଣଙ୍କ ପଡ଼ୋଶୀ ବାନାର୍ଜିବାବୁଙ୍କର ଆତ୍ମୀୟ । ଯାଙ୍କ ସାହାଯ୍ୟରେ ସେ ଆପଣଙ୍କ ଘରୁ କାଗଜପତ୍ର ହରଣଚାଲ କରିନେବାର ସନ୍ଦେହ ହେଉଛି । ଆପଣ ମୋତେ ବିଶ୍ୱାସ କରନ୍ତୁ । ମୁଁ ଶେଠ୍‌ଜୀଙ୍କର ନିଜ ଭଣଜା ; ବାବୁଜୀ ମୋର ପ୍ରିୟବନ୍ଧୁ । ମୁଁ ତାଙ୍କ ସୁନାମ ପାଇଁ ଉଦ୍‌ବିଗ୍ନ, ଟଙ୍କା ପାଇଁ ନୁହେଁ ।"

ମୁଁ ଆପତ୍ତି ନ କରି ବାବୁଜୀଙ୍କ ଅଫିସ ଘର ଖୋଲିଦେଲି ଓ ତାଙ୍କର ଅନୁରୋଧରେ ମୁଁ ବି ସେ ଘରେ ବସିରହିଲି । ୧୫ ମିନଟ୍ ଭିତରେ ମେନେଜର ବାବୁ ପାଟିକରି ଉଠିଲେ "ହେଇଟି ! ଯାହା ବିଚାରିଥିଲି, ଠିକ୍ ସେଇଆ । ନୂଆପଇସାଟିକ ପର୍ଯ୍ୟନ୍ତ ଦଣ୍ଡହଜାର ଟଙ୍କାର ହିସାବ ଏଇ ଫାଇଲରେ ଅଛି । ଏଥିରୁ ଦୁଇହଜାର ଟଙ୍କା ସହକାରୀ-ଶ୍ରମିକତତ୍ତ୍ୱାବ-ଧାରକ ରସିଦ ଦେଇ ନେଇଛନ୍ତି, ଖର୍ଚ୍ଚକରି ପକ୍‌କା ହିସାବ ଦେବାକୁ । ଏଇ ଦୁଇହଜାର ଟଙ୍କା ଫାଙ୍କିଦେବା ସକାଶ ତାଙ୍କର ଏ ଫିସାଦ । ଆଉ କିଛି ମୋର ଦେଖିବା ଦରକାର ନାହିଁ । ମୁଁ କେବଳ ଏଇ ଫାଇଲଟା ନେବି । ଚାହାନ୍ତି ତ ରସିଦ ଦେଇ ନେବି ।"

ମୋର ମନ ଉଣ୍ଣାସ ହୋଇଗଲା । ଜାଣିଲି, ବାବୁଜୀ କୁଆଡ଼େ ଚାଲିଯିବାରୁ ମୋ ମନରେ ଯେତେ ଦୁଃଖ ହୋଇଥିଲା ତହିଁରୁ ଢେର ଅଧିକ ଦୁଃଖ ହୋଇଥିଲା ତାଙ୍କର ଦୁର୍ନାମ ଶୁଣି । ଆପଣଙ୍କର ଯାହା ଇଚ୍ଛା କରନ୍ତୁ, ମୋର ରସିଦ ଦରକାର ନାହିଁ ବୋଲି ମେନେଜର ବାବୁଙ୍କୁ କହିଲି । ଯିବାକୁ ବାହାରି ସେ କହିଲେ, "ଆପଣ ଏ ଘରେ ଯେତେ ଦିନ ଇଚ୍ଛା ରହିପାରନ୍ତି । ଆପଣ ଏକୁଟିଆ, ବାନୁର୍ଜିବାବୁଙ୍କ ଉପରେ ମୋର ସନ୍ଦେହ । ତେଣୁ ଜଣେ ନେପାଳୀ ଦରୁଆନ ଏଠାରେ ରହିବାର ବ୍ୟବସ୍ଥା କରୁଛି । ସେ ଆଜି ସନ୍ଧ୍ୟା ପୂର୍ବରୁ ଆସିବ । ଆଉ ଆପଣଙ୍କର କୋଡ଼ିଏ ଟଙ୍କା ଆମ ପାଖେ ଡିପାଜିଟ୍ ରହିଛି । ଯେତେବେଳେ ଯାହା ଦରକାର ମଗାଇନେବେ ।" ମୁଁ କିଛି ଉତ୍ତର ନ ଦେଇ ତାଙ୍କୁ ପ୍ରତିନମସ୍କାର କଲି ।

ବାବୁଜୀଙ୍କ ଦୁର୍ନାମ ଦୂର ହେବା ପରେ ତାଙ୍କ ପାଇଁ ମନ କାଉଳି ହେଲା । ବାନୁର୍ଜି-ବାବୁ ଓ ତାଙ୍କ ସ୍ତ୍ରୀ ଥରକୁ ଥର ସଂଖୁଳି ଆସି ଆପଣେଇତା କରୁଥାନ୍ତି । ମୁଁ ଉପର ମନରେ ତାଙ୍କ ସଙ୍ଗେ କଥାବାର୍ତ୍ତା ହେଉଥାଏ । ତାଙ୍କ ଉପରେ ମୋର ଏତେ ଅବିଶ୍ୱାସ ହୋଇ-ଯାଇଥାଏ ଯେ, ମୋର ଦୃଢ଼ ଧାରଣା ହୋଇଥାଏ ସେ ମୋର କୌଣସି ଅନିଷ୍ଟ ପାଞ୍ଚୁଛନ୍ତି । କେବଳ ବାବୁଜୀଙ୍କ ଯୋଗୁ ସେ ଆମକୁ ଶଂକା କରି ଥିଲେ । ବାବୁଜୀ ଯିବା ପରେ ତାଙ୍କର ଆମ ପ୍ରତି ଆଦର, ଶ୍ରଦ୍ଧା ବା ଭୟ କିଛି ନାହିଁ ବୋଲି ମୋ ଅନ୍ତରରେ କେହି ଚୁପ୍‌ଚୁପ୍ କରି କହୁଥାଏ ।

ନେପାଳୀ ଦରୁଆନଟି ଭାରି ନିମକହଲା । ସେ ଦାଣ୍ଡ ଦୁଆରୁ ଟିକିଏ କୁଆଡ଼େ ଗୋଡ଼ କାଢ଼େନାହିଁ । ମୋର ଅନୁମତି ନେଇ ସେ ଆମ ଦାଣ୍ଡଘରେ ଭାତ ଫୁଟାଏ । ସେ ନାହିଁ କରିବା ସତ୍ତ୍ୱେ ମୁଁ ତାର ସଉଦାପତ୍ର ପାଇଁ ପଇସା ଦେଉଥାଏ । ଦିନେ ଦୁଇ ଦିନରେ ଥରେ ଲେଖାଏଁ ସେ ପାଖ ବଜାରରୁ ମୋ ପାଇଁ ସଉଦା କରିଆଣେ ।

ଏଇପରି ଅନିର୍ଦ୍ଦିଷ୍ଟ କାଳ ପାଇଁ ମୁଁ ସେଠାରେ ବାବୁଜୀଙ୍କୁ ଚାହିଁ ରହିଯାଇଥାନ୍ତି, ଯଦି ସେଦିନ ମୋର ମନ୍ଦଗ୍ରହ ଦୁହିଙ୍କ ସଙ୍ଗେ ଦେଖାହୋଇନଥାନ୍ତା । ବେଳ ରତରତ ହେଉଥାଏ । ଉପର ମହଲାର ଝରକାବାଟେ କାହିଁକି କେଜାଣି ଦାଣ୍ଡକୁ ଚାହିଁଦେଲା ବେଳକୁ ଦେଖିଲି, ସେଇଥିରୁ ଦି'ଜଣ, ଯେଉଁମାନେ ହରଦ୍ୱାରଠାରେ ଆମ ଦୁଆରେ ଲଙ୍ଗରପଙ୍ଗର ହେବାର ଲକ୍ଷ୍ୟ କରିଥିଲି, ଯେଉଁମାନେ କୁମ୍ଭମେଳାରେ ମୋତେ ନେଇ ପଳାଉଥିଲେ ଓ ରେଳରେ ମୋ' ପିଛା ଧରିଥିଲେ । ସେ ଦୁହେଁ ବାନୁର୍ଜିବାବୁଙ୍କ ସ୍ତ୍ରୀଙ୍କ ସଙ୍ଗେ କ'ଣ କଥାବାର୍ତ୍ତା ହେଉଥାନ୍ତି । ମୋ ଦେହ ଶୀତେଇଗଲା । ଏଥର ଆଉ ସ୍ୱାଙ୍କଠାରୁ ରକ୍ଷାନାହିଁ ବୋଲି ଦୃଢ଼ ଧାରଣା ହୋଇଗଲା । ମୋର ତ ଆଉ କେହି ସାହା ନାହାନ୍ତି । ଯେଉଁ ବାନୁର୍ଜିବାବୁଙ୍କୁ ବାପ ବୋଲି ମାନୁଥିଲି ସେ ତାଙ୍କ ଆତ୍ମୀୟଙ୍କ ପାଇଁ ମୋର ଘରୁ କାଗଜପତ୍ର ଚୋରେଇପାରନ୍ତି ବୋଲି ମେନେଜର ବାବୁ କହିଲା ଦିନୁଁ ତାଙ୍କୁ ତ ମୁଁ ସାପପରି ଡରୁଥାଏ । ବାବୁଜୀ ନାହାନ୍ତି ବୋଲି ଶୁଣି ଗୁଣ୍ଡାମାନେ ଆସି ଜୁଟିଲେଣି । ସ୍ୱାଙ୍କଠାରୁ ଉଦ୍ଧାର ପାଇବାର ଏକମାତ୍ର ଉପାୟ ଭଗବାନଙ୍କୁ ଭରସା କରି ଏଠାରୁ ପଳାଇଯିବା ।

ଏ କଥା ମନରେ ଆସନ୍ତେ ସାଙ୍ଗେ ସାଙ୍ଗେ ତିଆର ହୋଇଗଲି । ବଗିଚାରୁ ମେଞ୍ଚାଏ ଚକଟା ମାଟି ଆଣିଲି । ବହୁ ଦିନରୁ ପିନ୍ଧିନଥିବା ଖଣ୍ଡେ ଚିରା ମୋଟା ଧଳା ଶାଢ଼ୀ ରଖିଥିଲି କନା କରିବାକୁ, ସେଇଖଣ୍ଡ ବାହାରକଲି । ଦେହରେ ଦୁଇ ଚାରି ଜାଗା ଗୁଡ଼ ବୋଳିଦେଲି, ଦିନ ବେଳେ ମାଛି ବସିବେ ବୋଲି । ଦେହରୁ ସବୁତକ ଅଳଙ୍କାର କାଢ଼ି ଟଙ୍କାସଙ୍ଗେ ବାକ୍ସରେ ରଖିଦେଲି । ଟଙ୍କା ପାଞ୍ଚଟାର ସଉଦା ପାଖ ଦୋକାନରୁ ଆଣିବାକୁ ଚାକରାଣୀକୁ ପଠାଇଦେଇ ମୁଁ ଅନ୍ଧାର ରାତିରେ ବାହାରିପଡ଼ିଲି । ଜାଣିଥାଏ, ଦକ୍ଷିଣ ଦିଗକୁ ମାଡ଼ି ମାଡ଼ି ଚାଲିଲେ ବଳେ ପୁରୀରେ ଯାଇ ପହଞ୍ଚିବି । ଜଗନ୍ନାଥ ମହାପ୍ରଭୁ ସେଇଠାରେ ମୋ ଗୁହାରି ଶୁଣିଥିଲେ, ଏଥର ଶୁଣିବେ ।

ସେ ଦିନକୁ ବାବୁଜୀ ଅନ୍ତର୍ଦ୍ଧାନ ହେବାର ଠିକ୍ ଦେଢ଼ ମାସ । ତଥାପି ସେ ସାଙ୍ଗରେ ଅଛନ୍ତି ବୋଲି ମନରେ ବଳ ଆସୁଥାଏ । ମୋର ଗର୍ଭ ରହିବାର ସେତେବେଳକୁ ମୋତେ ଜଣାପଡ଼ିସାରିଥାଏ । ପେଟ ଭିତରର ସେଇ ମହାତ୍ମାକୁ କହିଲି, "ମୋର ଆଉ ଚାରା ନାହିଁ, ତୁ ତୋତେ ରକ୍ଷା କର ।" ପ୍ରାୟ ଦୁଇମାଇଲ ଆସି ଗୋଟିଏ ପୋଖରୀ କୂଳରେ ମୋର ପିନ୍ଧିଥିବା ଲୁଗା ବ୍ଲାଉଜ କାଢ଼ି ଛିଣ୍ଡା ଶାଢ଼ୀ ଖଣ୍ଡ ପିନ୍ଧିଲି । ଚକଟା ମାଟି ବାଳରେ ଓ ଦେହରେ ଅବୁଡ଼ା ଆବୁଡ଼ା କରି ବୋଳିହୋଇପଡ଼ିଲି । ସୂର୍ଯ୍ୟ ଉଦୟ ହେଲା ବେଳକୁ, ମୋତେ ବି ମୁଁ ଚିହ୍ନିବା କଷ୍ଟ । ମାଛି ଗୁଡ଼ ଲାଗିଥିବା ଜାଗାରେ ଘେରିଯାଉଥାନ୍ତି । ଖଣ୍ଡେ ବାଟ ଚାଲିଯାଉଥାଏ, ଠାଏ ବସି ମାଛି ଉଡ଼ାଇ, ସଡ଼କରୁ ନାଲି ମାଟି ଆଣି ଦେହରେ ବୋଳି ପକାଏ । ବାୟାଣୀ ପଣ ଅବଲମ୍ବ କରୁଥାଏ ।

ଦିନେ ଦି' ଦିନରେ ଥରେ କୌଣସି ଗାଁ ଭିତରକୁ ପଶି, ମୋତେ ଯାହା ଘର ଭଲ ମନେହୁଏ ତା'ର ପାହାଁଚ ତଳକୁ ବସେ । ସେ ମୁଠାଏ ଯାହା ଖାଇବାକୁ ଦିଅନ୍ତି, ସେଇଥିରୁ ଭାଗେ ଖାଏ, ଭାଗେ ଫୋପାଡ଼େ । ମାଇପେ ଦେଖିଲେ ଆହା ବୋଲି କହନ୍ତି, ଏଡ଼େ ପିଲା ବୟସରେ କେମିତି ବାୟାଣୀ ହୋଇଗଲା ବୋଲି ଦୁଃଖ କରନ୍ତି । ପିଲାମାନେ ପଛରେ ଗୋଡ଼ାନ୍ତି, ଗୋଡ଼ି ବାଲି ଫୋପାଡ଼ନ୍ତି । କେତେବେଳେ କେମିତି କୃତ୍ରିମ କ୍ରୋଧରେ ତାଙ୍କୁ ଗୋଡ଼େଇଯାଏ, ମନେ ମନେ ଖୁସି ହୁଏ ଯେ ମୁଁ ବାୟାଣୀ ଅଭିନୟ ପୁରାପୁରି କରିପାରିଛି । ଖଡ଼ଗପୁର ସହର ତଳରେ ଦୁଇଚାରିଟା ଟୋକା ଅଶ୍ଳୀଳ ସଂକେତ ଦେଇ-ଥିଲେ ; ସେ ଦିନଠାରୁ ଆଉ କେହି ମୋ ପ୍ରତି ଦୁର୍ବ୍ୟବହାର କରିନାହାନ୍ତି ।

ମଝିରେ ଥରେ ଯାତ୍ରୀଙ୍କ ମେଳରେ ମିଶିଥିଲି । ସେମାନେ ଦିନକୁ ପ୍ରାୟ ଦଶକୋଶ ଚାଲୁଥାନ୍ତି । ଦୁଇଟା ଦିନ ତାଙ୍କ ସାଙ୍ଗ ଧରିଲି । ଆଉ ପାରିହେଲା ନାହିଁ । ମୁଁ ଚାଲେ ଦିନକୁ ପ୍ରାୟ ୫।୬ ମାଇଲ । ଏଇପରି ଆସି ଆସି ଅଢ଼େଇ ମାସରେ, ଏଠି ମୋ ବୋଉ ପାଖେ ଆସି ପହଞ୍ଚିଲି । ଏଇଠି ମୋର ସବୁ ଦୁଃଖ କଷ୍ଟ ଗଲା । ପେଟରେ ପିଲାଟି ଭଲ ଲୋକ ହାତକୁ ପଡ଼ିବ ବୋଲି ଆଶା ହେଲା । ସ୍ନେହ ମିଳିଲା, ସହାନୁଭୂତି ମିଳିଲା । ଖାଲି ଏତିକ ଆକାଂକ୍ଷା ବାବୁଜୀ କୁଆଡ଼େ ଗଲେ ଜାଣନ୍ତି, ତାଙ୍କୁ ଥରେ ଦେଖନ୍ତି । ମୋର ମନେ ହେଉଛି ସେ ଯାଇ

ବଡ଼େ ମହାରାଜଙ୍କ ପାଖରେ ଥିବେ । ବୋଉ କହୁଛନ୍ତି, କୁନିକୁ ମାସେ ଦି'ମାସ ହେବା ପରେ ସେ ମୋତେ ନେଇ ବାପାଙ୍କ ସଙ୍ଗେ ହରଦ୍ୱାର ଯିବେ । ମୁଁ କହୁଛି, ତା' ଆଗରୁ ପୁରୀ ଯିବା, ସେ କହୁଛନ୍ତି, ତୀର୍ଥରୁ ଫେରିଲେ ପୁରୀ ଆସିବାକୁ । ସେ ତ କାହିଁ କେତେ ଦୂରର କଥା ।

( ୨୫ )

ସେ ଦିନ କୁମାର ପୂର୍ଣ୍ଣିମା । ଏ ଦିନ ସକାଳୁ ରାତଅଧ ଯାଏଁ ଦାସଙ୍କ ଦୁଆରେ ପିଲାଙ୍କର ଗହଳି ଲାଗିଥାଏ । କୁମାର ପୂର୍ଣ୍ଣିମା କାର୍ତ୍ତିକେୟଙ୍କ ଜୟନ୍ତୀ ବୋଲି ଆଜିକାଲି ସହରମାନଙ୍କରେ ଦୁର୍ଗାପୂଜାର ଆଡ଼ମ୍ବରରେ କାର୍ତ୍ତିକେୟଙ୍କ ମେଢ଼ ତିଆରି ହୋଇ ଉତ୍ସବ ପାଳିତ ହେଉଛି । ଗାଁ ଗହଳରେ ଏ ଦିନ ଲକ୍ଷ୍ମୀପୂଜାର ଦିନ ବୋଲି ଲୋକେ ମାନିବାର ଦେଖାଯାଏ । କେହି କେହି ଏ ଦିନ ଇନ୍ଦ୍ରପୂଜା ବି କରନ୍ତି । ଦାସଙ୍କ ଦୁଆରେ ଏ ଦିନ ତମାମ ପୂଜାର ପାଣ୍ଠି ଗାଁ ସାକର କୁମାର ଓ କୁମାରୀ ; ବିଶେଷତଃ ଯେଉଁମାନେ ଦରିଦ୍ର, ନିଜ ପିଲାଙ୍କ ପାଇଁ ନୂଆ ଲୁଗାପଟା କରିନପାରନ୍ତି ସେଇମାନଙ୍କର ପିଲାମାନଙ୍କୁ ଆଦର କରିବାକୁ, ଲୁଗାପଟା ଦେବାକୁ ଦାସେ ଓ ଦାସିଆଣୀ ଏ ଦିନଟିକୁ ବହୁବର୍ଷ ହେଲା ବ୍ରତ କରି ଧରିଛନ୍ତି । ମହାପାତ୍ରେ, ସବୁ ବିଷୟରେ ଯେପରି ଏ ବିଷୟରେ ସେହିପରି ଦାସଙ୍କର ସହକାରୀ । ତାଙ୍କରି ଉଦ୍ୟମରେ, ଦାସଙ୍କର ପୁଅ ବୋହୂ, ଝିଅ ଜ୍ୱାଇଁ ଓ ନିଜର ପୁଅବୋହୂଙ୍କଠାରୁ ପିଲାଙ୍କର ପୁରୁଣା ଜାମା ପ୍ୟାଣ୍ଟ୍ ସଂଗୃହୀତ ହୋଇ ଆସିଥାଏ । ବାହାରେ ଚାକିରି କରୁଥିବା ଗାଁର ଟୋକାମାନେ ବର୍ଷକୁ ବର୍ଷ ଅଧିକରୁ ଅଧିକ ସଂଖ୍ୟାରେ ମହାପାତ୍ରଙ୍କ ସଙ୍ଗେ ଏ କାର୍ଯ୍ୟରେ ସହଯୋଗ କରୁଛନ୍ତି । ଆଜିକାଲି ସହରର ବାବୁ ଭାୟା କାହିଁକି, ମଫସଲର ସ୍ୱଚ୍ଛଳ ଲୋକେ ପିଲା ଜନ୍ମ ହେଲା ଦିନୁଁ ତାଙ୍କ ପାଇଁ ଜାମା ପ୍ୟାଣ୍ଟ୍ କରୁଛନ୍ତି । ପିଲେ ତ ମାସକୁ ମାସ ବଢ଼ନ୍ତି । ଆଜି କିଣିଥିବା ପ୍ୟାଣ୍ଟ୍ କୁରୁତା ଆରମାସକୁ କଷ ହୋଇଯାଏ । ମାସେ ଦୁଇମାସ ପିନ୍ଧିବା ପରେ ଜାମା ପ୍ୟାଣ୍ଟ୍, ଖୁବ୍ ଦଢ଼ ଅବସ୍ଥାରେ ଅଦରକାରୀ ହୋଇ ରହିଯାଏ । ମହାପାତ୍ରେ ସେଇଗୁଡ଼ିକ ସଂଗ୍ରହ କରାଇ ନିଅନ୍ତି । ଗାଁର ସାନ ପିଲାଙ୍କ ମାପ ଅନୁସାରେ ସେଗୁଡ଼ିକ ବଣ୍ଟା ହେବାକୁ ବସ୍ତା ହୋଇ ରହେ । ସକାଳୁ ଗାଁର ଏକମାତ୍ର ଦରଜି ସାଧୁନାୟକ ଦାସଙ୍କ ଦୁଆରେ ତା' ପୁରୁଣା ସିଲେଇ କଳଟି ଧରି ବସି ପୁରୁଣା ପ୍ୟାଣ୍ଟ୍ କୁରୁତାର ମରାମତି ଓ କାଟଛାଣ୍ଟ କରିବାରେ ଲାଗିଥାଏ । ଏ ବର୍ଷ ଦାସେ ଆଗେ ନୂଆ କନା ଆଣି ତା' ଆଗରେ ପକାଇଛନ୍ତି—ଯେଉଁମାନଙ୍କର ମାପରେ ପୁରୁଣା ଜାମା ପ୍ୟାଣ୍ଟ୍ ସଂଗୃହୀତ ହୋଇନପାରିଛି ତାଙ୍କ ପାଇଁ ନୂଆ ଜାମା ପ୍ୟାଣ୍ଟ୍ ତିଆରି ଲାଗିଥାଏ । ପୁରୁଣାଗୁଡ଼ିକ ପ୍ରାୟଶଃ ଦାମିକା ଓ ସୁନ୍ଦର

ହୋଇଥିବାରୁ ଶସ୍ତା କନାରେ ତିଆରି ନୂଆ ଜାମାସବୁ, ପୁରୁଣା ଜାମାପି ପାଉଥିବା ପିଲେ ହିଂସା କରନ୍ତିନାହିଁ । ଯାହାଙ୍କ ମନ ଟିକିଏ ବଡ଼ ଜଣାଯାଏ ସେମାନଙ୍କୁ ଦାମୀ ଜାମା-ଛାଟରେ ଆମୋଦିତ କରିଦିଅନ୍ତି । ବଡ଼ ପିଲେମାନେ ଏବେ କେତେବର୍ଷ ହେଲା ନାୟକଙ୍କ ତତ୍ତ୍ୱାବଧାନରେ ଗୋଟିଏ କୁମାର ସଂଘ ଗଢ଼ି ସାନ ପିଲାଙ୍କୁ ଜୁଟାଇବାରେ, ବୋଧସୋଧ କରିବାରେ ଖୁବ୍ ସାହାଯ୍ୟ କରୁଛନ୍ତି । ବିଶେଷତଃ କୁମାର ପୂର୍ଣ୍ଣିମା ସକାଳୁ ଅଗାଧିଆରେ ଏକାଠି ହୋଇ ଦାଣ୍ଡ ଘାଟ ଚଞ୍ଚାଚଞ୍ଚି ହୋଇ ସଫାସୁତୁରା କରିବାରେ ଖୁବ୍ ଲାଗୁଛନ୍ତି । ନାୟକେ ସେମାନଙ୍କୁ ବୁଝାଇଦେଇଛନ୍ତି, ସଂଧ୍ୟାବେଳେ ନୂଆ ଲୁଗା ପିନ୍ଧିବାକୁ ଯୋଗ୍ୟ ହେବା ସକାଶ, ଦିନତମାମ ସମସ୍ତଙ୍କର ହିତ ହେବା କାର୍ଯ୍ୟରେ ସହଯୋଗ କରିବା ଉଚିତ ।

ତାରାର ପ୍ରସବ କଷ୍ଟ ବେଳ ଦି ଘଡ଼ିଠାରୁ ଆରମ୍ଭ ହେବାରୁ ଦାସିଆଣୀଙ୍କ ଉଦ୍‌ବେଗ ବଢ଼ିଯାଇଛି । ଯନ୍ତ୍ରଚାଳିତ ପରି କୁମାରପୂର୍ଣ୍ଣିମା ବିଧିବିଧାନ ଚାଲିଥିବା ଭିତରେ ତାଙ୍କର ଧ୍ୟାନ ଯାଇ ରହୁଛି, ତାରା ଯେଉଁ ଘରେ କଷ୍ଟପାଉଛି ସେଇ ଘରେ । ହଠାତ୍ ଶୂଳ ଆସିବାରୁ ଖୋର୍ଦ୍ଧାରୁ ନର୍ସ୍ ଅଣାଇବାକୁ ତର ସହିଲାନାହିଁ । ଗାଁର ପୁରୁଖା ପ୍ରୌଢ଼ା ସ୍ତ୍ରୀ ଲୋକ ଦୁଇଜଣ ଆସି ଧାଈର କାର୍ଯ୍ୟ କରୁଛନ୍ତି ।

ଦାଣ୍ଡଦୁଆରେ ମରଦଙ୍କ ମହଲରେ ଏ ସଂବାଦ ପହଞ୍ଚିବାରେ ବାଣବାବୁ କହିଲେ, "ଆମେ ତାରାକୁ ନେଇ ଡାକ୍ତରଖାନାକୁ ଯିବାର ଆଜିକୁ ହେଲା ମୋଟେ ଛଅଦିନ । ଡାକ୍ତରାଣୀ ନିର୍ଭରରାବେ କହିଥିଲେ, ୧୫।୨୦ ଦିନ ପୂର୍ବରୁ ପ୍ରସବର କୌଣସି ସଂଭାବନା ନାହିଁ ।"

ବାହିନୀପତି ସମାଲୋଚନା କଲେ, "ଏ ଡାକ୍ତର, ଡାକ୍ତରାଣୀଗୁଡ଼ାକ କିଛି ଜାଣନ୍ତି ନାହିଁ । ସ୍ତ୍ରୀଙ୍କ ଡାକ୍ତରଟା ବିଦ୍ୟା ନୁହେଁ, ଗୋଟାଏ ବେଉସା । ଟିକିଏ ଗୁହିଁଲେ କି ନାହିଁ, ବଗଲବାଲୁକେଶ୍ୱରଙ୍କ ଦୀକ୍ଷିତ ପରି ହୁକୁମ ଔଷଧ ଦି'ଟା ବଢ଼ାଇଦେଇ, ହାତ ପତେଇବେ ନିଜର ପାଉଣା ପାଇବାକୁ ।"

ନାୟକେ କହିଲେ, "ଡାକ୍ତର ହୁଅନ୍ତୁ, ବୈଦ୍ୟ ହୁଅନ୍ତୁ ବା ଜ୍ୟୋତିଷ ହୁଅନ୍ତୁ, ପିଲା କେବେ ଜନ୍ମହେବ କେହି କହିପାରିବେ ନାହିଁ । କଥାରେ ଅଛି, 'ଜନ୍ମ ମରଣ ବରଷା, କହି ନ ପାରଇ ପୁରୁଷା' । ଜନ୍ମ ବିଷୟରେ ମାସ ପୁରିଛି କି ନାହିଁ ଅଟକଳ କରି ୧୫ଦିନ ଏପାଖ ସେପାଖରେ ଲଖ ବଜେଇ ହେବ, ବରଷା ବିଷୟରେ ବି ସେହିପରି ସମୁଦ୍ରର କେଉଁ ଅଞ୍ଚଳରେ ଲଘୁଚାପ ହୋଇଛି ବାରି, କେଉଁ ଅଞ୍ଚଳରେ ବର୍ଷାହେବାର ସମ୍ଭାବନା କେତେକ ପରିମାଣରେ କହି ହେବ ; ଯଦିଓ ଏ ଦୁଇଟି ଯାକ ବିଷୟରେ ଦୃଢ଼ଭାବରେ କିଛି କହିବା ମୂର୍ଖାମି । କିନ୍ତୁ ମରଣ ବିଷୟ ଆଦୌ କିଛି କହିହେବନାହିଁ । ଆକସ୍ମିକ ମରଣ କଥା ତ ମିନିଟକ ଆଗରୁ ବି ଜାଣିହେବନାହିଁ । ରକ୍ତଚାପ ପ୍ରଭୃତି ରୋଗରେ ବି ମଣିଷ ବଂଚିବ କି ମରିବ କହିବା ଅସଂଭବ । ନିଶ୍ଚୟ ମରିବ ବୋଲି ଡାକ୍ତର ଯାହାଙ୍କୁ କହିଥିଲେ ସେ ସେଦିନ-

ଠାରୁ ୧୫ ବର୍ଷ ବଞ୍ଚିବାର ଦେଖିଛୁ ; ଭଲ ହୋଇଗଲା ବୋଲି ଯାହାକୁ କହିଲେ ସେ ତିନି ଦିନ ଭିତରେ ଶେଷ ।''

ବାହ୍ମଣୀପତି କହିଲେ, ''ନେଉଳ ଧାଉଡ଼ି କଆବାଡ଼ି ଯାଏଁ । ଆମେ ତ ସେହି ଡାକ୍ତରଙ୍କ ମୂର୍ଖତା ବିଷୟ କହିଥିଲୁଁ । ନାୟକେ ଆଉ ଅଧିକା କ'ଣଟା କହିଲ ? ଖାଲି ବର୍ଷା ମରଣ କଥା ଅବାନ୍ତରଭାବେ ଯୋଡ଼ିଲ । ବର୍ତ୍ତମାନ ପ୍ରଶ୍ନ, ଡାକ୍ତର ତ କହିଥିଲେ ୨୦ ଦିନ ପୂର୍ବରୁ ତାଙ୍କର ପିଲା ଜନ୍ମ ହେବାର କୌଣସି ସମ୍ଭାବନା ନାହିଁ, ଏବେ ସେ ଶୂଳ ଖାଉଛି କେମିତି ?''

ଦାସେ ସମାଧାନ କଲେ, ''ଡାକ୍ତର ଯେତେବେଳେ ପରୀକ୍ଷା କରିଥିଲେ ସେତେବେଳର କଥା କହିଲେ । ମଣିଷ ଶରୀରରେ ଘଡ଼ିକୁ ଘୋଡ଼ା ଛୁଟୁଛି । ମନ ହେଉଛି ଶରୀରର ଚାଳକ । ମନରେ ଉଦ୍‌ବେଗ ହେଲେ ୨୦ ଦିନ ପରେ ଘଟିବାକୁ ଥିବା ଘଟଣା ଦିନକରେ ଘଟିପାରେ । ଦେହର ଡାକ୍ତର ମନର ଡାକ୍ତର ହେବା ଦରକାର । ମନ ଦୁର୍ନିବାର ଓ ସର୍ବଦା ଚଞ୍ଚଳ । ତା'ର ଚିକିତ୍ସା ବୈଜ୍ଞାନିକ ରୀତିରେ ଏ ପର୍ଯ୍ୟନ୍ତ ସମ୍ଭବ ହୋଇନଥିବାରୁ ମନକୁ ଶାନ୍ତ ରଖିବାକୁ ସ୍ୱସ୍ତ୍ୟୟନ-କର୍ମର ବିଧାନ ରହିଛି ।''

ମହାପାତ୍ରେ କହିଲେ, ''ତାହାର ବ୍ୟବସ୍ଥା ମୁଁ କରିସାରିଛି । ଗାଁର ଦୁଇଜଣ ବ୍ରାହ୍ମଣ ବର୍ତ୍ତମାନ ମହାଦେବ ମନ୍ଦିରରେ ମଧୁସୂଦନ କୀର୍ତ୍ତନ କରୁଛନ୍ତି ।''

ଦାସେ କହିଲେ, ''ଆଉ ତୁମ ଭାଉଜ ମଧ ତାଙ୍କ ପାରଂପରିକ ସ୍ୱସ୍ତ୍ୟୟନ ଆରମ୍ଭ କରି-ସାରିଛନ୍ତି । ଆମ ଠାକୁରାଣୀଙ୍କ ଆଗରେ ସେ ଭୋରବେଳୁ ଗୋଟିଏ ଘିଅଦୀପ ବସାଇଛନ୍ତି । ତାଙ୍କର ସୁଖପ୍ରସବ ହେଲେ ସେଇ ଦୀପ ଯୋଗୁହିଁ ହେବ ବୋଲି ତାଙ୍କର ଦୃଢ଼ ଧାରଣା । ମୋର କୋଡ଼ିଏ ବର୍ଷ ପୂର୍ବେ ଯେଉଁ ପେଟ ବେମାରୀ ହୋଇଥିଲା ତାହା ଡାକ୍ତର ଓ କବିରାଜ ଭଲ କଲେ ବୋଲି ଆମେ ସିନା ବୁଝିଲେ, ସେ ଅଦ୍ୟାପି କହୁଛନ୍ତି ଠାକୁରାଣୀଙ୍କ ଆଗେ ଘିଅଦୀପ ଯୋଗୁଁ ହିଁ ମୋର ଆରୋଗ୍ୟ ହେଲା । କେଉଁ କଥାଟା ଠିକ୍ ସ୍ଥିର କରିନପାରି ମୁଁ ଉଭୟ ପକ୍ଷରେ ଭୋଟ ଦିଏ ।''

କୁମାରପୂର୍ଣ୍ଣିମା ଓପରଓଳି ପ୍ରତିବର୍ଷ ମହାଦେବଙ୍କ ପାଖେ ଦାସଙ୍କର ଭୋଗରାଗ ହୁଏ —କୋଡ଼ିଏ ଗଉଣୀ ଧାନର ଚୁଡ଼ାଘସା ହୁଏ, ପ୍ରଚୁର ନଡ଼ିଆ ପଡ଼େ । ଗାଁ ସାକର ଆବାଳ ବୃଦ୍ଧ ସେଥିରୁ ଆଂଜୁଳେ ଆଂଜୁଳେ ପା'ନ୍ତି । ସେ ଦିନର ଭୋଗ ମହାଦେବଙ୍କ ମନ୍ଦିରରୁ ଆସି ଘରଦୁଆରେ ଥୁଆ ହୋଇଛି, ପିଲାଙ୍କୁ ଲୁଗାପଟା ବାଣ୍ଟିବାକୁ ମହାପାତ୍ରେ ଆରମ୍ଭ କରୁଛନ୍ତି, ଏଇ ସମୟରେ ଭିତର ଆଡ଼ୁ ଖବରଆସିଲା 'ପୁଅଟିଏ' । ସମସ୍ତେ ହରିବୋଲ ଦେଲେ । ପଶ୍ଚିମକବାଟେ ପାଟିକର କହିଲେ, ''ଦାସଙ୍କର ତ ଏ ଭୋଗ ସବୁ ବର୍ଷ ହେଉଛି । ତାଙ୍କର ପୁଅ ପାଇଁ ଠାକୁରାଣୀଙ୍କ ପାଖେ ଆଉ ଗୋଟାଏ ଭୋଗ ହେଉ । ମୁଁ ଯାଉଛି ଦୁଇଟା ସାକ ଗୁଡ଼ିଆ ଦୋକାନରେ ଯାହା ଜିନିଷ ଅଛି ସବୁ ବୋହିଆଣିବ ।''

ଦାସେ କହିଲେ, "ଆଣିବା ଦରକାର ନାହିଁ । ସେଇ ଦୋକାନ ଉପରେ ହରିଲୁଟ୍ କରାଇଦିଅ । ସାଇକଲରେ ଜଣକୁ କାହାକୁ କହ, ପଣ୍ଡିଆ ଅବଧାନଙ୍କୁ ଡାକି ଆଣିବ । ସାଙ୍ଗେ ସାଙ୍ଗେ ପିଲାଟିର ଯାତକ କାଢ଼ିଦେବା ।"

ଏତିକିବେଳେ ଦାସିଆଣୀ ଦାଣ୍ଡ ଦୁଆର କବାଟକୋଣକୁ ଆସି ବାଣବାବୁଙ୍କୁ ଡାକି କହିଲେ, "ପିଲାଟିକୁ ଇଶ୍ୱର ସାରିଲେଣି । ଦେଖିବ ଯେବେ ଆସ । ମୁଁ କେତେ ପିଲା ଜନ୍ମ ବେଳେ ଦେଖିଛି । ଏମିତି ତେଜସ୍ୱାନ୍ ପିଲାଟିଏ ଆଜଯାଏଁ ଦେଖିନଥିଲି ।"

ଦାସେ କହିଲେ, "ଆଉ ଟିକିଏ ଯାଉ, ଏଠାର କାର୍ଯ୍ୟ ସରିଗଲେ ଏକାଥରକେ ସମସ୍ତେ ଯାଇ ଦେଖିବା । ପିଲା ଓ ମା'ର ହେପାଜତ କରୁଥାଅ । ପଣ୍ଡିଆଙ୍କୁ ଡାକିଛୁ, ସେ ଆସିଲେ ଜାତକ ତିଆରି କରିବ ।"

ଗୃହିଣୀ – ଯାତକ ତିଆରି ପାଇଁ ତର ସହୁନାହିଁ କାହିଁକି ? ପିଲା ଜନ୍ମର ସମୟ ମୁଁ କାନ୍ଥରେ ଟିପିଦେଇଛି, ଜନ୍ମବେଳେ ଯେଉଁମାନେ ଯେଉଁଠି ଥିଲେ ମନେରଖିଛି । ଅଙ୍କ ନ କରି ଅନ୍ନପ୍ରାଶନ ସମୟରେ ଜାତକ କଲେ ବି ହେବ । ସେ ବିଚରାକୁ ଏପରି ଦିନେ ଘୋସାରୁଛ କାହିଁକି ?—ଏହା କହି କହି ଗୃହିଣୀ ଘର ଭିତରକୁ ଗଲେ ।

ସେ ଦିନ ଦାସଙ୍କ ଦୁଆରେ ଯେମିତି ଉତ୍ସବ ହେଲା ସେଭଳି ଉତ୍ସବ ଆଉ କେବେ ହୋଇନଥିଲା ବୋଲି ଲୋକେ କୁହାକୁହି ହେଉଥାନ୍ତି । ପଣ୍ଡିମକବାଟେ ଗୁଡ଼ିଆ ଦୋକାନୀକୁ ଯାଇ ହରିଲୁଟ୍ କଥା କହିବାମାତ୍ରେ ଦୁଇଜଣଯାକ ଦୋକାନୀ ଆଗ୍ରହରେ ସମ୍ମତ ହେଲେ, କିନ୍ତୁ ଦାସଙ୍କ ଦୁଆରେ ସମସ୍ତେ ଜମିଥିବାରୁ ମିଠେଇ ଖାଇବାକୁ ଦୋକାନକୁ କିଏ ଆସିବ ବୋଲି କହି ପସରା ଧରି ଦାସଙ୍କ ଦୁଆରକୁ ଚାଲିଆସିଲେ । ହାଡ଼ି ଆସିଲେ ବଜାଇବାକୁ । ରାମଲୀଳାବାଲା ଦଶହରା ପରେ ଲୀଳା ନେଇ ଗାଁ ଗାଁରେ ମାଗୁଣି କରୁଥିଲେ । ଦାସଙ୍କ ଦୁଆରେ ଦଶହରା ଦିନ ଲୀଳା ହୋଇଥିଲା । ସେମାନେ ଆଉ ଗୋଟିଏ ଜାଗାକୁ ଯିବାକୁ ପିଲାଙ୍କୁ ବେଶ କଲାବେଳେ ଦାସଙ୍କର ନାତି ହେବା କଥା ଶୁଣି, ସିଧା ତାଙ୍କ ଦୁଆରେ ଆସି ଗୀତ ଆରମ୍ଭ କରିଦେଲେ । ପ୍ରସାଦ ବଣ୍ଟନ, ଲୁଗାପଟା ବଣ୍ଟନ, ରାମଲୀଳା, କୀର୍ତ୍ତନ ମଣ୍ଡଳୀଙ୍କ ଗହଳରେ ଦ୍ୱାର ଜନାକୀର୍ଣ୍ଣ ହୋଇଯାଇଥାଏ । ସମସ୍ତେ ଆନନ୍ଦରେ ବିଭୋର । କେବଳ ପଡ଼ିଶା ଘର ଦାଣ୍ଡ ପିଣ୍ଡାରେ ବସିଥିବା ଦାସଙ୍କ କୁଟୁମ୍ବର ଭାଇନା ନାରଣ ଦାସେ ଏ ସବୁ ଗହଳର ପ୍ରତିବାଦ କରି, ଦାସଙ୍କୁ ଶୁଣାଇ କହୁଥାନ୍ତି, "ବୁଢ଼ାଟିଏ ହେଲାଣି, ବୁଦ୍ଧି ହେଉ-ନାହିଁ । ଭିକାରୁଣୀ ଟୋକୀଟାକୁ ଝିଅ କଲୁ ତ କଲୁ, ତା'ର ପିଲାଟେ ହେଲା ବୋଲି ଏତେ ବଦ୍‌ଖର୍ଚ୍ଚ । ଯେ ଦୁଆର ମୁହଁରେ ଆସି ମୁହଁ ଦେଖାଉଛନ୍ତି ସେ ତ ନ ଖାଇଲେ, ପଇସା ନ ନେଲେ ଯିବେନାହିଁ । ପିଲାଗୁଡ଼ାକ ଯୋଗୁଁ ଏପରି ବଦଖର୍ଚ୍ଚୀ ହୋଇଛନ୍ତି ଯେ, ମୁଠାଏ ଲେଖାଏଁ ଟଙ୍କା ଦରମା ପାଉଛନ୍ତି, ଘରକୁ ପଠାଇବେ କ'ଣ ଘରୁ ଟଙ୍କା ନେଲେ ଚଳୁଛନ୍ତି । ଖର୍ଚ୍ଚ କଲାବେଳେ ଇନ୍ଦ୍ର ଚନ୍ଦ୍ର ଦିଶୁନାହାନ୍ତି, କାଲିକି ଭାଲିହେବ ପଇସା ଆସିବ କୁଆଡ଼ୁ ?"

ସ୍ତ୍ରୀଙ୍କ କଥା ଦାସେ ପିଲା ଦିନୁଁ ଶୁଣୁଛନ୍ତି । ପ୍ରତିବାଦ ଯଦି କରନ୍ତି ନାହିଁ କି ତାଙ୍କ କଥା ମାନି ନିଜର ଆଚରଣ ବଦଳାନ୍ତି ନାହିଁ । ପଚାରିଲେ କହନ୍ତି, ଷଇନା ମୁହଁରେ ସିନା ସେପରି କହୁଛନ୍ତି, ମୋ କାର୍ଯ୍ୟ ସେ ଅନ୍ତରରେ ପସନ୍ଦ କରନ୍ତି । ଏକଥା ଷଇନା ଶୁଣିଲେ କହନ୍ତି, ଅନ୍ତରରେ ତ ବିଚାରୁଛି ସ୍ତ୍ରୀକୁ ମୁଣ୍ଡେଇ କରି ବୁଲନ୍ତି ? ଏ ଦୁଇ ଜଣଙ୍କ କଥା ମାଇପି ମହଲରେ ବି ବ୍ୟଙ୍ଗ ବିଦ୍ରୂପର ବିଷୟ ହୁଏ । ଦାସିଆଣୀ ତ ପ୍ରତିଦିନ ଦେଢ଼ସୁରଙ୍କ ପାଇଁ ଦିଅଣ ଶାଗ ନ ପଠେଇଲେ ଦାସଙ୍କ ପାଇଁ ଠା କରନ୍ତି ନାହିଁ ।

ଦୁଆର ମୁହଁରୁ ଗହଳି ଖାଲିଲା ବେଳକୁ ସତ ପ୍ରାୟ ଛ ଘଡ଼ି । ଲୋକ ପତଳା ପଡ଼ିଯିବାରୁ ପଦିଆ ନାୟକେ ଦାସଙ୍କ ଆଗକୁ ଆସି ଜେ ଜେ କଲେ । ଦାସେ କହିଲେ, "କିଓ ପଦ୍ମନାଭ ! ତୁମକୁ ମୁଁ ଚାହିଁ କରି ବସିଛି । ତୁମେ କେତେବେଳୁ ଆସିଲଣି ଯେ ? ପିଲାଟିର ଜାତକ ଖଣ୍ଡେ କରିବା ଧରି ।"

ପଦିଆ ନାୟକେ କହିଲେ, "ଆପଣେ, ଆସିବାକୁ ହୁକୁମ ପହଞ୍ଚିବା ମାତ୍ରେ ଆସିଛି । ଚାରି ପାଞ୍ଚଦିନ ହେଲା ବାଧିକା ପଡ଼ିଥିଲି, ଘରୁ ବାହାରିନଥିଲି । ଆଜି ଆସିଲି ଯେ ଆପଣଙ୍କ ଗାଁ ମୁଣ୍ଡେ ଟିକିଏ ହାଲିଆ ଲାଗିଲା । ଚାନ୍ଦନୀରେ ଆସି ଘଣ୍ଟେ ଖଣ୍ଡେ ବସିଲି ପରେ ଟିକିଏ ଭଲ ଲାଗୁଛି । ବିଚାରିଲି, ଆପଣଙ୍କ ସଙ୍ଗେ ଟିକିଏ କଥାବାର୍ତ୍ତା ହୋଇ ବାହାରିଯିବି । କିନ୍ତୁ ଏତେ ଭିଡ଼ ଭିତରେ ଆପଣଙ୍କ ନଜର ପଡ଼ୁଛି କେତେବେଳେ ?"

ମହାପାତ୍ରେ କହିଲେ, "କିରେ ପଦିଆ, ଦି' ଚାରିଦିନ ହେଲା ତ ଘରୁ ବାହାରିନାଉଁ, ଖର୍ଚ୍ଚ ଚଳୁଛି କିମିତି ? ଆଜି ତ ପୂରାଅଁ ଖର୍ଚ୍ଚ ହୋଇନଥିବ ? ଯିବା ଆସିବା କରିପାରିଲୁ ନାହିଁ ବୋଲି ଖବରଟାଏ ପଠାଇଲୁନାହିଁ କାହିଁକି ? ମାଇପି କଥା ଛାଡ଼, ତୋ'ର ପରି ସାନଦିଆ ତଳେ ପୁଅ ଝିଅ ଯୋଡ଼ିଏ ? ତାଙ୍କ ପାଇଁ ଲୁଗା ଫ୍ରକ୍ ଖଣ୍ଡେ ଖଣ୍ଡେ କିଣି-ନାହୁଁ ?"

ଜ୍ୟୋତିଷ ନାୟକେ କିଛି ନ କହି ମୁରୁକି ମୁରୁକି ହସିଲେ । ମହାପାତ୍ରେ ପୁଣି ପଚାରିବାରୁ କହିଲେ, "ଆଜ୍ଞା, ପିଲାଙ୍କ ଲୁଗାପଟା କଥା କିଏ ପଚାରୁଛି, ଗଲା ଚାରିଦିନ ଭିତରେ ଦିନକର ଅଫିମ ବି ପୂରା ମିଳିନାହିଁ । ପଅରିଦିନଠାରୁ ମନଟାକୁ ଟାଣ କରିଦେଇଛି, ଅଫିମ ଖାଇବି ନାହିଁ ।"

ମହାପାତ୍ରେ କହିଲେ, "ଆରେ, ସେ ଟାଣ ଛାଡ଼ । ପିଲାଦିନୁଁ ତ ଅଫିମ ହାବୁଡ଼େ ପଡ଼ିଯାଇଛୁ । ଏତେବେଳେ ଛାଡ଼ିଦେଲେ ଆପେ ମରିବୁ, ପିଲାଟିମାନେ ବି ଭୋକ ଉପାସରେ ମରିବେ । କଳାକୃଷ୍ଣ ପ୍ରସାଦରେ ସିନା ଅଣ୍ଟାରୁ ଖଡ଼ି ଗୋଟାଳି ବାହାର କରି ଅନର୍ଗଳ ଗପି-ଯାଉଛୁ । ଆଜି ଆଗ ଟିକିଏ ସେବା କର, ତା'ପରେ ଏ ପିଲାର କୋଷ୍ଠୀ କାଟି ମୋଟାମୋଟି ଦି' ପଦ କହିଦେଇ ଯା' । ସଇଥିଲିଆରେ ଯାତକ ଲେଖିଦେଇ ଯିବୁ ।"

ସାଙ୍ଗେ ସାଙ୍ଗେ ଅଫିମ ଆସିଲା ; ଜଳଖିଆ ମିଳିଲା । ନାୟକଙ୍କ ମନ ପ୍ରସନ୍ନ ହୋଇଯାନ୍ତେ, ଦାସେ ଘର ଭିତରକୁ ଯାଇ ଜନ୍ମ ସମୟ ଓ ସୂତିକାଗୃହର ବିବରଣୀ ଆଣି ଯୋଗାଇ ଦେଲେ ।

ବୁଢ଼ା ନାୟକେ ଖଡ଼ି ଗୋଟାଳିଟି କାଢ଼ି ଗାର କାଟି କାଟି କହିଲେ, "ଆଜ୍ଞା, କହିଲେ ପରି ୭ଟା ବାଜି ୪୦ ମିନିଟ୍ ; ସେ ହୋଇଥିବ ରେଲୱେ ଟାଇମ । ଏଥିରୁ ୧୮ ମିନିଟ୍ କାଟିବାକୁ ପଡ଼ିବ । ହଉ······।"

ଦଶ ପନ୍ଦର ମିନିଟ୍ ଚାଲିଗଲା ; ନାୟକେ ଖଡ଼ି ଗୋଟାଳିଟି ଗୋଟିଏ ମୁଣ୍ଡିଳା ମଧ୍ୟରେ ଥୋଇଦେଇ ମହାପାତ୍ରଙ୍କ ଆଡ଼କୁ ହସ ହସ ମୁହଁରେ ଚାହିଁ କହିଲେ, "ଆଜ୍ଞା, ସେ ପିଲା ବିଷୟରେ କହିବି କ'ଣ ? ଆଜି କୁମାରପୂର୍ଣ୍ଣିମା, ବାର ମଧ୍ୟ ଭଲ, ବଡ଼ ବଳୁଆ ନକ୍ଷତ୍ର ପିଲାଟି ପାଇଛି । ବୃହସ୍ପତି ପଞ୍ଚମରେ ଅଛନ୍ତି । ଖାଲି ପୂର୍ଣ୍ଣିମାରେ ଜନ୍ମକୁ ଲେଖୁଛି ;

କନ୍ଦର୍ପତୁଲ୍ୟୋ ଯୁବତୀ ପ୍ରିୟଶ୍ଚ
ନ୍ୟାୟାପ୍ତବିତ୍ତଃ ସତତଂ ସହର୍ଷଃ
ଶୂରୋ ବଲୀ ଶାସ୍ତ୍ରବିଚାରଦକ୍ଷ—
ଶ୍ଚେତ୍ ପୂର୍ଣ୍ଣିମା ଜନ୍ମନି ଯସ୍ୟ ଜନ୍ତୋଃ ।

ଦେଖିବାକୁ ସୁନ୍ଦର ହେବ, ସହର୍ଷ ମୁହଁ ହେବ, ଚାହିଁଦେଲେ ଲୋକଙ୍କୁ କିଣିନେବ, ନ୍ୟାୟମାର୍ଗରେ ପଇସା ରୋଜଗାର କରି ସଦ୍‌ବ୍ୟୟ କରିବ । ଶାସ୍ତ୍ର ବିଚାର କରିବ । ଜନ୍ମତିଥିର ସେ ଫଳ, ସ୍ତ୍ରୀ ସାଙ୍ଗକୁ ବୃହସ୍ପତି କେନ୍ଦ୍ରରେ, କିଂ କୁର୍ବନ୍ତି ଗ୍ରହାଃ ସର୍ବେ, ଯଦି କେନ୍ଦ୍ରେ ବୃହସ୍ପତିଃ । ଖାଲି ଏତିକି, ସେ ଯାତକ ତା ପିତୃକୁଳର ମଙ୍ଗଳକାରକ ନୁହେଁ । ସେ ଗର୍ଭସ୍ଥ ହେବା ଦିନୁଁ ବାପା ସ୍ତ୍ରୀର ବଇଷମ ହୋଇ ବୁଲୁଛି । ସ୍ତ୍ରୀର ହେଉ ପାଇବା ପୂର୍ବରୁ ସେ ଗୋସାଇଁବାପକୁ ଖାଇବ । ହେଲେ କ'ଣ ହେଲା, ସେ ବାପ ଗୋସାଇଁବାପଙ୍କ ନାଁ ରଖିବ । ଭଲ ପିଲାଟିଏ ଆଜ୍ଞା ଆପଣଙ୍କ ଘରେ ଜନ୍ମ ହୋଇଛି ଆପଣଙ୍କର ସେ ଉପକାରୀ ହେବ ।"

ଶେଷ ପଦଟି ଦାସଙ୍କ ଆଡ଼କୁ ଚାହିଁ କହି, ନାୟକେ ଖଡ଼ି ଗୋଟାଳିଟି ଅଣ୍ଟାରେ ମାରି ବିଦାୟ ନେବାର ମୁଖଭଙ୍ଗୀ କଲେ । ମହାପାତ୍ରଙ୍କ ଅନୁଗ୍ରହରେ ଅଧଭରିରୁ ଟିକିଏ କମ ଅଫିମ ଗାମୁଛାକାନରେ ବନ୍ଧା ହୋଇଥାଏ ଓ ବାକି ଟିକିକ ପେଟରେ ପଡ଼ି ତା'ର କରାମତି ଆରମ୍ଭ କରିଥାଏ ବୋଲି ଏ ମୁଖଭଙ୍ଗୀରୁ ଜଣାପଡ଼ୁଥାଏ ।

ଦାସେ କହିଲେ, "ହଉ, ତୁମକୁ ଆଜି ଆଉ ଅଟକାଇବା ନାହିଁ । ଏଠାରୁ ଉଠିଲେ ଆମେ ସମସ୍ତେ ସେ ପିଲାଟିକୁ ଦେଖିବୁ । ତା'ପରେ ଜଳଖିଆ କରିବୁଁ । ତୁମର ତ ଜଳଖିଆ ହୋଇଗଲାଣି । କୋଉଣେ ବାଟ ଯିବ । ହଉ, ଟିକିଏ ରହ, ମୁଁ ଆସେ ।"

ଦାସେ ୧୦ ମିନିଟ୍ ଭିତରେ ଘରୁ ଖଣ୍ଡିଏ ଶାଢ଼ୀ ଓ ଦଶୋଟି ଟଙ୍କା ଆଣି ପଦ୍ମନାଭ ନାହାକ ହାତରେ ଦେଇ କହିଲେ, "ଜାଣିଲ ପଦ୍ମନାଭ ! ଘରେ ନୂଆ ଶାଢ଼ୀ ନ ଥିଲା ।

ସାଆନ୍ତାଣୀ ଏ ଶାଢ଼ୀ ଦିନେ ମାତ୍ର ପିନ୍ଧି ସାଇତି ଦେଇଥିଲେ, ଏଭଳି ଶାଢ଼ୀ ପିନ୍ଧିବାକୁ ମୋର ବୟସ ନାହିଁ ବୋଲି କହି । ମୁଁ ଶାଢ଼ୀ ଖୋଜିବାରେ କହିଲେ, 'ଏଇଟା ନେଇ ସାନନ୍ଧଆ ବୋଉକୁ କହିବ, ସାଆନ୍ତାଣୀ ଦେଇଛନ୍ତି ବୋଲି । ସେ ଅସୂକ ପାଇବ ନାହିଁ' ।''

ନାୟକେ କୃତକୃତ୍ୟ ହୋଇ କହିଲେ, ''ଆମ ଘରେ ସିଏ ସାଆନ୍ତାଣୀପାଲଟା ଶାଢ଼ୀକୁ ଅସୂକେଇବ ବୋଲି ବସିରୁଛନ୍ତି କାହିଁକି ? ସେ ତ ହେବ ତା'ର ପେଡ଼ିଲୁଗା । ହଉ ଅଜ୍ଞା, ମୁଁ ଯାଉଛି'' ବୋଲି କହି ନାହାକେ ବିଦାୟ ନେଲେ ।

ଦାସେ ବନ୍ଧୁମାନଙ୍କୁ ନେଇ ଘରେ ପଶନ୍ତେ ସାଆନ୍ତାଣି ପିଲାଟିକୁ ଧରି କବାଟ ଆଡୁଆଳରୁ ସମସ୍ତଙ୍କୁ ଦେଖାଇଦେଲେ ଓ କହିଲେ, ''ଟିକିଏ ବସ । ମୁଁ ନାଡ଼ିଆଡ଼େ ପାଣି ମୁନ୍ଦେ ଅଜାଡ଼ି ହୋଇ ଆସେ ତୁମମାନଙ୍କ ପାଇଁ ବାଢ଼ିଦେବ । ନିଜ ହାତରେ ପିଲାଟି ଦେଖାଇବ ବୋଲି ସେଇ ପହରୁ କୁଆଁ ଲୁଗା ପିନ୍ଧି ବସିଛି ।''

... ... ... ...

ବାରଯାତ୍ରା ଅତୀତ ହେଲା । ତାରି ସୁସ୍ଥ ହୋଇ ମନା ନ ମାନି ବାହାର ଧାଇଁଟିରେ ଲାଗିଗଲାଣି । ଦାସଙ୍କର ଦି' ପୁଅ ଓ ଦି' ବୋହୂ ଛୁଟି ନେଇ ଆସି 'ଭଣଜା'କୁ ଦେଖି କରି ଗଲେଣି । ସାଆନ୍ତାଣୀ ପିଲାକୁ ମାସେ ହେବାରେ ହରଦ୍ୱାର ଯିବେ ବୋଲି ସଜବାଜ ଆରମ୍ଭ କଲେଣି । ସାଙ୍ଗରେ ମହାପାତ୍ରେ ଯିବେ ବୋଲି ରାଜି ହେବା ସାଙ୍ଗେ ସାଙ୍ଗେ ଆପତ୍ତି ଉଠାଇଲେ, ''ଆଗରୁ କିଛି ଖୋଜଖବର ନ ନେଇ ହରଦ୍ୱାରକୁ ଯିବାକୁ ମୁଁ ପସନ୍ଦ କରୁ-ନାହିଁ । ମୁଁ କାଲି ରାଉରକେଲା ଯାଉଛି, ଆଗ ବାଗନାନ୍‌ରେ ପହଞ୍ଚିବ ; ବାନୁର୍ଜିବାବୁଙ୍କଠାରୁ ବାବୁଜୀଙ୍କ ଖବର ଅନ୍ତର ବୁଝିବି. ତାଙ୍କ ସାଙ୍ଗରେ ଯାଇ ଶେଠଜୀଙ୍କ ସଙ୍ଗେ ବି ସାକ୍ଷାତ୍ କରିବି । ଶେଷରେ ଯିବି ପୁରୀ । ପୁରୀରୁ ଫେରିଲେ ତୁମମାନଙ୍କ ଯିବା କଥା ପଡ଼ିବ ।'' ଦାସେ ଏ ପ୍ରସ୍ତାବରେ ରାଜି ହେବାର କଥା । ମହାପାତ୍ରଙ୍କର ପରାମର୍ଶ ସେ ପ୍ରାୟଶଃ ମାନିଥାନ୍ତି । ଏ ଦୁହିଁଙ୍କ ସିଦ୍ଧାନ୍ତରେ ଦାସିଆଣୀ ବା ଆପତ୍ତି କରନ୍ତେ କିମିତି ?

ମହାପାତ୍ରେ ଫେରିବାକୁ ପ୍ରାୟ ପନ୍ଦର ଦିନ ଲାଗିଗଲା । ସେ ଫେରିବାରେ ଜଣା-ପଡ଼ିଲା, ବାବୁଜୀଙ୍କର ନାମ ଶ୍ରୀ ସାନନ୍ଦ ନାୟକ, ତାଙ୍କ ଜନ୍ମସ୍ଥାନ ପୁରୀଜିଲାର ଖୋର୍ଦ୍ଧା ସବ୍‌ଡିଭିଜନ୍‌ରେ ବୋଲି ସେ ଟାଟାକଲର ଜଣେ ଓଡ଼ିଆ କର୍ମଚାରୀଙ୍କୁ କହିଥିବା କଥା ମହାପାତ୍ରେ ଅନୁସନ୍ଧାନ କରି ଜାଣିପାରିଲେ । କିନ୍ତୁ ଗାଁ ନାମ ବା ବାପ ନାମ କମ୍ପାନୀର ରେଜିଷ୍ଟ୍ରୀରେ ମିଳିଲା ନାହିଁ । ତାଙ୍କର ଠିକଣା ଲେଖାଅଛି : ହାଲ୍ ସାକିନ୍ ଋଷିକୁଳ ଆଶ୍ରମ, ହରିଦ୍ୱାର । ତାଙ୍କ ବିଷୟରେ ମହାପାତ୍ରେ ଶେଠ୍‌ଜୀଙ୍କ ସହିତ ବହୁତ ଆଲୋଚନା କଲେ । ଶେଠ୍‌ଜୀଙ୍କ ପାଖେ ବାବୁଜୀଙ୍କର ପ୍ରାୟ ଦଶହଜାର ଟଙ୍କା ଜମା ଅଛି । ଶେଠ୍‌ଜୀ କହିଲେ, ତାରି ଦେବୀଙ୍କ ଦସ୍ତଖତ ଖୋର୍ଦ୍ଧା ସବ୍‌ଡିଭିଜନ ଅଫିସରଙ୍କଦ୍ୱାରା ସନାକ୍ତ କରାଇ ପଠାଇଦେଲେ ସେ ଟଙ୍କାଟା ଦେଇଦେବେ, କିବା ତାରିଦେବୀ ନିଜେ ଆସି ପହଞ୍ଚିଲେ ଟଙ୍କା ନେଇଯାଇ ପାରିବେ । ମହାପାତ୍ରେ ଶେଠଜୀଙ୍କୁ କହିଲେ, ''ମୁଁ ଟଙ୍କା ପାଇଁ ଆସିନାହିଁ । ଟଙ୍କା ପ୍ରୟୋଜନ

ହେଲେ ମୁଁ ଆପଣଙ୍କ ପରାମର୍ଶ ଅନୁସାରେ କାର୍ଯ୍ୟ କରିବି । ବର୍ତ୍ତମାନ ମୁଁ ଆପଣଙ୍କଠାରୁ ଏତିକି ମାତ୍ର ବୁଝିବାକୁ ଚାହୁଁଛି. ଆପଣଙ୍କର ଜଣେ ବିଶ୍ୱସ୍ତ ଓ ପ୍ରିୟ କର୍ମଚାରୀ ହଠାତ୍ ନିରୁଦ୍ଦିଷ୍ଟ ହୋଇଗଲାରେ ଆପଣଙ୍କର ଯାହା କରିବାର କଥା ଆପଣ ତାହା କରିଛନ୍ତି ନା ନାହିଁ । ଆପଣ କହୁଛନ୍ତି, ସେ ଦିନ ସାନନ୍ଦ ବାବୁ ଯେଉଁ ରେଳରେ ଆସୁଥିଲେ ତାକୁ ଗଣ୍ଡଗୋଳକାରୀମାନେ ରାମରାଜତାଲରେ ଅଟକାଇଦେଲେ । ସାନନ୍ଦ ବାବୁ ସେଇଠାରୁ ନିଖୋଜ । ସେ ଡାକ୍ତରଖାନାରେ ପାଉଡ଼ ହୋଇ ପଡ଼ିଲେ ବା ଗଣ୍ଡଗୋଳକାରୀ ବୋଲି ହାଜତକୁ ଗଲେ ଆପଣଙ୍କର ଅନୁମାନ । ଆପଣ ସେଇ ସମୟରେ ଏଇ ଅନୁମାନ ଉପରେ ଅନୁସନ୍ଧାନ କରିଥିଲେ ଭଲ ହୋଇନଥାନ୍ତା କି ?''

ଶେଠ୍‌ଜୀଙ୍କ କଥାରୁ ଜଣାପଡ଼ିଲା, ସେ ସାନନ୍ଦ ବାବୁଙ୍କ ସହକାରୀ ଅଫିସରଙ୍କୁ ପ୍ରତି ପୁଲିସ ଥାନା ଓ ଡାକ୍ତରଖାନାରେ ବୁଲାଇଥିଲେ, କେଉଁଠି କିଛି ସନ୍ଧାନ ମିଳିଲା ନାହିଁ । ପ୍ରାୟ ଛ'ମାସ ପରେ ସାନନ୍ଦ ବାବୁ ନିଜେ ଆସି ଶେଠ୍‌ଜୀଙ୍କ ସଙ୍ଗେ ସାକ୍ଷାତ କଲେ । ତାଙ୍କଠାରୁ ଜଣାଗଲା, ସେ ରାମରାଜତାଲରେ ଗଣ୍ଡଗୋଳ ରୋକିବାକୁ ଯାଇ ମୁଣ୍ଡରେ ମାଡ ଖାଇଲେ । ଫଳରେ ସେ ବେହୋସ୍ ହୋଇଯାଇଥିଲେ । ଛ'ମାସ ପରେ ତାଙ୍କର ସଂଜ୍ଞା ଆସିଲା । ସାଙ୍ଗେ ସାଙ୍ଗେ ସେ ବାଗନାନ୍ ଯାଇ ତାଙ୍କ ସ୍ତ୍ରୀଙ୍କର ସନ୍ଧାନ କଲେ । ଯାହା ଖବର ପାଇଲେ ସେଥିରୁ ତାଙ୍କର ଧାରଣା ହେଲା ଯେ, ତାଙ୍କ ସ୍ତ୍ରୀ ଆଉ ଇହଜଗତରେ ନାହାନ୍ତି । ତାପରେ ସେ ଶେଠଜୀଙ୍କଠାରୁ ବିଦାୟ ନେଇ ନିରୁଦ୍ଦିଷ୍ଟ ହୋଇଗଲେ ।

ଏହିପରି କଥାବାର୍ତ୍ତା ପରେ ଶେଠ୍‌ଜୀ କହିଲେ, "ସାନନ୍ଦବାବୁ କେଉଁଠି ଅଛନ୍ତି ଖୋଜି, ତାଙ୍କ ସ୍ତ୍ରୀ ଓ ପୁଅଙ୍କ ସମ୍ବାଦ ତାଙ୍କ ପାଖେ ପହଞ୍ଚାଇବା ପାଇଁ ମୁଁ ଯଥାସମ୍ଭବ ଚେଷ୍ଟା କରିବି । ସେ ମୋର ପୁଅଠାରୁ ପ୍ରିୟ ହୋଇଥିଲେ । ତାଙ୍କ ପାଇଁ ଯାହା ଖର୍ଚ୍ଚ ଓ ପରିଶ୍ରମ ଦରକାର ତାହା ମୁଁ ଅକୁଣ୍ଠିତ ଭାବେ କରିବି ।''

ମହାପାତ୍ରେ ଗାଁକୁ ଫେରିଲେ ଓ ଶେଠ୍‌ଜୀ ସେଇ ଦିନ ହରଦ୍ୱାର ଗଲେ, ବାବୁଜୀଙ୍କ ସନ୍ଧାନ କରିବା ବିଷୟରେ ବଡ଼େ ମହାରାଜଙ୍କ ପରାମର୍ଶ ନେବା ପାଇଁ ।

## ( ୨୭ )

ମହାପାତ୍ରେ କଲିକତାରୁ ପୁରୀବାଟେ ଗାଁକୁ ଫେରିବାର ୧୫ ଦିନ ଭିତରେ କଲିକତାରୁ ପ୍ରକାଶିତ ଦୁଇଟି ଇଂରେଜୀ କାଗଜରେ ଓ ଓଡ଼ିଶାର ପ୍ରତ୍ୟେକ ଦୈନିକରେ ସାନନ୍ଦବାବୁଙ୍କ ଖୋଜଖବର ପାଇବା ପାଇଁ ବିଜ୍ଞାପନ ବାହାରିଲା । ପ୍ରତ୍ୟେକରେ ସାନନ୍ଦ-ବାବୁଙ୍କର ଫଟୋ ଥାଏ । ଦେହରେ ଖଣ୍ଡିଏ ଖଦଡ଼ ହାତକଟା କାମିଜ, ପିନ୍ଧା ଖଣ୍ଡିଏ ଖଦଡ଼

ଲୁଗା, କାନ୍ଧରେ ଖଣ୍ଡିଏ ଖଦଡ଼ର ଧଳା ଗାମୁଛା, ମୁହଁରେ ଦାଢ଼ି ଓ ମୁଣ୍ଡରେ ବାବୁରିବାଳ । ତାରାଦେବୀଙ୍କ ପାଖରେ ଯେଉଁ ଫଟୋଟି ଥିଲି ଏହା ତାହାର ଅବିକଳ ନକଲ—ବୋଧହୁଏ ଶେଠ୍‌ଜୀଙ୍କ ଅଫିସରେ ଏଇ ଫଟୋରୁ ଗୋଟିଏ ଥିଲା ; ତାହାର ବ୍ଲକ କରାଇ ସେ ଖବର କାଗଜମାନଙ୍କୁ ପଠାଇଥାନ୍ତି । ସେଠ୍‌ଜୀ ବିଜ୍ଞାପନରେ ଜଣାଇଥାନ୍ତି, ଯେ ସାନନ୍ଦବାବୁଙ୍କ ହାଲ ଠିକଣା ଜଣାଇବେ, ତାଙ୍କୁ ତାଙ୍କର ଗୃହଦା ମୁତାବକ ପୁରସ୍କାର ମିଳିବ ; ସାନନ୍ଦବାବୁଙ୍କ ଖବର ଶେଠ୍‌ଜୀଙ୍କ ପାଖକୁ, ଋଷିକୁଲ ଆଶ୍ରମର ବଡ଼େ ମହାରାଜଙ୍କ ପାଖକୁ ବା ଦାସଙ୍କ ପାଖକୁ ପଠାଇବା ପାଇଁ ଲେଖା ହୋଇଥାଏ । ଶେଠ୍‌ଜୀ ମହାପାତ୍ରଙ୍କ ପାଖକୁ ଚିଠି ଲେଖି ଜଣାଇଥାନ୍ତି ଯେ, ଖାଲି ବିଜ୍ଞାପନ ଦେଇ ସେ ତୁନି ରହିନାହାନ୍ତି ; ଭାରତର ପ୍ରତ୍ୟେକ ପ୍ରାନ୍ତକୁ ସେ ନିଜର ଲୋକଙ୍କୁ ପଠାଇଛନ୍ତି, ସେମାନେ ପ୍ରତ୍ୟେକ ଧର୍ମପୀଠ, ମଠ ଓ ଆଶ୍ରମରେ ତଲାସ କରିବେ ; ସାନନ୍ଦବାବୁ ନିଶ୍ଚୟ କୌଣସି ଧର୍ମପୀଠରେ ଅଛନ୍ତି ଓ ଅଳ୍ପ ଦିନରେ ତାଙ୍କର ସନ୍ଧାନ ମିଳିବ ବୋଲି ବଡ଼େ ମହାରାଜ କହୁଥିବାର ସେଠ୍‌ଜୀ ମହାପାତ୍ରଙ୍କୁ ଜଣାଇଥାନ୍ତି ।

ଦାସଙ୍କ ଘରେ ଠାକୁରାଣୀଙ୍କ ଆଗରେ ଅଖଣ୍ଡ ଦୀପ ଜଳୁଥାଏ । ସାଆନ୍ତାଣୀଙ୍କର ଦୃଢ଼ ବିଶ୍ୱାସ, ଏଇ ଦୀପ ତାରା-ବରଙ୍କୁ ନିଶ୍ଚୟ ବାଟ କଢ଼ାଇ ଘେନି ଆସିବ । ସେଇ ବିଶ୍ୱାସରେ ସେ ସାନନ୍ଦବାବୁଙ୍କ ପାଇଁ କୌଣସି ଚିନ୍ତା ନ କରି ପିଲିଟିର ହେପାଜତ୍ ବୁଝିବାକୁ ତାରାଙ୍କୁ ତାଗିଦ୍ କରୁଥାନ୍ତି । ମଝିରେ ଥରେ ବଡ଼େ ମହାରାଜଙ୍କଠାରୁ ଖଣ୍ଡେ ଚିଠି ମିଳିଥିଲା—ମାତ୍ର ଗୁଡ଼ିଏ ଧାଡ଼ି ; ସେଥିରେ ତାରାଦେବୀଙ୍କୁ ନିର୍ଦେଶ ଥିଲା, ଫାଲ୍‌ଗୁନ ପୂର୍ଣ୍ଣିମା ଦିନ ନିଜର ପତି ଓ ପୁତ୍ରଙ୍କୁ ସାଙ୍ଗରେ ଧରି, ଦାସେ ଦାସିଆଣୀ ଓ ସେମାନଙ୍କ ପ୍ରିୟାପ୍ରୀତ ଲୋକଙ୍କ ସହିତ ଆଶ୍ରମରେ ଆସି ହାଜର ହେବ । ସାଆନ୍ତାଣୀଙ୍କ ଅଖଣ୍ଡ ଦୀପ ଓ ଏ ନିର୍ଦେଶରୁ ତାରା ଦେବୀଙ୍କର ପୂରା ବିଶ୍ୱାସ ହୋଇଥାଏ, ଦୋଳପୂର୍ଣ୍ଣିମା ପୂର୍ବରୁ ତାଙ୍କର ଦୁଶ୍ଚିନ୍ତା ନିଶ୍ଚୟ ଦୂର ହେବ । ମାଘମାସ ସରିଗଲାବେଳକୁ ତାଙ୍କ ମନର ଉଚ୍ଛନ୍ନଭାବ ବଢ଼ିବାକୁ ଲାଗିଲା ; ବେଳେ ବେଳେ ସଂଶୟ ଜାତ ହେଉଥାଏ । ବଡ଼େ ମହାରାଜ ତ 'ଏ ବର୍ଷ'ର ଦୋଳପୂର୍ଣ୍ଣିମା ବୋଲି ଲେଖିନାହାନ୍ତି ! ତେବେ କ'ଣ ଆର ବର୍ଷ ନା ଆଉ କୋଉ ବର୍ଷ !

ଦାସଙ୍କ ଚଉପାଢ଼ିରେ ଖବରକାଗଜର ବିଜ୍ଞାପନ ଦି'ଗୁରଖଣ୍ଡ ସବୁବେଳେ ପଡ଼ୁଥାଏ; ଯେ ଆସନ୍ତି ତାକୁ ବୁଝାନ୍ତି ଓ ସାନନ୍ଦବାବୁଙ୍କ ବିଷୟରେ ନାନା କଳ୍ପନାଜଳ୍ପନା କରନ୍ତି । ଦିନେ ଜ୍ୟୋତିଷ ପଦ୍ମନାଭ ନାୟକ ଆସି ପହଞ୍ଚିବାରେ ମହାପାତ୍ରେ ବିଜ୍ଞାପନ ଖଣ୍ଡି ତାଙ୍କ ହାତକୁ ବଢ଼ାଇଦେଇ କହିଲେ, "ଆରେ ପଦିଆ ! ଦେଖିଲୁ, ସାନନ୍ଦ ନାୟକ ବୋଲି ତ ଲେଖାହୋଇଛି ; ଏଏ କ'ଣ ତୋ'ର ସାନନ୍ଦଆ ?" ସମସ୍ତେ ଅବିଶ୍ୱାସ ଓ ପରିହାସରେ ହସିଦେଲେ । ପଦିଆ ନାୟକେ ଖୁବ୍ ତନ୍ନ ତନ୍ନ କରି ଫଟୋଟିକୁ ବୁଝି କହିଲେ, "ମୋ ପୁଅର କପାଳରେ ଏଇମିତି ଗୋଟାଏ ଦାଗ ଥାଏ । କିନ୍ତୁ ଏଏ ତ ଜଣେ ମହାତ୍ମାଙ୍କର ଛବି

ମୋ ପୁଅ ମୁହଁରେ ଏମିତି କ୍ୟୋତି କୁଆଡୁ ଆସିବ ! ଖାଲି ନାମଟା ସମାନ ବୋଲି କ'ଣ ସେ ମୋ ପୁଅ ହୋଇଯିବେ ? ତାହାଣ ପାପୁଲିର ଚିହ୍ନ ଥା'ନ୍ତା କି, ଚହ୍ନି ଦିଅନ୍ତି ।''

ମହାପାତ୍ରେ କହିଲେ, ''ତୁ ପରା କହୁଥିଲୁ ତୋ ନାତିର ମୁହଁ ଦେଖିଲେ ତୁ ମରିବୁ ? ତାପର ପୁଅକୁ ଆଣିବା, ତାକୁ ଗୁହାଁ, ଯଦି ମରିବୁ, ଜଣାପଡ଼ିବ, ଏଇ ସାନନ୍ଦ ତୋ' ପୁଅ ।'' ସମସ୍ତେ ହସିଲେ । ପଦିଆ କହିଲା, ''ହଁ, ସେ ଗୋଟାଏ ପ୍ରମାଣ । ମୁଁ ପୁଅର କୋଷ୍ଠୀ ଭଲ କରି ସାଧିଛି । ତା' ପୁଅକୁ ମୁଁ କୋଳରେ ଧରିବା ମାତ୍ରେ ମୋର ନିଶ୍ଚୟ ମରଣ ହେବ ।''

ଦାସେ କହିଲେ, ''ଭଲ କରି କୋଷ୍ଠୀ ସାଧିଥାଅ ବା ନ ଥାଅ, ଏକଥା ଯେତେ-ବେଳେ କହୁଛ, ଜାଣି ଜାଣି ତାର ପୁଅକୁ ତୁମ କୋଡ଼ରେ ଦେବ କିଏ ?''

ପଦିଆ କହିଲା, ''ଆଜ୍ଞା, ସେକଥା ଯେଉଁଦିନ ହେବାର କଥା ହେବ । ଆପଣ କ'ଣ କରିବେ, ମୁଁ ବା କ'ଣ କରିବ ?''

ଏଆଡ଼େ ଏସବୁ ଘଟିବାର ପ୍ରାୟ ୪।୫ ମାସ ପୂର୍ବେ ଦିନେ ସକାଳେ ମହାନଦୀ କୂଳର ବିମଳାପୀଠରେ, ବାବା ମନ୍ଦିରରୁ ବାହାରି ତାଙ୍କର କାମଦାମ ବୁଝୁଥିବା ଯୋଗୀ ମାଷ୍ଟ୍ରଙ୍କୁ କହିଲେ, ''ଯୋଗୀ ! ଆଜି ଜଣେ ମହାତ୍ମା ଆମ ଏଠାକୁ ଆସୁଛନ୍ତି । ସେ ଆମ ଏଠାରେ ମୋର ଉତ୍ତରାଧିକାରୀ ହୋଇ ରହିବେ ବୋଲି ଠାକୁରାଣୀଙ୍କର ନିର୍ଦ୍ଦେଶ ; ତାଙ୍କର ରହିବାପାଇଁ ଗୋଟିଏ ବଖରା ସଜାଡ଼ିଦିଅ ; ଦୁଧ ମୁନ୍ଦିଏ ଓ ପାଣି ସୁରେଇଟିଏ ରଖିଥାଅ । ସେ ଏଇଓଳି ଆସି ପହଞ୍ଚିପାରନ୍ତି ; ତାଙ୍କୁ ଟିକିଏ ଅପେକ୍ଷା କର ।''

ଯୋଗୀ ମାଷ୍ଟ୍ରେ ଆଜ୍ଞା ବୋଲି କହି ବରିଦ ଅନୁସାରେ କାର୍ଯ୍ୟ କରିବାକୁ ସନ୍ତ-ର୍ପଣରେ ଗଲେ । ଆଜି ସେ କଥା କ'ଣ ? ବାବାଙ୍କର ଅଦ୍ଭୁତ ଶକ୍ତି । ବିମଳା ମନ୍ଦିରରେ ପୂଜାପାଠ ସାରି ସେ ଆସିଲାବେଳେ ଯାହା କହନ୍ତି ତାହା ନିଶ୍ଚୟ ଘଟେ । ଆଗେ ଯୋଗୀ ମାଷ୍ଟ୍ରେ ବିଗୁରୁଥିଲେ ସେ ସବୁ ଅନୁମାନ କିନ୍ତୁ ବାରମ୍ବାର ପରୀକ୍ଷା କରି ସେ ଦେଖିଲେଣି, ଏହା ଅନୁମାନଠାରୁ ବଡ଼ ଆଉ କିଛି । ତେବେ କ'ଣ ବାବା ଏ ସ୍ଥାନ ଗୁଡ଼ି କୁଆଡ଼େ ଗ୍ଲଲିଯିବେ ? କେବେ ? ନିକଟରେ ବା ବିଳମ୍ବରେ ? ସତେ କ'ଣ ଠାକୁରାଣୀଙ୍କର ଇଚ୍ଛା, ଏ ପୀଠର ମାହାତ୍ମ୍ୟର ଏଇଠାରେ ଇତି ହୋଇଯିବ ?

ଯୋଗୀମାଷ୍ଟ୍ରେ ଘର ଖଣ୍ଡେ ସଫାସୁତ୍ରା କରି ଦୁର୍ଗାଦେବୀ ପ୍ରଭୃତି ସମସ୍ତଙ୍କ ଆଗେ ବାବାଙ୍କ କଥା ଚହ୍ନ କରି, ବାବାଙ୍କ ବରିଦ ଅନୁସାରେ ଘର ସଫାସୁତ୍ରା କରି, ଜିନିଷପତ୍ର ସଜାଡ଼ି ରଖି ପୁଣି ବାବାଙ୍କ ମଣ୍ଡପ ପାଖକୁ ଆସିଲାବେଳକୁ ତାଙ୍କ ପାଖେ ଜଣେ ତରୁଣ ସନ୍ନ୍ୟାସୀ ବସିଛନ୍ତି ! ସନ୍ନ୍ୟାସୀର ଭେକ ନାହିଁ, କିନ୍ତୁ ମୁହଁରେ ସନ୍ନ୍ୟାସର ଦୀପ୍ତି ; ଗୌର-କାନ୍ତିରେ ଚକ୍‌କିଣ କୃଷ୍ଣ ଘନ ଦାଢ଼ି ଓ ବାବୁରି ବାଳ ବଡ଼ ସୁନ୍ଦର ଦିଶୁଥାଏ । ଯୋଗୀ ମାଷ୍ଟ୍ରେ ତାଙ୍କ ପ୍ରତି ଆକୃଷ୍ଟ ହେଲେ ଓ ତାଙ୍କ ନିକଟରେ ସାଷ୍ଟାଙ୍ଗ ପ୍ରଣିପାତ କଲେ ।

ଆଗନ୍ତୁକ ଟିକିଏ ହଡ଼ବଡ଼େଇ ଯାଇ ଯେପରି ବିନୀତଭାବେ ତାଙ୍କ ଆଡ଼କୁ ଚାହିଁଲେ, ସେଥିରେ ଯୋଗୀମାଷ୍ଟ୍ରେ ଆହୁରି କଣିହୋଇଗଲେ । ବାବାଙ୍କ ଚାହାଣିରେ ଥାଏ ଅନୁଗ୍ରହ, ୟାଙ୍କ ଚାହାଣୀରେ ଅନୁଗ୍ରହର ପ୍ରାର୍ଥନା । ଯୋଗୀମାଷ୍ଟ୍ରେ ଉଭୟଙ୍କଠାରୁ ଖଣ୍ଡେ ଦୂରରେ ତୁନି ହୋଇ ବସିରହିଲେ ।

ବାବା ଆଗନ୍ତୁକଙ୍କୁ ପଚାରିଲେ, "ଟିକିଏ ବିଶ୍ରାମ କରିବେ ? ଗୁଡ଼ାଏ ବାଟ ତ ଚାଲି କରି ଆସିଲେଣି । ମନଟି ବି ଚିନ୍ତାକ୍ଲିଷ୍ଟ ବୋଧହେଉଛି ।"

ଆଗନ୍ତୁକ କହିଲେ, "ପଥଶ୍ରାନ୍ତି ବିଶେଷ କିଛି ନୁହେଁ, ଆପଣଙ୍କ ଏ ଆଶ୍ରମର ହତା ପାଖେ ଥିବା ଜଳାଶୟର ପବିତ୍ର ଜଳରେ ଆଚମନାଦି କରିବା ସଙ୍ଗେ ସଙ୍ଗେ ମୋର କ୍ଳାନ୍ତି ଦୂର ହୋଇଛି । କିନ୍ତୁ ମନର କ୍ଳାନ୍ତି ବଢ଼ିଛି ବୋଲି କହିଲେ ଚଳେ । ମୁଁ ଦୁଇଦିନ ପୂର୍ବେ ସ୍ୱପ୍ନରେ ଦେଖିଲି, ଏଇ ଜଳାଶୟର ପାହାଚରେ ବସି ମୋତେ କହୁଛନ୍ତି, "ଏଇଠାରେ ରହ । ନିରୁଦ୍ଦେଶ୍ୟ ଭାବେ ଏଣେତେଣେ ବୁଲିବା ଅପେକ୍ଷା ଏଇଠାରେ ସ୍ଥାୟୀଭାବେ ରହିଲେ ମନର ସମସ୍ତ ସଂଶୟ ଦୂରହେବ । ଏ ପୀଠର ମହାତ୍ମାଙ୍କ ଅନୁଗ୍ରହରେ ତୋର ଅପୂର୍ଣ୍ଣତା ପୂର୍ଣ୍ଣହେବ ।" ଏହା କହି ମୁଁ ସେଦିନ ଯେଉଁଠାରେ ଥିଲି ସେଠାରୁ ଏଠାକୁ ବାଟ ବତାଇଦେଲେ । ପୁଣି ଦେଖିଲି, ଆପଣ ଆଶ୍ରମଦ୍ୱାରରେ ମୋତେ ଅଭିବାଦନ କରି ଗ୍ରହଣ କରୁଛନ୍ତି ; ଠିକ୍ ଆଜି ଯେପରି ହେଲା । ଆପଣଙ୍କ ରୂପ ମଧ୍ୟ ମୁଁ ସ୍ୱପ୍ନରେ ଯେପରି ଦେଖିଲି ଠିକ୍ ସେହିପରି । ବଡ଼ ତାଜୁବ୍ କଥା ।"

ବାବା ହସି ହସି କହିଲେ, "ବିଚାରିଲେ ତାଜୁବ୍ କଥା, ପୁଣି ବିଚାରିଲେ ଅତି ମାମୁଲି । ସବୁର ମୂଳରେ ବିଚାରର ପାର୍ଥକ୍ୟ । ଧର, ଆଶ୍ରମ ଦ୍ୱାର ପାଖେ ଆପଣଙ୍କର ମୋର ସାକ୍ଷାତ୍ ହେବାର କଥା, ମୁଁ ବେଳେ ବେଳେ ଏଠାରୁ ଉଠି ଆଶ୍ରମର ଚାରିପାଖେ ବୁଲି ଆସେ କେଜାଣି କାହାର କୌଣସି ଅସୁବିଧା ହେଉଥିବ ଦେଖିବାକୁ । ଆଜି ସେଇମିତି ବୁଲି ବୁଲି ଦୁଆର ମୁହଁକୁ ଗଲି, ଦୂରରୁ ଆପଣ ଆସୁଥିବାର ଦେଖି ଟିକିଏ ଅପେକ୍ଷା କଲି । ଏତିକି ତ, ମାମୁଲି କଥା ନୁହେଁ ଆଉ କ'ଣ ?"

ଯୋଗୀମାଷ୍ଟ୍ରେ ସନ୍ତର୍ପଣରେ ଠିଆ ହୋଇ ହାତ ଯୋଡ଼ି କହିଲେ, "ଆଜି ନୂଆ ବାବା ଆସିବାରୁ ଏକଥା ପଚାରିଲି ବୋଲି ଭରସି କରି କହୁଛି । ମୋ ମନରେ ମଧ୍ୟ ଏଇ ସଂଶୟ ସବୁବେଳେ ହେଉଛି ; ସାହସ କରି ପଚାରେ ନାହିଁ, କେଜାଣି ଶୁଣିବାର ଅଧିକାରୀ ହୋଇ ନଥିବି, ବାବା ବାଆଁରେଇ ଦେବେ । ହେଇଟି ଏଇଲଗେ ତ ମୁଁ ବସିଛି ବୋଲି ବାବା ବାଆଁରେଇ ଦେଉଛନ୍ତି ! ମୋତେ ଘର ସଫା କରିବାକୁ କହିଲେ । ଦୁଧ ରଖିବାକୁ କହିଲେ, ପାଣି ସୁରେଇ କଥା କହିଲେ ; ପୁଣି ତ କହିଲେ, ଯେ ଆସିବେ ସେ ଆପଣଙ୍କର ଉତ୍ତରାଧିକାରୀ । ବିମଳ ବାବୁଙ୍କଠାରେ ଆପଣଙ୍କର ଏତେ ଶ୍ରଦ୍ଧା, ତାଙ୍କୁ ତ ଉତ୍ତରାଧିକାରୀ ବୋଲି କେବେ କହିନାହାନ୍ତି ?"

ବାବା ମୃଦୁହାସ୍ୟ କରି ରହିଲେ ; ଆଗନ୍ତୁକ ଓ ଯୋଗୀମାଷ୍ଟ୍ରେ ଉଭୟେ ବାବାଙ୍କ ମୁହଁକୁ ଚାହିଁ ରହିଥାନ୍ତି । ଆଗନ୍ତୁକଙ୍କ ଦୃଷ୍ଟି ସ୍ଥିର, ଯୋଗୀ ମାଷ୍ଟ୍ରଙ୍କର ଚଞ୍ଚଳ । କିଛି ସମୟ ପରେ ବାବା ଆଗନ୍ତୁକଙ୍କ ଆଡ଼କୁ ଚାହିଁ ହସି ହସି କହିଲେ, 'ସେ ଯୋଗୀ ମାଷ୍ଟ୍ରେ ଝିଅଟିଲି ସାଙ୍ଗେ ଦାଅଁଙ୍କୁ ବି ଗର୍ଭସ୍ଥ କରିବାକୁ ଚାହାନ୍ତି । ଆଜକୁ ବାରବର୍ଷ ହେଲା ସେ ସେ ଆଶ୍ରମର ଦାୟିତ୍ୱ ନେଲେଣି । ସରକାରଙ୍କ ଦେବୋତ୍ତର ବିଭାଗ ଧରି ଠାକୁରଙ୍କ ସମ୍ପତ୍ତି ଉପରେ ସ୍ୱାଙ୍କର ଦୃଷ୍ଟି, ଠାକୁରଙ୍କ ଭଲ ମନ୍ଦ ବୁଝିବାରେ ଧନେ ମନ ଦେଉ ନାହାନ୍ତି ; ଅଥଚ ଠାକୁରଙ୍କର ଗୁନଆଦ ସବୁ ଜାଣିବାକୁ ଇଚ୍ଛା

(ମାଷ୍ଟ୍ରଙ୍କ ଅଡ଼କୁ ଚାହିଁ) ହଉ, ହଉ, ପଚାରିଲଣି ଯେତେବେଳେ, ନେହେ ଥରେ ଠାକୁରଙ୍କ ଆଗରେ ଚଣ୍ଡୀ କି ଭଗବଦ୍‌ଗୀତା ଗାଣି ସାରି, ଏ ପ୍ରଶ୍ନର ପୁନରାବୃତ୍ତି କରିବ । ହଉ ଯାଅ, ସ୍ୱାଙ୍କ ପାଇଁ କଣ ପ୍ରୟୋଜନ କର ।'

ଯୋଗୀମାଷ୍ଟ୍ରେ ବିଦାୟ ନେବାକୁ ଠିଆ ହେବାରୁ ଆଗନ୍ତୁକ କହିଲେ, 'ମୋର ସଂଧ୍ୟାପୂର୍ବରୁ କପେ ମାତ୍ର ଦୁଧ ଦରକାର, ଅବଶ୍ୟ ମିଳିଲେ ।' ଯୋଗୀମାଷ୍ଟ୍ରେ ଗିବା ପରେ ବାବା କହିଲେ, 'ଯୋଗୀର ଉଦ୍ୟମରେ ଏଠାରେ ଦୁଧର ଅଭାବ ନାହିଁ । ଆମର ପ୍ରୟୋଜନ ଅପେକ୍ଷା ଢେର ଅଧିକା ଦୁଧ ମିଳୁଛି । ପ୍ରତ୍ୟହ ଠାକୁରାଣୀଙ୍କୁ ପାଞ୍ଚସେର ଭୋଗ ହୁଏ, ମହାଦେବଙ୍କଠି ୫ ସେର ଅଭିଷେକ ହୁଏ, କିନ୍ତୁ ଆମର ଅଦାୟ ପ୍ରାୟ ୧୫ ସେର । ଆମ ଭିତରୁ ଅଧିକାଂଶ ପାଲୁଅ ଓ ପ୍ରସାଦ ପିଇ ରହିଯାନ୍ତି, ପିଲଙ୍କ ପାଇଁ ଭାତ ରନ୍ଧା ହୁଏ । ଏଠାରେ ଅନ୍ନ ଭୋଗର ବ୍ୟବସ୍ଥା ମୂଳରୁ ନାହିଁ ।

ଆଗନ୍ତୁକଙ୍କର ଏ ସବୁ କଥାରେ ଆଗ୍ରହ ନଥାଏ । ତାଙ୍କର ଧ୍ୟାନ ରହିଥାଏ ସେଇ ଗୋଟିକ କଥା ଉପରେ, ତାଙ୍କ ସ୍ୱପ୍ନ କପରି ସତ୍ୟ ହେଲା ଓ ତାଙ୍କର ଆଗମନବାର୍ତ୍ତା ସ୍ୱାଙ୍କୁ କେମିତି ମିଳିଲା ? ଯୋଗୀମାଷ୍ଟ୍ରେ କହିଲା ପରି, ହୁଏତ ବାବା ତାଙ୍କୁ ବି ବାଆଁରଉଛନ୍ତି ବୋଲି ବିଚାରି ସେ କଥା ଉଠାଇବାକୁ ଭରସୁ ନ ଥାନ୍ତି ।

କିଛି ସମୟ ପରେ ବାବା କହିଲେ, 'ସଂପତ୍ତି ପାଇବାକୁ ଅଭିଳାଷ କରିବା ଯେପରି ଅନିଷ୍ଟକର, କୌଣସି ବିଷୟ ଜାଣିବାକୁ ଇଚ୍ଛା କରିବା ସେହିପରି ବେକାର ବୋଲି ପୂର୍ବାଚାର୍ଯ୍ୟମାନେ କହି ଯାଇଛନ୍ତି । ଶୁଦ୍ଧ ଜୀବନଯାପନ କଲେ ବୈଷୟିକ ଓ ଆଧ୍ୟାତ୍ମିକ ଅଭାବ ସବୁ ଭଗବାନଙ୍କ ଅନୁଗ୍ରହରେ ପୂରଣ ହୋଇଯାଏ । ଦୁର୍ଗା, ମାଧବ, ମହାଦେବ ସବୁ ଦେବତାଙ୍କଠାରେ ଭଗବତ୍ତା ଆରୋପିତ ହୋଇଛି । ସମସ୍ତଙ୍କ ଉପରେ ପୁଣି ପରଂବ୍ରହ୍ମ ; ତାହାର ପ୍ରତିବିମ୍ବ ନିଜ ଅନ୍ତରରେ । ଏପରି ସ୍ଥଳେ, ଠିକ୍ ଭଗବତ୍-ଅନୁଗ୍ରହଟା କ'ଣ ଜାଣିବା ମୁସ୍କିଲ ; ଠାକୁର ଠାକୁରାଣୀଙ୍କ ଆଶ୍ରୟ ନ ନେଇ ଆତ୍ମ-ସାଧନାଦ୍ୱାରା ବି ଫଳ-ପ୍ରାପ୍ତି ହୁଏ ବୋଲି କହନ୍ତି । 'ଯାହାର ମନ ଯେଡ଼େ ତା'ର ଦୁଭୁ ତେଡ଼େ ।' ମନଟା ନିର୍ମଳ ଥିଲେ ଯେତେବେଳେ ଯାହା ଦରକାର ତା'ର ଫଟୋଗ୍ରାଫ୍ ମନରେ ଉଠିଯାଏ । ଆପଣଙ୍କ ମନରେ ଏ ସ୍ଥାନର ଫଟୋ ଉଠିଗଲା, ମୋ ମନରେ ମଧ୍ୟ ଆପଣଙ୍କର ଫଟୋ ଉଠିଗଲା ।'

ଆଗନ୍ତୁକ କହିଲେ, 'ମୋ ଆଗରେ କାଲି ଯାହା ଘଟିଲା ତାହା ସ୍ୱପ୍ନରେ । ସ୍ୱପ୍ନରେ ଦେଖିଲି, ମୋର ଗୁରୁଦେବ ମୋତେ ଆପଣଙ୍କ ଜଳାଶୟକୂଳରୁ ଡାକି ଏ ମନ୍ଦିର ଭିତରକୁ ନେଲେ ଓ ମୋ ପାଇଁ ଏଠାରେ ସ୍ଥାନ ଟିକିଏ ଦେବାକୁ ଠାକୁରାଣୀଙ୍କୁ ମାଗିଲେ; ଠାକୁରାଣୀ ଆପଣଙ୍କୁ ସଙ୍କେତ ଦେଲେ । ମୁଁ ଏ ସ୍ଥାନକୁ ଆସି ମୋର ପରିଚିତ ସ୍ଥାନକୁ ଆସିଛି ବୋଲି ମନେ କରୁଛି; ଆପଣଙ୍କର ଏଇ ରୂପ ମଧ୍ୟ ମୁଁ ପରିଷ୍କାର ମନେ ରଖିଛି ।'

ବାବା କହିଲେ, 'ହୁଏତ ଜାଗ୍ରତ ଅବସ୍ଥାରେ ଆପଣଙ୍କ ମନରେ ଯେଉଁ ଆକୁଳ ଅବସ୍ଥାଟିକି ଥିଲା ସ୍ୱପ୍ନ ଦେଲେ ତାହା ଦୂର ହୋଇଗଲା ; ପୁଣି ଜାଗ୍ରତ ଅବସ୍ଥାରେ ସେଇ ଆକୁଳତା ଫେରି ଆସିବାରୁ ସ୍ୱପ୍ନରେ ଦେଖିଥିବା କଥା ଅଦ୍ଭୁତ ଲାଗୁଛି । ମନରେ ଯେଉଁ ଜଞ୍ଜାଳଟିକି ରହିଛି ତାକୁ ଛାଡ଼ିଦେଲେ ଚଳେ ।'

ଆଗନ୍ତୁକ କହିଲେ, 'ଛାଡ଼ି ହେଉନାହିଁ ; ଅବଶ୍ୟ ଚେଷ୍ଟା କରୁଛି । ଆପଣଙ୍କ ଅନୁଗ୍ରହରେ ତାହା ଦୂର ହେବ ବୋଲି ଆଶା କରୁଛି ।'

ବାବା କହିଲେ, 'ଆଗରୁ ଯାହା କହିଗଲି ସେଥିରୁ ତ କହିହେବ, ମୋ ଅନୁଗ୍ରହ, ଆପଣଙ୍କ ଅନୁଗ୍ରହ ଓ ଠାକୁର ଠାକୁରାଣୀଙ୍କ ଅନୁଗ୍ରହ—ସମସ୍ତେ ସମାନ । ଆଜି ଏ କଥା ଏତିକିରେ ଥାଉ, ପରେ ପୁଣି ସୁବିଧା ଦେଖି ଆଲୋଚନା କରିବା ।'

ଆଗନ୍ତୁକ ପଚାରିଲେ, 'ମୋର ଆଉ ଗୋଟିଏ ପ୍ରଶ୍ନ । ଆପଣ କହିଲେ, ଶହେ ଥର ଚଣ୍ଡୀ ଗୁଣିବାକୁ । ମୋର ସେ ଅଧିକାର ଅଛି ତ ? ମୁଁ ଅବ୍ରାହ୍ମଣ ।'

ବାବା ହସିଦେଲେ, 'ମୁଁ ତ ଜାଣୁଛି, ଆପଣ ଏ ଜାତି-ବନ୍ଧନରୁ ଉପରକୁ ଉଠିଗଲେଣି । ମୁଁ ଚଣ୍ଡୀ ଗୁଣିବାକୁ କହିଥିଲି ଯୋଗୀ ମାଷ୍ଟରଙ୍କୁ । ସେ ବି ଅବ୍ରାହ୍ମଣ । ଚଣ୍ଡୀ ଗୁଣିବାକୁ ଯେତିକି ସମୟ ପଢ଼ୁଆ ହେବାକୁ ପଡ଼େ ସେଥିପାଇଁ ଯେ ତିଆରି, ଚଣ୍ଡୀ ଗୁଣିବାର ଅଧିକାର ତା'ର ତ ଅଛି ! ଯେ ସବୁବେଳେ ବୈଷୟିକ ବା ପାରିବାରିକ ଅଭାବ ପୂରଣରେ ବ୍ୟସ୍ତ ତା'ର ସେ ଅଧିକାର ଆସିବ କୁଆଡ଼ୁ ? ଆମ ଏଠାରେ ଠାକୁରାଣୀଙ୍କ ପାଖକୁ ଯିବାକୁ କାହାକୁ ମନା ନାହିଁ; କୌଣସିଠାରେ ବି ମନା ହେବାର କୌଣସି କାରଣ ନାହିଁ । ବ୍ରାହ୍ମଣ ଅବ୍ରାହ୍ମଣ ଭେଦ, ନିଜର ଯୋଗ୍ୟତା ଓ ମନୋବୃତ୍ତି ନେଇ, ମା' ଅନୁସାରେ ନୁହେଁ । ଆପଣ ବୋଧହୁଏ ଜାଣନ୍ତି, ପୂର୍ବେ ଅନେକ ଅବ୍ରାହ୍ମଣ ବ୍ରାହ୍ମଣ ହୋଇଛନ୍ତି ଓ ଅନେକ ବ୍ରାହ୍ମଣ ଚଷା ହୋଇଛନ୍ତି । ଆପଣଙ୍କର କ'ଣ ବ୍ରାହ୍ମଣ ହେବାକୁ ମନ ? ମୁଁ ଯେତିକି ଜାଣୁଛି; ଆପଣ ମୋଠାରୁ ଢେର ଉଚ୍ଚକୋଟୀର ବ୍ରାହ୍ମଣ ହୋଇ ସାରିଛନ୍ତି । ଆଜି ତ ଖାଇ ନାହାନ୍ତି, ଆପଣଙ୍କୁ ଠାକୁରାଣୀଙ୍କ ଆଗରେ ପଇଡ଼ା ଦେବି । ଘିନନ୍ତୁ ।'

ଆଗନ୍ତୁକ ବାବାଙ୍କ ଆଗରେ ସାଷ୍ଟାଙ୍ଗ ପ୍ରଣିପାତ କରି ପୁଣି ନମସ୍କାର ହେଲେ ; ଉଠି ବସି କହିଲେ, 'ଗୁରୁଦେବ ! ମୁଁ କୃତାର୍ଥ ହେଲି । ମୋର ସ୍ୱପ୍ନ ସତ୍ୟ ହୋଇଛି । ମୋତେ ଏତିକି ଅନୁଗ୍ରହ କରନ୍ତୁ, ମୋ ମନରେ ଥିବା ଦୁଷ୍ଟ ଲଜ୍ଜା ଦୂର ହେଉ ।'

ବାବା ହସି ହସି କହିଲେ, 'ଆପଣ ଦୁଶ୍ଚିନ୍ତା କଥା ବର୍ତ୍ତମାନ କହିବେ ତ କହନ୍ତୁ । ମୋର ବିମଳ ବାବୁ ବୋଲି ଜଣେ ସହକର୍ମୀ ଅଛନ୍ତି ; ସେ କାଲି ଆସିବେ । ତାଙ୍କର ସାଙ୍ଗେ ବସି ଆପଣଙ୍କ ବିଷୟ ଆଲୋଚନା କରିବା । ତେବେ ମୁଁ ଯେତେ ଦୂର ଜାଣୁଛି, ଆପଣଙ୍କ ଦୁଶ୍ଚିନ୍ତାର କାରଣ ଅଳ୍ପ ଦିନରେ ଦୂର ହୋଇଯିବ । ଆପଣ ଯାହାଙ୍କ ପାଇଁ ଚିନ୍ତିତ ତାଙ୍କର ସନ୍ଧାନ ତା' ମନକୁ ଅସି ମିଳିଯିବ । ବର୍ତ୍ତମାନ ଆପଣ ଯା'ନ୍ତୁ ବିଶ୍ରାମ କରନ୍ତୁ ।'

ଆଗନ୍ତୁକ ଆମ ଡାକ୍ତର ସ୍ୱାମୀ, ବାବୁଜୀ ଓରଫ ଶ୍ରୀ ସାନନ୍ଦ ନାୟକ । ବିମଳବାବୁଙ୍କ ସଙ୍ଗେ ତାଙ୍କର ଇତିମଧ୍ୟରେ ଖୁବ୍ ଘନିଷ୍ଠତା ହୋଇଯାଇଛି । ଟିକିଏ ସମୟ ପାଇଲେ, ଦୁହେଁ ଏକାଠି ବସି ଦେଶର ହାଲଚାଲ ବିଷୟରେ ଆଲୋଚନା କରନ୍ତି । ସାନନ୍ଦବାବୁଙ୍କ ମତରେ, ଲୋକଙ୍କର ଚାରିତ୍ରିକ ଉତ୍କର୍ଷ ହେଲେ ବୈଷୟିକ ଅଭ୍ୟୁଦୟ ନିଶ୍ଚୟ ହେବ । ବିମଳବାବୁଙ୍କ ମତରେ ଚାରିତ୍ରିକ ଉତ୍କର୍ଷପାଇଁ ପ୍ରଚେଷ୍ଟା ସଙ୍ଗେ ସଙ୍ଗେ ବୈଷୟିକ ଅଭ୍ୟୁଦୟର ଯୋଜନା କରିବାକୁ ପଡ଼ିବ—ସେପରି ନ କଲେ ଚାରିତ୍ରିକ ଉତ୍କର୍ଷ ଯୋଜନା ଅତି ଆଦର୍ଶ-ବାଦୀ ହୋଇ ଲୋକଙ୍କୁ ଆକୃଷ୍ଟ କରି ପାରିବନାହିଁ । ବାବା ଏକଥା ଶୁଣି କହନ୍ତି, 'ଏ ତର୍କରେ ତତ୍ତ୍ୱ ବିଶେଷ ନାହିଁ । ବୈଷୟିକ ଅଭ୍ୟୁଦୟ ଯୋଜନା ସଫଳ ହେବାକୁ ହେଲେ ଧର୍ମ-ସମ୍ମତ ହେବା ଦରକାର ଏବଂ ଯଥାର୍ଥ ଧର୍ମର ଲକ୍ଷ୍ୟ ନିଃଶ୍ରେୟସ ଓ ଅଭ୍ୟୁଦୟ ଉଭୟ ହେବ ଇ ହେବ ।' କ୍ରମେ ତର୍କକୁ ପଛରେ ପକାଇ ଦୁଇବନ୍ଧୁ ଗାଁଗହଳରେ ନିଜର କାର୍ଯ୍ୟ ଆରମ୍ଭ କରିଦେଇଥାନ୍ତି ।

ବିମଳବାବୁଙ୍କ ଉଦ୍ୟମରେ ଆଡ଼ଦୀଘ' ପାଞ୍ଚମାଇଲ ଭିତରେ ପ୍ରାୟ କୋଡ଼ିଏଟି ଶାଖା ଆଶ୍ରମ ସ୍ଥାପିତ ହୋଇଥାଏ । ପ୍ରତ୍ୟେକରେ ଗୋପାଳନ ଏବଂ ଖାଦ୍ୟଶସ୍ୟ ଓ ଫଳ ଉତ୍ପାଦନ ଉପରେ ଜୋର ଦିଆହୋଇଥାଏ । ସାନନ୍ଦବାବୁ ପ୍ରତି ଶାଖା-ଆଶ୍ରମରେ ଦିନଏ ଦିନଏ ରହି ଜନସାଧାରଣଙ୍କୁ ସତ୍‌ପଥରେ ଚଳିବାକୁ ପ୍ରବର୍ତ୍ତାନ୍ତି ଓ ସ୍ଥାନୀୟ ଯୁବକମାନଙ୍କୁ ଯେନ ସତ୍-ସଂଘ ଗଢ଼ି ଗଠନମୂଳକ କାର୍ଯ୍ୟରେ ଲାଗିବାକୁ ପ୍ରେରଣା ଦେଉଥାନ୍ତି ।

ଏହି କାର୍ଯ୍ୟଭିତରେ ସାନନ୍ଦବାବୁଙ୍କ ମନର ଖୁବ୍ ଗଭୀର ପ୍ରଦେଶକୁ ତାହାର ଚିନ୍ତା ଚାଲିଯାଇଥାଏ । ସେ ଆତ୍ମହତ୍ୟା କରିଛି ବୋଲି ତାଙ୍କର ବିଶ୍ୱାସ ଥିବା ପର୍ଯ୍ୟନ୍ତ ସେ ଏକ-ରକମ ନିଶ୍ଚିନ୍ତ ଥିଲେ । ବାବାଙ୍କ କଥାରୁ, ସେ ବଂଚିଛି ବୋଲି ସୂଚନା ମିଳିବାରୁ ତାଙ୍କ ମନରେ ଆକାଂକ୍ଷା ହେଉଥାଏ ତାକୁ ଦେଖିବାକୁ, ତା'ର ପୁତ୍ରସନ୍ତାନଟିଏ ହୋଇଛି କି ନାହିଁ, ଜାଣିବାକୁ । ଦିନେ ସେ ବିମଳବାବୁଙ୍କ ସଙ୍ଗେ ଏ ବିଷୟରେ ଆଲୋଚନା କରି ତାଙ୍କ ସାଙ୍ଗେ ବାବାଙ୍କ ପାଖକୁ ଗଲେ । ବାବା ବିମଳବାବୁଙ୍କ ପ୍ରସ୍ତାବ ଶୁଣି କହିଲେ, 'ଖବର-କାଗଜରେ ଗୋଟିଏ ନୋଟିସ ଦେବ ଯେବେ ଦିଅ । ତା'ଠାରୁ ଭଲ ହେବ ଯଦି ଖବର-

କାଗଜ ଉପରେ ଦୃଷ୍ଟି ଦେବ । ଆମ ଏଠାକୁ ବୋଧହୁଏ ସବୁ ଖବରକାଗଜ ଆସେ, କିନ୍ତୁ କେହି ତାକୁ ଯତ୍ନକରି ରଖିବା ବା ପଢ଼ିବାର ଲକ୍ଷ୍ୟ କରୁନାହିଁ ।'

... ...

ଏହା ପରେ ପନ୍ଦରଦିନ ଯାଇଛି କି ନାହିଁ, ତିନିଟାଯାକ ଓଡ଼ିଆ କାଗଜରେ ସାନନ୍ଦବାବୁଙ୍କ ଫଟୋ ସହିତ ବିଜ୍ଞାପନ ବାହାରିଲା । ସେଦିନ ସାନନ୍ଦବାବୁ ଓ ବିମଳବାବୁ ଦୁହେଁ ବାହାରକୁ ଯାଇଥାନ୍ତି । ଯୋଗୀମାଷ୍ଟ୍ରେ ଖବରକାଗଜଗୁଡ଼ିକ ଧରି ବାବାଙ୍କ ପାଖକୁ ଆସିଲେ । ସେଠାରୁ, ଋଷିକୂଳ ଆଶ୍ରମ ଓ ଦାସଙ୍କ ଠିକଣାରେ ତିନିଖଣ୍ଡ ଚିଠି ଲେଖିଦେବାକୁ ବିଚାର କରି ବାବା ପରାମର୍ଶ ଦେଲେ, ମାଘପୂର୍ଣ୍ଣିମାର ମହୋତ୍ସବ ହିସାବ ନିକାଶ କରିସାରି ଯୋଗୀମାଷ୍ଟ୍ରେ ଯାଇ ଦାସଙ୍କ ଘରେ ପହଞ୍ଚି ସେଠାରେ ସବୁ ଖବର କହିବେ ଓ ଦାସଙ୍କୁ ସକୁଟୁମ୍ବେ ଆମ ଗୁରୁପଞ୍ଚମୀ ଉତ୍ସବକୁ ନିମନ୍ତ୍ରଣ କରିବେ ।

## ( ୨୬ )

ଆଜି ଦାସଙ୍କ ଘରେ ମହୋତ୍ସବ । ଆଜି ସକାଳୁ ଦାସଙ୍କ ବଗିଚାରେ ପାଖ ଆଖ ସବୁ ଠାକୁର ଠାକୁରାଣୀଙ୍କର ମାଜଣା ହୋଇଥାଏ । ପ୍ରତ୍ୟେକ ଦେବପୀଠରେ ପ୍ରଚୁର ପ୍ରସାଦ ଭୋଗ ହୋଇ ଉପସ୍ଥିତ ଜନତାକୁ ବଣ୍ଟା ହୋଇଥାଏ ଓ ଅବଶେଷ ଆସି ଉପରଓଳି ଦାସଙ୍କ ଗୃହିଣୀରେ ବିତରଣ କରା ହେଉଥାଏ । ଗୃହିଣୀରେ ପଦୁଆ ଅବଧାନ ଝୁଣ୍ଟିକୁ ଆଉଜି ବସି-ଥାନ୍ତି । ନୂଆ ଲୁଗା ଖଣ୍ଡେ ସେ ପିନ୍ଧିଥାନ୍ତି । ନୂଆ ପାଟ୍ଟେଜୋଡ଼ା ଖଣ୍ଡେ ଦେହରେ ପକାଇଥାନ୍ତି ଓ ନୂଆ ରଙ୍ଗିନ ଗାମୁଛା ଖଣ୍ଡେ ପାଖରେ ଥୁଆ ହୋଇଥାଏ । ପଚଶଟି ଟଙ୍କା ବି ସେ ଅଣ୍ଟାରେ ମାରିଥାନ୍ତି । ଏ ଦକ୍ଷିଣାରୁ ପନ୍ଦର ଟଙ୍କା ମହାପାତ୍ରଙ୍କର ।

ବିମଳା ମନ୍ଦିରରୁ ଯେଉଁଦିନ ଚିଠି ଆସି ପହଞ୍ଚିଲା ଦାସଙ୍କ ପାଖେ, ସେ ଦିନ ବି ଏହିପରି ଉତ୍ସବର ଉପକ୍ରମ ହୋଇଥିଲା କିନ୍ତୁ ଉପକ୍ରମ ହେଉ ହେଉ ସମସ୍ତଙ୍କର ମୁହଁରେ ବିଷାଦ ଖେଳିଯାଇଥିଲା । ଭୋଗରାଗ ହେଲା କିନ୍ତୁ କାହାରି ମୁହଁରେ ସରସତା ଆସିଲା ନାହିଁ । ତାରିର ଅବସ୍ଥା ଯୋଗୁଁ ସମସ୍ତେ ଚକିତ ହୋଇଗଲେ । ଘର ଠାକୁରାଣୀଙ୍କ ପାଖେ ଘିଅଦୀପ ଜଳୁଥାଏ, ନୀଳକଣ୍ଠବର୍ତ୍ତୀ ମହାଦେବ ମନ୍ଦିରରେ ମଧୁସୂଦନ କୀର୍ତ୍ତନ ହେଲା । କିନ୍ତୁ ତାରିର ଅବସ୍ଥାରେ କୌଣସି ପରିବର୍ତ୍ତନ ନ ଦେଖି, ମନ୍ତ୍ରୌଷଧୀରୁ ଦାସଙ୍କର ବି ବିଶ୍ୱାସ ତୁଟି ଯିବା ଉପରେ ପହଞ୍ଚୁଥାଏ ।

ବିମଳା ମନ୍ଦିରର ଚିଠି ଖଣ୍ଡି ପାଇ ଦାସଙ୍କ ଗୃହିଣୀରେ ମହାନନ୍ଦ ଖେଳିଯାଇଥିଲା । ଦାଣ୍ଡରେ ପାଟିଗୋଳ ଶୁଣି ସାଆନ୍ତାଣୀ ଦାଣ୍ଡ ଦୁଆର କବାଟକୁଣେ ଆସି ଠିଆ ହୋଇଥିଲେ ।

ମହାପାତ୍ରେ ଚଟିଖଣ୍ଡି ଆଦ୍ୟପ୍ରାନ୍ତ ତାଙ୍କୁ ଶୁଣାଇ ପଢ଼ିଦେଲେ ; ସେତେବେଳକୁ ସେ ୧୦।୧୨ ଥର ଚଟି ପଢ଼ିସାରିଥାନ୍ତି । ଦାଣ୍ଡ ଦୁଆରକୁ ଯେ ଆସି ପହଞ୍ଚନ୍ତି ସେ ଚଟିଖଣ୍ଡେ ଶୁଣିବାକୁ ଚାହୁଁଥାନ୍ତି । ସାଆନ୍ତାଣୀ ଚଟି ଖଣ୍ଡି ପଢ଼ି ସାରିବା ପରେ ମହାନନ୍ଦରେ ତାକୁ ନେଇ ତାରି ହାତରେ ବଢ଼ାଇଦେଲେ । ତାରି ସେ ଚଟିର ଦୁଇ ତିନି ଧାଡ଼ି ପଢ଼ିବା ପରେ ତତ୍‌କ୍ଷଣେ ହୋଇଗଲା । ଚଟି ସରିଲା ବେଳକୁ ସେ ଏକାବେଳକେ ବେହୋସ । ସଂଜ୍ଞା ତ ଲୋପ ହୋଇ-ଥିଲା, ପିଣ୍ଡରେ ପ୍ରାଣ ଅଛି କି ନାହିଁ ବୋଲି ସଂଶୟ ହେଲା । ପିଲାଟି ତା' ସ୍ତନରେ ମୁହଁ ମାଡ଼ି ରହିଥିଲା ; ସେ ବେହୋସ ହୋଇ ପଡ଼ିବା ପରେ ପିଲାଟି ମୁହଁ କାଢ଼ି ମା'ଠାରୁ ଦୂରକୁ ଘେଷେଇ ଘେଷେଇ ଚାଲିଗଲା । ସାଆନ୍ତାଣୀ ତାକୁ କୋଡ଼ରେ ଧରି ଦାଣ୍ଡ ଦୁଆରୁ ସମସ୍ତଙ୍କୁ ଘର ଭିତରକୁ ଡାକି ଆଣିଲେ ।

ତାରିର ଅବସ୍ଥା ଦେଖି କାହାରି କିଛି ବୁଦ୍ଧି ସ୍ଫୁରିଲା ନାହିଁ । ବାହୁମୀପତି କହିଲେ, ମନର ଦୁଶ୍ଚିନ୍ତା ହଠାତ୍ ଦୂର ହୋଇଗଲେ ଏପରି ହେବାର କଥା । ଯାହାର ଦୁଶ୍ଚିନ୍ତା ଅପେକ୍ଷାକୃତ କମ୍ ସେ କାନ୍ଦିଥାନ୍ତି । ଯାର ଦୁଶ୍ଚିନ୍ତାର ମାତ୍ରା ଅତି ବେଶି ହୋଇଥିବାରୁ, ତାହା ଦୂର ହେବା ମାତ୍ରେ ଯାର ସଂଜ୍ଞା ଲୋପ ହୋଇଛି । ଆନନ୍ଦରେ ଲୋତକ ବହେ । ଅତି ଆନନ୍ଦରେ ସବୁ ଇନ୍ଦ୍ରିୟ ଏତେ ବିକ୍ଷୁବ୍ଧ ହୋଇଯାଇଛନ୍ତି ଯେ, ଏକାବେଳକେ ଅଚଳ ହୋଇ ପଡ଼ିଛନ୍ତି ।'

ପାଞ୍ଚ ମାଇଲ ଦୂରରୁ ଡାକ୍ତର ଡକା ହୋଇ ଆସିଲେ । ସେ ପରୀକ୍ଷା କରି ଦେଖିଲେ ନାଡ଼ି ଓ ହୃତ୍‌ପିଣ୍ଡର ଗତି ମନ୍ଦ ନୁହେଁ । ସେ ବାହୁମୀପତିଙ୍କ ମତକୁ ସମର୍ଥନ କରି ପୁଣି କହିଲେ, 'ଆନନ୍ଦରୁ ଏପରି ହୋଇଥାଇପାରେ ; କିମ୍ବା ମନରେ ଯେତିକି ଦୁଶ୍ଚିନ୍ତା ଥିଲା ତାହା ହଠାତ୍ ଅତିମାତ୍ରାରେ ବଢ଼ିଯାଇ ଏପରି ହୋଇପାରିଥାଏ । ସେ ଯାହାହେଉ ରୋଗି-ଣୀକୁ ଶାନ୍ତିରେ ଶୋଇବାକୁ ଦିଅନ୍ତୁ । ମୋର ବିଶ୍ୱାସ, ୫।୬ ଘଣ୍ଟା ପରେ ଚେତା ଆସିବ ।'

ସତକୁ ସତ ସେଇ ରାତି ଅଧକୁ ତାରିର ଚେତା ଆସିଲା । ଚେତା ଆସିଲା ସିନା, ସେ ବାଉଳି ଚାଉଳି ହେଲା । ସଙ୍ଗତିହୀନ କଥା ସବୁ ସେ ଯାହା କହିଲା, ତା'ରି ଭିତରୁ ସାଆନ୍ତାଣି ଅର୍ଥ ବାହାର କଲେ, ସେ କହୁଛି, ମୁଁ ପୋଡ଼ାମୁହିଁ ବସା ଛାଡ଼ି ପଳାଇ ଆସିବାରୁ ସିନା ତୁମେ ଏତେ ସରି ହେଲ । ମୁଁ ବସାରେ ନ ରହିଲି କାହିଁକି ? ରହିଥିଲେ ତ ତୁମେ ଭଲ ହେବା ମାତ୍ରେ ଘରକୁ ଫେରି ମୋତେ ଦେଖିଥାନ୍ତ ।

ଏଇପରି ବାଉଳିଚାଉଳି ହୋଇ ସେ ଶୋଇଲା ଯେ, ଏକାଦିକ୍ରମେ କୋଡ଼ିଏ ଘଣ୍ଟା । ସେଥର ନିଦ ଭାଙ୍ଗିଲା ବେଳକୁ ସେ ଏକାବେଳକେ ବାୟାଣି । ବାରମ୍ବାର ତାକୁ ଲୁଗା ପିନ୍ଧାଇ-ବାକୁ ପଡ଼ୁଥାଏ । ପିଲାଟିକୁ ତା' କୋଡ଼ରେ ଦେଲେ ସେ ତାକୁ ତଳକୁ ପକାଇଦେଉଥାଏ ।

ଦଶଟି ଦିନ ଏ ସ୍ଥିତି ଚାଲିବାରେ ଦାସଙ୍କ ଘରର ଶୃଙ୍ଖଳା ଏକାବେଳକେ ଭାଙ୍ଗି-ଯାଇଥିଲା । ଦୂରରୁ ବଡ଼ ଡାକ୍ତର ଆସିଲେ । କେତେ ଜଣ ଗୁଣିଆ ବି ଆସିଲେ । କିନ୍ତୁ କେଉଁଥିରେ କିଛି ଫଳ ହେଲା ନାହିଁ ।

ବଡ଼ ଡାକ୍ତର ବହୁତ ଫିସ ନେଇ ଦୁଇ ଦିନ କାଳ ପାଖରେ ରହିଲେ; ନାଡ଼ି, ମଳ, ମୂତ୍ର ଓ ରକ୍ତ ପରୀକ୍ଷା କରାଇ ଆଣିଲେ ଓ ତାକୁ ତନ୍ନତନ୍ନ କରି ଦେଖି ସବାଶେଷରେ କହିଲେ, 'କୌଣସି ରୋଗର ଲକ୍ଷଣ ଦେଖୁନାହିଁ ; ସ୍ୱସ୍ତ୍ୟୟନ କରାଯାଉ ।'

ସେତେବେଳକୁ ମହାପାତ୍ରଙ୍କର ଧୈର୍ଯ୍ୟଚ୍ୟୁତ ହୋଇଥାଏ । ଗତ ଦୁଇଦିନ ଭିତରେ ରୋଗିଣୀଅପେକ୍ଷା ଡାକ୍ତର ତାଙ୍କୁ ଢେର ଅଧିକ ବ୍ୟସ୍ତ ବିବ୍ରତ କରିସାରିଥାନ୍ତି । ଦିନକୁ ଦେଢ଼ ଶ' ଟଙ୍କା ଫିସ୍ ପାଇଲେ ସେ ରହିବେ ବୋଲି ରାଜି ହେଲେ । ଦାସଙ୍କର ପଇସା ବିଷୟରେ ଚିନ୍ତା ନ ଥାଏ ; ପାଖରେ ପଇସା ନ ଥାଏ, କିନ୍ତୁ ଏଭଳି ସମୟରେ ସେ ଗାଁରେ ଯେକୌଣସି ଲୋକ ପାଖରେ ଥିବା ଟଙ୍କା ତାଙ୍କର ବୋଲି ମନେ କରନ୍ତି ଏବଂ ଟଙ୍କା ମିଳି-ଯାଉଥାଏ ମଧ୍ୟ । ସାଙ୍ଗୋପାଙ୍ଗଙ୍କ ଭିତରେ ଉଦ୍‌ବୃତ୍ତି ପଇସା ଥାଏ ମହାପାତ୍ରଙ୍କ ପାଖେ । ସେ ଅକାତରରେ ଦିଅନ୍ତି ଏବଂ ଫେରସ୍ତ ନେବାକୁ ଏକାବେଳକେ ରାଜି ହୁଅନ୍ତି ନାହିଁ । ମହାପାତ୍ରେ ଦୁଇଦିନର ଫିସ, କଥା ପଡ଼ିବା ମାତ୍ରେ ଆଣି ଥୋଇଦେଲେ, କିନ୍ତୁ ତା'ପରେ ପୁଣି ସମସ୍ୟା—ଡାକ୍ତର ବାବୁ ରହିବେ କେଉଁଠି ଖାଇବେ କ'ଣ ? କୁହାପୋଛା କରି ଦାସେ ବୁଝାଇଲେ ଯେ, ଡାକ୍ତର ସାହେବ ଯାହା ଖାଇବେ ବରାଦ କଲେ ତାହା ତାଙ୍କ ଘରେ ଶୁଦ୍ଧପୂତ ଭାବେ କରାଯାଇପାରିବ । ଡାକ୍ତରବାବୁ ଆପତ୍ତି କଲେ, 'ଶୁଦ୍ଧପୂତ' ଓ 'ପରିଷ୍କାର ପରିଚ୍ଛନ୍ନ' ଭିତରେ ଆକାଶ ପାତାଳ ପ୍ରଭେଦ । ମହାପାତ୍ରେ ଏଥିରେ ଚିଡ଼ି ଉଠୁଥିଲେ, ଦାସେ ତାଙ୍କୁ ନିବର୍ତ୍ତାଇ ଡାକ୍ତରଙ୍କୁ ବୋଧ କରିଦେଲେ ଯେ ଡାକ୍ତରଙ୍କ ଖାଦ୍ୟ ସାମଗ୍ରୀ ପରିଷ୍କାର ପରିଚ୍ଛନ୍ନ ଭାବେ ରନ୍ଧା ହେବ ।

ଖାଇବା କଥା ପିନା ତୁଟିଲା, କିନ୍ତୁ ଡାକ୍ତରବାବୁ ମଫସଲ ଗାଁରେ କଦାପି ରହି ପାରିବେ ନାହିଁ । ତାଙ୍କର ଗାଧୁଆ ଘର ଅର୍ଥାତ୍ ଆଧୁନିକ ପାଇଖାନା ଦରକାର ; ଓ ଶୋଇବାକୁ ଇଲେକ୍‌ଟ୍ରିକ ପଙ୍ଖା ନ ହେଲେ ନ ଚଳେ । ମଫସଲର ମଶା ମଶାରିକୁ ଭେଦି ପଶନ୍ତି ; ମଣିଷ କେଉଁ ମଫସଲ ଗାଁରେ ରହିପାରିବ ନାହିଁ ।

ବାହିନୀପତି ଏଥିରେ ତୁନି ରହି ନ ପାରି କହି ଉଠିଲେ, 'ଆମେ ତ ମଫସଲରେ ରହୁଛୁ, ଆମେ କ'ଣ ତା'ହେଲେ ଚତୁଷ୍ପଦ ।'

ଦାସେ ଟିକିଏ ବିରକ୍ତ ହୋଇ କହିଲେ, 'ତୁମେ ଚତୁଷ୍ପଦ କି ଦ୍ୱିପଦ ତା' ତ ଏଠାରେ ବିଚାର୍ଯ୍ୟ ବିଷୟ ନୁହେଁ । ଆମର ଆକଟ ପଡ଼ିଛି ବୋଲି ଆମେ ଡାକ୍ତରବାବୁଙ୍କୁ ଡାକିଥାଉଁ । ତାଙ୍କର ସୁବିଧା ଅସୁବିଧା ଆମର ବୁଝିବାର କଥା । ସେ ଯଦି ଏଠାରେ ରହି ନ ପାରିବେ , ତେବେ ରାତିରେ ଯାଇ ଖୋର୍ଦ୍ଧା ଡାକବଙ୍ଗଳାରେ ରହନ୍ତୁ । ରାତିରେ ଯଦି ଦରକାର ହେବ, ତେବେ ଆମେ ଯାଇ ଡାକି ଆଣିବା । ସେଥି ସକାଶେ ଦୁଇଦିନ ଏଠାରେ ଖଣ୍ଡେ ଟ୍ୟାକ୍‌ସି ରଖିଲେ ଚଳିବ ।' ନାୟକେ ଗୁଣୁ ଗୁଣୁ ହୋଇ କହିଲେ, 'ରାତିରେ ଡାକ୍ତରବାବୁଙ୍କ ନିଦ ଭାଙ୍ଗିବ କି ନାହିଁ ତ ବୁଝିବା ଦରକାର ।' ଏକଥା ସମସ୍ତଙ୍କୁ ଶୁଣାଗଲା କିନ୍ତୁ କେହି ଶୁଣିଲା ପରି ଆକାର ଇଙ୍ଗିତ ଦେଖାଇଲେ ନାହିଁ ।—ଡାକ୍ତରବାବୁ ବି ।

ଡାକ୍ତରବାବୁ ରାତି ୮ଟାରେ ଖାଇ ପିଇ ଖୋର୍ଦ୍ଧା ଡାକ ବଙ୍ଗଳାରେ ବିଶ୍ରାମ କରିବାକୁ ବାହାରିଲା ବେଳକୁ ଦୁଇଜଣ ଆମେରିକାନ୍ ଯୁବକ ଯୁବତୀ ରାଧାନୀ ଉପରକୁ ଚଢ଼ିଲେ । ଅପୂର୍ବ ମଣିଷଙ୍କୁ ଦେଖି ସମସ୍ତେ ବିସ୍ମିତ ହୋଇଗଲେ । ଦୁଇଜଣଯାକଙ୍କର ଏକ ପ୍ରକାର ପୋଷାକ; ମୁହଁ ଓ ଅବୟବକୁ ନିରେଖି କରି ନ ଚାହିଁଲେ କିଏ ପୁରୁଷ କିଏ ସ୍ତ୍ରୀ ଜାଣି ହେଉନଥାଏ । ସ୍ତ୍ରୀ ଜଣକ କହିଲେ, ଆମେ ଦାସେ ମହାଶୟଙ୍କ ପାଖକୁ ଆସିଛୁ । ଦାସେ ଚିହ୍ନା ଦେବାରୁ ସେ କହିଲେ, ଆପଣଙ୍କ ଏ ବାରଣ୍ଡାରେ ଆମେ ଆଜି ରାତିଟା ରହିବାକୁ ଚାହୁଁ , ଆପଣଙ୍କ ବାରଣ୍ଡା ପ୍ରଶସ୍ତ ଓ ଆପଣ ଏ ଗାଁର ବିଶିଷ୍ଟ ଲୋକ ବୋଲି ଶୁଣିଲୁ । ଦାସେ ଆଗ୍ରହରେ ସେମାନଙ୍କୁ ସ୍ୱାଗତ କରି କହିଲେ, 'ଆପଣ ରାତି ଭୋଜନ କ'ଣ କରିବେ ଜାଣିଲେ ତାର ଆୟୋଜନ କରିବି' । ଦୁହେଁଯାକ ଏକ ସ୍ୱରରେ କହିଲେ, ଆଜି ତାଙ୍କର ଖାଇବାର ପ୍ରୟୋଜନ ନାହିଁ । ସେମାନଙ୍କ ପଛରେ ଗୋଡ଼ାଇବା ପିଲାଙ୍କ ଭିତରୁ ଜଣେ କହିଲେ, ଏମାନେ ବନା ଦୋକାନରେ ବସି ମୁଢ଼ି ଓ ପିଆଜି ଖାଉଥିଲେ । ଆମେରିକାନ୍ ଯୁବକଜଣକ କହିଲେ, 'ଗ୍ଲାସେ ପାଣି ଆମକୁ ଦେଇପାରନ୍ତୁ ।'

ମହାପାତ୍ରେ ଅଲଗା ହୋଇ ଚଉକିରେ ବସିଥିବା ଡାକ୍ତରଙ୍କ ଆଡ଼କୁ ଚାହିଁ ପଚାରିଲେ, 'ଆପଣମାନଙ୍କୁ ଏଭଳି ଖାଇବା, ବୁଲି ବୁଲି ବୁଲିବା ଓ ଯହିଁକହିଁ ଶୋଇବା ବଡ଼ ଅସୁବିଧାଜନକ ହେଉଥିବ ?' ଯୁବକ କହିଲେ, 'ସୁବିଧା ଅସୁବିଧା ମନର କଥା । ତାହାର ବାସ୍ତବ ପ୍ରଭାବ ମନ ଉପରେ ପଡ଼େ ନାହିଁ କି ଦେହ ଉପରେ ପଡ଼େନାହିଁ । ପଚିଶବର୍ଷ ପୂର୍ବେ ଆମ ଦେଶର ଲୋକେ ବୈଷୟିକ ବିଭବ ଓ ରହିବା ଖାଇବାର ସୁବିଧା ଅସୁବିଧା ବିଷୟରେ ବେଶି ମୁଣ୍ଡ ଘିଉଥିଲେ । ଦ୍ୱିତୀୟ ମହାଯୁଦ୍ଧ ବେଳୁଁ ଆମ ଦେଶରେ ସେ ଢଙ୍ଗ ଆଉ ନାହିଁ । ଖାଇବା ରହିବା ପରି ଶ୍ରେଷ୍ଠ ଶ୍ରେଷ୍ଠ କଥାରେ ମୁଣ୍ଡ ଘୂରାଇଲେ ମଣିଷର ଜୀବନ ବୃଥାରେ କଟିଯାଏ । ଆପଣମାନଙ୍କୁ ଚିହ୍ନିବାକୁ , ଆପଣଙ୍କର ସେବା କରିବାକୁ ଆମେ ଆସିଛୁଁ , ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ବିଷୟରେ ଭାବି ହେଲେ ତ ଆପଣଙ୍କଠାରୁ ଆଡ଼େଇ ହୋଇଯିବୁଁ , ଚିହ୍ନିବୁ କ'ଣ, ସେବା କରିବୁ କେମିତି ?'

କଥାବାର୍ତ୍ତା ଯେଉଁ ଢଙ୍ଗରେ ଗଡ଼ିଲା ସେଥିରେ ଡାକ୍ତରବାବୁ ଆଉ ବେଶି ବେଳ ବସିପାରିଲେ ନାହିଁ, ଡେରି ହୋଇଯାଉଛି ବୋଲି କହି ଯିବାକୁ ଉଠି ଠିଆ ହେଲେ । ବାରିବାବୁ ତାଙ୍କୁ ସାଙ୍ଗରେ ନେଇ ଖୋର୍ଦ୍ଧା ଗଲେ । ଆମେରିକାୟ ଦମ୍ପତିଙ୍କ ସଙ୍ଗେ କଥାବାର୍ତ୍ତାରୁ ଜଣାପଡ଼ିଲା, ଯୁବକ ଜଣେ ଉଚ୍ଚଶିକ୍ଷିତ ଡାକ୍ତର ଓ ଯୁବତୀ ଅର୍ଥଶାସ୍ତ୍ରରେ ଏମ୍. ଏ. ପାସ କରିଛନ୍ତି । ଡାକ୍ତର ବୋଲି ଶୁଣି ମହାପାତ୍ରେ ତାରା କଥା ଉଠାଇଲେ । ଯୁବକ କହିଲେ, 'ଜଣେ ଡାକ୍ତର ତାଙ୍କୁ ଦେଖୁଛନ୍ତି । ସେ ରୋଗୀକୁ ଛାଡ଼ି ଦିଆ ପରେ ମୁଁ ଦେଖିପାରେ; କିମ୍ବା ସେ ଆପତ୍ତି ନ କଲେ ସେ ଓ ମୁଁ ଦୁହେଁ ମିଶି ଦେଖିପାରୁଁ । ବର୍ତ୍ତମାନ ମୁଁ ଦେଖିବା ଠିକ୍ ହେବନାହିଁ । ତା'ପରେ ଆପଣ ଯେଉଁ ଡାକ୍ତରଙ୍କୁ ନିଯୁକ୍ତ କରିଛନ୍ତି, ସେ ମୋଠାରୁ ବୟସ୍କ, ତେଣୁ ଅଭିଜ୍ଞ ବୋଲି ମୁଁ ମନେ କରୁଛି । ତେବେ, ମୋର ସ୍ତ୍ରୀ ଗତ ୫ବର୍ଷ ହେଲା ମୋ

ସଙ୍ଗେ ରହିବା ଫଳରେ ମୋଠାରୁ କିଛି ଡାକ୍ତରି ଶିଖିନେଲେ, ମୁଁ ବି ତାଙ୍କଠାରୁ କିଛି ଅର୍ଥଶାସ୍ତ୍ର ଶିଖିଛି । ଆପଣଙ୍କର ଆପତ୍ତି ନ ଥିଲେ ସେ ଯାଇ ରୋଗିଣୀକୁ ଟିକିଏ ସେବା କରି ଆସନ୍ତୁ ।'

ଆମେରିକାନ୍ ଦମ୍ପତିଙ୍କୁ ମହାପାତ୍ରଙ୍କ ଘରେ ରହିବାକୁ ଦିଆଗଲା । ତାଙ୍କ ପାଇଁ ନୂଆ ଶେଯ, ମାଣ୍ଡ, ମଶାରି ଦିଆଯିବାରେ, ସେମାନେ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ଆପତ୍ତି କଲେ, 'ଆମେ ଏଭଳି ବିଳାସରେ ରହିବାକୁ ପ୍ରସ୍ତୁତ ନୁହେଁ । ପ୍ରଶସ୍ତ ଘର, ବାଡ଼ିଆଡ଼େ ସୁନ୍ଦର ବଗିଚା ଦେଖି ସେମାନେ କହିଲେ, ବଡ଼ ଲୋଭନୀୟ ହୋଇଛି । ଆମେ ନିଉୟର୍କରେ ଯେଉଁ ଫ୍ଲାଟ୍‌ରେ ଥିଲୁଁ ତାହାଠାରୁ ଏହା କେତେ ମୁକ୍ତ, ପ୍ରଶସ୍ତ ଓ ସୁନ୍ଦର ।' ଯୁବତୀ କହିଲେ, 'ଆମେରିକାରେ ଆମ ଦୁଆରୁ ଗୋଡ଼ କାଢ଼ିବାମାତ୍ରେ ଆମେ ଘରୁ ନିର୍ବାସିତ ହେଲାପରି ଲାଗେ । ଏ ଘରର ହତା କେତେ ବଡ଼ ।' ଦୁହେଁ ତହିଁ ଆରଦିନ ସକାଳେ ବଗିଚାରେ ବୁଲି କୂଅମୂଳେ ନିଜେ ପାଣି କାଢ଼ି ଗାଧୋଇଲେ, ମହାପାତ୍ରଙ୍କ ସଙ୍ଗେ ଗୋରୁ ମୋହିଁବାରେ ସାହାଯ୍ୟ କଲେ । ସେମାଙ୍କ ଢଙ୍ଗରଙ୍ଗ ଦେଖି ମହାପାତ୍ରେ ଦେଶୀସାହେବ ଡାକ୍ତରଙ୍କ ଉପରେ ଭକ୍ତି ଗୃଢ଼ଳ ରଖିବାଉଥାନ୍ତି ।

ରାତିରେ ଯୁବତୀ ତାରି ପାଖକୁ ଯାଇ ତା' ଶେଯ ପାଖେ ବହୁତ ବେଳ ବସିଲେ ; ଓଡ଼ିଆ, ଇଂରେଜୀ ଓ ହିନ୍ଦୀରେ କଥାବାର୍ତ୍ତା କରିବାକୁ ବହୁ ଚେଷ୍ଟା କଲେ । ତାଙ୍କ ଉପସ୍ଥିତି ତାରିକୁ ଟିକିଏ ଆନନ୍ଦ ଦେବାର ଲକ୍ଷ୍ୟ କରି, କଥାର ଉତ୍ତର ନ ପାଇଲେ ମଧ ରାତି ଅଧ ପର୍ଯ୍ୟନ୍ତ ସେ ତା' ଖଟ ପାଖ ଛାଡ଼ିଲେ ନାହିଁ । ତହିଁଆରଦିନ ସକାଳେ ଯୁବକ ଏକୁଟିଆ ପାଖର ଗୋଟିଏ ଗାଁକୁ ବୁଲିଗଲେ ଓ ଯୁବତୀଟି ତାରିର ସେବା କରିବାକୁ ରହିଲେ । ମହାପାତ୍ରେ ଦିହିଙ୍କୁ ଯାକୁ ତାଗିଦ କରିଥାନ୍ତି, ଦୁହେଁ ତାଙ୍କରି ଘରେ ଦିନ ବକତ ଯାକ ଖାଇବେ ଏବଂ ଏ ଅଞ୍ଚଳରେ ଯେତେ ଦିନ ରହିବେ ତାଙ୍କ ଘରକୁ ନିଜର ବୋଲି ମନେ କରିବେ ।

ବାରବାଟୁ ସକାଳେ ଡାକ୍ତରବାବୁଙ୍କୁ ଘେନି ଖୋର୍ଦ୍ଧାରୁ ଆସିଲେ । ଡାକ୍ତରବାବୁ ରୋଗିଣୀର ଝାଡ଼ା, ପରିସ୍ରା ଓ ରକ୍ତ ପରୀକ୍ଷା କରି ଆସିଥାନ୍ତି । ରୋଗିଣୀ ପାଖକୁ ଯିବାର ପାଞ୍ଚ-ମିନିଟ ଭିତରେ ଟିକିଏ ଷ୍ଟେଥେସ୍‌କୋପ୍ ତା' ଛାତିରେ ଛୁଆଁ ଛୁଇଁ କରିସାରି କହିଲେ, 'ଏ ରୋଗକୁ ଡାକ୍ତର କିଛି କରିପାରିବେ ନାହିଁ । ଆପଣ ସ୍ୱସ୍ତ୍ୟୟନ କରନ୍ତୁ ।'

ମହାପାତ୍ରେ ଟିକିଏ ଉତ୍ତେଜିତ ହେଲାପରି କହିଲେ, 'ଆପଣଙ୍କ ପାଠରେ ସ୍ୱସ୍ତ୍ୟୟନ ପୁଣି କ'ଣ ? ଦେବଦେବୀଙ୍କୁ ଅର୍ଚ୍ଚା କରିବା, ମଧୁସୂଦନଙ୍କ କୀର୍ତ୍ତନ, ଝଡ଼ାଝଡ଼ି କରିବା ସକାଶେ ଆପଣଙ୍କ ଭଳି ଉଚ୍ଚଶିକ୍ଷିତ ଡାକ୍ତରଙ୍କ ଅପେକ୍ଷା ଆମେ ବୃଦ୍ଧ ଓ ବ୍ରାହ୍ମଣଙ୍କ ପରାମର୍ଶକୁ ଅଧିକ ପସନ୍ଦ କରୁଁ । ଏତେ ପଇସା ଖର୍ଚ୍ଚ କରି, ଆପଣଙ୍କ ପରାମର୍ଶ ଆମ ଅଶିକ୍ଷିତ ଦେଶ-ସଲଙ୍କ ଅପେକ୍ଷା କିଛି ଅଧିକ ହେବା ଦରକାର ।'

ଡାକ୍ତର ଟିକିଏ କ୍ଷୁଣ୍ଣ ହେଲେ, କିନ୍ତୁ ବିରକ୍ତ ନ ହୋଇ ଉତ୍ତର ଦେଲେ, 'ପଇସା ନେଲି, ଏ ବୃତ୍ତି କରୁଛି ବୋଲି । କିନ୍ତୁ ସବୁ ରୋଗକୁ କ'ଣ ମୁଁ ପାରିବି ! ମୋର ମନେ ହେଉଛି ରୋଗିଣୀର ଶରୀରରେ କୌଣସି ବିକାର ନାହିଁ । ଶରୀରର ବ୍ୟାଧି ଅପେକ୍ଷା ଅଧିକ କିଛି ମୁଁ ଚିକିତ୍ସା କରିପାରିବି ନାହିଁ ।' ମହାପାତ୍ରଙ୍କୁ ତୁନି ହେବାକୁ କହି ଦାସେ ସୌଜନ୍ୟରେ ଡାକ୍ତରଙ୍କୁ ବିଦାୟ ଦେଲେ ।

ନାୟକେ ଡାକ୍ତର ମଟରକୁ ଯାଉ ଯାଉ ଶୁଣାଇଦେଲେ, 'ସେ ତ ତାଙ୍କ ମନକୁ କହିଲେ, ପଇସା ରୋଜଗାର କରିବାକୁ ଡାକ୍ତର ଭେକ ଧରିଛନ୍ତି, ତାଙ୍କ ଉପରେ ବିରକ୍ତ ହେଲେ ଫଳ କ'ଣ ? ତାଙ୍କ ପଇସାଟି ତାଙ୍କୁ ମିଳିଲା ତ ଭଲ । ରୋଗ ଭଲ ହେବା ନ ହେବା ତମ ଭାଗ୍ୟ ଉପରେ କଥା ।' ଡାକ୍ତର ଅବଜ୍ଞାରେ ଟିକିଏ ହସିଦେଇ ବିଦାୟ ନେଲେ ।

ଏଥର ଆମେରିକୀୟ ଯୁବକ ଡାକ୍ତରଙ୍କର ଚିକିତ୍ସା ଚାଲିଲା । ସାମାନ୍ୟ କେତୋଟି ଔଷଧର ବ୍ୟବସ୍ଥା ଦେଇ ଦିନେ ଖଣ୍ଡେ ରୋଗୀର ଗତିବିଧି ଦେଖି ସେ କହିଲେ, 'ସ୍ତ୍ରୀ'ଙ୍କ ମନରେ ଗୋଟିଏ କିଛି ଆଘାତ ଲାଗିଛି । ମନସ୍ତାତ୍ତ୍ୱିକ ଚିକିତ୍ସକ ସ୍ତ୍ରୀଙ୍କର ଚିକିତ୍ସା କରି-ପାରନ୍ତେ । ଆମେରିକାରେ ବର୍ତ୍ତମାନ ଚିକିତ୍ସକମାନଙ୍କର ବିଶ୍ୱାସ, ମନର ବିକାରରୁ ରୋଗ ହେଉଛି । ତେଣୁ ସେମାନେ ରୋଗର ଚିକିତ୍ସା ଅପେକ୍ଷା ମନର ଚିକିତ୍ସାରେ ଅଧିକ ଜୋର ଦେଉଛନ୍ତି । ମୁଁ କିନ୍ତୁ ସେ ବିଷୟରେ ବିଶେଷ କିଛି ଜାଣେ ନାହିଁ । ମୋର ଜଣେ ବନ୍ଧୁ ବର୍ତ୍ତମାନ ବିହାର ରାଜ୍ୟର ଗାଁ ଗହଳରେ ବୁଲୁଛନ୍ତି , ସେ ମନସ୍ତାତ୍ତ୍ୱିକ ଚିକିତ୍ସକ । ମୁଁ ତାଙ୍କ ପାଖକୁ ଖଣ୍ଡିଏ ଚିଠି ଦେଉଛି ; ସେ ଆସିବା ପର୍ଯ୍ୟନ୍ତ ସ୍ତ୍ରୀଙ୍କୁ ଏଇପରି ହେପାଜତରେ ରଖାଯାଉ ।'

ଅଦ୍ଭୁତ ହପ୍ତେ ଖଣ୍ଡେ ଚାଲିଗଲା । ହେପାଜତ ଚାଲିଥାଏ । ଠାକୁର ଠାକୁରାଣୀଙ୍କ ପାଖେ ମଧୁସୂଦନ କୀର୍ତ୍ତନ, ଚଣ୍ଡୀ, ବଗଳାମୁଖୀ ଚାଲିଥାଏ । ସାଆନ୍ତାଣୀ ତା'ର ପିଲାଟିକୁ ନିଜେ କୋଳେଇ, କାଖେଇ, ଛେଳିଦୁଧ ଖୋଇ ପାଳୁଥାନ୍ତି ; ବେଳେ ବେଳେ ମନ-ଦୁଃଖରେ କହୁଥାନ୍ତି, ଗାଁଯାକର ବୁଢ଼ାଟିମାନେ ଏ ଟୋକୀର ଭଲ ଦେଖିବେ ବୋଲି ଚାହିଁଥିଲେ ଯେ, ସ୍ତ୍ରୀ କପାଳରେ ନାହିଁ କି ତାଙ୍କ କପାଳରେ ନାହିଁ । ଦାଣ୍ଡ ଦୁଆରେ କେତେ ଗହଳି ଲାଗିଥିଲା । ଥରକୁ ଥର ଚା' ପଠାଇ ପଠାଇ ଚଢ଼ା ଲାଗିଯାଏ । ଏବେ କାହାର ମୁହଁରୁ କଥା ବାହାରୁ ନାହିଁ । ସମସ୍ତେ ଆସୁଛନ୍ତି, ତୁନି ହୋଇ ବସି ବସି ଯାଉଛନ୍ତି ।

କିନ୍ତୁ ମହାପାତ୍ରେ ତୁନିହୋଇ ବସି ନ ଥାନ୍ତି ।

ପାଖରେ ଆଖରେ ଯେତେକ ଗୁଣିଆ ସମସ୍ତଙ୍କୁ ସେ ତଲସିଥାନ୍ତି । ଦୁଇଜଣ ଇତି-ମଧ୍ୟରେ ଆସି ତାଙ୍କ ବିଦ୍ୟା ଦେଖାଇ ଗଲେ । କିନ୍ତୁ ଫଳ କିଛି ନାହିଁ । ଦିନେ ସକାଳେ ମହାପାତ୍ରେ ଦାସଙ୍କ ଗୃହଦମୀକୁ ଆସୁ ଆସୁ ରଘୁ ବାରିକକୁ ଡାକି କହିଲେ, 'ରଘୁଆ ! ଟିକିଏ ଯାଇଁ ଯା' କି ପଦ୍ଧଆ ନାହାକକୁ କହିବୁ, ଯୋଉ ସଜରେ ଥିବ ଆସିବ ।' ଅଧଘଣ୍ଟାକ ଭିତରେ

ନାହାକେ ଆସି ହାଜର । ମହାପାତ୍ରେ ପଚାରିଲେ, 'ଆରେ ପଦିଆ ଗୋଟାଏ ପ୍ରଶ୍ନ କର୍ ।' ପଦିଆ 'ଆଜ୍ଞା' କହି ମୁରୁକି ମୁରୁକି ହସି ଚାହିଁବାରେ ମହାପାତ୍ରେ ଟିକିଏ ବିରକ୍ତ ହୋଇ ପଡ଼ନ୍ତେ ନାହାକେ କହିଲେ, 'ଆଜ୍ଞା, ରଘୁ ଯାଇ ମୋତେ ଡାକିଲା ବେଳୁଁ ପ୍ରଶ୍ନ କରି ସାରିଛି । ଭଲ ଡାକିଲା । ଆପଣଙ୍କ ମନରେ ଯାହା ଅଛି ତାହା ଆଜି ଛାଡ଼ି କାଲି ପାହାନ୍ତିଆକୁ ପୂରଣ ହୋଇଯିବ । ମହାପାତ୍ରେ କହିଲେ, ତୋତେ କ'ଣ କିଏ ପଚାରିଲା ଯେ ତୁ ପ୍ରଶ୍ନ ସାଧିଦେଲୁ ? ନାହାକେ କହିଲେ, 'ଆଜ୍ଞା, ରଘୁ ମୋତେ ଯେମିତି ଯାଇ ଡାକିଲା ସେଥିରୁ ଜାଣିଲି ମହାପାତ୍ରେ ଆପଣେ ପ୍ରଶ୍ନ କରିବେ । ସେତିକିବେଳର ଲଗ୍ନ ଧରି ସାଧିଲି । ଜୀବଚିନ୍ତା । କେହି ଆପଣାର ଲୋକଙ୍କ ବିଷୟରେ ଚିନ୍ତା କରୁଛନ୍ତି । ବଡ଼ ବ୍ୟସ୍ତ ହେଉଥିଲେ । ଯାହାହେଉ ରିଷ୍ଟ କଟିଗଲାଣି । ଆଉ ଦିନ ଯୋଡ଼ାଏ ଯାଇଥିବ କି ନାହିଁ ଜାଣିବେ ।'

ତାରିର ରୋଗ ବିଷୟରେ ପ୍ରଶ୍ନ କରିଥିଲେ ବୋଲି ମହାପାତ୍ରେ ସମସ୍ତଙ୍କୁ ଶୁଣାଇ ପଦ୍ମନାଭ ନାୟକଙ୍କୁ କହିଲେ, 'ଜାଣିଲୁ ପଦିଆ, ଯଦି ତୋ କଥା ସତ ହୁଏ ତେବେ ତୁ ବହୁ ମାନ ପାଇବୁ; ଆଉ ଯଦି ସତ ନ ହୁଏ ପଅରଦିନ ସକାଳୁ ତୋ ନାହାକପଣିଆ ଛଡ଼ାଇଦେବି ।'

... ... ... ...

ପଦିଆ ନାହାକଙ୍କ କଥା ସତ ହୋଇଥାଏ । ଅଧ୍ୟାୟର ପ୍ରଥମରେ ଯେଉଁ ମେଳା ମଉଚ୍ଛବ କଥା ଉଲ୍ଲେଖ କରିଛୁ ତାହା ହେଉଥାଏ ତାଙ୍କର କଥା ସତ ହେବାରୁ । ଗତକାଲି ରାତି ପାହାନ୍ତିଆରେ ତାରିର ମସ୍ତିଷ୍କ ବିକୃତି ଏକାବେଳେ ଛାଡ଼ିଯାଇଥାଏ, ଗୋଟିଏ ସ୍ୱପ୍ନ ଦେଖି । କାଲି ରାତି ଶେଷରେ ସେ ହଠାତ୍ ଏଁ ବୋଲି କହି ଚେଇଁକି ପଡ଼ିଲା ! ଆମେରିକାସ୍ଥ ମହିଳା ତା' ପାଖରେ ଶୋଇଥିଲେ ; ତାଙ୍କର ନିଦ ଭାଙ୍ଗିଗଲା । ସେ ତାରି ଆଡ଼କୁ ଚାହିଁଲେ । ତାରି ଓପରକୁ ମୁହଁ କରି ଶୋଇଥାଏ । ତା'ର ମୁହଁରେ ସଂଭ୍ରମ, ହୃଦରେ ହାତ ଯୋଡ଼ିକି ନମସ୍କାର କଲାପରି ଯୋଡ଼ି ହୋଇଗଲା ; ଟିକିକ ପରେ ମୁହଁରେ ଗୋଟାଏ କିପରି ଦିବ୍ୟ ଆଲୋକ ଖେଳିଗଲା ; ସେ ଉଠି ପଡ଼ିଲା ଓ ଆମେରିକାସ୍ଥ ସଙ୍ଗିନୀଙ୍କୁ କହିଲା, 'ଭଉଣୀ ! ଆଜି ଗୋଟିଏ ବିଚିତ୍ର ସ୍ୱପ୍ନ ଦେଖିଲି ।'

ପ୍ରାୟ ୭ ଦିନ ହେଲା ଆମେରିକାସ୍ଥ ମହିଳା ପ୍ରାୟ ସବୁ ସମୟରେ ତାରି ପାଖରେ ରହୁଥାନ୍ତି । ଦାସେ ଆପଣେ ଓ ସାଆନ୍ତାଣୀ ବାରଂବାର ତାଙ୍କୁ ବାରଣ କରିଥାନ୍ତି, ତାରି ପାଇଁ ଏତେ କଷ୍ଟ ନ ସହିବାକୁ । ଦାସେ କହନ୍ତି, 'ମା ! ତାରିର ଯାହା ହେବାର କଥା ତା' ହେବ । ଆମ ହାତରେ ନାହିଁ, କି ତୁମ ହାତରେ ନାହିଁ । ତୁମେ ତୁମ ଧନ୍ଦାରେ ନ ରହି ତା' ପାଇଁ ଏତେ କାହିଁକି ଧନ୍ଦି ହେଉଛ ?' ସାଆନ୍ତାଣୀ କହନ୍ତି, 'ଆଲୋ ମା ! ତୁ ତୋ ଗେରସ୍ତର ଭଲ ମନ୍ଦ ନ ବୁଝି ଏ ହୀନକପାଳୀ ସାଙ୍ଗେ କାହିଁକି ଲାଗିଛୁ ?' ମହିଳାଙ୍କର ଏକମାତ୍ର କୈଫିୟତ୍, 'ମୁଁ ପାଖରେ ରହିଲେ ତାକୁ ସୁଖ ଲାଗୁଛି ବୋଲି ମୋତେ ଜଣା-ପଡ଼ୁଛି । ଜଣେ ମଣିଷର ସୁଖର କାରଣ ହେବାଠାରୁ ବଡ଼ କାମ ଆଉ କ'ଣ ?' ଏ କଥାକୁ ଆଉ ଉତ୍ତର କ'ଣ ?

କିନ୍ତୁ ଏତେ ସମୟ ପାଖରେ ଥିଲେ ମଧ୍ୟ ତାରା ଏଇ ପାହାନ୍ତିଆରେ ତାଙ୍କୁ ଭଉଣୀ ବୋଲି ସଂବୋଧନ କରିବା ପୂର୍ବରୁ ପଦେ ବି କିଛି କହିନଥିଲା । ଆମେରିକୀୟ ମହିଳା ପଚାରିଲେ, 'ଭଲ ସ୍ୱପ୍ନଟିଏ ନିଶ୍ଚୟ' ? ତାରା କହିଲା, 'ହଁ, ଖୁବ ଭଲ ସ୍ୱପ୍ନ । ଠାକୁର ମୋ ମନର ସବୁ ଦୁଶ୍ଚିନ୍ତା ଦୂର କରିଛନ୍ତି । ରହ, ମୁଁ ଗାଧୋଇ ପାଧୋଇ ଠାକୁରାଣୀଙ୍କୁ ମୁଣ୍ଡିଆ ମାରି ଆସିଲେ ସବୁ କହିବି ।'

ମତି ବିକୃତ ହେବା ଦିନୁଁ ଗାଧୁଆ ପାଧୁଆ ବିଷୟରେ ତାରାର ନିଂଘା ନ ଥିଲା । ସେ ତରତରରେ ବାଡ଼ିଆଡ଼କୁ ଗଲା । ଦାନ୍ତ ଘଷି, ଗାଧୋଇ ପାଧୋଇ, ଭଲ ଲୁଗା ଖଣ୍ଡେ ପିନ୍ଧି ଦିଅଁଙ୍କ ଘରକୁ ଗଲା ଓ ସେଠାରେ ଅଧଘଣ୍ଟାରୁ ବେଶି ସମୟ ରହିଲା । ଏ ସବୁ ଦେଖି ଘର ଯାକ ସମସ୍ତେ ବିସ୍ମିତ ହୋଇଯାଇଥାନ୍ତି । ସାଆନ୍ତାଣି କହୁଥାନ୍ତି, 'କେହି ତାକୁ କିଛି କହ ନାହିଁ, ବାଇଆଣୀଟା ଯାହା କରୁଛି କରୁ । ଆଜି ସକାଳୁ ତ କାହିଁକି ଦିଅଁ ମନେ ପଡ଼ିଗଲେ ।'

ତାରା ଦିଅଁଙ୍କ ଘରୁ ବାହାରିବା ମାତ୍ରେ ସାଆନ୍ତାଣୀଙ୍କ ପାଖରେ ବସି ମୁଣ୍ଡିଆ ମାରି-ବାକୁ ଲଇଁପଡ଼ିଲା ବେଳକୁ ସାଆନ୍ତାଣୀ ତାର ଉଜ୍ଜ୍ୱଳ ମୁହଁକୁ ଦେଖି ତାକୁ କୁଣ୍ଢାଇ ପକାଇ କଇଁ କଇଁ ହୋଇ କହିଲେ, 'ଆଲୋ ! ସତେ କ'ଣ ମୋ ମା'ର ରିଷ୍ଟ କଟିଗଲା କି ଲୋ ? ଆରେ କିଏ ଅଛ ? ସାଆନ୍ତଙ୍କୁ କହିଦିଅ ।' ସାଆନ୍ତଙ୍କ ସଙ୍ଗେ ମହାପାତ୍ରେ ବି ପଶିଆସିଲେ । ପଢିଆ ଅବଧାନର ଭାଗ୍ୟ ନିର୍ଣ୍ଣୟ କରିବାକୁ ତାଙ୍କ ନିଦ ଭୋରରୁ ଭାଙ୍ଗିଯାଇଥାଏ । ଆମେରି-କୀୟ ଯୁବକ ଯୁବତୀ ଦୁହେଁ ବି ଆସିଲେ । ମେରୀ ତାରା ପାଖରୁ ଉଠି ନିତ୍ୟକର୍ମ କରିବାକୁ ଆପଣା ବସାକୁ ଯାଇଥାନ୍ତିଭାରି । ମହାପାତ୍ରଙ୍କ ଘରେ ଅତିଥି ହେବା ଦିନୁଁ ସେ ଦୁହେଁ ସମସ୍ତଙ୍କ ପରି ପ୍ରାତଃସ୍ନାନ କରୁଥାନ୍ତି ।

ସମସ୍ତେ କାମ ଦାମ ସାରି ଆସି ବସିଲାରୁ ମେରୀ ପଚାରିଲେ, 'ନାନୀ ! କାଲି କ'ଣ ସ୍ୱପ୍ନ ଦେଖିଲୁ କହିବୁନି ?' ତାରା ସଲଜ୍ଜ ହୋଇ କହିଲା ; ତାର ସଲଜ୍ଜ ଭାବ ଦେଖି ସମସ୍ତେ ଆଶ୍ୱସ୍ତ ହେଲେ ଯେ ତାର ମାନସିକ ବିକୃତି ଦୂର ହୋଇଛି ।

ତାରା କହିଲା : ରାତିରେ ମୁଁ ଶୋଇଛି, ମୋତେ ଲାଗିଲା କିଏ ଜଣେ ମୋତେ ଶୂନ୍ୟେ ଶୂନ୍ୟେ ଟେକି ନେଇ ଯାଉଛି । ମୁଁ ନିଦରେ ଏଁ ବୋଲି କହି ଚମକି ପଡ଼ିଲି । ତା' ପରେ ସେ ମୋତେ ନେଇ ରଖିଦେଲା ଗୋଟିଏ କାଳିଆ ପଥରର ବଡ଼ ଚାନ୍ଦନୀ ଉପରେ । ସେଟା କୁ'ଠା ବୋଲି ମୁଁ ତାଟକା ହୋଇ ଚାହିଁଲି ବେଳକୁ ସେଇ ଚାନ୍ଦନୀ ପାଖ ଘର ଭିତରୁ ଜଣେ ମହାପୁରୁଷ ବାହାରି ଆସି ମୋତେ ଗମ୍ଭୀର ଭାବେ ଚାହିଁଲେ । ଘର ଭିତରେ ଜଣେ ସ୍ତ୍ରୀ ଲୋକ ଚକାମାଣ୍ଡି ପକାଇ ବସିଥାନ୍ତି, ଆମ ଘରର ଭୁବନେଶ୍ୱରୀ ମୂର୍ତ୍ତିଙ୍କ ପରି । ସେ ମୋ ଆଡ଼କୁ ଚାହିଁ ମୋତେ ଅଭୟ ଦେଉଥାନ୍ତି । ସେଥିଯୋଗୁ ମୁଁ ନ ଡରି ମହାପୁରୁଷଙ୍କ ଆଡ଼କୁ ଚାହିଁପାରିଲି । ସଂଭ୍ରମରେ ମୁଁ ତାଙ୍କୁ ହାତ ଯୋଡ଼ିଲି । ସେ କଠୋର ସ୍ୱରରେ ମୋତେ କହିଲେ, 'ତୁ ନିଜକୁ ଖୁବ୍ ବଡ଼ ମନେ କରୁଛୁ, ନା ? ତୁ ବିଚାରୁଛୁ, ତୁ ତୋ ଭାଗ୍ୟର ବିଧାତା । ଏ ସଂସାର ତୋ ନିର୍ଦ୍ଦେଶରେ ଚାଲୁନାହିଁ । ତୋ ଭାଗ୍ୟରେ ଯାହା ଘଟୁଛି ସେଥିରେ

ତୋର ହାତ ନାହିଁ । ଏକଥା ଜାଣିରଖ । ଦୈବ ଆମର ନାକରେ ଦଉଡ଼ି ଲଗାଇ ଟାଣୁଛି, ଏକଥା ଭଲ କରି ବୁଝ୍ । ସଂସାରର ସୁଅରେ ମଣିଷ ଅସହାୟ ଭାବେ ଭାସି ଚାଲିଛି, ବାଟରେ ଭଉଁରୀ ପଡ଼ିଲେ ସେଥିରେ ମଣିଷ ପଡ଼ୁଛି, ସେଥିରୁ ଉଦ୍ଧାର ପାଇବାକୁ ସାଧ୍ୟମତେ ଚେଷ୍ଟା କରୁଛି ; କିନ୍ତୁ ଚେଷ୍ଟାର ଫଳ ଦୈବ ହାତରେ । ସେ ନ ବିଚାରିଲେ, ଯେତେ ଚେଷ୍ଟା କଲେ ବି, ଭଉଁରୀ ମଣିଷକୁ ତଳେ ମାଡ଼ିଦେବ । ଗୋଟାଏ ଭଉଁରୀରୁ ଉଦ୍ଧାର ହୋଇ ହେଣ୍ଟି ମାରିଲା ବେଳକୁ ଆଉ ଭଉଁରୀରେ ମଣିଷ ମାଡ଼ିହୋଇ ମରିବ । ତେଣୁ ସବୁବେଳେ ଦୈବ-ଠାରେ ନିଜକୁ ସମର୍ପି ଦିଆଯାଏ ।

ଭଲକାମ କଲି ବୋଲି ଗର୍ବ କରିବା ଯେମିତି ଖରାପ, ମନ୍ଦ ହେଲା ବୋଲି ବ୍ୟସ୍ତ ହେବା ସେମିତି ଖରାପ । ଏତେ ସହିଲିଣି, ଏତେଟିଏ ହେଲିଣି, ଏତିକି ବୁଝି ପାରୁନାହୁ ?'

ମୁଁ କିଛି ବୁଝି ନପାରି ତାଟକା ହୋଇ ଚାହିଁ ରହିଲି । ଘର ଭିତରେ ବସିଥିବା ଠାକୁରାଣୀ ପ୍ରସନ୍ନ ଦୃଷ୍ଟିରେ ମୋତେ ଚାହିଁଲେ । ବାବାଙ୍କର ମୁହଁରେ ମଧ୍ୟ ପ୍ରସନ୍ନତା ଦେଖିଲି । ତାଙ୍କର ଗୌରବର୍ଣ୍ଣ, ବଳିଷ୍ଠ, ଦୀର୍ଘ ଆକୃତି ଓ ମୁହଁରେ ଲମ୍ବ କଳାଧଳା ଦାଢ଼ି ମୁଛ ଦେଖି ଆଗ ମୋତେ ଡର ମାଡ଼ୁଥିଲା । ଏଥର ମୋତେ ତାହା ବାତ୍ସଲ୍ୟ-ପୂର୍ଣ୍ଣ ବୋଧହେଲା । ମୁଁ ଉତ୍ସୁକ ହୋଇ ତାଙ୍କୁ ଚାହିଁବାରେ ସେ କହିଲେ, 'ତୁ ଭାବୁଛୁ ତୁ ତୋ ପତିଙ୍କ ପ୍ରତି ବିଶ୍ୱାସଘାତକତା କରିଛୁ । ପାଗଳୀ ତୁ, ତୁ ତାଙ୍କର ମଙ୍ଗଳ କରିଛୁ । ତୁ ତାଙ୍କୁ ଅପେକ୍ଷା କରି ଯଦି ୬ ମାସ କାଳ ବାତ୍ନାନରେ ରହିଥାନ୍ତୁ ତେବେ ତୋ'ପ୍ରତି ଘୋର ଅତ୍ୟାଚାର ହୋଇଥାନ୍ତା । ତୋ' ସ୍ୱାମୀ ଫେରି ଆସି କିମିତି ଭାଙ୍ଗିପଡ଼ିଥାନ୍ତେ ବିଚାର କର । ତୁ ଘୋଡଶାଳରେ ଲୁଚାପଟା ରଖି ଚାଲି ଆସିବା ଫଳରେ ତୋ'ର ସ୍ୱାମୀ ତୋ'ର ମୃତ୍ୟୁ ହୋଇଛି ବୋଲି ଭାବି ଆତ୍ମଜ୍ଞାନ ପାଇବାକୁ ସାଧନା କରି ସିଦ୍ଧି ପାଇଛନ୍ତି । ସେପରି ନ କରି ତୋତେ ଖୋଜି ଖୋଜି ବୁଲିଥିଲେ ସେ ପାଗଳ ହୋଇଯାଇନଥାନ୍ତେ କି ? ତୁ ନିଜର ବାପ ମା ପରିବର୍ତ୍ତେ ଏବେ ଯେଉଁ ବାପ ମାଙ୍କୁ ପାଇଛୁ ସେମାନେ କେଡ଼େ ସ୍ନେହଶୀଳ ! ତାଙ୍କ ପ୍ରତି କୃତଜ୍ଞ ନ ହୋଇ ତୁ ତାଙ୍କୁ ସାଧୁଛୁ କାହିଁକି ? ଉଠ୍, ଉଠ୍, ମନର ଚିନ୍ତା ଛାଡ଼ି ଦେ । ତୋ' ପାଇଁ ବହୁତ କାମ ରହିଛି । ସେଥିପାଇଁ ପ୍ରସ୍ତୁତ ହୁଅ ।' ଏହା କହି ସେ ମୋ ମୁଣ୍ଡରେ ହାତ ବୁଲାଇଦେଲେ ; ମୋ ମୁଣ୍ଡ ହାଲୁକା ହୋଇଗଲା ।

ସମସ୍ତଙ୍କ ମୁଣ୍ଡ ହାଲୁକା ହୋଇଗଲା । ମହାପାତ୍ରେ ପଦିଆ ନାହାକକୁ ଡାକି ସତ୍କୃତ କଲେ ଓ ଦାସଙ୍କ ନିର୍ଦ୍ଦେଶରେ ପ୍ରତ୍ୟେକ ଦେବଦେବୀ ମନ୍ଦିରରେ ଭୋଗରାଗ କଲେ । ବେଳେ ଟିକିଏ ଟିକିଏ ଥାଏ, ସବୁ କାର୍ଯ୍ୟ ସାରି ସମସ୍ତେ ଗୃହାଙ୍ଗନରେ ଆରାମ କରି ବସିଛନ୍ତି, ପଦିଆ ନାହାକେ ସମସ୍ତଙ୍କୁ ଜେକେ ହୋଇ ବିଦାୟ ନେଉଛନ୍ତି ଏହି ସମୟରେ ଯୋଗୀ ମାନ୍ଦେ ଉପରଓଳି ଗାଡ଼ିରୁ ଓହ୍ଲାଇ ଦାସଙ୍କ ଘର ପଚାରି ପଚାରି ଆସି ପହଞ୍ଚିଲେ ।

ଯୋଗୀମାଷ୍ଟ୍ରେ ବାସଙ୍କ ଘରେ ଆସି ଅତିଥି ହେବାର ତିନି ଦିନ ହୋଇଗଲାଣି । ଫେରିବାକୁ ତରତର ହେବା ଧାରେ, ବାସେ ଆପଣେ ଓ ତାଙ୍କ ସଙ୍ଗୀମାନେ ମାଷ୍ଟ୍ରଙ୍କୁ ସମସ୍ତ ଦେଉନଥାନ୍ତି । ସେମାନେ ପ୍ରତିଦିନ, ଖାଇବା, ଶୋଇବା ସମୟଟିକ ଛାଡ଼ିଦେଲେ ବାକି ସବୁବେଳେ ତାଙ୍କ ପାଖେ ଘୁଞ୍ଚି ହୋଇ 'ବିମଳା ମନ୍ଦିର' ବିଷୟରେ ନାନା କଥା ପଚାରୁ-ଥାନ୍ତି । ଯୋଗୀମାଷ୍ଟ୍ରଙ୍କ କଥାରେ ସମସ୍ତେ ମୁଗ୍ଧ ହେଉଥାନ୍ତି । ରାତିରେ ବୈଠକ ଭାଙ୍ଗିଲା-ବେଳକୁ ମହାପାତ୍ରେ ଏପରି ଗୋଟିଏ ପ୍ରସଙ୍ଗ ଉତ୍ଥାପନ କରିଦିଅନ୍ତି, ଯାହା ଫଳରେ ତହିଁ ଆର ଦିନ ଯୋଗୀମାଷ୍ଟ୍ରଙ୍କୁ ଫେରିବା କଥା ଉଠାଇବାକୁ ଅବସର ମିଳୁନଥାଏ । ଯୋଗୀ-ମାଷ୍ଟ୍ରେ ମଝିରେ ମଝିରେ କହୁଥାନ୍ତି, ଏଠାରେ ପାଞ୍ଚ ଛ' ଦିନ ରହିବାକୁ ପଡ଼ିବ ବୋଲି ବାବା କହୁଥିଲେ, କିନ୍ତୁ ମୁଁ ତ ଦେଖୁଛି ଆପଣମାନେ ମୋତେ ମାସକରେ ବି ମୁକ୍ତି ଦେବେ-ନାହିଁ । ବାସେ ଆପଣେ କହନ୍ତି, 'ଆପଣଙ୍କର ଯେଉଁଦିନ ଇଚ୍ଛା ଆପଣ ଯାଇପାରନ୍ତି, ଆମେ ପରା ଆପଣଙ୍କ ସଙ୍ଗେ ଯିବୁ । ଆପଣଙ୍କୁ ଅଟକାଇବା ପ୍ରୟୋଜନ କ'ଣ ? ବାବାଙ୍କ ଚରଣ-ଧୂଳି ନ ନେଲା ପର୍ଯ୍ୟନ୍ତ କ'ଣ ମନରେ ତୃପ୍ତି ଆସିବ ?' ମହାପାତ୍ରେ କହନ୍ତି, 'ମାଷ୍ଟ୍ରେ ତ ଯେଉଁ ପଦକ କହୁଛନ୍ତି, ସେଥିରେ ଶୀଘ୍ର ଯାଇ ପୀଠରେ ପହଂଚିବାକୁ ମନ ଅଥୟ ହେଉଛି ।'

ପଣ୍ଡିମକବାଟେ ମାଷ୍ଟ୍ରଙ୍କ କଥା ଏକାବେଳକେ ପିଇଯାଉଥାନ୍ତି, ମଝିରେ ମଝିରେ ସେ କହୁଥାନ୍ତି, 'ଯୋଗୀମାଷ୍ଟ୍ର' ନାଁଟା ଆପଣଙ୍କଠାରେ ସାର୍ଥକ ହୋଇଛି ଏକା । ଯେ ଯୋଗୀ ସେମିତି ମାଷ୍ଟ୍ରେ ସେମିତି ।' ଏ ସାର୍ଟିଫିକେଟ ଶୁଣିଲେ ଯୋଗୀମାଷ୍ଟ୍ରେ ସ୍ମିତ ହାସ୍ୟ କରି ତୁନି ରହୁଥାନ୍ତି ।

ଚତୁର୍ଥ ଦିନ ସକାଳେ ପଣ୍ଡିମକବାଟେ ସେଇ କଥାର ପୁନରାବୃତ୍ତି କରନ୍ତେ ବାହିନୀ-ପତି କହିଲେ, 'ମାଷ୍ଟ୍ରେ ! ପଣ୍ଡିମକବାଟଙ୍କ କଥାଟା ଅପସନ୍ଦ କଲାପରି କାହିଁକି ମୁହଁ କରୁଛ ? ପ୍ରକୃତରେ ତୁମ କଥାରୁ ତ ଜଣା ପଡୁଛି, ତୁମେ ଯୋଗୀ ଓ ତୁମ କଥା ମାଷ୍ଟରଙ୍କ ପାଠ ପରି ମନରେ ପଶିଯାଉଛି ।'

ଯୋଗୀମାଷ୍ଟ୍ରେ ଉତ୍ତର ଦେଲେ, 'ଆଜ୍ଞା, ବାବାଙ୍କ ପାଖରେ ପହଂଚିଲେ ଆପଣ ଜାଣିବେ, ପ୍ରକୃତ ଯୋଗୀ କିଏ ଓ ମାଷ୍ଟ୍ର କିଏ ? ଏ ଅଧମ ବାରବର୍ଷ ପୂର୍ବେ ବାବାଙ୍କର ବଡ଼ ଶତ୍ରୁ ଥିଲି । ତାଙ୍କର ସବୁ କଥାକୁ ମୁଁ ଖଣ୍ଡୁଥିଲି ।' ମହାପାତ୍ରେ କହିଲେ ଏଁ ? ଆଜି ଆପଣଙ୍କ କଥା ଶୁଣି ତ ମନେ ହେଉଛି ଆପଣ ଆଜନ୍ମ ବାବାଙ୍କର ଭକ୍ତ !'

ଯୋଗୀମାଷ୍ଟ୍ରେ କହିଲେ, 'ଆଜ୍ଞା, ତାହା ସେଇ ବାବାଙ୍କ ଅନୁଗ୍ରହରୁ । ସେ କହନ୍ତି, "ମଣିଷର ମନ ଥରେ ବଦଳିଗଲେ ଅତୀତର ସମସ୍ତ ସଂସ୍କାର ସାଙ୍ଗେ ସାଙ୍ଗେ ଦୂର ହୋଇ-ଯାଏ । ମଣିଷର ଏକରକମ ପୁନର୍ଜନ୍ମ ହୁଏ" ?

ବାହମୀପତ୍ର କହିଲେ, 'ଆମ ପାଠ ତ କହୁଛି, ପୁନର୍ଜନ୍ମ ଓ ଏ ଜନ୍ମର ସାମାନ୍ୟ ଟିକିଏ କାର୍ଯ୍ୟ ବି ବୃଥା ହେବ ନାହିଁ । ପ୍ରତ୍ୟେକ ପାଇଁ ଭବିଷ୍ୟତରେ ପୁରସ୍କାର ବା ପ୍ରାୟଶ୍ଚିତ୍ତ ଥିଆ । ଜଡ଼ଭରତ ଗୋଟିଏ ମୃଗପ୍ରତି ଆସକ୍ତ ହୋଇଥିଲେ ବୋଲି ତାଙ୍କୁ ମୃଗ-ଜନ୍ମ ଗ୍ରହଣ କରିବାକୁ ପଡ଼ିଥିଲା । ଅତୀତର ସଂସ୍କାର ଯିବ କୁଆଡ଼େ ?'

ମାଷ୍ଟ୍ରେ କହିଲେ, 'ଆଜ୍ଞା, ଏ ବିଷୟର ସମାଧାନ ଆପଣ ତାଙ୍କର ମୁହଁରୁ ଶୁଣିବେ । ସେ କହନ୍ତି, "ଜଡ଼ଭରତ ଉପାଖ୍ୟାନ ଯେଉଁ ପାଠରେ ଅଛି, ଅଜାମିଳ ଉପାଖ୍ୟାନ ବି ସେହି ପାଠରେ ଅଛି." ମୁଁ ତାଙ୍କ ମୁହଁରୁ ଏ କଥା ଶୁଣିଛି କିନ୍ତୁ ଏହାର ବ୍ୟାଖ୍ୟାନ କରି ଆପଣଙ୍କ ମନରୁ ସଂଶୟ ଦୂର କରିପାରିବି ନାହିଁ । ମୁଁ ୧୫ ଦିନ କହିଲେ ଆପଣଙ୍କ ମନରୁ ସଂଶୟ ଯିବ ନାହିଁ. କିନ୍ତୁ ତାଙ୍କୁ ଦେଖିବାମାତ୍ରେ ଆପଣଙ୍କର ସଂଶୟ ଏକାବେଳକେ ଲୋପ ହୋଇଯିବ ।'

ଏ ସବୁ ଆଲୋଚନା ବେଳେ ଆମେରିକାନ ଦମ୍ପତି କାନ ଡେରି ବସିଥାନ୍ତି । ଓଡ଼ିଆ ଭାଷା ସେମାନେ ବେଶ୍ କହୁଥାନ୍ତି, କିନ୍ତୁ ଆଲୋଚନାକୁ ସବୁବେଳେ ଠିକ ଧରିପାରୁନ-ଥାନ୍ତି । ଦାଶବାବୁ ସେ ଦୁହିଙ୍କୁ ସବୁ କଥା ଯଥାସାଧ୍ୟ ବୁଝାଇଦେଉଥାନ୍ତି । ବାବାଙ୍କ ବ୍ୟକ୍ତିତ୍ୱ ବିଷୟରେ ଶୁଣି ସେ ଦୁହେଁ ବି ବାହାରିଲେ ଯିବାକୁ । ବିହାରରେ ଥିବା ତାଙ୍କ ସହକର୍ମୀ ମଧ୍ୟ ଲେଖିଥାନ୍ତି, ନିକଟରେ ପୁରୀ ଓ କୋଣାର୍କ ଦେଖିବାକୁ ଆସିବେ ଏବଂ ସୁଯୋଗ ପାଇଲେ ବିମଳାପୀଠ ଦେଖି ଆସିବେ । ଯୋଗୀମାଷ୍ଟ୍ରେ କହିଲେ, 'ସୁବିଧାଟା ଆପଣଙ୍କର । ଆପଣଙ୍କର ସୁବିଧା ହେଲେ ବିମଳାପୀଠରେ ଆପଣ ସବୁବେଳେ ସ୍ୱାଗତ ।'

ସାହେବ ପଚାରିଲେ, 'ପୀଠର ଠାକୁରାଣୀଙ୍କୁ ଦେଖିବାକୁ ମଧ୍ୟ ?' ଯୋଗୀମାଷ୍ଟ୍ରେ କହିଲେ, 'ଆପଣଙ୍କର ଇଚ୍ଛା ହେଲେ, ସେଥିପାଇଁ କେହି ଆପତ୍ତି କରିବେନାହିଁ । କିନ୍ତୁ ଆମେ ଯେଉଁମାନେ ଦିବାରାତ୍ର ସେଇ ପୀଠରେ ରହୁଛୁ, ସେମାନେ ବି ଠାକୁରାଣୀଙ୍କ ପାଖକୁ ଯିବାକୁ ଭରସିପାରୁନାହୁଁ । ଆପଣ ସେଠାକୁ ଗଲେ ସବୁ ବୁଝିପାରିବେ ।' ସେମାନେ ଏସବୁ ଶୁଣି ଏକାବେଳକେ ଗୋଡ଼ ଟେକି ବସିଥାନ୍ତି । ତାଙ୍କର ଏ ଅଞ୍ଚଳରେ ଆରମ୍ଭ ହୋଇଥିବା କାମ ଛାଡ଼ିଯାଇବେ ତ ବୋଲି ମହାପାତ୍ରେ ପଚାରିବାରେ ସାହେବ ଉତ୍ତର ଦେଲେ, 'ଆମର ଏପରି କିଛି ଧରାବନ୍ଧା କାମ ନାହିଁ । ଆମର ଏକମାତ୍ର ଉଦ୍ଦେଶ୍ୟ ଭାରତକୁ ଚିହ୍ନିବା ।'

ଦାଶବାବୁ କହିଲେ, 'ଭାରତ ବିଷୟରେ ଆପଣଙ୍କ ଦେଶର ବହୁ କୃତବିଦ୍ୟ ଲୋକ ବହୁ ଗ୍ରନ୍ଥ ରଚନା କରିଛନ୍ତି ; ଜର୍ମାନୀ, ଇଂଲଣ୍ଡ ଏବଂ ଏବେ ରୁଷ୍ ପ୍ରଭୃତି ଦେଶର ଲୋକେ ବି ବହୁ କଥା ଲେଖିଛନ୍ତି । ଆପଣମାନେ ସେ ସବୁ ପଢ଼ିବା ପରେ, ପୁଣି କ'ଣ ଜ୍ଞାତବ୍ୟ ରହୁଛି ?' ସାହେବ ଖୁବ୍ ହସିଲେ ; କହିଲେ, 'ମୁଁ ଅଳ୍ପଦିନ ଏଠାରେ ରହୁଛି । ଏଠାକୁ ଆସିବା ପର୍ଯ୍ୟନ୍ତ ମୋର ଧାରଣା ଥିଲା, ଭାରତକୁ ମୁଁ ଜାଣିକରି ଆସିଛି । ସଂପ୍ରତି ମୁଁ ମନେ କରୁଛି, ଏଠାରେ ଶହେବର୍ଷ ରହିଲେ ବି ଏ ଦେଶକୁ ଜାଣିପାରିବି ନାହିଁ । ଯେଉଁ ବୈଦେଶିକମାନେ ଭାରତ ବିଷୟରେ ଲେଖିଛନ୍ତି ସେଥିରେ ସେମାନେ ଭାରତର ବିଶିଷ୍ଟତା

ଦେଖାଇ ନାହାନ୍ତି ଯେ, ନିଜ ପାଣ୍ଡିତ୍ୟ ଯୋଗୁଁ ଭାରତକୁ ଆହୁରି ରହସ୍ୟାବୃତ କରିଦେଇ ଛନ୍ତି । ଆପଣ ବୋଧହୁଏ ଜାଣନ୍ତି, ଏଲ୍‌ଆନର୍ ରୁଜ୍‌ଭେଲ୍‌ଟଙ୍କ ପରି ଅଧିକାଂଶ ଭାରତର ଉଡ଼ାଜାହାଜ କେନ୍ଦ୍ରରୁ, ଦିଲ୍ଲୀର ରାଷ୍ଟ୍ରପତି ଭବନରୁ ଭାରତକୁ ଦେଖିଛନ୍ତି । କିନ୍ତୁ ଭାରତ କ'ଣ ସେଠାରେ ଅଛି ? ଯୋଗୀ ମାଷ୍ଟରଙ୍କ କଥାରୁ ଜଣାଯାଉଛି ବିମଳାପୀଠରେ ମୁଁ ଭାରତର ଅନ୍ତରକୁ ଦେଖିପାରିବି ।'

ଏହାପରି ପ୍ରତ୍ୟେକେ ବିମଳାପୀଠକୁ ଯିବାକୁ ଉତ୍ପିଚ୍ଛୁ ହୋଇ ରହିବାରେ ସ୍ଥିର ହୋଇଥିଲି, ଯୋଗୀମାଷ୍ଟ୍ରେ ଆସିବାର ସେହି ଚତୁର୍ଥଦିନର ଓପରଓଳି, ସମସ୍ତେ ଯାତ୍ରା କରିବେ । କିନ୍ତୁ ସକାଳଓଳି ସାଆନ୍ତାଣୀଙ୍କଠାରୁ ଖବର ଆସିଲା, 'ଆହୁରି ତିନିଦିନ ରହିବାକୁ ପଡ଼ିବ । କାଲି ଝିଅର ଲଗ୍ନ ପଡ଼ୁଛି, ଶୁକ୍ରବାର ସକାଳେ ଗାଧୋଇବା ପରେ ଯିବା । ସେଦିନ ବି ଶୁଭଦିନ ।'

ନାୟକେ କହିଲେ, 'ପ୍ରୟୋଜନ ପଡ଼ିଲେ ସଦ୍ୟସ୍ନାନ ବି କରାଯାଇପାରେ ।' ଏ ଯୁକ୍ତି କିନ୍ତୁ ସାଆନ୍ତାଣୀ ଶୁଣିବାକୁ ନାରାଜ । ସେ ପ୍ରତିବାଦ କଲେ, 'କି ଅଭାଗ୍ୟ କଥା । ମୁଁ ମାରୁ ଝିଅଟାକୁ ଗାଧୋଇ ପକାଇ ଶଶୁରଘରକୁ ପଠାଇବି ? ଏଥିରେ ଝିଅର ଦୋଷ, ଜ୍ୱାଇଁର ଦୋଷ । ଏଡ଼େ ବଡ଼ ମହାପୁରୁଷ ଏକଥା ଜାଣିଲେ ତମ ସମସ୍ତଙ୍କୁ ଦି'କଡ଼ାର କରିଦେବେ ନାହିଁ ?' ସମସ୍ତେ ତୁନି ହେଲେ । ଦାସେ କହିଲେ, 'ହଁ, ସ୍ତ୍ରୀମୂଳ ତ ସଂସାର ! ମାଇ-କିନିଆଙ୍କ ପଣତକାନିରେ ବନ୍ଧାହୋଇ ସମସ୍ତଙ୍କୁ ଚଳିବାକୁ ହେବ ହିଁ ହେବ ।' ମହାପାତ୍ରେ ଟିପ୍‌ପଣୀ କଲେ, 'ମୋତେ ବି ?' ତାଙ୍କର ପ୍ରାୟ କୋଡ଼ିଏ ବର୍ଷ ହେଲା ସ୍ତ୍ରୀବିୟୋଗ ହୋଇଥାଏ । 'ମୋ'ର ତ ଆଉ ସ୍ୱତନ୍ତ୍ର ପଣତକାନି ସଂଗ୍ରହକରିବା ସମ୍ଭବ ନୁହେଁ । ଭାଉଜ ତାଙ୍କ କାନିରୁ କେତେକାଂଶ ମୋତେ ଦେଲେ ହେଲା ।' ସାଆନ୍ତାଣୀ କବାଟକୁଣରୁ ଅନ୍ଦର ମହଲକୁ ଯିବାବେଳେ କହିଲେ, 'କେଡ଼େ ଖବିସ୍ ମ ଏ ବୁଢ଼ାଟା !' ସମସ୍ତଙ୍କର ହସ ଲାଗିଲା ।

ଆମେରିକାନ୍ ଯୁବକ କଥାଟା ବୁଝି କହିଲେ, ସାଆନ୍ତାଣୀ ଯାହା କହୁଛନ୍ତି, ତାହା ଡାକ୍ତରୀ ବିଦ୍ୟାଦୃଷ୍ଟିରୁ ମଧ୍ୟ ଠିକ୍ ବୋଲି ଆମ ଦେଶରେ ଗବେଷିତ ହୋଇଛି ।' ଯୋଗୀମାଷ୍ଟ୍ରେ କହିଲେ, 'ମୁଁ ଆସିଲାବେଳେ ବାବା କହିଛନ୍ତି, ନିତାନ୍ତ ପ୍ରତିବନ୍ଧକ ନ ପଡ଼ିଲେ, ଶୁକ୍ର-ବାରର ଦି'ପହର ଗାଡ଼ିରେ ଯିବାକୁ ହେବ । ଆମ ଷ୍ଟେସନ୍‌କୁ ବିମଳବାବୁ ଆସିଥିବେ, ଆପଣମାନଙ୍କୁ ନେବା ସକାଶ ।' ଶୁକ୍ରବାର ଦିନ ଯିବା କଥା ବାବା ଆଗରୁ ସ୍ଥିର କରିଥିବାର ଶୁଣି ସମସ୍ତେ ବିସ୍ମିତ ହେଲେ । ଜଗତ୍‌ପୁର ଷ୍ଟେସନ୍‌ରେ ବିମଳବାବୁ ତିନିଖଣ୍ଡ ଟ୍ୟାକ୍‌ସି କରି ଅପେକ୍ଷା କରୁଥିବାର ଦେଖି ସମସ୍ତଙ୍କର ବିସ୍ମୟ ଆହୁରି ବଢ଼ିଗଲା ।

... ... ...

ଦାସେ ଓ ତାଙ୍କ ବନ୍ଧୁମାନେ ବିମଳାପୀଠରେ ଆସି ପହଞ୍ଚିବାର ସାତଦିନ ହୋଇ-ଗଲାଣି । ଆଉ ୩ଦିନରେ ଫଗୁଦଶମୀ । ସେ ଦିନଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ବିମଳାପୀଠରେ

ମହୋତ୍ସବ ହୁଏ । ଆଡ଼େ ସାଢେ ପାଞ୍ଚକୋଶରେ ପ୍ରତ୍ୟେକ ଗ୍ରାମର ପ୍ରାୟ ପ୍ରତ୍ୟେକ ଲୋକ ଆସି ଠାକୁରାଣୀଙ୍କୁ ମୁଣ୍ଡିଆ ମାରନ୍ତି, ବାବାଙ୍କଠାରୁ ଆଶୀର୍ବାଦ ଘେନନ୍ତି ଓ ମନ୍ଦିରରେ ପ୍ରସାଦ ପାଇ ଘରକୁ ଫେରନ୍ତି, ବର୍ଷକ ପାଇଁ ନିଜ ନିଜ ଧନ୍ଦାରେ ଲାଗିବାକୁ । ଯାଙ୍କଭିତରେ ଅନେକେ ନବମୀ ଦିନରୁ ଆସନ୍ତି ଯେ ପୂର୍ଣ୍ଣିମାବାସୀ ଘରକୁ ଫେରନ୍ତି । କାହାରିକୁ ଆସିବାକୁ ନିମନ୍ତ୍ରଣ ଦିଆଯାଏ ନାହିଁ କି, କେହି ଦିନକୁ ପାଞ୍ଚଦିନ ବା ପାଞ୍ଚମାସ ରହିଲେ କେହି ମନା କରନ୍ତି ନାହିଁ । ଯୋଗୀମାଷ୍ଟ୍ରେ ଏ ମହୋତ୍ସବର ଆୟୋଜନ ଭାର ଯେଉଁ ବର୍ଷ ପ୍ରଥମେ ପାଇଲେ ସେ ବର୍ଷ ସେ ମହୋତ୍ସବର ପନ୍ଦର ଦିନ ଆଗରୁ ରାତି ଅନିଦ୍ରା ହୋଇଥାନ୍ତି । ଦିନେ ବାବାଙ୍କୁ ଯାଇ ପଚାରିଥିଲେ, 'ବାବା ! କେତେ ଚାଉଳ, ଡାଲି ଓ ପରିବାପତ୍ର ଯୋଗାଡ଼ କରିବି ?' ବାବା ଉତ୍ତରରେ ପଚାରିଲେ, 'ଏ ମହୋତ୍ସବ ତୁମେ କରାଉଛ ପରା ? ଯଦି ନିଜେ କରାଇବ ତେବେ ତୁମର ସାମଗ୍ରୀ ବଳିଯାଇପାରେ, ବା କମ୍ ହୋଇଯାଇପାରେ । କିନ୍ତୁ ଠାକୁରାଣୀ କରାଉଛନ୍ତି ବୋଲି ଯଦି ଦୃଢ଼ ଧାରଣା ରଖିପାରିବ ତେବେ ସବୁ ନିର୍ବିଘ୍ନରେ ସମାଧାନ ହୋଇଯିବ ।' ସେ ବର୍ଷ ମାଷ୍ଟ୍ରେ ସନ୍ତର୍ପଣରେ ସବୁ କରିଥିଲେ । ସେ ଦିନଠାରୁ ତାଙ୍କର ଦୃଢ଼ ବିଶ୍ୱାସ ହୋଇଛି, ଠାକୁରାଣୀ ତା କଥା ନିଜେ ବୁଝିଛି ।

ପ୍ରତିବର୍ଷ ପାଖ ଆଖ ଗାଁର ଲୋକେ ଯାହା ପାରନ୍ତି ତାହା ଆଣି ଜମା ଦିଅନ୍ତି । ସକାଳ ୧୦ଟାଠାରୁ ରାତି ୧୦ଟା ପର୍ଯ୍ୟନ୍ତ ପଙ୍ଗତ ଲାଗିଥାଏ, ରୋଷେଇ ଚାଲିଥାଏ । ଗତବର୍ଷ ଦ୍ୱାଦଶୀ ଦିନ ସକାଳେ ଯୋଗୀମାଷ୍ଟ୍ରେ ବାସ୍ତା ପରି ଆସି ବାବାଙ୍କ ପାଖରେ ଠିଆହେଲେ । ବାବା ମୁରୁକି ମୁରୁକି ହସି ତାଙ୍କଆଡ଼କୁ ଚାହିଁ ପଚାରିଲେ, 'କିଓ ମାଷ୍ଟ୍ରେ ! ଆଜି ଠାକୁରାଣୀଙ୍କ-ଠାରୁ ବିଶ୍ୱାସ ଦୂର ହୋଇଗଲା ପରା ?' ଯୋଗୀମାଷ୍ଟ୍ରଙ୍କ ପାଟିରୁ କଥା ବାହାରିଲା ନାହିଁ । ପ୍ରଥମ ପନ୍ତିରେ ୧୦ହଣ୍ଡା ଭାତ ବସିବାର କଥା । ସରଘରେ ଥାଏ ମାତ୍ର ଦୁଇହଣ୍ଡା ପାଇଁ ଚାଉଳ । ତାଙ୍କ ଅଭିଯୋଗ ଶୁଣି ବାବା କହିଲେ, 'ଚାଉଳ ନାହିଁ ବୋଲି କ'ଣ ପାଣିର ଅଭାବ ହୋଇଗଲା, ନା କାଠର ଅଭାବ ହୋଇଗଲା ? ପାଣି ଫୁଟୁଥାଉ । ଚାଉଳ ନ ଆସିଲେ ସମସ୍ତଙ୍କୁ ତିଅଣ ତରକାରୀ ସାଙ୍ଗରେ ଗ୍ଲାସେ ଗ୍ଲାସେ ଗରମ ପାଣି ଦେଇଦେବ । ଗରମ ପାଣିଟା ଶରୀର ପକ୍ଷରେ ଉପକାରୀ ।' ସେତିକିବେଳେ ଯୋଗୀମାଷ୍ଟ୍ରଙ୍କୁ ଜଣେ ଟହଲିଆ ଆସି ଡାକିଲା, 'ସରଘରକୁ ଆସ । ତିନିଟା ଚାଉଳ ଶଗଡ଼ ଦୁଆରେ ଫିଟିଛି ।' ତିନୋଟି ଗାଁର ଲୋକେ ଚାଉଳ ଚାନ୍ଦା କରି ଖଣ୍ଡିଏ ଖଣ୍ଡିଏ ଶଗଡ଼ରେ ଆଣିଥାନ୍ତି ।

ଆମେରିକାନ୍ ସାହେବ ଦୁଇଜଣ ସରଘରୁ ରନ୍ଧାଶାଳ, ଖିଆଶାଳରୁ ଖାଇବା ଜାଗା ବୁଲି ବୁଲି ଦେଖୁଥାନ୍ତି । ସେଥିରୁ ଜଣେ ଆମର ପରିଚିତ ଡାକ୍ତର ଓ ଅନ୍ୟଜଣକ ତାଙ୍କର ବନ୍ଧୁ. ମନସ୍ତତ୍ତ୍ୱ ପଣ୍ଡିତ, ବିହାରରୁ ଆସିଥାନ୍ତି । ସେ ସବୁ ତନ୍ନ ତନ୍ନ କରି ଦେଖି ମନ୍ତବ୍ୟ ଦେଲେ, 'ମନ ପ୍ରଭାବିତ ହୋଇଗଲେ, ରାଜନୀତି ଓ ଅର୍ଥନୀତିର ଦୋକାନଦାରି ପ୍ରୟୋଜନ ହୁଏନାହିଁ ।'

ଦୁହେଁଯାକ ଯାଇ ବାବାଙ୍କ ମଣ୍ଡପପାଖେ ପହଞ୍ଚିବାରେ ବାବା କହିଲେ, 'କି ? ପ୍ରଥମ ଦିନ ସାକ୍ଷାତ୍ ପରେ ତ ଆଉ ଏଠାକୁ ଆସୁନାହଁ ?' ମନସ୍ତତ୍ତ୍ୱଜ୍ଞ କହିଲେ, 'ସବୁବେଳେ ତ ଆପଣଙ୍କୁ ଦେଖୁଛୁ ଆପଣଙ୍କ କାମରୁ । ଦରକାର ହେଲେ ସିନା ଆସିବୁଁ ?'

ବାବା ହସି ହସି ପଚାରିଲେ, 'ଆଜି ତା'ହେଲେ ଦରକାର ହୋଇଛି ? ମନରେ ସନ୍ଦେହ ହୋଇଛି, ଯଦି ଏ ଆରବା କୌଣସି କାରଣରୁ ଚାଲି ନପାରିବ ତେବେ— ?' ମନସ୍ତତ୍ତ୍ୱଜ୍ଞ କହିଲେ, 'ମୋର ନୁହେଁ, ମୋ ବନ୍ଧୁଙ୍କର ଏ ସନ୍ଦେହ ହୋଇଛି ।'

ବାବା ପଚାରିଲେ, 'ଆପଣଙ୍କର ସନ୍ଦେହ ନ ହେଉଛି କାହିଁକି ? ତାଙ୍କର ବା ହେଉଛି କାହିଁକି ?'

ସାହେବ ଉତ୍ତର ଦେଲେ, 'ମୋର ବନ୍ଧୁ ଡାକ୍ତର ; ଶରୀରରେ ଆବଦ୍ଧ ; ଶରୀର ଭିତରୁ ପୁଣି କାନ, ନାକ ଓ ତୋଟି ବିଷୟରେ ସେ ବିଶେଷଜ୍ଞ । ମୁଁ ମନେକରୁଛି, ମନ ଉପରେ ଯଦି ପ୍ରଭାବ ପଡ଼ିଲା, ତେବେ ଯେ କୌଣସି ଯୋଜନା ଦୈବାତ୍ ନିଷ୍ଫଳ ହୋଇଗଲେ, ନିଷ୍ଫଳତାକୁ ସହିଯିବା ସକାଶ ମନର ବଳ ସ୍ୱତଃ ଜାଗ୍ରତ ହୋଇଯିବ ।'

ବାବା କହିଲେ, 'ଆପଣ ଠିକ୍ ବୁଝିଛନ୍ତି । ମନର ବଳ ପୁଷ୍ଟ କରିବାକୁ ହିଁ ଏ ଦେବଦେବୀଙ୍କର ସୃଷ୍ଟି । ସ୍ୱାଙ୍କୁ ଗୁରୁ ମଧ୍ୟ ମନକୁ ସଜାଡ଼ି ହେବ ଯେ, ଚିହ୍ନ ସାହାଯ୍ୟରେ ବୁଝିବା ଓ ଶିଖିବା ସହଜ ହୁଏ ।' ପିତୁଳାପୂଜାକୁ ଏତେ ସହଜରେ ବୁଝାଇ ଦେବାରେ ମନସ୍ତତ୍ତ୍ୱଜ୍ଞ ବି ମୁଗ୍ଧ ହେଲେ ।

ସେ ପୁଣି ପଚାରିଲେ, 'ଠାକୁରାଣୀଙ୍କର ଯା ଇଚ୍ଛା, ତା ଇଚ୍ଛା ବୋଲି ଆପଣ କିପରି ଆଗରୁ ଜାଣିପାରୁଛନ୍ତି, ମୁଁ ବୁଝିପାରୁନାହିଁ ।'

ବାବା କହିଲେ, 'ଆଉ ଟିକିଏ ଭଲ କରି ଚିନ୍ତାକଲେ ଜଣା ପଡ଼ିଯିବ । ଠାକୁରାଣୀ-ଙ୍କର ଅନୁଗ୍ରହ ହେଲେ ବୁଦ୍ଧିର ପ୍ରଖରତା ଆସେ । ବୁଦ୍ଧିବଳରେ ଏଭଳି ଅନେକ କଥା ଜଣାପଡ଼ିଯାଏ, ଯାହାକୁ ସାଧାରଣ ଲୋକେ ଭବିଷ୍ୟତ ଜ୍ଞାନ, ଦୈବୀଶକ୍ତି ବୋଲି ଧରି-ନିଅନ୍ତି । ଟିକିଏ ତଳେଇ କରି ବିଚାରିଲେ, ଭବିଷ୍ୟତ ଜ୍ଞାନ, ବର୍ତ୍ତମାନ ଉପରେ ଗଢ଼ା ହୋଇଥିବା ସମ୍ଭାବନା ବୋଲି ଜାଣିପାରିବ ।'

ପାଖରେ ଦାସେ ଓ ମହାପାତ୍ରେ ବସିଥିଲେ । ଆସିଲା ଦିନୁଁ ଏ ଦୁହେଁ ବାବାଙ୍କ ପାଖରେ ଦିନରାତି ବସୁଛନ୍ତି ଓ ଏଇ ମଣ୍ଡପରେ ରାତିରେ ବି ଶୋଉଛନ୍ତି । ବାହିନୀପତିଙ୍କର ଲାଗିଛି ଅଖଣ୍ଡ ଚଣ୍ଡୀପାଠ । ନାୟକେ ବୁଲି ବୁଲି ଆଞ୍ଚଳିକ ଜ୍ଞାନ ଆହରଣ କରୁଛନ୍ତି । ସାହେବଙ୍କୁ ବାବା କହିଥିବା କଥା ଉପରେ ମହାପାତ୍ରେ କହିଲେ, 'ବାବା, ଅନୁମତି ପାଇଲେ ଗୋଟିଏ କଥା ପଚାରନ୍ତି ?'

ବାବା କହିଲେ, 'ସେ ଅନୁମତି ତ ମୂଳରୁ ଦିଆ ହୋଇଛି, ତୁମେ କିଛି ନପଚାରି-ବାରୁ ଧରିନେଇଛି, ସବୁକଥା ତୁମ ଦୁହିଙ୍କୁ ଆପେ ଆପେ ଜଣା ପଡ଼ିଯାଉଛି । ଆଜି ଅବୁଝା ରହିଲା କ'ଣ ?'

ମହାପାବେ କହିଲେ, 'ଆଜି ଯେ ଆପଣ ସାନନ୍ଦଙ୍କୁ ଷ୍ଟେସନକୁ ପଠାଇଲେ, ବଡ଼େମହାରାଜ ଆସିବେ ବୋଲି ଜାଣିଲେ କେମିତି ।'

ବାବା ଦାସଙ୍କ ଆଡ଼କୁ ଚାହିଁ କହିଲେ, 'ମନୁଆ ବଳଦ ଥାନ୍ତି ଯେ ଅବଲୀଳାକ୍ରମେ ବଡ଼ ବଡ଼ ଉଠାଣି ଉଠିଯାନ୍ତି, କିନ୍ତୁ ବେଳେବେଳେ ଗ୍ରେଷ୍ଟ ବୁଢ଼ା ହୁଡ଼ ବି ଲଂଘି ନ ପାରି ଠିଆ ହୋଇ ରହନ୍ତି । ମହାପାବେ ସେଇମିତି କଥା କହୁଛନ୍ତି । ବଡ଼େ ମହାରାଜ ସାନନ୍ଦଙ୍କ-ଠାରୁ ଚିଠି ପାଇବା ପରେ ପୁରୀ ଆସିଛନ୍ତି । ତାଙ୍କର ବାଟରେ ଆମ ଏ ସ୍ଥାନ । ଦିନେ ଓଳିଏ ଏଠାରେ କଟାଇବାକୁ ତାଙ୍କର ଆଗ୍ରହ ହେବାର ସମ୍ଭାବନା । ଯଦି ଆସନ୍ତି ତେବେ ଆଜି ଆସିବେ ବୋଲି ମନେ ହେଲା, ତାଙ୍କୁ ସ୍ୱାଗତ କରିବାକୁ ଲୋକ ପଠାଇଦେଲି । ଏଥିରେ ଆଉ ବିସ୍ମିତ ହେବାର କ'ଣ ଅଛି ?'

ବିସ୍ମୟ ଦ୍ୱିଗୁଣିତ ବଢ଼ିଗଲା, ଯେତେବେଳେ ବାବା ଯାଇ ବିମଳା ମନ୍ଦିରର ସିଂହ-ଦ୍ୱାରେ ଠିଆ ହେବାର ପାଞ୍ଚମିନିଟ୍ ମଧ୍ୟରେ ସାନନ୍ଦ ବାବୁ ଦୁଇଟା ଟ୍ୟାକ୍ସିରେ ବଡ଼େ ମହାରାଜଙ୍କ ଗହଣରେ ଆସିଥିବା ସମସ୍ତଙ୍କୁ ଧରି ପହଞ୍ଚିଲେ । ଆହୁରି ବିଚିତ୍ର କଥା, ପ୍ରଥମ ଟ୍ୟାକ୍ସିରୁ ପ୍ରଥମେ ଓହ୍ଲାଇଲେ ସାନନ୍ଦ ବାବୁଙ୍କର ପ୍ରଥମ ଗୁରୁ 'ବାବା', ଯେ କି ଅଲକ୍ଷିତ ଭାବେ ଏବେ କେତେ ବର୍ଷ ହେଲା ପ୍ରବ୍ରଜ୍ୟା କରୁଥିଲେ । ବିମଳାପୀଠର ବାବା ତାଙ୍କୁ କୁଣ୍ଢେଇ ପକାଇଲା ବେଳେ ମନେ ହେଲା, ସତେ ଯେମିତି ଦୁଇଜଣ ବହୁଦିନର ପରିଚିତ ବନ୍ଧୁଙ୍କର ସାକ୍ଷାତ ହେଉଛି । ଆଗନ୍ତୁକ କହିଲେ, 'କିଛି ଦିନ ଅସ୍ଥ ହୋଇ ଠାଏ ରହିବି ବୋଲି ଇଚ୍ଛା ହେବାରୁ ଆସି ପଡ଼ିଲି । ଦୈବାତ୍ ବାଟରେ 'ବଡ଼େ' ସଙ୍ଗେ ଦେଖା ହୋଇ-ଗଲା ।' ସ୍ୱାଗତକାରୀ ବାବା କହିଲେ, 'ସବୁ ଠାକୁରାଣୀର ଇଚ୍ଛା । ମୋର ଭାଗ୍ୟ, ମୋତେ ମୋର ଗୁରୁ ମିଳିଗଲେ । ମନଶ୍ଚକ୍ଷୁରେ ଆପଣଙ୍କୁ ବହୁକାଳରୁ ଦେଖିଛି । ସାନନ୍ଦଠାରୁ ଶୁଣିଛି, ଆପଣ ଚାରିବର୍ଷ ତଳେ ଏ ଦିଗକୁ ଆସିଥିଲେ । ଆଉ ଥରେ କେବେ ଏପଟର ଭାଗ ପଡ଼ିବ ବୋଲି ଚାହିଁ ରହିଥିଲି । କାଲି ପାହାନ୍ତିଆରୁ ମନେ ହେଉଥିଲା ମୋର ପ୍ରତୀକ୍ଷା ସାଙ୍ଗ ହେବ ।' ଏ ସବୁ ମହାପାବେ ପ୍ରମୁଖଙ୍କୁ ତାଜୁବ ଲଗୁଥାଏ । ଆମେରିକାନ୍ ସାହେବ ଦୁହେଁ କହିଲେ, 'ବିଚିତ୍ର ଏ ଭାରତ ଭୂମି ! ଏ ଶତାବ୍ଦୀରେ ଏଭଳି ଲୋକେ ଅଛନ୍ତି ବୋଲି କେହି ବିଶ୍ୱାସ କରିବା ସହଜ ନୁହେଁ । ଆମର ଏ ଆବିଷ୍କାର ଚନ୍ଦ୍ରମଣ୍ଡଳର ଆବିଷ୍କାରଠାରୁ ମଧ୍ୟ ମହତ୍ତର ।'

ଦାସେ ଆପଣେ ଓ ମହାପାବେ ଆସିବାର ପ୍ରଥମ ଦିନ, ଠାକୁରାଣୀ ଓ ବାବାଙ୍କୁ ଦର୍ଶନ କରିସାରି ସେମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ବସାଘରେ ଆରାମ କଲାବେଳକୁ ସାନନ୍ଦ ବାବୁ ଆସି ସମସ୍ତଙ୍କୁ ମୁଣ୍ଡିଆ ମାରି ଠିଆ ହେବାରେ ମହାପାବେ ତାଙ୍କ ମୁହଁକୁ ବଲବଲ କରି ଚାହିଁ କହିଲେ, 'ଏଁ ! ଯେ ତ ଆମର ପରିଚିତ । ହଇଏ ବାବା ! ତୁମ ଘର କେଉଁଠି କହିଲ ?'

ଦାସେ କହିଲେ, 'ସନ୍ନ୍ୟାସୀମାନଙ୍କୁ ଘର କେଉଁଠି ବୋଲି ପଚାରନ୍ତି ଯେ ପଚାରୁଛ ?'

ମହାପାତ୍ରେ କହିଲେ, 'ଆଉ କଣ ? ଆପଣା ପିଲାକୁ ଦେଖିଲେ ଚିହ୍ନିବ ନାହିଁ, ପଗ୍ଭରିବ ନାହିଁ କେମିତି ଯେ ? ତମେ ସ୍ତାକୁ ଚିହ୍ନି ପାରୁନାହିଁ ? ସ୍ତେ ପରା ଆମ ପଢ଼ଆ ପୁଅ ବୁଢ଼ା । ସ୍ତା ଭଲ ନାଁ ସାନନ୍ଦଆ ନା କ'ଣ ? ପିଲା ଦିନଯାକ ମୋ ଘରେ ମୁରବ ହୋଇଥିଲା, ଚିହ୍ନି ପାରିବ ନାହିଁ ? ସ୍ତାର ତ କପାଳରେ ଥିଲା ସ୍ତା ହେବ ବୋଲି, ସ୍ତେ ଆମ ପାଖରେ କେମିତି ରହନ୍ତା କହିଲ ? ଆଗରୁ ଟିକିଏ ଜାଣିଥିଲେ ସ୍ତା ବାପଟାକୁ ସାଙ୍ଗରେ ଘେନିଆସି-ଥାନ୍ତେ । ଆଜି ଚିଠି ଦେବି, ସେ ଆସୁ । ପୁଅଟା ବାଳୁଙ୍ଗା ହୋଇଗଲା ବୋଲି କହୁଥିଲା । ଦେଖୁ ।'

ଦାସେ ଆପଣେ କହିଲେ, 'ମୁଁ ସ୍ତାଙ୍କର ଦାଢ଼ି ଜଣ, ବାବୁଲି ବାଳକୁ ଦେଖି ଚିହ୍ନି ପାରିଲି ନାହିଁ । ସାତ୍ତ୍ୱିକ ଜୀବନ ମନ ଓ ଶରୀର ଉଭୟରେ ଅଦ୍ଭୁତ ପରିବର୍ତ୍ତନ ଆଣାଇ ଦିଏ । ହଉ, ହଉ, ବାପା ! ଆମ ଅଞ୍ଚଳର ତୁମେ ଆଲୁଅ । ଗ୍ଭଲ, ଗାଁକୁ ଯିବା ; ଗାଁ ଆଉ ଗାଁ ହୋଇ ନାହିଁ । ତୁମେ ଯାଇ ସେଠାରେ ରହିଲେ ଲୋକଙ୍କର ଆଖି ଖୋଲିବ ।'

ଦାସିଆଣୀ ମହାପାତ୍ରଙ୍କୁ ନ ଲୁଚ ଆସି ପହଞ୍ଚିଗଲେ ; କାଖରେ ସାନନ୍ଦଙ୍କ ପୁଅ । ସାନନ୍ଦବାବୁ ତାଙ୍କୁ ମୁଣ୍ଡିଆ ମାରି ଠିଆ ହେବାରେ ସେ କହିଲେ, 'ହଇଏ ପୁଅ ! ତମେ ଏଠେଇ ଅଛ, ଆମଠାରୁ ଓଲକର ବାଟରେ, ଆଉ ମୁଁ ତୁମ ପିଲା ମାଇପକୁ ଧରି ଏଡିକ ଘାଣ୍ଟି ହେଲିଣି ? ତମ ଲଟରି ତମେ ସମ୍ଭାଳ । ମୁଁ ଆଉ ଏଠା ଗ୍ଭଡ଼ି ଯିବି ନାହିଁ । ସତେ ସ୍ୱର୍ଗପୁରୀ ପରି ଲାଗୁଛି ।' ସାଆନ୍ତାଣୀ ସାନନ୍ଦ ବାବୁଙ୍କ ହାତକୁ ପିଲାଟିକୁ ବଢ଼ାଇ ଦେବା ବେଳେ ସାନନ୍ଦ ବାବୁଙ୍କ ଆଗ୍ରହ ତ ବାହାରକୁ ଜଣାପଡ଼ିଲା ନାହିଁ, ପିଲାଟା ବାପାଙ୍କର ଦାଢ଼ି ଜଣ ଦେଖି ତାଙ୍କ ମୁହଁକୁ ତାଟକା ହୋଇ ଗ୍ଭହିଁ ଥିଲା, ଆଈ ତାଙ୍କ ଆଡ଼କୁ ତାକୁ ବଢ଼େଇ ଦେଲା ବେଳକୁ ଚିହିଁକ କରି ରଡ଼ି ଗ୍ଭଡ଼ିଲା । ମହାପାତ୍ରେ କହିଲେ, 'ଦାସେ ! ତମର ପରି, ଏ ଟୋକାର ତା' ଦାଢ଼ି ଉପରେ ଦୃଷ୍ଟି ।'

ଦାସେ ପଗ୍ଭରିଲେ, 'ତମେ ହଠାତ୍ ସ୍ତାଙ୍କୁ ଚିହ୍ନିଲି କେମିତି ?'

ମହାପାତ୍ରେ କହିଲେ, 'ଚିହ୍ନିଲି, ତା' ଟେରା ଆଖି ଯୋଡ଼ାକରୁ । ପିଲାଦିନେ ଦୁଷ୍ଟାମୀ କଲେ, ତାକୁ ଟିକିଏ ଗ୍ଭଗ ହେଲେ ସେ ଯେମିତି ଗ୍ଭହେଁ ସେ କଥା ମୋର ଆଜି ଯାଏଁ ମନେ ଅଛି । ତା' ବାପ ପଛେ ଚିହ୍ନି ନ ପାରିବ, ମୁଁ ଚିହ୍ନିବି ନାହିଁ ? ସ୍ତାକୁ ପାଞ୍ଚ ବର୍ଷ ହୋଇଥାଏ, ତମର ମନେ ନାହିଁ ? ସ୍ତା ବାପ ଆଣି ସ୍ତାକୁ ତମ ଗ୍ଭନ୍ଦମାରେ ବସାଇ କହିଲା, ସ୍ତେ ମା-ଖିଆ ପିଲାଟାକୁ କ'ଣ କରିବ ? ସେଇ ଦିନ ପରା ତୁମେ କହିଥିଲ, ମହାପାତ୍ରାଣୀଙ୍କ ପାଖରେ ପିଲାଟିଏ ନାହିଁ । ତାଙ୍କର ପାଖେ ରହିବ । ସେଇ ଦିନଠାରୁ ପରା ସ୍ତାକୁ ଷୋଳ ବର୍ଷ ହେଲା ଯାଏଁ ସ୍ତେ ଗ୍ଭଇ ପରି ମୋର ସାଙ୍ଗେ ରହିଲା, ମ୍ୟାଟ୍ରିକ ପାସ୍ କରିବା ପର୍ଯ୍ୟନ୍ତ । ନୂଆ ମା'କୁ ଖାଇବା ପରେ ମୁଁ ପରା ହୋଇଥିଲି ସ୍ତା'ର ବାପ ଓ ମା ? କିରେ ସାନନ୍ଦଆ, ଆମ ବଡ଼ଙ୍କ ହାତ ଗ୍ଭେଙ୍ଗେଇ ମନେ ଅଛି ?'

ସାନନ୍ଦବାବୁ କହିଲେ, 'ଜେଜେ ! ସେ ବେଳ କଥା କ'ଣ ପାସୋରି ହେବ ?'

ସାଆନ୍ତାଣୀ ପଚାରିଲେ, 'ଏବେ, ଆମେ ଫେରିବା ବେଳେ ସ୍ୱାମୀଙ୍କୁ ସାଙ୍ଗରେ ନେବା କି ?'

ସାନନ୍ଦ ବାବୁ କହିଲେ, 'ଏଠାରେ କାହାର ଇଚ୍ଛା ବା ଆକାଂକ୍ଷା ତ ରହି ପାରିବ ନାହିଁ । ବାବା ଯାହା କହିବେ ସେଇଆ ହେବ । ପୁଣି ତାଙ୍କର ସବୁ କଥାକୁ "ଠାକୁରାଣୀଙ୍କ ଇଚ୍ଛା" ।'

ମହାପାତ୍ରେ ପଚାରିଲେ, 'ହଇରେ, ଏ ବାବା କିଏ ? ସେ ତ ମୋତେ ସାକ୍ଷାତ ମହାଦେବଙ୍କ ପରି ଦିଶୁଛନ୍ତି ! ସ୍ୱାମୀଙ୍କ ବିଷୟରେ କିଛି କ'ଣ ଜାଣିଛୁ ?'

ସାନନ୍ଦ ବାବୁ କହିଲେ, 'ମୁଁ ତ ମୋଟେ ଚାରି ମାସ ହେଲା ସ୍ୱାମୀଙ୍କୁ ଦେଖୁଛି । ବିମଳ ଭାଇ ଏଠାରେ ରହିଲେଣି ୧୫।୧୬ ବର୍ଷ ହେଲା । ସେ କହନ୍ତି ସ୍ୱାମୀଙ୍କୁ ଦିନେ ଦେଖିଲେ ଯେତିକ ଜାଣିବ, ୧୫ ବର୍ଷରେ ବି ସେତିକ ? ନେତମା ବୋଲି ମାଇପିଟିଏ ଏଠି ଅଛି ; ବାବା ପ୍ରଥମେ ଆସିବା ଦିନ ତା'ର ମନେ ଅଛି । ସେତେବେଳେ ସେ ପହିଲିପାଲି ଆସିଥିଲା । ନେତମା ଏକାବେଳକେ ବୁଢ଼ୀ ହୋଇଗଲାଣି । ସେ କହେ, ବାବା ପ୍ରଥମେ ଆସିଲାବେଳେ ଯେମିତି ଦିଶୁଥିଲେ, ଏବେ ବି ଠିକ୍ ସେଇମିତି ଦିଶୁଛନ୍ତି, ଏବେ ଖାଲି ବାଳ କେତୋଟି ପାଚିଯାଇଛି ।'

ମହାପାତ୍ରେ ପଚାରିଲେ, 'ସେ ବିମଳ ବାବୁଟି କିଏ ?'

ସାନନ୍ଦବାବୁ—ସେ ଥିଲେ ଜଣେ ଅଧ୍ୟାପକ । କ'ଣ ବୋଲି ବାହାରି ଆସିଥିଲେ ଓ ଏବେ କ'ଣ କରୁଛନ୍ତି ସେଥିରେ ସେ ନିଜେ ଆଶ୍ଚର୍ଯ୍ୟ ହୁଅନ୍ତି । ଏ ସମଗ୍ର ଅନୁଷ୍ଠାନର ପରିଚାଳକ ସେ । କିନ୍ତୁ ଦେଖିଲେ ମନେହେବ, ଅତି ସରଳ ନିରୀହ ଲୋକ ; ମାଛିକି ମ' ବୋଲି କହିପାରନ୍ତି ନାହିଁ । ଏତେବେଳକୁ ସେ ଆସି ସାରନ୍ତେଣି । ଆମେରିକାନ୍‌ଙ୍କ ପାଖରେ ଅଟକି ଯାଇଛନ୍ତି । ସେମାନେ ଏକାଥରକେ ସବୁ ଜାଣିଯିବାକୁ ବଡ଼ ବ୍ୟଗ୍ର । ଏ ପୀଠ ଉପରେ ଆସୁ ଆସୁ ଗୋଟେ ବହି ଲେଖିବାକୁ ଆରମ୍ଭ କରିଦେଲେଣି । ଦୁର୍ଗାଦେବୀ କିନ୍ତୁ ସାବଧାନ କରି ଦେଇଛନ୍ତି, ବାବାଙ୍କର ଇଚ୍ଛା ନ ହେଲେ ପୁସ୍ତକ ଛପାହୋଇ ପାରିବ ନାହିଁ ।'

ଦାସେ ଆପଣେ ପଚାରିଲେ, ସେ ପୁଣି କିଏ ?

ଦାସିଆଣୀ ବାହାରିପଡ଼ିଲେ, 'ସେଇ ତ ଏଠେଇ ସବୁ । ସେଇ ଚଳନ୍ତୀ ଠାକୁରାଣୀ । ସବୁଠି ଅଛି, କୋଉଠି ନାହିଁ । ଏଠେଇ ଯେତେ ମଣିଷ ଅଛନ୍ତି ସମସ୍ତଙ୍କର ଆଖି ତା'ର ଉପରେ —ଏମିତି ଚଳିବେ ଯେମିତି ଦୁର୍ଗା ଦେବୀଙ୍କର ମନରେ କଷ୍ଟ ନ ହେବ । ବାଳ ବିଧବାଟିଏ, ମହାନଦୀର ବଢ଼ିରୁ ତାକୁ ବାବା ଉଦ୍ଧାର କରି ଆଣିଛନ୍ତି ଆପେ, ଆଉ ତାର ହାତରେ ସବୁ ସମର୍ପି ଦେଇଛନ୍ତି । ବିମଳ ବାବୁଙ୍କ ଭଳିଆ, ଯୋଗୀମାଷ୍ଟରଙ୍କ ଭଳିଆ ଓ ନେତମା ବୁଢ଼ୀ ସମସ୍ତେ ତା'ର ବଡ଼ଚାକର । ଖାଲି ବିମଳବାବୁ କାହିଁକି, ବାବା ବି ଦୁର୍ଗା ଦେବୀଙ୍କୁ ମାନନ୍ତି ବୋଲି ନେତ-ମା କହୁଛି । ଆମ ଭାଗ୍ୟ ଏଇ ଓଲିକ ଭିତରେ ତା'ର

ହୋଇଗଲଣି । କିନ୍ତୁ ମଣିଷଟିକୁ ଦେଖିଲେ ବିଶ୍ୱାସ ଅଭିଆଡ଼ୀ ବାଲୁଣଟିଏ । ଆଉ ଦ' ବର୍ଷରେ ତାକୁ ଦ'କୋଡ଼ି ପୂରିବ । ଆମ ମେଘା ତ ତାର ଗୁଇ ପରି ତା' ସାଙ୍ଗେ ଲାଗିଛି । (ଦାସଙ୍କୁ) ତମେ ଯାଅ ଗାଁ କଥା ବୁଝିବ, ମୁଁ ଏଠି ବର୍ଷେ ଖଣ୍ଡେ ରହିବ ।'

ଦାସେ କହିଲେ, 'ମୁଁ କୋଉଦିନ ଗାଁ କଥା ବୁଝିଥିଲି ଯେ ଆଜି ବୁଝି ପକାଇବି ? ତମେ ବୁଝୁଥିଲ, ତୁମେ ଗାଁକୁ ଫେର । ପିଲାମାନେ କେବେ କେମିତି ଘରକୁ ଆସିଲେ ତୁମକୁ ନ ଦେଖିଲେ କ'ଣ ହେବେ ଜାଣୁଛଟି ? ମୁଁ ମଝିରେ ମଝିରେ ଗାଁକୁ ଯିବି, ତମେ ବି ମଝିରେ ମଝିରେ ଏଠାକୁ ଆସିବ ।'

ସାଆନ୍ତାଣୀ ତୁନି ହୋଇଗଲେ । ଝଗଡ଼ାର ଉପକ୍ରମ ହେଲେ ସେ ଏଇମିତି ତୁନି ହୋଇଯାନ୍ତି । ସମସ୍ତ ଉଣ୍ଡି ଦାସଙ୍କୁ ମଙ୍ଗେଇ ନିଅନ୍ତି ।

ଦାସେ ଦାସିଆଣୀଙ୍କ କଥାବାର୍ତ୍ତା ଆରମ୍ଭ ହେବାର ଉପକ୍ରମରେ ହିଁ ମହାପାତ୍ରେ ବୋଲିଦେଲେ, 'ଅଜା ଯୁଦ୍ଧେ, ଋଷିଶ୍ରାଦ୍ଧେ ଦାମ୍ପତ୍ୟ କଲହେ ତୁ ଚ···ବହ୍ୱାରମ୍ଭେ ଲଘୁକ୍ରିୟା ।'

ପରଦେଶୀ ବାବା ଆସି ପହଞ୍ଚିଲାବେଳୁ ବିମଳାପୀଠର ବାବା ନିଜ ଦାୟିତ୍ୱରୁ ଅପସରି ଯାଇ ତାଙ୍କର ଅନୁଗତ ଶିଷ୍ୟ ପରି ଚଳିବାକୁ ଆରମ୍ଭ କରିବାରେ ଆଗନ୍ତୁକ କହିଲେ, 'ଅଚହ୍ନା ଲୋକଙ୍କୁ ଏପରି ସର୍ବସ୍ୱ ସମର୍ପିଦେବାକୁ ଆଜିକାଲି ଯୁଗର ଅନୁକୂଳ ନୁହେଁ ।'

ବିମଳାପୀଠର ବାବା କହିଲେ, 'ଆପଣ ବା ମୁଁ କିଏ ଆଧୁନିକ ଯୁଗରେ ଅଛେଁ ଯେ ସେକଥା ବୁଝିବା ? ଆମେ ଉଭୟେ ତ ଏ ଯୁଗଦୃଷ୍ଟିରେ ଉନ୍ମାଦ ।' ଆଗନ୍ତୁକ ହସିଦେଲେ । ଏହିପରି ବାକ୍ୟାଳାପ ଓ ଖୁସିବାସିରେ ଦୁଇଜଣଯାକ ବାବା ଚଳୁଥାନ୍ତି ; ତାଙ୍କ ପାଖରେ ଥିଲେ ମଧ୍ୟ ବଡ଼େ ମହାରାଜ ତୁନି ହୋଇ ଦୁଇଜଣଯାକ ମହାପୁରୁଷଙ୍କର କଥାବାର୍ତ୍ତା ଶୁଣୁଥାନ୍ତି । ବେଳେ ବେଳେ ସଂଶୟ ହେଲେ ସେ ଯାହା ପଚାରନ୍ତି ତାହାର ଉତ୍ତର ବଡ଼-ବାବାଙ୍କ ନିର୍ଦେଶରେ ବିମଳାପୀଠର ବାବା ଦିଅନ୍ତି । ଆହୁରି ଟିକିଏ ଆଡ଼େଇ ହୋଇ କିନ୍ତୁ ନିକଟରେ ଥାନ୍ତି ଦାସେ ଓ ମହାପାତ୍ରେ । ଅନ୍ୟ ସମୟେ ଏମାନଙ୍କ ମେଣ୍ଟରୁ ବାହାରେ ରହି ନିଜ ନିଜର କାର୍ଯ୍ୟରେ ଲାଗିଥାନ୍ତି । ସାଆନ୍ତାଣୀ ମାଇପିମେଳରେ ଥାନ୍ତି, ଓ ଦୁର୍ଗାଦେବୀଙ୍କ ସଙ୍ଗେ କଥାବାର୍ତ୍ତାରେ ସମୟ କଟାଉଥାନ୍ତି ।

ଆମେରିକାନ୍ ସାହେବ ଦୁଇଜଣ ଓ ମହିଳାଟି ଏ ଶୃଙ୍ଖଳାକୁ ମାନି ଚଳୁ ନ ଥାନ୍ତି । ଯେଉଁ ସାହେବ ଜଣକ ବହିଲେଖା ଆରମ୍ଭ କରି ଦେଇଥାନ୍ତି ସେ କାହାରି ସମୟ ଅସମୟକୁ ଖାତିର ନକରି ନିଜର ଜ୍ଞାତବ୍ୟ ବିଷୟ ସଂଗ୍ରହ କରିବାରେ ଲାଗିଥାନ୍ତି । ବାବା ଦୁହିଙ୍କ ପାଖରେ ଯେତେବେଳେ ନାଇଁ ସେତେବେଳେ ପହଞ୍ଚିଯାଇ ନାନା ପ୍ରକାର ପ୍ରଶ୍ନ ପଚାରୁଥାନ୍ତି । ମେଘା ମାଇପି ମହଲରେ ସେହିପରି ଇଆଡ଼ୁ ସିଆଡ଼ୁ ପ୍ରଶ୍ନ ପଚାରୁଥାନ୍ତି ଓ ତୃତୀୟ ଜଣକ ନିଜର ସଂଶୟ

ଦୂରକରିବା ପାଇଁ ପାଖ ଆଖର ଅଞ୍ଚଳମାନ ବୁଲି, ସାଧାରଣ ଲୋକଙ୍କ ଜୀବନ-ପ୍ରଣାଳୀ ବିଷୟରେ ଖୁଣ୍ଟିନାଟି ଟିପୁଥାନ୍ତି ।

ଦିନେ ସନ୍ଧ୍ୟାରେ ଠାକୁରାଣୀଙ୍କ ଆଳତି ପରେ ଛଅଜଣଯାକ ଏକାଠି ହୋଇ ମଣ୍ଡପରେ ବାବାଙ୍କ ଆସନ ପାଖରେ ଯାଇ ବସିଲେ । ବଡ଼ବାବା ସେମାନଙ୍କ ରୀତିଗତି ଦେଖି ମୁରୁକି ମୁରୁକି ହସି କହିଲେ, 'ଆଜି ତ ଯୁଦ୍ଧଯାତ୍ରା ପରି ବୋଧହେଉଛି !'

ବହି ଲେଖୁଥିବା ସାହେବ ଜଣକ ପଚାରିଲେ, 'ଆପଣଙ୍କ ଜୀବନଦର୍ଶନ ବିଷୟରେ ମୁଁ ଜାଣିବାକୁ ଚାହେଁ । ଜୀବନର ଲକ୍ଷ୍ୟ କ'ଣ ହେବା ଉଚିତ ବୋଲି ଆପଣମାନେ ମନେ କରନ୍ତି ?'

ବଡ଼ବାବାଙ୍କ ନିର୍ଦ୍ଦେଶରେ ବିମଳାପୀଠର ବାବା ଉତ୍ତରଦେଲେ, 'ଜୀବନଟା ଏପରି କୋଉ ବଡ଼କଥା ଯେ ତାହାର ଗୋଟାଏ ନିର୍ଦ୍ଦିଷ୍ଟ ଗତିପଥ ରହିବ ? ଅବସ୍ଥାଚକ୍ର ମଣିଷକୁ ଯେପରି ଚଳାଉଛି, ସେ ସେପରି ଚଳୁଛି । ଅନନ୍ତକାଳର ତୁଳନାରେ ମଣିଷର ଜୀବନ ଅତି ଅଳ୍ପକ୍ଷଣ ସ୍ଥାୟୀ । ପୁଣି ଦୁର୍ବଳ ମଣିଷ ଅବସ୍ଥାଚକ୍ରର ମୁକାବିଲା କରିବାକୁ ନିତାନ୍ତ ଅକ୍ଷମ । ଏପରି ସ୍ଥଳେ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ରହିବା ଅବାନ୍ତର ନୁହେଁ କି ?'

ସାହେବ ଆପତ୍ତି କଲେ, 'ମଣିଷର ମସ୍ତିଷ୍କ ଅଛି, ବିଚାରବୁଦ୍ଧି ଅଛି, କ'ଣ ଠିକ୍ କ'ଣ ଭୁଲ୍ ସେ ବିଷୟରେ ତା'ର ନିର୍ଦ୍ଦିଷ୍ଟ ଚିନ୍ତାଧାରା ରହିବା କ'ଣ ଉଚିତ ନୁହେଁ । ମୁଁ ତାକୁଇ ଜୀବନ-ଦର୍ଶନ କହୁଛି ।'

ବାବା କହିଲେ, 'ମୁଁ ଯାହା କହୁଛି, ତାହା ଏକଥା ବୁଝି କହୁଛି । ପ୍ରଥମ କଥା, ପ୍ରତ୍ୟେକର ଜୀବନଦର୍ଶନ ଏକ ହୋଇ ନ ପାରେ ; ତା'ର କାରଣ ପ୍ରତ୍ୟେକର ପରିବେଶ ଅଲଗା, ଓ ପୂର୍ବ-ସଂସ୍କାର ମଧ୍ୟ ସମାନ ନୁହେଁ । ଗୋଟାଏ ପ୍ରକାର ଚିନ୍ତାଧାରା ସମସ୍ତଙ୍କ ଉପରେ ଲଦି ଦେବାକୁ ବସିଲେ, ମନୁଷ୍ୟଜାତି ବ୍ୟକ୍ତିବିଶେଷ ବା ଗୋଷ୍ଠୀବିଶେଷର ଦାସତ୍ୱ ସ୍ୱୀକାର କରିବାକୁ ବାଧ୍ୟ ହେବ । ତେଣୁ ସାମୂହିକ ଭାବେ ଜୀବନଦର୍ଶନ କଥା ବିଚାର ନ କରି, ବ୍ୟକ୍ତିଗତ ଭାବେ ବିଚାର କରାଯାଏ ।'

ସାହେବ କହିଲେ, 'ମୁଁ ଏକଥା ବୁଝି ପାରୁନାହିଁ । ଧରନ୍ତୁ ଖାଦ୍ୟପେୟ । ଏହା ତ ସମସ୍ତଙ୍କ ପାଇଁ ସମାନ ଭାବେ ପ୍ରୟୋଜନ ! ଏ ବିଷୟରେ ସମଗ୍ର ଜାତି ପାଇଁ ସମାନ ବିଚାର-ଧାରା ରହିବା ଦରକାର ନୁହେଁ କି ?'

ବାବା କହିଲେ, 'ଏଇଥିରେ ତ ସବୁଠାରୁ ବେଶି ପାର୍ଥକ୍ୟ ଲକ୍ଷିତ ହୁଏ । ଆପଣଙ୍କ ନିଜ ଦେଶର ବୈଜ୍ଞାନିକମାନେ ଏବେ ଆବିଷ୍କାର କରିଛନ୍ତି, କୌଣସି ଦୁଇ ଲୋକର ଶରୀରାଭ୍ୟନ୍ତର ଯନ୍ତ୍ରପାତି ସମାନ ନୁହେଁ । ବାହ୍ୟ ସାଦୃଶ୍ୟରେ ଯେପରି ଦୁଇଜଣ ସମାନ ନୁହନ୍ତି ସେଇପରି ଦୁଇଜଣଙ୍କର ପରିପାକ ଯନ୍ତ୍ର ବି ସମାନ ନୁହେଁ । ଦୁହିଙ୍କର ଖାଇବାକୁ ସମାନ ଇଚ୍ଛା ଥିଲେ ବି ଜଣେ ଦୁଇଗୁଣ୍ଡା ଖାଇ ପେଟପୂରିଗଲା ବୋଲି କହୁଛନ୍ତି ; ଆଉ ଜଣକୁ ସେରେ ଚାଉଳ ଅଣ୍ଟୁନାହିଁ । ଯେ ତ ଗଲା ଦେହ କଥା । ମନ ବି ଫରକ୍ ଫରକ୍ ।

ଜଣଙ୍କର ଖାଲି ପେଟରେ ଏକାଗ୍ରତା ଆସୁଚି, ଆଉ ଜଣଙ୍କର ପୂର୍ଣ୍ଣପେଟରେ । ଏପରି ସ୍ଥଳେ କୌଣସି ଗୋଟାଏ ଧାରାରେ ସମସ୍ତେ ଚଳିବେ ବୋଲି କହିଲେ ଠିକ୍ ହେବ ନାହିଁ । ପ୍ରତ୍ୟେକର ମନକୁ ଶୁଦ୍ଧ ସେ ଚଳନ୍ତୁ, ଏହାହିଁ ଆମ ଦେଶର ପୂର୍ବାଚାର୍ଯ୍ୟମାନେ କହିଯାଇଥିଲି ପରି ଜଣା ପଡ଼ୁଛି ।'

ସାହେବ ଆପତ୍ତି କଲେ, 'କିନ୍ତୁ ମୁଁ ଶୁଣିଛି, ଶ୍ରାଦ୍ଧ ଓ ବ୍ରତ ବିବାହାଦିରେ କର୍ତ୍ତା ଉପବାସ ରହିବାର ବ୍ୟବସ୍ଥା ଆପଣମାନଙ୍କ ସ୍ମୃତିରେ ଅଛି ?'

ବାବା କହିଲେ, 'ଏ ସାଧାରଣ ବିଧିର ପୁଣି ନିପାତନ ଅଛି । ସ୍ମୃତିରେ ଅଛି, ''ସ୍ୱସ୍ଥଃ ଧର୍ମ ସମାଚରେତ୍'' । ନ ଖାଇଲେ ଯାହାର ନ ଚଳେ ତାକୁ ଲିଙ୍ଘି ଆହାର ଦିଆ-ସିବାରେ ଆପତ୍ତି ହୋଇନପାରେ ; ତେଣୁ ପ୍ରତ୍ୟେକର ନିଜ ନିଜର ବୁଦ୍ଧିବା ଅନୁସାରେ କର୍ମ କରିବା ଉଚିତ । ଯାହାର ଏ ବିଷୟରେ ପରାମର୍ଶ ବା ସାହାଯ୍ୟ ଦରକାର ସେ ଗୁରୁ କରିପାରେ । ଅବଶ୍ୟ ଗୁରୁ କରିବାକୁ କେହି ବାଧ୍ୟ ନୁହନ୍ତି, କି ଗୁରୁଙ୍କର ପରାମର୍ଶ ଲଙ୍ଘିଲେ ଦଣ୍ଡର ବ୍ୟବସ୍ଥା ନାହିଁ ।'

ସାହେବ—ତେବେ ତ ଆପଣ ଅରାଜକତାର ପକ୍ଷପାତୀ !

ବଡ଼ବାବା ଏଇଠାରେ ବାହାର ପଡ଼ି କହିଲେ, 'ଆପଣଙ୍କ ଦେଶରେ ଆପଣମାନେ କ'ଣ ଅରାଜକତାର ପକ୍ଷପାତୀ ନୁହନ୍ତି ? ସରକାରର ବିରୋଧ କରିବା, ପ୍ରତିଷ୍ଠିତ ସରକାର ଓ ଆଇନ୍ କାନୁନ୍‌ର ପରିବର୍ତ୍ତନ ଦାବୀ କରିବା ମୂଳରେ ଅଛି କ'ଣ ? ରାଜାଙ୍କୁ ସ୍ୱୀକାର କଲେ ଅରାଜକତାକୁ ସ୍ୱୀକାର କରିବାକୁ ପଡ଼ିବ । ଆମେ ପାର୍ଥିବ ରାଜାଙ୍କ କର୍ତ୍ତୃତ୍ୱ ସ୍ୱୀକାର କରୁନାହିଁ, ତେଣୁ ଅରାଜକତାର ପ୍ରଶ୍ନ ନାହିଁ । ଆମର ରାମ ରାଜା, ରାମ ପରଜା, ରାମ ସାହୁକାର ।' ରାମରାଜାଙ୍କର ଆମେ ଯେପରି ପ୍ରଜା, ଆମ ରାଜା ବି ସେହିପରି ପ୍ରଜା । ସେ ଘରର ମୁରବି ମାତ୍ର ।'

ସାହେବ ସନ୍ଦିଗ୍ଧ ହୋଇ ଆଉ କ'ଣ ପଚାରିଲି ବେଳକୁ ବଡ଼େ ମହାରାଜ ବାଧା ଦେଲେ, 'ପରେ ଏ ବିଷୟରେ ଆପଣଙ୍କର ମୋର କଥାବାର୍ତ୍ତା ହେବ, ତା'ପରେ ବୁଝିବାକୁ କିଛି ବାକୀ ରହିଲେ, ଏଠାକୁ ଆସିବା ।'

ସାହେବ ଦୁଃଖିତ ହୋଇ ପଚାରିଲେ, 'କିନ୍ତୁ ମୋର ପ୍ରଥମ ପ୍ରଶ୍ନର ଉତ୍ତର ମୁଁ ଏପର୍ଯ୍ୟନ୍ତ ପାଇନାହିଁ । ଜୀବନଟା କ'ଣ ବୋଲି ବାବା ମନେ କରନ୍ତି ?'

ବଡ଼ବାବା କହିଲେ, 'ଜୀବନଟା ତ ଜୀବନ ଆଉ କ'ଣ ? ଅନନ୍ତ କାଳ ପାରା-ବାରରେ ଗୋଟିଏ ପାଣିଫୋଟକା ମାତ୍ର । ପାଣି-ଫୋଟକା ଫାଟିବା ପରି ସ୍ୱେ ଆଖି ପିଛୁଳାକେ ଯାଏ, ଯା ପାଇଁ ଗୁଡ଼ାଏ ମୁଣ୍ଡ ଘୂରାଇବା କାହିଁକି ?'

ବିମଳା ମନ୍ଦିରର ବାବା ଯୋଗ କଲେ, 'ଆପଣ ପଚାରୁଛନ୍ତି ଏ ଜୀବନଟା ଯେତେ ଦିନ ଅଛି, ତାକୁ କଟାଇବା କିପରି ? ନା ?' ସାହେବ ସୋତ୍ସାହେ ମୁଣ୍ଡ ଟୁଙ୍ଗାରିବାରେ ବାବା କହିଲେ, 'ମୋର ଗୁରୁଦେବ କହିଲି ପରି ଏ ତୁଚ୍ଛ ଜୀବନ ପାଇଁ ବିଶେଷ ମମତା ରଖିବ ନାହିଁ ।

'ନାଭିନନ୍ଦେତ ମରଣଂ ନାଭିନନ୍ଦେତ ଜୀବିତଂ
ସଦା କାଳଂ ପ୍ରତୀକ୍ଷେତ ସ୍ୱାମିନଂ ଭୃତକୋ ଯଥା ।

ଆତ୍ମହତ୍ୟା କରିବ ନାହିଁ କି 'ମରଣ ହେଉ' ବୋଲି ଜୀବନ ପ୍ରତି ବିରକ୍ତ ହେବନାହିଁ । ଚପରାସୀ ଯେପରି ହାକିମଙ୍କ ଘଣ୍ଟିର ଆବାଜକୁ କାନ ଡେରି ରହିଥାଏ ସେହିପରି କାଳର ଡାକରାକୁ ଅପେକ୍ଷା କରି ରହିଥିବ । କିପରି ଅପେକ୍ଷା କରିବ ସେଇତକ ବିଚାର୍ଯ୍ୟ । ଏଥିପାଇଁ ଆମର ଋଷିମୁନିମାନେ ବହୁ ପରାମର୍ଶ ଦେଇଛନ୍ତି, ବହୁ ସୋପାନ ଦେଖାଇଛନ୍ତି । ସେ ସବୁର ମୂଳକଥା, ନିଜକୁ ଏ ସଂସାରର ନିମ୍ନତମ ପ୍ରାଣୀର ସ୍ତରରେ ରଖ । ନିଜର ସୁଖପାଇଁ ଯେତିକି ଧ୍ୟାନ ରଖିଛ, ଦେଶର ଅକିଞ୍ଚନଙ୍କ ପ୍ରତି ଅନ୍ତତଃ ସେତିକି ଧ୍ୟାନ ରଖ । ଭୋକ ତୁମକୁ ଲାଗେ, କ୍ରୂରତା ତୁମକୁ ଆଘାତ ଦିଏ, ଅନ୍ୟକୁ ସେହିପରି ହେଉଥିବ ବୋଲି ସର୍ବଦା ମନେରଖ । ଏଇ ଆମର ଧର୍ମ, ଏତିକି ମାନିଲେ ହେଲା । ସ୍ମୃତିରେ ଅଛି :

ଶ୍ରୂୟତାଂ ଧର୍ମସର୍ବସ୍ୱଂ ଶ୍ରୁତ୍ୱା ଚାପ୍ୟବଧାର୍ଯ୍ୟତାଂ
ଆତ୍ମନଃ ପ୍ରତିକୂଳାନି ପରେଷାଂ ନ ସମାଚରେତ୍ ।

'ଅର୍ଥାତ୍—ଧର୍ମର ଗୋଟିଏ ମାତ୍ର ମୂଳ କଥା । ଏହା ଜାଣି ଏହାର ଅନ୍ତର୍ନିହିତ ଅର୍ଥ ବୁଝିପାରିଲେ ଜୀବନଦର୍ଶନ ମିଳିବ । ସେ କଥାଟି ହେଲା— ଯାହାକୁ ଯା ଅସୁଖ ଲାଗୁଛି ତାହା ଅନ୍ୟକୁ ମଧ୍ୟ ଅସୁଖ ଲାଗୁଛି ବୋଲି ମନେରଖ ।'

ଦୁଇଜଣଯାକ ସାହେବ ଏକ ସ୍ୱରରେ କହିଲେ, 'ଏ ତ ସାର୍ବଜନୀନ ଧର୍ମ । ଏ ପର୍ଯ୍ୟନ୍ତ ଧର୍ମମାର୍ଗକୁ ଏଭଳି ସରଳଭାବେ ଆମକୁ କେହି ବୁଝାଇନଥିଲେ । କିନ୍ତୁ ଲୋକେ ଯେ ଏ କଥାର ମର୍ମ ବୁଝୁନାହାନ୍ତି, ଏ ଧର୍ମ ମାନୁନାହାନ୍ତି । ଯେ ବୁଝୁଛି ତାର ଏ ଦିଗରେ କର୍ତ୍ତବ୍ୟ କ'ଣ ?'

ବାବା ଉତ୍ତର ଦେଲେ, 'ମାନେ, ଆପଣ କହୁଛନ୍ତି ଆମେ ଲୋକଙ୍କୁ ମନେଇବାକୁ ପ୍ରଯତ୍ନ କରିବା ଉଚିତ । ସେପରି ବିଚାରିଲେ ତ ଆମେ ନିଜକୁ ଆଉ ଜଳ ବୁଦ୍‌ବୁଦ ବୋଲି ନ ବିଚାରି ମେରୁ ବୋଲି ବିଚାରିବା । ଧର୍ମ ପ୍ରଚାର କରିବାକୁ ଯାଇ ଘୋର ଅଧର୍ମରେ ଭାଗୀ ହେବା । ତେଣୁ ନିଜର ଆଚରଣ ଧର୍ମସମ୍ମତ ହେଉଛି କି ନାହିଁ ସବୁବେଳେ ସମୀକ୍ଷା କରି ସନ୍ତୁଷ୍ଟ ରହିଲେ ହେଲା । ତହିଁରୁ ଅଧିକ କର୍ତ୍ତାଙ୍କ ହାତରେ । ତାଙ୍କ କାମ ତାଙ୍କ ବେଳରେ ସେ କରିବେ ।'

ବିମଳା ମନ୍ଦିରରେ ରହିବାର ୧୦ଦିନ ହେବାରେ ବଡ଼ବାବା, ଦାସେ ଓ ମହାପାତ୍ରଙ୍କୁ ଡକାଇ କହିଲେ, 'ମୋତେ ଜଣାଯାଉଛି ତୁମେମାନେ ଏଠାରେ ରହି ଘରଧନ୍ଦା ସବୁ ପାସୋରି ଦେଉଛ । ସେ କାମ କରିବ କିଏ ? ସବୁ କାମ ସମ ଅନୁପାତରେ ଚାଲିଲେ ଯାଇ ଧର୍ମର ପୋଷଣ ହେବ । ବଡ଼େଇକୁ କହିଛି ସେ ଆଜି ତା' ଆଶ୍ରମକୁ ଫେରିଯିବ ।

ତୁମେମାନେ ମଧ୍ୟ ତୁମ ଆଶ୍ରମକୁ ଯାଅ । ମୁଁ ବି ଏଠାରୁ ଯିବାକୁ ବସିଲିଣି । ଠାକୁରାଣୀ ଆଉ ଦିନ କେତୋଟା ମୋତେ ଏଠାରେ ରଖିବେ ବୋଲି ଜଣାଯାଉଛି । ବାବାଙ୍କ ମନ, ମୋ ସାଙ୍ଗେ ସେ ଯା'ନ୍ତେ । ସେ ତ ଏଠାରେ ସବୁ ତୀର୍ଥକୁ ଧାଇଛନ୍ତି । ତାଙ୍କର ଯିବା ପ୍ରୟୋଜନ କ'ଣ ? ତାଙ୍କ ସଙ୍ଗେ ମୁଁ ଏଠାରେ କିଛିଦିନ ରହିବି ।'

ଦାସେ ଓ ମହାପାତ୍ରେ ଉଭୟଙ୍କ ମୁହଁ ଶୁଖିଗଲା । କିନ୍ତୁ ଯୁକ୍ତିତର୍କ ଏଠାରେ ଚଳିବ ନାହିଁ ବୋଲି ଜାଣି କିଛି ସମୟ ପରେ ଦାସେ କହିଲେ, 'ମୁଁ ବିଚାରୁଛି ଆମ ଗାଁରେ ଏପରି ଗୋଟିଏ ଆଶ୍ରମ କରନ୍ତୁ । ସାନନ୍ଦ ସେଠାରେ ରହନ୍ତେ, ଆପଣ, ବାବା ଓ ବଡ଼େ ମହାରାଜଙ୍କ ପାଦଧୂଳି ଦିନେ ପଡ଼ିଲେ ସେ ସ୍ଥାନର ଶୁଭ ହିଆନ୍ତା ।'

ବିମଳା ମନ୍ଦିରର ବାବା କହିଲେ, 'ଦାସେ ଆପଣେ ! ଆପଣ ତ ସରକାରୀ ଯୋଜନା ପରି ଲମ୍ବା ଫର୍ଦ୍ଦ ଆରମ୍ଭ କଲେଣି । ଅପେକ୍ଷା କରନ୍ତୁ । ମା ନ ବିଗୁରିଲି ଯାଏଁ କିଛି ହେବ ନାହିଁ । ତେବେ ସାନନ୍ଦର ଯିବା ନ ଯିବା ବିଷୟ ତା' ସାଙ୍ଗେ ଆଲୋଚନା କରାଯାଇ-ପାରେ ।'

ମହାପାତ୍ରେ କହିଲେ, 'ସେ ତ କହୁଛି ଆପଣଙ୍କ ହୁକୁମ ସେ ତାଲିମ କରିବ । ତା'ର ନିଜ ଇଚ୍ଛା ଅନିଚ୍ଛା ସେ ବହୁତ ଦିନୁ ଛାଡ଼ି ସାରିଲିଣି ।'

ବାବା କହିଲେ, 'ମୁଁ ତ କାହାକୁ କିଛି ହୁକୁମ ଦେବା ବହୁତ ଦିନୁ ଛାଡ଼ିଦେଲିଣି । ସ୍ୱେଚ୍ଛାରେ ସମସ୍ତଙ୍କୁ କାମ କରିବାକୁ ପଡ଼ିବ ; ଯେ ସେତିକ ଛାଡ଼ିବ ସେ ମା'ଙ୍କ ଇଚ୍ଛାକୁ ଗ୍ରହି ରହିବ । ମୋର ଇଚ୍ଛା ଏଠାରୁ ମୁକ୍ତି ପା'ନ୍ତି । କିନ୍ତୁ ମା'ଙ୍କ ହୁକୁମକୁ ପ୍ରତୀକ୍ଷା କରୁଛି । ମା'ଙ୍କଠାରୁ ହୁକୁମ ମିଳୁଛି, ଏ ଅନୁଷ୍ଠାନର ଦାୟିତ୍ୱ ନେବ ସାନନ୍ଦ, କିନ୍ତୁ ମୋତେ ଛାଡ଼ିବାକୁ ହୁକୁମ ମିଳୁନାହିଁ । ତା' ଇଚ୍ଛା ।'

ଏତିକବେଳେ ବଡ଼େ ମହାରାଜ କହିଲେ, 'ବାବା, ମୋତେ ଏଠାରୁ ତଡ଼ାଗଲା । ତାରାର ଓ ବଡ଼ ଦାଦର ଯେଉଁ ବିସ୍ତର ଟଙ୍କା ମୋ ପାଖେ ଜମା ଅଛି ସେତିକ ଏଠାକୁ ପଠାଇଦେବା ପାଇଁ ହୁକୁମ ମିଳୁ । ବଡ଼ ଦାଦର ପିଲାଟିମାନେ ମଧ୍ୟ ଏଠାକୁ ଆସନ୍ତୁ । ଏ ପରିବେଶରେ ସେମାନଙ୍କ ଶିକ୍ଷା ପୂର୍ଣ୍ଣାଙ୍ଗ ହେବ ।'

ବିମଳା ମନ୍ଦିରର ବାବା କହିଲେ, 'ପିଲା ତ ଆମର ଦରକାର । ଏଠାରେ ଯେତେ ଜଣ ବିବାହିତ କର୍ମୀ ଅଛନ୍ତି ସେ ସମସ୍ତଙ୍କର ଗୋଟିଏ ଲେଖାଏଁ ପିଲା । ଗୋଟିଏ ପିଲା ହେବା ପରେ ସେମାନଙ୍କ ଗାର୍ହସ୍ଥ୍ୟ ଧର୍ମ ସାଙ୍ଗ କରି ଦେଇଛନ୍ତି । ପିଲାଙ୍କୁ ପଠାଇଦିଅନ୍ତୁ ; ମହାପାତ୍ରେ ଯାଇ ସେମାନଙ୍କୁ ନେଇ ଆସିବେ । କିନ୍ତୁ ଟଙ୍କା ପାଇଁ ଟିକିଏ ଅପେକ୍ଷା କରିବାକୁ ପଡ଼ିବ । ଆମର ଅର୍ଥମନ୍ତ୍ରୀ ବିମଳବାବୁ, ତାଙ୍କର ନିଅଣ୍ଟିଆ ବଜେଟ୍‌ରେ ବିଶ୍ୱାସ । ସେ କହନ୍ତି, ଟଙ୍କା ପାଖରେ ଥିଲେ କର୍ମପ୍ରେରଣା ଲୋପ ହୋଇଯିବ । ତେଣୁ ଯେତେ ଟଙ୍କା ଦେବେ ସେତିକ ଖର୍ଚ୍ଚ ନ ହେଲା ପର୍ଯ୍ୟନ୍ତ ସେ ଅସ୍ଥ ହୋଇ ବସିବେ ନାହିଁ । ଗୁଡ଼ାଏ କାମ କରି ତାଙ୍କର ସ୍ୱାସ୍ଥ୍ୟହାନି ହେବାର ଲକ୍ଷ୍ୟ କରୁଛି । କିଛିଦିନ ଯାଉ, ତାଙ୍କର ସୁବିଧା ଓ ଯୋଜନା

ଦେଖି ଏଠାରୁ ଟଙ୍କାପାଇଁ ଚଠି ଯିବ । ଆପଣଙ୍କଠାରେ ଟଙ୍କା ଅଛି ବୋଲି ଶୁଣିବାବେଳୁ ତ ବିମଳ ଓ ଦୁର୍ଗିଙ୍କ ମୁଣ୍ଡରେ କେତେ ଯୋଜନା ଖେଳିବଣି ।

...

ପଅର ଦିନ ଯେ ବାହୁଡ଼ିବାର ବାହୁଡ଼ିବା କଥା । ସାହେବ ସାହେବାଣୀ ତିନିଜଣ ଯାକ ଆସି ଜିଦ୍ କଲେ ସମସ୍ତଙ୍କର ଗୋଟିଏ ଫଟୋ ଉଠିବ । ବାବା କହିଲେ, ଏ ତ ଏଠାରେ ନୂଆକଥା । ବଡ଼ବାବା କହିଲେ, ସାହେବ ଆସି ରହିବା ବି ନୂଆ । ଫଟୋ ଉଠି ସାରିବା ପରେ ଜଣେ ସାହେବ ପ୍ରାର୍ଥୀ ହେଲେ, ସେମାନଙ୍କୁ ହିନ୍ଦୁଧର୍ମରେ ଦୀକ୍ଷିତ କରାଯାଉ । ଆମେରିକାରେ କେତେ ସାହେବ ହିନ୍ଦୁ ହୋଇଛନ୍ତି ବୋଲି ସେନଜିର ଦେଖାଇଲେ । ବଡ଼ବାବା କହିଲେ, 'ହିନ୍ଦୁଧର୍ମରେ ଦୀକ୍ଷିତ କରିବାର ବିଧି ଶାସ୍ତ୍ରସମ୍ମତ ନୁହେଁ । ଆପଣମାନେ ଖ୍ରୀଷ୍ଟିୟାନ ଧର୍ମରେ ଥାଇ ହିନ୍ଦୁର ଆଚାର ବିଚାର ଗ୍ରହଣ କରିବାରେ ବାଧା ନାହିଁ । ମହାତ୍ମା ଗାନ୍ଧୀ ଧର୍ମରେ ଆଧୁନିକ ରାଜନୀତି ପୂରାଇବା ପୂର୍ବେ ଏ ଦେଶର ଅନେକ ମୁସଲମାନ ମଧ୍ୟ ହିନ୍ଦୁଙ୍କ ଆଚାର ଗ୍ରହଣ କରିଥିଲେ ।'

ସାହେବମାନେ ଶେଷରେ ପ୍ରାର୍ଥନା କଲେ, ଏଠାରେ ଆଉ କିଛିଦିନ ରହିବାକୁ ସେମାନଙ୍କୁ ଅନୁମତି ମିଳୁ । ବିମଳାମନ୍ଦିରର ବାବା କହିଲେ, 'ଆପଣଙ୍କୁ ଏଠାରେ ରହିବାର ଯେଉଁ ଅନୁମତି ମିଳିସାରିଛି, ତାହା ତ ଚିରସ୍ଥାୟୀ । ଯେତେଦିନ ଇଚ୍ଛା ରହିପାରନ୍ତି, ସବୁଦିନ ରହିପାରନ୍ତି, ଯିବା ଆସିବା କରିପାରନ୍ତି ।'

... ...

ଯିବାକୁ ଅଳ୍ପ ସମୟ ବାକି । ସାଆନ୍ତାଣୀ ପ୍ରାର୍ଥୀ ହେଲେ, 'ପୁଅ ବୋହୂଙ୍କୁ ସାଙ୍ଗରେ ଯିବାକୁ ଡାକୁଛି ଯେ ଦୁହେଁଯାକ ମୋତେ ଏଠାରେ ରହିବାକୁ କହୁଛନ୍ତି । ମାସେ ପନ୍ଦର ଦିନ ବୁଲି ଆସିଲେ କ'ଣ ହୁଅନ୍ତା ନାହିଁ ?' ବାବା ପ୍ରଶ୍ନବାଚକ ଦୃଷ୍ଟି ଦୁର୍ଗାଙ୍କ ଉପରେ ପକାଇବାରେ ସେ କହିଲେ, 'ସାନନ୍ଦ ବାବାଙ୍କର ତ ଦୈନନ୍ଦିନ କାମ ଲାଗିଛି । କଲିକତାର ଶେଠଜୀ ତିରିଶ ହଜାର ଟଙ୍କା ପଠାଇଦେଇଛନ୍ତି, ତାହାର ଖର୍ଚ୍ଚ ନ ସରିବା ପର୍ଯ୍ୟନ୍ତ ତାଙ୍କୁ ଓ ବିମଳଦାଦାଙ୍କୁ ଫୁରୁସତ ନାହିଁ । ତାରି ଯା'ନ୍ତା ଯେ ତା' ପିଲା ମୋତେ ଛାଡ଼ିବାକୁ ନାରାଜ । ତାରିର ପୁଅ ଦୁର୍ଗାଦେବୀଙ୍କ କୋଳରେ ଜକଟମକଟ କରି ଲାଗିଥାଏ ।

ବାବା ହସି ହସି କହିଲେ, 'ତାଙ୍କ ନାତି ତୋତେ ନ ଛାଡ଼ୁଛି ବୋଲି ତାରିର ଯିବା ବନ୍ଦ ହେବ କାହିଁକି ? ତାରି ତା' କଥା କହୁ । ସେ ଯଦି ଯିବାକୁ ବାହାରିବ ତେବେ ତୁ ତା' ପିଲା ଧରିବାକୁ ସାଙ୍ଗରେ ଯାଆ ।'

ତାରି ବାବାଙ୍କ ଆଗକୁ ଏ ପର୍ଯ୍ୟନ୍ତ ଭରସି ଆସିନଥିଲା । ଡକରା ଏଡ଼ିବାରୁ ସେ ସନ୍ତର୍ପଣରେ ଆସି ଦୁର୍ଗାଦେବୀଙ୍କ ଆଢ଼ୁଆଳରେ ଠିଆ ହୋଇ କହିଲା, 'ବାବା ! ମୋର ନିଜର ହୋଇ ମତ କିଛି ନାହିଁ । ଯାହାଙ୍କ ନିର୍ଦ୍ଦେଶରେ ମୁଁ ଚାଲିବାର କଥା ସେ ତ

କହୁଛନ୍ତି, ତାଙ୍କ ଇଚ୍ଛା ଅନିଚ୍ଛା ସେ ବାବାଙ୍କ ପାଦରେ ସମର୍ପଣ କରିଛନ୍ତି । ବାବା ଯୁଆଡ଼େ ଯିବାକୁ କହିବେ ଯିବ ।'

ବାବା ଟିକିଏ ଠାକୁରାଣୀଙ୍କ ଆଡ଼କୁ ଚାହିଁ ସାଆନ୍ତାଣୀଙ୍କୁ କହିଲେ, 'ଆପଣଙ୍କ ଝିଅକୁ ସାଙ୍ଗରେ ନେବାକୁ କହୁଥିଲେ ପରା । ଗୋଟିକ ଜାଗାରେ ଦୁଇଟି ଝିଅ ନଥାନ୍ତୁ । ଦୁର୍ଗା ଓ ତାରି ପନ୍ଦର ଦିନ ଖଣ୍ଡେ ସେଠାରେ ରହନ୍ତୁ । ଦୁର୍ଗା ଯେଉଁଠିକି ଯାଏ ଗୋଟିଏ କିଛି କାମ ଆରମ୍ଭ କରି ବସେ । ସାନନ୍ଦ ଯାଇ ଦେଖି ଆସିଲେ ଯାହା କରିବା ।'

ସମସ୍ତେ ଖୁସି ମନରେ ଯେଝା କାମକୁ ଫେରିଲା ବେଳକୁ ଭୂତପରି ପଦିଆ ନାହାକେ ଜ୍ୟୋତିଷ ଧୂଳିଧୂସରିତ ଦେହରେ ପଶି ଆସି ଦୁଇ ବାବାଙ୍କ ଆଗରେ ସାଷ୍ଟାଙ୍ଗ ପ୍ରଣିପାତ ହୋଇ ଭେଭେ ଡକାଛାଡ଼ି କହିଲେ, 'ଆପଣ ଦୁହେଁ ଯାକ ସନ୍ଥ । ସନ୍ଥଙ୍କ ଅନୁଗ୍ରହରେ କାଳଦଣ୍ଡ ଅପସରିଯାଏ । ନାତିକୁ କୋଡ଼ରେ ଧରିଲେ ମୋ ପ୍ରାଣ ଯିବ ବୋଲି ଖଡ଼ି ଡାକୁଛି । ମୁଁ ଆଜି ତାକୁ ନିଶ୍ଚେ କୋଡ଼ରେ ଧରିବି, ଆପଣଙ୍କ ଆଗରେ ଏଇଠି ପ୍ରାଣ ଯାଉ ।' ଏହା କହି ମହାପାତ୍ରଙ୍କ ନିବାରଣ କରିବା ସତ୍ତ୍ୱେ ସେ ତାରି ଦେବୀଙ୍କ କୋଡ଼ରୁ ନାତିକୁ ଟାଣି ନେଲେ ଓ ବାବାଙ୍କ ସାମନାରେ ମଣ୍ଡପରେ ତାକୁ କୋଡ଼ରେ ଧରି ବସି-ପଡ଼ିଲେ । ବାବା ହସି ହସି କହିଲେ, 'ନାୟକେ, ଗଣନାରେ ଭୁଲ କରିଛ । ତାକୁଇ କୋଡ଼ରେ ଧରି ପ୍ରାଣ ତ ଦିନେ ନିଶ୍ଚୟ ଯିବ; ସାଙ୍ଗେ ସାଙ୍ଗେ ବୋଲି ଯାହା ଗଣନା କରିଥିଲ ସେତିକ ଭୁଲ ।' ମହାପାତ୍ରେ କହିଲେ, 'କିରେ ପଦିଆ, ତୋ ନାହାକ ପଣ ଗଲା କୁଆଡ଼େ ? "ଷାଠିଏ ଶ୍ଳୋକ ପଢ଼େ ଶୁଆ ବିରାଡ଼ି ଦେଖିଲେ ଅଗ୍ରିବୁଆ" ।'

... ... ... ...

ଦାସେ ଓ ମହାପାତ୍ରେ ପ୍ରଭୃତି ଗାଡ଼ିରେ ବସିସାରିଲା ପରେ ପଶ୍ଚିମକବାଟେ ସେମାନଙ୍କ ଗାଡ଼ିର କବାଟ ବାହାରୁ ବନ୍ଦ କରି ଦେଇ ପ୍ରଣାମ କରିବାରେ ଦାସେ କହିଲେ, 'ଏଥିରେ ତ ଜାଗା ଥିଲା ବସିଲ ନାହିଁ ? ପଛଗାଡ଼ିରେ ଯିବ ?'

ପଶ୍ଚିମକବାଟେ କହିଲେ, 'ଆପଣେ, ଏଠେଇ ଘରଦ୍ୱାର ଓଲାଇବାର ନୌକରି ଯୋଗାଡ଼ କରିଦେଇଛ । ମୋର ତ ଲଟରି ନାହିଁ, ଯିବ କାହିଁକି ? ବାବା ଯେଉଁଦିନ ଯା' ବୋଲି କହିବେ ସେ ଦିନଯାଏଁ ଏଠାରେ ରହୁଛି । ପୁଅକୁ କହିଦେବେ ।'

